# ବେଦ ଓ ପୁରାଣରେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

**ବେ**ଦ ଓ ପୁରାଣ ସମୂହ ହିଁ ମାନବ ସଭ୍ୟତା, ସଂସ୍କୃତି, ଧର୍ମ, ଦର୍ଶନ ଓ ପରମ୍ପରାର ବାଙ୍ମୟ ପରିପ୍ରକାଶ । ଅକ୍ଷୟ ବିଚାରର ମାନସ ସରୋବର ବେଦରେ ପରଂବ୍ରହ୍ମଙ୍କୁ ସର୍ବବ୍ୟାପୀ, ସର୍ବଶକ୍ତିମାନ, ସର୍ବଜ୍ଞ, ସର୍ବେନ୍ଦ୍ରିୟ ଗୁଣାଭାସ ତଥା ଅବ୍ୟକ୍ତ ପୁରୁଷୋତ୍ତମ ବୋଲି କୁହାଯାଇଛି । ସେହି ନିର୍ଗୁଣ ବ୍ରହ୍ମଙ୍କର ସଗୁଣ ଲୀଳାବର୍ଣ୍ଣନ ହିଁ ପୁରାଣର ମୁଖ୍ୟ ପ୍ରତିପାଦ୍ୟ ପ୍ରସଙ୍ଗ । ବ୍ରହ୍ମପୁରାଣଠାରୁ ଆରମ୍ଭ ହୋଇ ବ୍ରହ୍ମାଣ୍ଡ ପୁରାଣରେ ଶେଷ ହୋଇଥିବା ପୁରାଣ ସମୂହରେ ପରଂବ୍ରହ୍ମ ପୁରାଣପୁରୁଷ, ଯଜ୍ଞପୁରୁଷ, ଲୀଳାପୁରୁଷ, ମର୍ଯ୍ୟାଦାପୁରୁଷ ଓ ଯୁଗ ପୁରୁଷୋତ୍ତମ ପ୍ରଭୃତି ବହୁ ନାମରେ ଖ୍ୟାତ । ଶ୍ରୀମଦ୍ ଭଗବଦ୍ ଗୀତାରେ ସେ କ୍ଷରପୁରୁଷଠାରୁ ଭିନ୍ନ ଓ ଅକ୍ଷର ପୁରୁଷଠାରୁ ଶ୍ରେଷ୍ଠ । ବୈଦିକ ପ୍ରଚେତାବୃନ୍ଦ ଯେପରି ତାଙ୍କର ଆଦି ଅନ୍ତ ନିର୍ଣ୍ଣୟ କରିନପାରି ତାଙ୍କୁ ସହସ୍ରଶୀର୍ଷା ପୁରୁଷ ନାମରେ ଅଭିହିତ କରିଛନ୍ତି, ପୁରାଣକାରବୃନ୍ଦ ସେହିପରି ତାଙ୍କ ପ୍ରଶଂସାରେ ଶତମୁଖ ହୋଇ ପୁରାଣ ସମୂହକୁ ପୁରାଣପୁରୁଷ ପରଂବ୍ରହ୍ମଙ୍କର ଦିବ୍ୟଶରୀର ରୂପରେ ବିବେଚନା କରିଛନ୍ତି । ସେହି ପୁରାଣପୁରୁଷ ପରଂବ୍ରହ୍ମ ହିଁ ପୁରୁଷୋତ୍ତମ କ୍ଷେତ୍ରରେ ଅନାଦି କାଳରୁ ପୁରୁଷୋତ୍ତମ ଲୀଳା ସଂରଚନା କରିଛନ୍ତି । ଏହି ପୁରୋଦୃଷ୍ଟିରେ ତାଙ୍କ ନାମ ଓ ଧାମ ଉଭୟ ପୁରୁଷୋତ୍ତମ ସ୍ୱରୂପରେ ମହିମାମଣ୍ଡିତ ।

ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ,<br>
ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମଃ ।

ସର୍ବଦର୍ଶନସାର ଦାରୁବ୍ରହ୍ମ ଜଗନ୍ନାଥ ହେଉଛନ୍ତି ପ୍ରଣବର ବାଚ୍ୟରୂପ ତଥା ବେଦୋକ୍ତ ପୁରୁଷୋତ୍ତମ । ଋଗ୍‌ବେଦରେ ଦାରୁବ୍ରହ୍ମଙ୍କୁ ଅପୌରୁଷେୟ ତଥା ମୋକ୍ଷ ପ୍ରାପ୍ତିର ଏକମାତ୍ର ଅବଲମ୍ବନ ଭାବରେ ଉଦ୍‌ଘୋଷଣା କରାଯାଇଛି ।

ଅଦୌ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍,<br>
ତଦାରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ । (୧)

ପ୍ରସିଦ୍ଧ ବେଦଭାଷ୍ୟକାର ଶାୟନାଚାର୍ଯ୍ୟଙ୍କ ମତରେ ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କ ଉପାସନା ହିଁ ପରମଲୋକ ପ୍ରାପ୍ତିର ଶ୍ରେଷ୍ଠ ମାର୍ଗ ।



ବ୍ରହ୍ମ ନିର୍ଗୁଣ ଓ ସଗୁଣ । ଦୁହିଁଙ୍କର ତତ୍ତ୍ୱ ମଧ୍ୟ ଅଭିନ୍ନ । ଯେତେବେଳେ ସେ ଅଖିଳବିଶ୍ୱକୁ ଧାରଣ ପୂର୍ବକ ଶାରୀରିକ ସମ୍ବନ୍ଧରୁ ଊର୍ଦ୍ଧ୍ୱରେ ସେତେବେଳେ ସେ ନିର୍ଗୁଣ ଏବଂ ଯେତେବେଳେ ସକଳ ଜଗତରେ ପରିବ୍ୟାପ୍ତ ରହି ବିଶ୍ୱାନୁଗତା ରୂପ ଧାରଣ କରନ୍ତି ସେତେବେଳେ ସଗୁଣ । ବ୍ୟାପ୍ତି ସତ୍ତ୍ୱେ ସେ ଷଡ଼େଶ୍ୱର୍ଯ୍ୟର ଅଧିକାରୀ, ବିଭୂତିମାନ ଓ ପୁରୁଷୋତ୍ତମ ନାମରେ ଖ୍ୟାତ । ଏହା ହିଁ ପୁରୁଷୋତ୍ତମ ତତ୍ତ୍ୱ ଏବଂ ବେଦର ପରମ ରହସ୍ୟ । ଏହି ଦିବ୍ୟଦୃଷ୍ଟିରେ ବେଦୋକ୍ତ ପୁରୁଷସୂକ୍ତ ମନ୍ତ୍ରରେ ପରଂବ୍ରହ୍ମଙ୍କୁ 'ସହସ୍ରଶୀର୍ଷା ପୁରୁଷଃ' ବୋଲି କୁହାଯାଇଛି ।

ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍,<br>
ସ ଭୂମିଂ ସର୍ବତୋ ବ୍ୟାପ୍ୟ ଅଧତିଷ୍ଠଦ୍ ଦଶାଙ୍ଗୁଳମ୍ ।<br>
ଯଃ ପୁମାନ୍ ପରଂବ୍ରହ୍ମ ପରମାତ୍ମେତ ଗୀୟତେ,<br>
ଭୂତାଂ ଭବ୍ୟଂ ଭବିଷ୍ୟଂ ଚ ସର୍ବଂ ପୁରୁଷ ଏବତତ୍ । (୨)

ବେଦ ବର୍ଣ୍ଣିତ ସେହି ସହସ୍ରଶୀର୍ଷା ପୁରୁଷ ହିଁ ଦାରୁବ୍ରହ୍ମ ଭାବରେ ପୁରୁଷୋତ୍ତମ କ୍ଷେତ୍ରରେ ମୂର୍ତ୍ତିମନ୍ତ । ଅନ୍ୟଭାଷାରେ କହିଲେ ବେଦ ବର୍ଣ୍ଣିତ ପରଂବ୍ରହ୍ମ ପୁରୁଷୋତ୍ତମ ପ୍ରତିମାବାଦର ଝଲକରେ ପ୍ରତୀକବାଦର ରହସ୍ୟ ସ୍ୱରୂପରେ ନୀଳାଚଳରେ ଲୀଳାମଗ୍ନ । ସେ ଏକ ଅଥଚ ସ୍ଥୂଳ, ସୂକ୍ଷ୍ମ, ସଗୁଣ, ନିର୍ଗୁଣ, ଶୂନ୍ୟ ଓ ଅଶୂନ୍ୟର ପ୍ରତୀକ ।

ନେକାନୈକ ସ୍ଥୂଳ ସୂକ୍ଷ୍ମାଣୁ ମୂର୍ତ୍ତେ,<br>
ବ୍ୟୋମାତୀତଂ ବ୍ୟୋମରୂପଂ ପ୍ରକାଶଂ ।





ବ୍ୟୋମାକାରଂ ବ୍ୟାପିନୋ ବ୍ୟୋମସଂସ୍ଥ
ବ୍ୟୋମାରୁଢ଼ଂ ବ୍ୟୋମ କେଶାଦ୍ଦଯୋନେ ॥ (୩)

ମୂର୍ତିତତ୍ତ୍ୱ ଦୃଷ୍ଟିରୁ ଦର୍ଶନ କଲେ ଦାରୁବ୍ରହ୍ମ ହିଁ ବେଦୋକ୍ତ ପୁରୁଷୋତ୍ତମ । ଶାସ୍ତ୍ର ବର୍ଣ୍ଣନାନୁଯାୟୀ, ଦାରୁବ୍ରହ୍ମଙ୍କ ମୂର୍ତ୍ତି ଗଠନ ପରେ ପ୍ରାଣ ପ୍ରତିଷ୍ଠା ପୁରୁଷସୂକ୍ତ ମନ୍ତ୍ରରେ କରାଯାଇଥିଲା ।

ତ୍ରୟୀ ପ୍ରସିଦ୍ଧଂ ଯତ୍‌ସୂକ୍ତଂ ପାବନଂ ପୌରୁଷଂ ମହତ୍,
ତେଜ ନାରାୟଣଂ ଭୂପଃ ପଜୟାମାସ ଶକ୍ତିତଃ । (୪)

ବୈଦିକ ଧର୍ମ ଓ ଦର୍ଶନରେ ପୁରୁଷୋତ୍ତମ ଜଗନ୍ନାଥ ହେଉଛନ୍ତି ପରିବର୍ତ୍ତନଶୀଳ ବିଶ୍ୱର ଅପରିବର୍ତ୍ତନୀୟ ପରମ ସତ୍ତା । ବୈଦିକ ଯଜ୍ଞର ମହତୀ ପ୍ରୟୋଗରେ ସେ ପ୍ରଣବର ବାଚ୍ୟ ରୂପ ଭାବେ ମହାଦାରୁରୁ ରୂପବନ୍ତ ହୋଇଛନ୍ତି । ତାଙ୍କ ଦାରୁମୂର୍ତ୍ତିରେ ହସ୍ତ, ପଦ, ନେତ୍ର, ଶ୍ରବଣ ପ୍ରଭୃତି ଇନ୍ଦ୍ରିୟର ଆଭାସ ଥିଲେ ହେଁ ପୂର୍ଣ୍ଣ ଅବୟବ ନାହିଁ । ଆର୍ଯ୍ୟ ପ୍ରଚେତାବୃନ୍ଦ ତାଙ୍କ ପରମ ପୁରୁଷଙ୍କ ପ୍ରତୀକରୂପେ ପ୍ରଣତି ଜଣାଇଛନ୍ତି ।

ବେଦାହମେଦଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣ ତମସଃ ପରସ୍ତାତ୍,
ତମେବବିଦିତ୍ୱାତି ମୃତ୍ୟୁମେତିନାନ୍ୟଃ ପନ୍ଥା ବିଦ୍ୟତେ[illegible]ନୀୟ । (୫)

ବୈଦିକ ଯୁଗର ଅନ୍ତିମ କାଳରେ ସୃଷ୍ଟ ଉପନିଷଦୀୟ ଦାର୍ଶନିକ ବିଚାରରେ ତାଙ୍କୁ ବିଶ୍ୱର ଶାଶ୍ୱତ ସତ୍ତା ସ୍ୱରୂପୀ ମହାନ୍ ପୁରୁଷ ନାମରେ ସମ୍ବୋଧନ କରାଯାଇଛି । ସେ ନିର୍ଗୁଣବ୍ରହ୍ମ ରୂପେ ବିଶ୍ୱନିୟନ୍ତା ଓ ସଗୁଣବ୍ରହ୍ମ ରୂପେ ବିଶ୍ୱର ସ୍ରଷ୍ଟା । ସେ ସକଳ ଜୀବଙ୍କ ପାଦରେ ଗମନ କରନ୍ତି, ସଭିଙ୍କ ହସ୍ତରେ କର୍ମ କରନ୍ତି, ସମସ୍ତଙ୍କ ଚକ୍ଷୁରେ ଦେଖନ୍ତି ଏବଂ ସମସ୍ତଙ୍କ କର୍ଣ୍ଣରେ ଶୁଣନ୍ତି । ଅଚିନ୍ତ୍ୟ ତାଙ୍କର ଶକ୍ତି ।

ଉପନୀଷଦୀୟ ଭାଷାରେ -

ଅପାଣି ପାଦୋ[illegible]ହଂ ଅଚିନ୍ତ୍ୟଶକ୍ତି ପଶ୍ୟାମଚକ୍ଷୁ ଶୃଣୋମ୍ୟକର୍ଣ୍ଣ
ଅହଂ ବିଜାନାମି ବିବିକ୍ତରୂପୋ ନଗସ୍ତିବେତ୍ତା ମମବିସ୍ୱବହମ୍ । (୬)

ମନ୍ତ୍ରଟିର ମହନୀୟତା ହେଉଛି ଏହି ପରମ ମନ୍ତ୍ରଟିକୁ ଭିନ୍ନ ଭିନ୍ନ ଉପନିଷଦରେ ଭିନ୍ନ ଭାବଧାରାରେ ଅବତାରଣା କରାଯାଇ ପୁରୁଷୋତ୍ତମ ଚେତନାକୁ ବ୍ୟାପକ କରାଯାଇଛି । ଅଧିକନ୍ତୁ, ଉପନିଷଦ୍‌କାଳୀନ ବ୍ରହ୍ମଦ୍ରଷ୍ଟାବୃନ୍ଦ ବ୍ରହ୍ମମୂର୍ଚ୍ଛନାରେ ତାଙ୍କୁ ମହାନ୍ ପୁରୁଷ ବୋଲି ସମ୍ବୋଧନ କରିଛନ୍ତି ।

ଅପାଣି ପାଦୋ ଯବନୋ ଗ୍ରହୀତା ପଶ୍ୟତଚକ୍ଷୁ ସ ଶୃଣୋତ୍ୟକର୍ଣ୍ଣଃ,
ସ ବେତ୍ତିବେଦ୍ୟଂ ନଚ ତସ୍ୟାସ୍ତିବେତ୍ତା ତମାହୁରାଧ ପୁରୁଷଂ ମହାନ୍ତମ୍ । (୭)

ବୃହଦାରଣ୍ୟକ ଉପନିଷଦ୍‌ରେ ପୁରୁଷଙ୍କୁ ଜ୍ୟୋତି ଓ ପ୍ରାଣ ବୋଲି କୁହାଯାଇଛି । ଛାନ୍ଦୋଗ୍ୟ ଉପନିଷଦ୍ ବର୍ଣ୍ଣନାନୁଯାୟୀ ଯେଉଁ ପୁରୁଷ ନେତ୍ରରେ ଦୃଶ୍ୟମାନ ସେ ହିଁ ଆତ୍ମା, ଅମୃତ ତଥା ବ୍ରହ୍ମ । ଉପନିଷଦୀୟ ବ୍ରହ୍ମାନୁଭୂତିରେ ତାଙ୍କୁ ଶ୍ରେଷ୍ଠ ଜ୍ୟେଷ୍ଠ ଓ ମହତ୍ ପୁରୁଷ ଭାବରେ ଅଭିବ୍ୟକ୍ତ କରାଯାଇଛି । ଉପନିଷଦୀୟ ସିଦ୍ଧାନ୍ତରେ ସେ ପୁରୁଷୋତ୍ତମ ତତ୍ତ୍ୱର ସଗୁଣ ସାକାର ବିଗ୍ରହ । ଉପନିଷଦୀୟ ବ୍ରହ୍ମାନୁଭୂତିରେ ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ତାଙ୍କୁ ପ୍ରାତଃ ସ୍ମରଣୀୟ ପୁରୁଷୋତ୍ତମ ନାମରେ ସମ୍ବୋଧନ କରିଛନ୍ତି ।

ପ୍ରାତର୍ନମାମି ତମସଃ ପରମର୍କବର୍ଣ୍ଣମ୍,
ପୂର୍ଣ୍ଣ ସନାତନ ପଦଂ ପୁରୁଷୋତ୍ତମାଖ୍ୟମ୍,
ଯସ୍ମିନ୍ନିତ୍ୟଂ ଜଗଦଶେଷଶେଷ ମୂର୍ତ୍ତୌ
ରଜ୍ଜ୍ୱାଂ ଭୂଜଙ୍ଗମ ଇବ ପ୍ରତିଭାସିତଂ ବୈ । (୮)

ଅଧିକନ୍ତୁ, ଉପନିଷଦ୍‌ରେ ପରଂବ୍ରହ୍ମ ପରମପୁରୁଷଙ୍କର ନିର୍ଗୁଣତ୍ୱ ଓ ସଗୁଣତ୍ୱ ପ୍ରତିପାଦନ କରାଯାଇ ତାଙ୍କୁ ଭୂତ ଓ ଭବିଷ୍ୟତର ପରମପୁରୁଷ ସ୍ୱରୂପରେ ଚିତ୍ରଣ କରାଯାଇଛି ।

ପୁରୁଷ ଏବେଦ୍ ସର୍ବ ଯଦ୍‌ଭୂତଂ ଯଚ୍ଚ ଭବ୍ୟମ୍,
ଉତାମୃତତ୍ୱସ୍ୟୈଶାନୋ ଯଦ୍‌ନ୍ନେନାତିରୋହତି । (୯)

ବେଦ ପରବର୍ତ୍ତୀ ରାମାୟଣରେ ପୁରୁଷୋତ୍ତମଙ୍କୁ ସକଳ ଦେବାରାଧ ସହସ୍ରଶୀର୍ଷା ପୁରୁଷ ବୋଲି ଅଭିହିତ କରାଯାଇଛି । ସେ ନୀଳଗିରି ପର୍ବତ ଉପରେ ବିରାଜିତ ବୋଲି ଉଲ୍ଲେଖ କରାଯାଇଥିବାରୁ ପ୍ରମାଣିତ ହୁଏ ରାମାୟଣ କାଳରେ ପୁରୁଷୋତ୍ତମ ଜଗନ୍ନାଥ ପ୍ରସିଦ୍ଧି ଲାଭ କରିଥିଲେ ।

ଆସୀନଂ ପର୍ବତସ୍ୟାଗ୍ରେ ସର୍ବଦେବ ନମସ୍କୃତମ୍,
ସହସ୍ର ଶିରସଂ ଦେବମନନ୍ତ ନୀଳବାସସମ୍ । (୧୦)

ମହନୀୟତା ହେଉଛି, ରାମାୟଣ ଯୁଗରୁ ପୁରୁଷୋତ୍ତମଙ୍କର ଜଗନ୍ନାଥ ନାମ ଲୋକପ୍ରିୟତା ଲାଭ କରିଥିଲା । ପ୍ରଭୁ ରାମଚନ୍ଦ୍ର ଲଙ୍କାଧିପତି ବିଭୀଷଣଙ୍କୁ ଜଗନ୍ନାଥଙ୍କ ଉପାସନା କରିବାକୁ ଉପଦେଶ ପ୍ରଦାନ କରିଥିଲେ ।

କି ଚାନ୍ୟତ୍ ବକ୍ତୁମିଚ୍ଛାମି ରାକ୍ଷସେନ୍ଦ୍ର ମହାବଳଃ
ଆରାଧୟ ଜଗନ୍ନାଥ ମିକ୍ଷାକୁ କୁଳଦୈବତମ୍ । (୧୧)

କେତେକ ଗବେଷକଙ୍କର ମତ ସପ୍ତମ-ଅଷ୍ଟମ ଶତାବ୍ଦୀରେ ବୌଦ୍ଧ ସାଧକ ଅନଙ୍ଗ ବ୍ରଜ ଓ ତଦୀୟଶିଷ୍ୟ ଇନ୍ଦ୍ରଭୂତି ଆପଣା ରଚିତ ଶ୍ଳୋକରେ ଜଗନ୍ନାଥ ଶବ୍ଦ ଉଲ୍ଲେଖ କରିଥିଲେ । ପ୍ରକୃତପକ୍ଷେ, ରାମାୟଣ ଯୁଗରୁ ଜଗନ୍ନାଥ ନାମର ଉନ୍ମେଷ ଘଟିଛି ଏବଂ ପରବର୍ତ୍ତୀ କାଳରେ ଅନେକ ହିନ୍ଦୁ ଶାସ୍ତ୍ରରେ ଜଗନ୍ନାଥ ଶବ୍ଦ ବିଶେଷ୍ୟ ରୂପେ ଉପସ୍ଥାପିତ

ମହାଭାରତରୁ ଜଣାଯାଏ, ମହୋଦଧି ତୀରରେ ଏକ ବିଶାଳ ଓ ପବିତ୍ର ବେଦୀରେ ପୁରୁଷୋତ୍ତମ ଜଗନ୍ନାଥ ବିରାଜିତ ରହି ପ୍ରସିଦ୍ଧି ଲାଭ କରିଥିଲେ ।(୧୨) ଏହି ବେଦୀରେ ପୁରୁଷୋତ୍ତମ ଜଗନ୍ନାଥ ପୂଜାପାଇବା ସହିତ ନିୟମିତ ଯାଗଯଜ୍ଞ ହୋଇ ପୁରୁଷସୂକ୍ତ ପାଠ କରାଯାଉଥିଲା । ସଭିଏଁ ଏହି ବେଦୀକୁ ପୁରୁଷ ମଣ୍ଡପ କହୁଥିଲେ ।

ଉଲ୍ଲେଖଯୋଗ୍ୟ ଯେ, ସେହି ମଣ୍ଡପ ଥିଲା ଭାରତର ସର୍ବୋଚ୍ଚ ଧର୍ମପୀଠ ତଥା ଜଗନ୍ନାଥ ଧର୍ମ ହିଁ ଥିଲା ଭାରତର ରାଷ୍ଟ୍ରଧର୍ମ । ମହାଭାରତରେ ଜଗନ୍ନାଥ ଧର୍ମ ସମ୍ବନ୍ଧରେ କୁହାଯାଇଛି -

ଏଷୋଧର୍ମ ଜଗନ୍ନାଥାତ୍ ସାକ୍ଷାତ୍ ନାରାୟଣାତ୍ ନୃପଃ,
ଏବମେଷ ମହାଧର୍ମଃ ସତେ ପୂର୍ବେ ନୃପୋତ୍ତମଃ ।( ୧୩)

ପ୍ରମାଣିତ ହୁଏ, ମହାଭାରତ ଯୁଗରେ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ନାରାୟଣ ସ୍ୱରୂପରେ ଏବଂ ଜଗନ୍ନାଥ ଧର୍ମକୁ ମହାଧର୍ମ ଭାବରେ ଭାରତବାସୀ ଗ୍ରହଣ କରିଥିଲେ । ମହାଭାରତ ଅନ୍ତର୍ଗତ ଶ୍ରୀମଦ୍ ଭଗବଦ୍ ଗୀତାରେ ପୁରୁଷୋତ୍ତମ ଜଗନ୍ନାଥଙ୍କୁ କ୍ଷର ପୁରୁଷଠାରୁ ଭିନ୍ନ ଏବଂ ଅକ୍ଷର ପୁରୁଷଠାରୁ ଶ୍ରେଷ୍ଠ ବୋଲି କୁହାଯାଇଛି ।

ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମ,
ଅତୋଽସ୍ମି ଲୋକେ ବେଦେଚ ପ୍ରଥିତଃ ପୁରୁଷୋତ୍ତମଃ । ( ୧୪)

ବେଦ, ଉପନିଷଦ୍, ରାମାୟଣ, ମହାଭାରତ ବ୍ୟତୀତ ପୁରାଣ ସାହିତ୍ୟରେ ପୁରୁଷୋତ୍ତମ ଜଗନ୍ନାଥଙ୍କର ଅଭ୍ୟୁଦୟ, କ୍ରମବିକାଶ, ପ୍ରତିଷ୍ଠା ଓ ଉପାସନା ସଂପର୍କରେ ସବିଶେଷ ତଥ୍ୟ ପରିବେଷିତ । ଭାରତୀୟ ପୁରାଣ ସାହିତ୍ୟ ମଧ୍ୟରେ ବ୍ରହ୍ମପୁରାଣ ହେଉଛି ପ୍ରଥମ ତଥା ପୁରାଣ ପୁରୁଷଙ୍କର ଶିର ସଦୃଶ । ଏହି ପୁରାଣ ମାନ୍ୟତାରେ ପରଂବ୍ରହ୍ମ ସକଳ ମତବାଦ ଓ ଧର୍ମଧାରାକୁ କୋଳାଗ୍ରତ କରି ଦାରୁବ୍ରହ୍ମ ପୁରୁଷୋତ୍ତମ ରୂପେ ମହିମାବନ୍ତ । ବିଶ୍ୱ ସମ୍ବିଧାନର ପ୍ରତୀକାତ୍ମକ ସଗୁଣ ସାକାର ବିଗ୍ରହ ପୁରୁଷୋତ୍ତମ ଜଗନ୍ନାଥ ମୂର୍ତ୍ତିର ଏକ ଆଧାତ୍ମିକ ଓ ଗୂଢ଼ ଅର୍ଥ ପ୍ରଦାନ କରାଯାଇ ବ୍ରହ୍ମପୁରାଣରେ ଉଲ୍ଲେଖ ଅଛି -

ଅସ୍ଥୂଳୋଽନୁ ରୂପୋଽସୌ ବା ବିଶ୍ୱୋଽସ୍ତୁ ଏବଚ
ବିରୁଦ୍ଧ ଧର୍ମ ରୂପ ସୌ ଐଶ୍ୱର୍ଯ୍ୟାଦ୍ ପୁରୁଷୋତ୍ତମ । ( ୧୫)

ବେଦ ଉପନିଷଦରେ ବର୍ଣ୍ଣିତ ବ୍ରହ୍ମ ବିଷୟକ ସାଙ୍କେତିକ ତଥ୍ୟ, ବ୍ରହ୍ମପୁରାଣରେ ଦାରୁବ୍ରହ୍ମଙ୍କର ପାବନଲୀଳା ମାଧ୍ୟମରେ ବିସ୍ତୃତ ଭାବରେ ପରିବେଷିତ ହୋଇ ପରବର୍ତ୍ତୀ ଯୁଗରେ ପୁରୁଷୋତ୍ତମ ଚେତନାର ବ୍ୟାପକ ପ୍ରସାର ଘଟିପାରିଛି ।

ପୁରୁଷୋତ୍ତମ ଜଗନ୍ନାଥ ଚେତନାର ବ୍ୟାପକ ପ୍ରସାର ଘଟାଇବାରେ ପଦ୍ମପୁରାଣ ସର୍ବଦା ଅଗ୍ରଗାମୀ ଚେତନାର ବାର୍ତ୍ତାବହ । ପୁରାଣ ପୁରୁଷଙ୍କର ହୃଦୟ ସ୍ୱରୂପ ଏହି ପୁରାଣରେ ପୁରୁଷୋତ୍ତମ କ୍ଷେତ୍ରର ସବିସ୍ତାର ବର୍ଣ୍ଣନା ବିଦ୍ୟମାନ । ବିଶେଷତଃ ଏହି ପୁରାଣର ପାତାଳଖଣ୍ଡ ଓ କ୍ରିୟାଯୋଗସାର ଖଣ୍ଡରେ ପୁରୁଷୋତ୍ତମ ମାହାତ୍ମ୍ୟ ବର୍ଣ୍ଣିତ -

ପରମେକ ମହଚ୍ଚିତ୍ରଂ ଯଦ୍ଦୃଷ୍ଟେ ନୀଳପର୍ବତେ,
ପୁରୁଷୋତ୍ତମ ସାନ୍ନିଧେ ତନ କ୍ୱାପ୍ୟକ୍ଷିଗୋଚରମ୍ । ( ୧୬)

ପଦ୍ମପୁରାଣରେ ଅନେକ ସ୍ଥଳରେ ପୁରୁଷୋତ୍ତମ ନାମ ଉଲ୍ଲେଖ କରାଯାଇ ସର୍ବେଶ୍ୱରବାଦ ସିଦ୍ଧାନ୍ତର ବ୍ୟାପକ ପ୍ରସାର ଘଟିପାରିଛି । ଦୁଇ ହଜାର ବର୍ଷ ତଳେ ରଚିତ ଏହି ପ୍ରାଚୀନ ପୁରାଣରେ କୁହାଯାଇଛି ଯେ ପୁରୁଷୋତ୍ତମଙ୍କୁ ଦର୍ଶନ କଲେ ପୁନର୍ଜନ୍ମ ହୁଏ ନାହିଁ ।

ପୁରୁଷୋତ୍ତମ ଦର୍ଶନେନ ନ ପୁନର୍ଗର୍ଭମାବିଶମ୍,
ରାଜଂସ୍ତ୍ୱମପି ତତ୍ରାଶୁ ଗଚ୍ଛ ନୀଳାଭିଧଂ ଗିରିମ୍ । ( ୧୭)

ପଦ୍ମପୁରାଣ ବର୍ଣ୍ଣନାନୁଯାୟୀ ପୁରୁଷୋତ୍ତମ ଜଗନ୍ନାଥ ନୀଳାଚଳବାସୀ ଦାରୁବ୍ରହ୍ମ । ତାଙ୍କର ନିତ୍ୟ ନୈମିତ୍ତିକ ଲୀଳା, ପୂଜା ନୈବେଦ୍ୟ ପ୍ରସଙ୍ଗରେ ପଦ୍ମପୁରାଣ ଶତମୁଖ । ଅଧିକନ୍ତୁ, ଏହି ପୁରାଣରେ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ଓ ଶ୍ରୀକ୍ଷେତ୍ର ଅଧୀଶ୍ୱରୀ ମହାଲକ୍ଷ୍ମୀଙ୍କୁ ସୀତା ବୋଲି କୁହାଯାଇଛି ।

ଯୋଽସୌ ନୀଳାଧିବାସୀ ଚ ସ ରାମଃ ପୁରୁଷୋତ୍ତମଃ
ସୀତା ସାକ୍ଷାତ୍ ମହାଲକ୍ଷ୍ମୀ ସର୍ବକାରଣ କାରଣାମ୍ । ( ୧୮)

ଉଲ୍ଲେଖଯୋଗ୍ୟ ଯେ, ପଦ୍ମପୁରାଣ ପାତାଳଖଣ୍ଡରେ ପୁରୁଷୋତ୍ତମଙ୍କୁ ଚତୁର୍ଭୁଜ ଭାବରେ ବର୍ଣ୍ଣନା କରାଯାଇଥିଲେ ହେଁ କ୍ରିୟାଯୋଗସାର ଖଣ୍ଡରେ ଚତୁର୍ଦ୍ଧାମୂର୍ତ୍ତି ଭାବରେ ବର୍ଣ୍ଣନା କରାଯାଇଛି ।

ବଳଭଦ୍ରଂ ସୁଭଦ୍ରାଂ ଚ କୃଷ୍ଣ ଚ କମଳେ କ୍ଷଣମ୍,
ଅଦୃଷ୍ଟା ଶ୍ରୀଜଗନ୍ନାଥଂ ସୁଭଦ୍ରାଂ ଚ ବଳଂ ନାଥା । ( ୧୯)

ଏଥିରୁ ପ୍ରତୀୟମାନ ହେଉଛି, ପଦ୍ମପୁରାଣ ମାନ୍ୟତାରେ ପୁରୁଷୋତ୍ତମ ଜଗନ୍ନାଥ ହେଉଛନ୍ତି ବେଦୋକ୍ତ ପୁରୁଷୋତ୍ତମ, ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ଓ ଲୀଳା ପୁରୁଷୋତ୍ତମ କୃଷ୍ଣଚନ୍ଦ୍ର । ଯୁଗେ ଯୁଗେ ସେ ଦିବ୍ୟ ନୀଳାଚଳରେ ପୁରୁଷୋତ୍ତମ ଲୀଳା ସଂରଚନା କରୁଛନ୍ତି ।

ପଦ୍ମପୁରାଣ ସଦୃଶ ବିଷ୍ଣୁପୁରାଣ ଏକ ପ୍ରାଚୀନ ମୌଳିକ ଶାସ୍ତ୍ର । ବୈଷ୍ଣବ ଭକ୍ତିବାଦର ପ୍ରଚାର ଓ ପ୍ରସାରରେ ଏହି ପୁରାଣର ଭୂମିକା ଅବର୍ଣ୍ଣନୀୟ । ଏହି ପୁରାଣରେ ବିଷ୍ଣୁଙ୍କୁ 'ମହାବିଭୂତି ସଂସ୍ଥାନେ ନମସ୍ତେ ପୁରୁଷୋତ୍ତମ' ନାମରେ ଅଭିହିତ କରାଯାଇ ସର୍ବମୟ କର୍ତ୍ତା ବୋଲି କୁହାଯାଇଛି । ବିଷ୍ଣୁ ପୁରାଣ ବିଚାରରେ ନିର୍ଗୁଣ ନିରାକାର ପରଂବ୍ରହ୍ମ କୃଷ୍ଣ, ବିଷ୍ଣୁ, ନାରାୟଣ, ବାସୁଦେବ, ଜଗନ୍ନାଥ, ପୁରୁଷୋତ୍ତମ, ବାମନ, ଶଙ୍କର୍ଷଣ, ଅନନ୍ତ ପ୍ରଭୃତି ବହୁ ନାମରେ ପ୍ରସିଦ୍ଧ । ଏହି ପ୍ରାଚୀନ ପୁରାଣରେ ପୁରୁଷୋତ୍ତମ ଓ ଜଗନ୍ନାଥ ନାମ ବହୁଳ ଭାବରେ ବ୍ୟବହୃତ ।

କୃଷ୍ଣ କୃଷ୍ଣ ଜଗନ୍ନାଥ ଜାନେ ତ୍ୱାଂ ପୁରୁଷୋତ୍ତମମ୍,
ପରେଶଂ ପରମାତ୍ମାନମନାଦି ନିଧନ ମଂ ହରିମ୍ । ( ୨୦)

ଏହି ପୁରାଣରେ ପୁରୁଷୋତ୍ତମ କ୍ଷେତ୍ର ସଂପର୍କରେ ସ୍ପଷ୍ଟ ଉଲ୍ଲେଖ ରହିଅଛି । ବର୍ଣ୍ଣନା ଅନୁସାରେ କଣ୍ଡୁମୁନିଙ୍କର ତପସ୍ୟା ଶକ୍ତି କ୍ଷୀଣ





ହୋଇଯିବାପରେ ସେ ପୁରୁଷୋତ୍ତମ କ୍ଷେତ୍ରରେ ପୁନଃ ତପସ୍ୟା ଆରମ୍ଭ କଲେ ।

ସ ଚାପି ଭଗବାନ୍ କଣ୍ୱ କ୍ଷୀଣେ ତପସି ସତ୍ତମଃ,
ପୁରୁଷୋତ୍ତମମାଖ୍ୟାତଂ ବିଷ୍ଣୋରାୟତନଂ ଯଯୌ । (୨୧)

ବିଷ୍ଣୁ ପୁରାଣରେ ସର୍ବତ୍ର ବିଷ୍ଣୁଙ୍କୁ ପୁରୁଷୋତ୍ତମ ଜଗନ୍ନାଥ ବୋଲି କୁହାଯାଇଛି । ଏପରିକି କେଶୀ ବଧ ପରେ ତାଙ୍କୁ ଜଗନ୍ନାଥ ସମ୍ବୋଧନ ପୂର୍ବକ ସ୍ତୁତି କରାଯାଇଛି ।

ସାଧୁ ସାଧୁ ଜଗନ୍ନାଥ ଲୀଳାୟୈବ ଯଦଚ୍ୟୁତ,
ନିହତୋଽୟଂ ତ୍ୱୟା କେଶୀ କ୍ଲେଶଦସ୍ତି ଦିବୌକସା । (୨୨)

ଏଠାରେ ଜଗନ୍ନାଥ ଶବ୍ଦ ବିଶେଷ୍ୟ ଭାବରେ ବ୍ୟବହୃତ ହୋଇଥିବାରୁ ହୃଦ୍‌ବୋଧ ହୁଏ ସେହି ସମୟରେ ପୁରୁଷୋତ୍ତମଙ୍କର ଜଗନ୍ନାଥ ନାମ ପ୍ରସିଦ୍ଧି ଲାଭ କରିଥିଲା । ଶ୍ରୀମଦ୍ ଭାଗବତଠାରୁ ପ୍ରାଚୀନ ଏହି ପୁରାଣରେ ବହୁ ସ୍ଥଳରେ ଜଗନ୍ନାଥ ଶବ୍ଦ ବିଶେଷ୍ୟ ଭାବରେ ବ୍ୟବହୃତ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ, ଦୁଇ ହଜାର ବର୍ଷ ପୂର୍ବରୁ ପୁରୁଷୋତ୍ତମ ଓ ଜଗନ୍ନାଥ ଉଭୟ ନାମ ପ୍ରସିଦ୍ଧି ଲାଭ କରିଥିଲା ।

ବ୍ରହ୍ମପୁରାଣ ସଦୃଶ ନାରଦ ପୁରାଣରେ ମଧ୍ୟ ପୁରୁଷୋତ୍ତମ-ଜଗନ୍ନାଥଙ୍କ ପ୍ରସଙ୍ଗ ବର୍ଣ୍ଣିତ । ଅଥଚ ଏହି ଦୁଇ ପୁରାଣରେ ନୀଳମାଧବ ଓ ବିଶ୍ୱାବସୁ ପ୍ରସଙ୍ଗ ନାହିଁ । ବାମନ ପୁରାଣ ଅନୁଯାୟୀ ପୁରୁଷୋତ୍ତମ କ୍ଷେତ୍ର ହିଁ ଜଗନ୍ନାଥଙ୍କ ନିତ୍ୟ ଧାମ । ଏଠାରେ ବିରାଜିତ ପୁରୁଷୋତ୍ତମ ଜଗନ୍ନାଥ ହିଁ ସକଳ ପାପ ପ୍ରଶମନ କରନ୍ତି ।

ସମାରାଧ୍ୟ ଜଗନ୍ନାଥଂ ସ ତତ୍ର ପୁରୁଷୋତ୍ତମମ୍
ସର୍ବପାପ ବିନିର୍ମୁକ୍ତୋ ବିଷ୍ଣୁଲୋକମବାପ୍ତବାନ୍ । (୨୩)

ବାମନ ପୁରାଣରେ ତାଙ୍କୁ ସ୍ତୁତି କରି କୁହାଯାଇଛି

ନମୋଽସ୍ତୁତେ କାରଣ ବାମନାୟ ନାରାୟଣାୟମିତି ବିକ୍ରମାୟ,
ଶଙ୍ଖ ଚକ୍ରାବ୍ଜ ଗଦାଧରାୟ ନମୋଽସ୍ତୁତସ୍ମୈ ପୁରୁଷୋତ୍ତମାୟ ।

ଭବିଷ୍ୟ ପୁରାଣରେ କୁହାଯାଇଛି ଯେ ପୁରୁଷୋତ୍ତମ ଜଗନ୍ନାଥଙ୍କ ଉପାସନା ହିଁ ଯଥାର୍ଥରେ ମହାବିଷ୍ଣୁଙ୍କର ପୂଜା । ସେ ନାରାୟଣ, ହରି ଓ ଜଗନ୍ନାଥ ।

ଗତୋଽସ୍ମି ଶରଣଂ ଦେବଂ ହରିଂ ନାରାୟଣଂ ପ୍ରଭୁମ୍,
ପ୍ରଣତୋଽସ୍ମି ଜଗନ୍ନାଥଂ ସ ମେ ବିଷ୍ଣୁଃ ପ୍ରସାଦତୁ । (୨୪)

ମତ୍ସ୍ୟ ପୁରାଣ ଦୁଇହଜାର ବର୍ଷ ପୂର୍ବେ ରଚିତ ଏକ ପ୍ରାଚୀନ ପୁରାଣ । ଏହି ପୁରାଣରେ 'ଗୟାୟାଂ ମଙ୍ଗଳା ନାମ ବିମଳା ପୁରୁଷୋତ୍ତମେ' ଉଲ୍ଲେଖ କରାଯାଇ ଶ୍ରୀକ୍ଷେତ୍ରର ପ୍ରାଚୀନତା ପ୍ରତିପାଦିତ କରାଯାଇଛି । ପ୍ରମାଣିତ ହୁଏ, ମତ୍ସ୍ୟ ପୁରାଣ ରଚନା ସମୟକୁ ପୁରୁଷୋତ୍ତମ ଜଗନ୍ନାଥ ପ୍ରସିଦ୍ଧି ଲାଭ କରିସାରିଲେଣି ।

ଗୋକର୍ଣ୍ଣଂ ଗଜକର୍ଣ୍ଣଂ ଚ ତଥାଚ ପୁରୁଷୋତ୍ତମଃ
ଦ୍ୱାରକା କୃଷ୍ଣତୀର୍ଥଂଚ ତଥାର୍ବୁଦ ସରସ୍ୱତୀ । (୨୫)

ସ୍କନ୍ଦ ପୁରାଣ ଉତ୍କଳଖଣ୍ଡ ପୁରୁଷୋତ୍ତମ ମାହାତ୍ମ୍ୟରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ପୀଠ, ମନ୍ଦିର ନିର୍ମାଣ, ପୂଜାପଦ୍ଧତି ସଂପର୍କରେ ସବିଶେଷ ବିବରଣୀ ପ୍ରଦତ୍ତ । ଏହି ପୁରାଣ ମାନ୍ୟତାରେ ପୁରୁଷୋତ୍ତମ ଜଗନ୍ନାଥ ହିଁ ସହସ୍ରଶୀର୍ଷା ପୁରୁଷ ଏବଂ ସ୍ୱୟଂ ବ୍ରହ୍ମା ଶ୍ରୀକ୍ଷେତ୍ରକୁ ଆଗମନ କରି ମନ୍ଦିର ଓ ମୂର୍ତ୍ତି ପ୍ରତିଷ୍ଠା କରିଥିଲେ । ଏହି ପୁରାଣ ଉଲ୍ଲେଖ ଅନୁଯାୟୀ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥଙ୍କୁ ସହସ୍ରଶୀର୍ଷା ପୁରୁଷ, ବିଶ୍ୱରୂପ, ପରଂବ୍ରହ୍ମ ଓ ପରମାତ୍ମା ବୋଲି ସ୍ତୁତି କରିଥିଲେ । ଏଥିରେ ଉଦ୍‌ଘୋଷଣା ହୋଇଛି ଯେ, କୃଷ୍ଣ ଓ ବଳଭଦ୍ର ହେଉଛନ୍ତି ଏକ ଓ ଅଭିନ୍ନ ତଥା ସୁଭଦ୍ରା ସେମାନଙ୍କ ଭଗ୍ନୀ ଏବଂ ଶକ୍ତି ସ୍ୱରୂପା ।

ନ ଭେଦୋଽସ୍ତୀହ କୋ ବିପ୍ରାଃ କୃଷ୍ଣସ୍ୟ ଚ ବଳସ୍ୟଚ,
ତସ୍ୟ ଶକ୍ତି ସ୍ୱରୂପେୟଂ ଭଗିନୀ ଶ୍ରୀଃ ପ୍ରକୀର୍ତ୍ତିତା । (୨୬)

ସ୍କନ୍ଦ ପୁରାଣରୁ ଜଣାଯାଏ, ମହୋଦଧିରେ ଯେଉଁ ଅପୌରୁଷେୟ ଦାରୁ ଭାସୁଥିଲା ସେହି ଦାରୁରେ ଚତୁର୍ଦ୍ଧା ମୂର୍ତ୍ତି ନିର୍ମାଣ ହୋଇଛନ୍ତି । ସେହି ଦାରୁ ଦର୍ଶନରେ ହିଁ ମୁକ୍ତି ମିଳେ ।

ଅହୋ ତବାୟଂ ଖଳୁ ଭାଗ୍ୟ ରାଶି,
ର୍ଯେନାବିରାସୀଦ୍ ଭୁବି ଦାରୁ ମୂର୍ତ୍ତିଃ ।
ଯସ୍ୟାପ୍ୟୁପାସ୍ତିଂ ଶ୍ରୁତିରାହ ମୁକ୍ତି-
ପ୍ରଦା ମନାତ୍ୱଜ୍ଞ ବିମୋହିତାନାମ୍ । (୨୭)

ମୋଟ ଉପରେ ଉଲ୍ଲେଖ କଲେ ସ୍କନ୍ଦ ପୁରାଣ ସିଦ୍ଧାନ୍ତରେ ପୁରୁଷୋତ୍ତମ ଜଗନ୍ନାଥ ହେଉଛନ୍ତି ମହାବିଷ୍ଣୁ ଏବଂ ତାଙ୍କ ନିତ୍ୟ, ନୈମିତ୍ତିକ ପୂଜାରେ ପୁରୁଷ ସୂକ୍ତ ମନ୍ତ୍ର ଓ ପୂଜାବିଧି ପ୍ରଚଳିତ । ଏତଦ୍‌ଭିନ୍ନ ଏହି ପୁରାଣରୁ ପୁରୁଷୋତ୍ତମ ଜଗନ୍ନାଥଙ୍କ ବିଭିନ୍ନ ଯାନିଯାତ୍ରାର ମହତ୍ୱପୂର୍ଣ୍ଣ ସୂଚନା ଉପଲବ୍ଧି ହୋଇଥାଏ ।

ଉପରୋକ୍ତ ପୁରାଣ ବ୍ୟତୀତ ଅନ୍ୟ ବହୁ ପୁରାଣରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ତତ୍ତ୍ୱ ଓ ଲୀଳା ବର୍ଣ୍ଣିତ । ବିଶେଷତଃ, ଓଡ଼ିଶାରେ ରଚିତ ଇନ୍ଦ୍ରନୀଳମଣି ପୁରାଣ, ଯାତ୍ରା ଭାଗବତ, କପିଳ ସଂହିତା, ବାମଦେବ ସଂହିତା, ନୀଳାଦ୍ରି ମହୋଦୟ, ସାରଳା ମହାଭାରତ, ଦାଣ୍ଡି ରାମାୟଣ, ଦେଉଳ ତୋଳା, ଜଗନ୍ନାଥ ଚରିତାମୃତ, ଦାରୁବ୍ରହ୍ମ ଗୀତା, ପ୍ରେମଭକ୍ତି ବ୍ରହ୍ମଗୀତା, ଭାଗବତ, ରସକଲ୍ଲୋଳ, ରହସ୍ୟ ମଞ୍ଜରୀ, ମର୍ତ୍ତ୍ୟବୈକୁଣ୍ଠ ଜଗନ୍ନାଥ ପୁରାଣ ପ୍ରଭୃତି ବହୁଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ଲୀଳା ସବିସ୍ତାର ବର୍ଣ୍ଣନା କରାଯାଇଛି । ଏତଦ୍‌ଭିନ୍ନ ତନ୍ତ୍ରସାର, ରୁଦ୍ରଯାମଳ, ତନ୍ତ୍ରଯାମଳ, କାଳିକା ପୁରାଣ, ତନ୍ତ୍ର ଚିନ୍ତାମଣି, ଉଡ୍ଡୀୟାନ ତନ୍ତ୍ର ପ୍ରଭୃତି ଆଲୋଚନା ପ୍ରତୀକ୍ଷା କରିଥାଏ । ଜୈନଶାସ୍ତ୍ର, ବୌଦ୍ଧଶାସ୍ତ୍ର, ଯୋଗଶାସ୍ତ୍ର, ନ୍ୟାୟଶାସ୍ତ୍ର, ସାଂଖ୍ୟଶାସ୍ତ୍ର, ଶାକ୍ତଶାସ୍ତ୍ର, ଶୈବଶାସ୍ତ୍ର ଓ ବୈଷ୍ଣବଶାସ୍ତ୍ର ସମୂହରେ ମଧ୍ୟ ପୁରୁଷୋତ୍ତମ ଜଗନ୍ନାଥଙ୍କ ଦିବ୍ୟଲୀଳା





ପରିବେଷିତ । ଇଂରାଜୀ, ହିନ୍ଦୀ, ବଙ୍ଗଳା, ଅହମିଆ, ପାଲି, ତେଲୁଗୁ, ପ୍ରଭୃତି ଅନେକ ଭାଷାରେ ଅଗଣିତ ବିଦ୍ୱାନ୍ ଜଗନ୍ନାଥ ଚରିତ ବର୍ଣ୍ଣନା ପୂର୍ବକ ଏହାର ପ୍ରଚାର ଓ ପ୍ରସାର କରିଯାଇଛନ୍ତି ।

ବେଦ, ଉପନିଷଦ, ସଂହିତା, ପୁରାଣ ଓ ଅନ୍ୟାନ୍ୟ ଶାସ୍ତ୍ରରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ଲୀଳା ଓ ତତ୍ତ୍ୱ ପ୍ରଚାର ଓ ପ୍ରସାର ହେବା ଫଳରେ ସକଳ ଦର୍ଶନର ପ୍ରବକ୍ତା ସ୍ୱ ସ୍ୱ ସିଦ୍ଧାନ୍ତରେ ପୁରୁଷୋତ୍ତମ ଚେତନାକୁ ପରିପୁଷ୍ଟ କରିଆସିଛନ୍ତି । ଅଗଣିତ ସିଦ୍ଧସାଧକ ପୁରୁଷୋତ୍ତମ କ୍ଷେତ୍ରରେ ପଦାର୍ପଣ ପୂର୍ବକ ଦାରୁବ୍ରହ୍ମଙ୍କ ମଧ୍ୟରେ ଆପଣା ଇଷ୍ଟଙ୍କୁ ଦର୍ଶନରେ ଆନନ୍ଦାଭିଭୂତ ହୋଇ ଏହି ପବିତ୍ର ଧାମରେ ସ୍ଥାୟୀ ମଠ ଓ ଆଶ୍ରମ ନିର୍ମାଣ କରିଛନ୍ତି । ମହନୀୟତା ହେଉଛି, ଆର୍ଯ୍ୟ, ଅନାର୍ଯ୍ୟ, ବେଦାନ୍ତୀ, ଶୈବ, ଶାକ୍ତ, ବୈଷ୍ଣବ, ଜୈନ ଓ ବୌଦ୍ଧ ସଭିଏଁ ବିଶ୍ୱ ସମ୍ବିଧାନର ପ୍ରତୀକ ପୁରୁଷୋତ୍ତମ ଜଗନ୍ନାଥଙ୍କ ବଡ଼ଦାଣ୍ଡର ଶରଧାବାଲିରେ ପାଦ ପକାଇବା ମାତ୍ରେ ଆପଣାର ଅହଂଟିକୁ ଭୁଲି ତାଙ୍କରି ଭିତରେ ହଜିଯାଇଛନ୍ତି ।

**ପାଦଟୀକା :**

୧. ରଗ୍‌ବେଦ, ୧୦ମ ମଣ୍ଡଳ, ୧୫୫ ସୂକ୍ତ, ୩ୟ ମନ୍ତ୍ର

୨. ରଗ୍‌ବେଦ, ୧୦ମ ମଣ୍ଡଳ, ୯୦ ଅନୁବାକ୍ - ଯଜୁର୍ବେଦ ୩୧ ଅଧ୍ୟାୟ ୧ମ ମନ୍ତ୍ର

୩. ସ୍କନ୍ଦ ପୁରାଣ, ପୁରୁଷୋତ୍ତମ ମାହାତ୍ମ୍ୟ ୧୯/୨୮

୪. ସ୍କନ୍ଦ ପୁରାଣ, ପୁରୁଷୋତ୍ତମ ମାହାତ୍ମ୍ୟ ୨୦/୩୨

୫. ଯଜୁର୍ବେଦ, ୩୧ ଅଧ୍ୟାୟ, ୧୮ ମନ୍ତ୍ର

୬. କୈବଲ୍ୟ ଉପନିଷଦ୍, ୨୧ ମନ୍ତ୍ର

୭. ଶ୍ୱେତାଶ୍ୱତରୋପନିଷଦ୍ - ୩/୧୯

୮. ଭାରତୀୟ ଧର୍ମ ଓ ଦର୍ଶନରେ ପୁରୁଷୋତ୍ତମ ଜଗନ୍ନାଥ-ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର (ନନ୍ଦିଘୋଷ ୬ଷ୍ଠ ବର୍ଷ ୪ର୍ଥ ସଂଖ୍ୟା)

୯. ଶ୍ୱେତାଶ୍ୱତରୋପନିଷଦ୍ - ୩/୧୫

୧୦. ବାଲ୍ମୀକି ରାମାୟଣ (ସଂସ୍କୃତ), କିଷ୍କିନ୍ଧା କାଣ୍ଡ

୧୧. ବାଲ୍ମୀକି ରାମାୟଣ (ସଂସ୍କୃତ), ଉତ୍ତରାକାଣ୍ଡ

୧୨. ଶ୍ରୀପୁରୁଷୋତ୍ତମ ନୀଳମାଧବ - ଡକ୍ଟର ସତ୍ୟନାରାୟର ରାଜଗୁରୁ (ଝଙ୍କାର, ରଥଯାତ୍ରା ବିଶେଷାଙ୍କ ୧୯୯୬)

୧୩. ମହାଭାରତ (ସଂସ୍କୃତ) - ଶାନ୍ତିପର୍ବ

୧୪. ଶ୍ରୀମଦ୍ ଭଗବଦ୍ ଗୀତା, ୧୫/୧୮

୧୫. ବ୍ରହ୍ମ ପୁରାଣ

୧୬. ପଦ୍ମ ପୁରାଣ, ପାତାଳଖଣ୍ଡ ଅ୧୭/୮୨

୧୭. ପଦ୍ମ ପୁରାଣ, ପାତାଳଖଣ୍ଡ ଅ ୧୯/୫

୧୮. ପଦ୍ମ ପୁରାଣ, ପାତାଳ ଖଣ୍ଡ ଗୁରୁମଣ୍ଡଳ ଅ ୨୨/୫୭

୧୯. ପଦ୍ମ ପୁରାଣ, କ୍ରିୟାଯୋଗସାର ଅ ୧୭/୭୮

୨୦. ବିଷ୍ଣୁ ପୁରାଣ ୫ମ-୩୩/୪୧

୨୧. ବିଷ୍ଣୁ ପୁରାଣ ୧ମ-୧୫/୫୬

୨୨. ବିଷ୍ଣୁ ପୁରାଣ ୫ମ-୧୬/୧୯

୨୩. ବାମନ ପୁରାଣ - ୮୫/୧୧୯

୨୪. ଭବିଷ୍ୟ ପୁରାଣ - ୨ୟ ଭାଗ - ୫୦/୨୪

୨୫. ମତ୍ସ୍ୟ ପୁରାଣ - ୨୨/୩୮

୨୬. ସ୍କନ୍ଦ ପୁରାଣ, ପୁରୁଷୋତ୍ତମ ମାହାତ୍ମ୍ୟ - ୧୯/୧୩-୧୭

୨୭. ସ୍କନ୍ଦ ପୁରାଣ, ପୁରୁଷୋତ୍ତମ ମାହାତ୍ମ୍ୟ - ୨୧/୨

ସଦସ୍ୟ
ଓଡ଼ିଶା ସାହିତ୍ୟ ଏକାଡ଼େମୀ
ବଡ଼ପଣ୍ଡା ସାହି, ଢେଙ୍କାନାଳ





# ଲୀଳାବିଳାସୀ ଶ୍ରୀଜଗନ୍ନାଥ

ଡକ୍ଟର ଶରତଚନ୍ଦ୍ର ରଥ

ଏକାଧାରରେ ତତ୍ତ୍ୱ ଓ ଲୀଳାର ପ୍ରତୀକ, ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ପ୍ରତୀକ, ପରାର୍ଦ୍ଧ ଚେତନା ଓ ଅପରାର୍ଦ୍ଧ ଚେତନାର ପ୍ରତୀକ ଶ୍ରୀଜଗନ୍ନାଥଙ୍କୁ ଶତକୋଟି ପ୍ରଣାମ । ଲୀଳା ପୁରଷୋତ୍ତମଙ୍କ ପାଇଁ ନୀଳାଚଳ ଧାମ ନିତ୍ୟ ଚଳଚଞ୍ଚଳ । ତାଙ୍କୁ ନେଇ ଓ ତାଙ୍କ ପାଇଁ ଦ୍ୱାଦଶ ଲୀଳା, ସତେଇଶ ଉପଲୀଳା ପୁଣି ଏକଶହ ଆଠ ପର୍ବପର୍ବାଣି ଉଦ୍ଦିଷ୍ଟ । ଅନୁରାଗର ଭିତ୍ତିରେ ସବୁ କିଛି ପରିକଳ୍ପିତ, ପ୍ରଯୋଜିତ ଓ ପରିଚାଳିତ । ପ୍ରଭୁଙ୍କର ଲୀଳା ବିଳାସରେ ବୈରାଗ୍ୟର ହିମ ଶୀତଳତା ନାହିଁ, ବରଂ ଅନୁରାଗର ସ୍ନିଗ୍ଧ ପ୍ରଫୁଲ୍ଲତା ଅଛି । ବିଭିନ୍ନତା ମଧ୍ୟରେ ଏକତା, ବହୁମୁଖୀନତା ଭିତରେ ଏକମୁଖୀନତା ଏହି ଅନୁରାଗର ମୌଳିକତା । ବହୁ ସେବକ ମାତ୍ର ସେବ୍ୟ ସେହି ଏକ । ବହୁ ନଦୀ ପ୍ରବାହର ସମନ୍ୱୟରେ ସେହି ଏକମାତ୍ର ରସସିନ୍ଧୁ । ଦ୍ୱାଦଶ ଲୀଳାର ତାଲିକା କବି ଲୋକନାଥ ବିଦ୍ୟାଧର ପ୍ରଦାନ କରି କହିଛନ୍ତି -

‘ଶୁଣ ହେ ସାଧୁଜନମାନେ ଏଥେ ଦେଇ ମାନସ
ଦ୍ୱାଦଶ ଉତ୍ସବ କରିବା ଯଥା ବିଧି ପ୍ରକାଶ
ସ୍ନାନ ଶ୍ରୀଗୁଣ୍ଡିଚା ଶୟନ ଯାତ୍ରା ଅନ୍ତେ ଅୟନ
ପାରୁଶ ପରିବରତନ ଉତ୍ଥାପନ ଓଢ଼ଣ
ଅୟନ ଅଭିଷେକ ଦୋଳ ଦମନକ ଚନ୍ଦନ
ଏ ରୂପେ ଦ୍ୱାଦଶ ଉତ୍ସବ ଏକେ ଏକେ ସଘନ ।’
(ନୀଳାଦ୍ରି ମହୋତ୍ସବ)

ଏଥିମଧ୍ୟରୁ ଦୁଇଗୋଟି ଲୀଳା ହେଉଛି ପରମପ୍ରଭୁ ଶ୍ରୀଜଗନ୍ନାଥଙ୍କର ସ୍ୱୟଂ ଲୀଳା । ସେଥିରୁ ଗୋଟିଏ ହେଉଛି ସ୍ନାନ ଲୀଳା ଓ ଅନ୍ୟଟି ଶ୍ରୀଗୁଣ୍ଡିଚା ଲୀଳା । କବି ସମ୍ରାଟ ଉପେନ୍ଦ୍ର ଭଂଜ କହନ୍ତି -

‘ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳାଯାର
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ।’
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ)

ଭକ୍ତ ଚାତକ ନିମନ୍ତେ ବର୍ଷା ଝରାଇ ଶ୍ରୀଗୁଣ୍ଡିଚା ଯାତ୍ରା ବା ରଥଯାତ୍ରା ଆସେ । ଏହା ଦେବମାନବଙ୍କର ଅର୍ଚ୍ଚିତ ପୁଷ୍ୟା ନକ୍ଷତ୍ର ଯୁକ୍ତ ଆଷାଢ଼ର ଶୁକ୍ଳ ଦ୍ୱିତୀୟାତିଥି । ସାରା ବର୍ଷ ଭିତରେ ପବିତ୍ରତମ ସର୍ବମଙ୍ଗଳମୟ ଏହି ତିଥି ବିଞ୍ଛି ଦିଏ ମର୍ତ୍ତ୍ୟରେ ଅମର୍ତ୍ତ୍ୟ ଲାବଣ୍ୟର କିରଣ କାନ୍ତି ଓ ଦିବ୍ୟ ଚେତନାର ପରମ ପ୍ରଶାନ୍ତି । ଦେବବାଦ୍ୟ ବାଜି ଉଠେ ଗଗନପବନରେ ଯାହା ଭକ୍ତର କାନକୁ ଶୁଭେ । ପାରିଜାତ ଫୁଲପାଖୁଡ଼ା ଝରିପଡ଼େ ବଡ଼ଦାଣ୍ଡରେ ଯାହା ଭକ୍ତର ଆଖିକୁ ଦିଶେ । ଦେବକାମିନୀଙ୍କର ନୃତ୍ୟଛନ୍ଦରେ ବାତାବରଣ ଛନ୍ଦାୟିତ ହୋଇଉଠେ, ଯାହା ଭକ୍ତର ଦୃଷ୍ଟିକୁ ଆକୃଷ୍ଟ କରେ । ଲୀଳା ପୁରୁଷୋତ୍ତମଙ୍କର ସ୍ୱୟଂଲୀଳା ଏଇ ଯାତ୍ରା ଲକ୍ଷ ଲକ୍ଷ ଲୋକଙ୍କୁ ଟାଣି ଆଣେ ପୁରୀର ବଡ଼ଦାଣ୍ଡକୁ । ଶ୍ରୀଜଗନ୍ନାଥ ସେଦିନ ରତ୍ନ ସିଂହାସନରୁ ଅବତରଣ କରି ଆସନ୍ତି ଭକ୍ତମାନଙ୍କୁ ଦେଖିବେ ବୋଲି, ଭକ୍ତଙ୍କର ଦୁଃଖ ଗୁହାରି ଶୁଣିବେ ବୋଲି ।

ସେଦିନ ସଜ ସକାଳରୁ ସରିଯାଏ ମଙ୍ଗଳ ଆରତି । ଅବକାଶାଦି ପରେ ସୂର୍ଯ୍ୟ ପୂଜା ଓ ଦ୍ୱାରପାଳ ପୂଜା ବଢ଼େ । କୋଠଭୋଗ ପରେ ତିନିବାଡ଼ରେ ମଙ୍ଗଳାରୋପଣ କରାଯାଏ । ପରେ ଡୋର ଲାଗି ଓ ତୂଳିଲାଗି ବଢ଼େ । ଛାମୁଖୁଣ୍ଟିଆ କର ‘ମଣିମା ମଣିଆ’ ଡାକ ପଡ଼େ, ଶ୍ରୀଜୀଉଙ୍କର ରୁନ୍ଧାପିଟେ, ବିଜେ କାହାଳୀ ବାଜେ ଓ ଶ୍ରୀଜୀଉମାନେ କ୍ରମାନ୍ୱୟରେ ରତ୍ନସିଂହାସନରୁ ଅବତରଣ କରନ୍ତି, ପାଟ ଅଗଣାରେ ସାତ ପାହାଚ ଓହ୍ଲାଇ ବିଜେ ହୁଅନ୍ତି, ଉତ୍ତର ଦୁଆର ସିଧାରେ ରାଘବ ଦାସ ମଠ ଦ୍ୱାରା ନିବେଦିତ ଚୂଳ ଓ ଟାହିଆ ଲାଗି କରାଯାଏ । ସେଠାରେ ବନ୍ଦାପନା କରାଯାଇ ଆରମ୍ଭ ହୁଏ ଶ୍ରୀଜୀଉମାନଙ୍କର ପହଣ୍ଡି ବିଜେ । ପ୍ରଭୁ ସୁଦର୍ଶନ ଓ ମା’ ସୁଭଦ୍ରା ପହଣ୍ଡ ପକାଇ ବିଜେ କରନ୍ତି ନାହିଁ । କେବଳ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ପହଣ୍ଡ ପକାଇ ବିଜେ କରନ୍ତି । ସମସ୍ତ ଜୀଉ ଆନନ୍ଦ ବଜାର ବାଟ ଦେଇ ବାଇଶି ପାହାଚରେ





ପହଞ୍ଚି ତଳକୁ ଖସି ସିଂହ ଦୁଆରେ ପହଞ୍ଚନ୍ତି । ଓଡ଼ିଆ ଭାଷାରେ ପ୍ରଚଳିତ 'ପହୁଣ୍ଡ' ଶବ୍ଦଟି ସଂସ୍କୃତ ଭାଷାର 'ପଦହୁଣ୍ଡନ' ଶବ୍ଦରୁ ନିଷ୍ପନ୍ନ ହୋଇଛି ବୋଲି କୁହାଯାଏ । ଏହାର ଅର୍ଥ ହେଉଛି ଧୀରଧୀର ପଦକ୍ଷେପ । ପୁଣି 'ବିଜୟ' ଶବ୍ଦରୁ ଓଡ଼ିଆରେ 'ବିଜେ' ଶବ୍ଦର ସୃଷ୍ଟି । ରାଜା ଓ ଦେବତାଙ୍କର ଗତିଶୀଳତାକୁ 'ବିଜେ' ବୋଲି କୁହାଯାଏ । ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ମହାପ୍ରଭୁ ଧୀରଧୀର ଚାଲିରେ ଆସି ବଡ଼ଦାଣ୍ଡରେ ଉଭା ହୁଅନ୍ତି ବୋଲି ତାଙ୍କ ଆସିବାକୁ ପହଣ୍ଡି ବିଜେ କୁହାଯାଏ । ପହଣ୍ଡି ବିଜେ ହେଉଛି ଦୁଇ ପ୍ରକାରର, ଯଥା- ଗୋଟି ପହଣ୍ଡି ଏବଂ ଧାଡ଼ି ପହଣ୍ଡି । ଗୋଟିଏ ବିଗ୍ରହ ସିଂହାସନରୁ ଓହ୍ଲାଇ ପହଣ୍ଡିରେ ଯାଇ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବା ପରେ ଆଉ ଏକ ବିଗ୍ରହଙ୍କର ସିଂହାସନରୁ ଅବତରଣ କରାଯାଇ ଯେଉଁ ପହଣ୍ଡି କରାଯାଏ, ତାକୁ ଗୋଟି ପହଣ୍ଡି କୁହାଯାଏ । ଏକ ସଙ୍ଗରେ ପହଣ୍ଡି ବିଜେକୁ ଧାଡ଼ି ପହଣ୍ଡି କୁହାଯାଏ । ଗୁଣ୍ଡିଚାଯାତ୍ରାର ପହଣ୍ଡିକୁ ମହା ପହଣ୍ଡି ବୋଲି ମଧ୍ୟ କୁହାଯାଏ ।

ମହାପ୍ରଭୁ ଶ୍ରୀଜଗନ୍ନାଥ ଯିଏ କି ସହସ୍ରଶୀର୍ଷା ପୁରୁଷ, ସହସ୍ରାକ୍ଷଃ ସହସ୍ରପାଦ୍, ସେ ପୁଣି ଅପାଣି ପାଦୋ, ସେ ଭକ୍ତାଧୀନ ଦୈବତଂ । ଭୂଃ, ଭୁବଃ, ସ୍ୱଃ, ମହ, ଜନ, ତପଃ, ସତ୍ୟ ଏହି ସପ୍ତଲୋକ ଏବଂ ଅତଳ, ସୁତଳ, ବିତଳ, ତଳାତଳ, ମହୀତଳ, ରସାତଳ ଓ ପାତାଳ ପ୍ରଭୃତି ସପ୍ତତଳ ଏବଂ ଶ୍ରୀବୈକୁଣ୍ଠ, କୈବଲ୍ୟ ବୈକୁଣ୍ଠ, ପରବ୍ୟୋମ ବୈକୁଣ୍ଠ, କାରାଣାର୍ଣ୍ଣବ ବୈକୁଣ୍ଠ, ଶେଷଗାୟତ୍ରୀ ବୈକୁଣ୍ଠ, ବିଶ୍ୱଦ୍ୱେଷ ବୈକୁଣ୍ଠ, ଗର୍ଭୋଦକଶାୟୀ ବୈକୁଣ୍ଠ ଓ କୈଳାସ ବୈକୁଣ୍ଠ ପ୍ରଭୃତି ଅଷ୍ଟ ବୈକୁଣ୍ଠର ପ୍ରତୀକ ସବୁମିଶି ମୋଟ ୨୨ (ବାଇଶି) ପାହାଚରୁ ପରମପ୍ରଭୁ ଅବତରଣ କରି ତଳକୁ ଆସନ୍ତି । କୁହାଯାଏ ଯେ ବାଇଶି ପାହାଚ ହେଉଛି ଜୈନଧର୍ମର ବାଇଶି ତୀର୍ଥଙ୍କରଙ୍କର ପବିତ୍ର ସ୍ମୃତିର ଅମ୍ଳାନ ସ୍ମାରକୀ । ପୁନଶ୍ଚ କୁହାଯାଏ ଯେ ପଞ୍ଚଭୂତ, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ପଞ୍ଚତନ୍ମାତ୍ର, ମନ ଓ ବୁଦ୍ଧି ହେଉଛି ବାଇଶି ପାହାଚର ପ୍ରତୀକ । ଏସବୁକୁ ଅତିକ୍ରମ କଲେ ପରମପ୍ରଭୁଙ୍କର ଦର୍ଶନ ଓ କୃପା ମିଳିଥାଏ । ଦର୍ଶନ କେବଳ ଚର୍ମଚକ୍ଷୁର ଅବଲୋକନ ନୁହେଁ ବରଂ ଏହା ଏକ ଅନୁଭବ ।

ପହଣ୍ଡି ବେଶରେ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ଖଣ୍ଡୁଆ ଲାଗି ହୋଇଥାଏ । କପାଳରେ ନଥାଏ ସ୍ୱର୍ଣ୍ଣଚିତା ବା ପୁଷ୍ପର ତିଳକ । କେବଳ ଥାଏ ଫୁଲର ଟାହିଆ । ସେ ଟାହିଆର ମନମୋହିନୀ ଶୋଭାରେ ଭକ୍ତ ନୟନ ଲାଖି ରହେ । ଶ୍ୱେତ କୁସୁମର ସଜଡ଼ା କୁଞ୍ଚରେ ନାଲିରଙ୍ଗଣୀ ଫୁଲର ସୋରା ସୋରା ଶୋଭା ନୟନ ଲୋଭନୀୟ ହୋଇଥାଏ । ଅଶ୍ୱତ୍ଥ ପତ୍ରକାର ଏହି ଟାହିଆର ନିମ୍ନ କେନ୍ଦ୍ରରେ ଥାଏ ତୁଳସୀର ଗୁଚ୍ଛ । ତୁଳସୀ ହେଉଛି ପବିତ୍ରତାର ପ୍ରମୂର୍ତ୍ତ ପ୍ରତୀକ । ଶୀର୍ଷରେ ଥାଏ ଦୂବଗୁଚ୍ଛ ଏବଂ ବରକୋଳି ପତ୍ର । ଟାହିଆର ସତେଜ ସୁନ୍ଦର ରୂପ ବିଭାରେ ପରିବେଶ ଝଲସି ଉଠେ । ରାଘବ ଦାସ ମଠଙ୍କର ପ୍ରଯତ୍ନରେ ଏହା ନିର୍ମିତ ହୋଇଥାଏ । ଏହା ଏକ ପ୍ରତିଷ୍ଠିତ ପରମ୍ପରା । ଶ୍ରୀମନ୍ଦିରକୁ ଟାହିଆ ଆସିଲା ବେଳେ ବାଟରେ ପାଣି ସିଞ୍ଚା ହୁଏ । ଦକ୍ଷିଣ ଦ୍ୱାର ବାଟେ ଏହା ଭିତରକୁ ପ୍ରବେଶ କରେ । ଟାୟା ବା ଟାଇଆ ହେଉଛି ଆଦିବାସୀମାନଙ୍କର ଏକ ଶିର ଭୂଷଣ ଯାହା ବିଭିନ୍ନ ପ୍ରକାର ଫୁଲରେ ନିର୍ମିତ ହୋଇଥାଏ ଏବଂ ଏଥିରେ ପକ୍ଷୀପର ଖୋସା ହୋଇଥାଏ । ଏହି ଟାୟା ବା ଟାଇଆ ଶବ୍ଦରୁ ଟାହିଆ ଶବ୍ଦର ଉତ୍ପତ୍ତି ବୋଲି କୁହାଯାଏ । ଏହି ଟାହିଆ ଲାଗି ପରମ୍ପରା ଆଦିବାସୀ ସଂସ୍କୃତିରୁ ଆସିଅଛି ବୋଲି ଜଣାଯାଏ । ସେହି ଟାହିଆରେ ବିମଣ୍ଡିତ ହୋଇ ପରମପ୍ରଭୁ ଯେତେ଼ ସୁନ୍ଦର ଦିଶନ୍ତି, ତାହା ଭାଷାତୀତ, ପହଣ୍ଡି ବେଳେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ବାମକୁ ଡାହାଣକୁ ଢଳି ପଡ଼ିବାର ଦୃଶ୍ୟ ଅତ୍ୟନ୍ତ ରମଣୀୟ ।

ଫୁଲ ହେଉଛି ବିଶ୍ୱପ୍ରକୃତିର ଭଗବତ ଆରାଧନା ନିମନ୍ତେ ସର୍ବଶ୍ରେଷ୍ଠ ସୁକୁମାର ଉପାଦାନ । ଏହାର ଗ୍ରହଣଶୀଳତା ସ୍ୱତନ୍ତ୍ର ଓ ସର୍ବାଧିକ । ଭକ୍ତମାନଙ୍କର ଆବେଗ, ଆକୁଳତା, ପ୍ରାର୍ଥନା, ଅନୁଭବ ତଥା ପ୍ରୀତି ପ୍ରବଣତାର ଭାବତରଙ୍ଗକୁ ଏହା ଆହରଣ କରି ପରମ ପ୍ରଭୁଙ୍କ ନିକଟରେ ନିଖୁଣ ଭାବରେ ଉପସ୍ଥାପନା କରେ ଏବଂ ପ୍ରଭୁଙ୍କଠାରୁ ଅସୀମ ଅତୁଳନୀୟ କୃପା ଗ୍ରହଣ କରି ତାହାକୁ ଭକ୍ତମାନଙ୍କୁ ବିତରଣ କରିଦିଏ । ଏହି ସୁମହତ କ୍ରିୟାଟି ସମସ୍ତଙ୍କ ଅଲକ୍ଷ୍ୟରେ ସଂପାଦିତ ହେଉଥାଏ । ଶ୍ରୀଜଗନ୍ନାଥଙ୍କର ଟାହିଆରେ ଖଞ୍ଜା ଯାଇଥିବା ଫୁଲମାନେ ଏହି ସୁମହତ କ୍ରିୟାଟି ସଂପାଦନ କରିଥାନ୍ତି ।

ସ୍ନାନଯାତ୍ରା, ଶ୍ରୀଗୁଣ୍ଡିଚା ଯାତ୍ରା ଓ ବାହୁଡ଼ା ଯାତ୍ରାରେ ଚତୁର୍ଦ୍ଧାମୂରତିଙ୍କୁ ଏହି ଟାହିଆ ଦ୍ୱାରା ବିଭୂଷିତ କରାଯାଏ । ଟାହିଆ କହେ ବ୍ରହ୍ମସତ୍ୟ, ଜଗଦ୍‌ମିଥ୍ୟା ରଘୁ ଅରକ୍ଷିତଙ୍କର ଶୁଭ ସ୍ମୃତିରେ ରାଘବ ଦାସ ମଠ ଏହି ଟାହିଆ ସେବା କରିଥାନ୍ତି । କିମ୍ବଦନ୍ତୀରୁ ଜଣାଯାଏ ଯେ, ରଘୁ ଅରକ୍ଷିତ ଉତ୍ତପ୍ତ ବାଲିରେ ଧ୍ୟାନରତ ଥିଲାବେଳେ ଠାକୁର ନିଜେ ଗୋପାଳ ବେଶରେ ଯାଇ ତାଙ୍କ ମୁଣ୍ଡ ଉପରେ ଛତ୍ର ଢାଙ୍କି ଥିଲେ । ତେଣୁ କୃତଜ୍ଞତାର ସ୍ମାରକୀ ରୂପେ ରଘୁ ଅରକ୍ଷିତ ମଠ ବା ରାଘବ ଦାସ ମଠ ପ୍ରଭୁଙ୍କ ଯାତାୟାତ କାଳରେ ଏହି ଟାହିଆ ଯୋଗାଇଥାନ୍ତି । ସ୍ନାନ, ଗୁଣ୍ଡିଚା ଓ ବାହୁଡ଼ାରେ ମୋଟ ୨୪ ଗୋଟି ଟାହିଆ ହୁଏ । ଏଥିରୁ ୮ ଗୋଟି ବଡ଼ ଓ ୧୬ ଗୋଟି ଛୋଟ । ଶ୍ରୀମନ୍ଦିରରୁ ବାହାରିବା ଓ ଶ୍ରୀମନ୍ଦିରକୁ ଫେରିବାବେଳେ ୪ ଗୋଟି ଲେଖାଏଁ ୮ ଗୋଟି ବଡ଼ ଟାହିଆ, ଶ୍ରୀଗୁଣ୍ଡିଚା ମନ୍ଦିରରେ ପ୍ରବେଶ ଓ ପ୍ରସ୍ଥାନ କାଳରେ ୪ ଗୋଟି ଲେଖାଏଁ ୮ ଗୋଟି ଛୋଟ ଲୋଡ଼ା ହୋଇଥାଏ । ସ୍ନାନଯାତ୍ରା ଦିନ ଦୁଇ ଥର ଅର୍ଥାତ୍ ୪ ଗୋଟି ଲେଖାଏଁ ୮ ଗୋଟି ଛୋଟ ଟାହିଆ ବ୍ୟବହୃତ ହୁଏ । ଶ୍ରୀବଳଭଦ୍ରଙ୍କ ଟାହିଆଠାରୁ ଶ୍ରୀଜଗନ୍ନାଥଙ୍କ ଟାହିଆରେ ଚାରି ଗୋଟି କାଠି ଅଧିକ ଲାଗିଥାଏ । ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କ ଟାହିଆ ଟୋପର ଆକାରର ହୋଇଥାଏ । ଟାହିଆର ପ୍ରସ୍ତୁତିରେ ବାଉଁଶ, କଦଳୀ ପଟୁକା, ସୋଲ, ଜରି ଜମ୍ମୁରା, ରଙ୍ଗୀନ କନା ସହିତ ବିଭିନ୍ନ ଫୁଲ ଆବଶ୍ୟକ ହୋଇଥାଏ ।





ଶ୍ରୀସୁଦର୍ଶନ ଜଡ଼ର ପ୍ରତୀକ, ମା' ସୁଭଦ୍ରା ପ୍ରାଣ ଶକ୍ତିର ପ୍ରତୀକ, ଶ୍ରୀବଳଭଦ୍ର ହେଉଛନ୍ତି ମନର ପ୍ରତୀକ ଏବଂ ଶ୍ରୀଜଗନ୍ନାଥ ଆତ୍ମାର ଅଧୀଶ୍ୱର । ଅତଏବ ରଥଯାତ୍ରାରେ ଚତୁର୍ଦ୍ଧାମୂର୍ତ୍ତି ଭକ୍ତ ଜନତାର ଗହଣକୁ ଆସି ଭକ୍ତ ଜନତାର ଦେହ, ପ୍ରାଣ, ମନ ଓ ଆତ୍ମାର ବିକାଶ ନିମନ୍ତେ ଶୁଭାଶିଷ ପ୍ରଦାନ କରିଥାନ୍ତି ।

ଶ୍ରୀଜଗନ୍ନାଥ ହେଉଛନ୍ତି ପୂର୍ଣ୍ଣବ୍ରହ୍ମ, ପୁରୁଷୋତ୍ତମ । ସମସ୍ତେ ତାଙ୍କର, ସମସ୍ତେ ତାଙ୍କ ଭିତରେ ଓ ସେ ସମସ୍ତଙ୍କ ଭିତରେ । ଅନ୍ୟପ୍ରକାରରେ କୁହାଯାଇପାରେ ଯେ, ସେ ଏକାଧାରରେ ବିଶ୍ୱଗତ ଓ ବିଶ୍ୱାତୀତ । ସେ ଏକାଧାରରେ ସ୍ରଷ୍ଟା ଓ ସୃଷ୍ଟି, ଦ୍ରଷ୍ଟା ଓ ଦୃଷ୍ଟି, ଅଭିନେତା ଓ ଅଭିନୟ ଗାୟକ ଓ ଗାନ, ଚନ୍ଦନ ଓ ତା'ର ସୁବାସ, ବିଜୟୀ ଓ ତା'ର ବିଜୟ, ସାଧନା ଓ ସିଦ୍ଧି ଇତ୍ୟାଦି ଇତ୍ୟାଦି ... । ତାଙ୍କୁ ମର୍ମଚକ୍ଷୁରେ ଦେଖିଲେ ଆଉ କିଛି ଦେଖିବାକୁ ବାକିନଥାଏ, ତାଙ୍କ କଥା ଅନ୍ତରରୁ ଶୁଣିପାରିଲେ ଆଉ କିଛି ଶୁଣିବାକୁ ବାକି ନଥାଏ । ସବୁ ସଂପ୍ରଦାୟର ସେ ଆରାଧ୍ୟ ଦେବତା, ସବୁ ତତ୍ତ୍ୱର ସେ ଅଧିନାୟକ । ସେ କେବଳ ଉତ୍କଳର ନାଥ ନୁହନ୍ତି, ଭାରତର ନାଥ ନୁହନ୍ତି ବରଂ ସାରା ଜଗତ ଅର୍ଥାତ୍ ଉଭୟ ଚର ଓ ଅଚରର ଅଧିପତି । ପଣ୍ଡିତ ନୀଳକଣ୍ଠଙ୍କ ମତରେ 'ସେ ରାମନାଥ ନୁହନ୍ତି, ଦ୍ୱାରକାନାଥ ନୁହନ୍ତି ସେ ସାରା ଜଗତର ନାଥ, ତେଣୁ ତାଙ୍କ ନାମର ସାର୍ଥକତା ରହିଛି ।' ଜଗତ୍ ଅର୍ଥାତ୍ ଯାହା ଗତିଶୀଳ ଅର୍ଥାତ୍ ଏଇ ପୃଥିବୀର ନାଥ ହେଉଛନ୍ତି ପ୍ରଭୁ ଶ୍ରୀଜଗନ୍ନାଥ । ଯିଏ ଅନୁମନ୍ତାର ଭୂମିକାରେ ଅବତୀର୍ଣ୍ଣ, ସେ ହିଁ ଜଗନ୍ନାଥ ।

ଓଡ଼ିଆ ସାହିତ୍ୟରେ ରଥଯାତ୍ରାର ପୁଷ୍କଳଚିତ୍ର ଦେଖିବାକୁ ମିଳେ । କବିମାନଙ୍କ ଦୃଷ୍ଟିକୁ ଭିନ୍ନ ଭିନ୍ନ ବାଗରେ ରଥଯାତ୍ରାର ରଥ ଓ ଅଧୀଶ୍ୱର ପ୍ରଭୁ ଶ୍ରୀଜଗନ୍ନାଥ ଦୃଷ୍ଟିଗୋଚର ହୋଇଛନ୍ତି । ରୀତିଯୁଗୀୟ କବି ଲୋକନାଥ ବିଦ୍ୟାଧରଙ୍କ ବଡ଼ଦାଣ୍ଡରେ ସୁସଜ୍ଜିତ ତିନିରଥ ତିନିଗୋଟି ଜାହାଜ ପରି ଦୃଶ୍ୟ ହେଲାବେଳେ ଭକ୍ତଜନବୃନ୍ଦ ଲହରୀ ପ୍ରାୟ ଦୃଶ୍ୟ ହୋଇଛନ୍ତି । ନୃତ୍ୟରତ ଭକ୍ତମଣ୍ଡଳୀ ମୟୂର ପ୍ରାୟ ଦୃଶ୍ୟ ହୋଇଛନ୍ତି । କବିଙ୍କ କଥାରେ -

'ରଥମାନେ ପୋତପ୍ରାୟ ଦିଶନ୍ତି ଶୋଭିତ
ବହୁତ ରତନ ବସନରେ ସୁମଣ୍ଡିତ ହେ
ବହୁତ ଜାତି ପରିପୂର୍ଣ୍ଣ ହୋଇ ଶୋଭା ପାଆନ୍ତି
ଭକ୍ତ ମଣ୍ଡଳୀ ନୃତ୍ୟ ଗୀତେ କେକୀପ୍ରାୟ ଦିଶନ୍ତି ।'
(ନୀଳାଦ୍ରି ମହୋତ୍ସବ)

ଶ୍ରୀଜଗନ୍ନାଥଙ୍କର ରଥର ଚକ, ପଟି, ରାହୁପଟି, କଳସ, ଦଧିନଉତି, କଣ୍ଟି, ଦଣ୍ଡଚକ୍ର ଓ କପିକେତନ ପ୍ରଭୃତିର ପ୍ରାଣବନ୍ତ ବର୍ଣ୍ଣନା କବି ଶ୍ରୀଯୁକ୍ତ ବିଦ୍ୟାଧରଙ୍କ ବର୍ଣ୍ଣମାଳାରେ ପ୍ରକଟିତ ହୋଇଛି । କପିକେତନର ଚିତ୍ର ପ୍ରଦାନ ପୂର୍ବକ କବି କହନ୍ତି -

'ତଥିପରେ କେତନ ସବୁଶୋଭା ନିକେତନ
ସମସ୍ତ ରୂପେ ଯତନ ସେହୁ ଅଟଇ
ପୁଣି ତଳକୁ ପଡ଼ଇ ବେନି ପାଶକୁ ଚଳଇ
ଯାହା ଉପରକୁ ଯାଇ ଏହ୍ନେ ଦିଶଇ

କି ନର୍ତ୍ତକ ହସ୍ତକ ହସ୍ତ
ବିନିନ୍ଦିତ କରଇ ଉପମା ସମସ୍ତ ।
(ନୀଳାଦ୍ରି ମହୋତ୍ସବ)

ଶ୍ରୀଜଗନ୍ନାଥଙ୍କର ଘୋଷଯାତ୍ରାର ପହଣ୍ଡି ବିଜେ କବି ଗୌର ଚରଣଙ୍କ ମନରେ ଆଣିଛି ଭାବାନ୍ତର, ହୃଦୟରେ ପୁଲକର ଉତ୍କଳ ପ୍ଲାବନ । ଆଖିରୁ ତାଙ୍କର ଝରି ପଡ଼ିଛି ଦୁଇଧାର ଅଶ୍ରୁ । ଅତ୍ୟନ୍ତ ମନୋଜ୍ଞ ଭାଷାରେ ଅନ୍ତରର କଥା ତାଙ୍କର ପ୍ରକାଶିତ ହୋଇଛି 'ପହଣ୍ଡିବିଜେ' ଗୀତରେ । ପହଣ୍ଡି ବିଜେ ଅବକାଶରେ ସେବକମାନଙ୍କ ଝିଙ୍କାଝିଙ୍କିରେ ଟଣା ଓଟରାରେ ସୁକୁମାର ତନୁକୁ ବାଧା ଲାଗିଥିବ ବୋଲି କବି ବିଚାର କରିଛନ୍ତି । ତାଙ୍କ ଭାଷାରେ -

'ସେବକମାନଙ୍କ ଅଙ୍ଗଶ୍ରମଝାଳ ଗମ ଗମ ପଡ଼େ ବହିକି
ଝିଙ୍କାଝିଙ୍କି କରିବାରୁ ବାଧୁଥିବ ପରା ସୁକୁମାର ଦେହୀକି ।'

ଭକ୍ତି କୁସୁମ ଅଞ୍ଜଳି ପରମପ୍ରଭୁଙ୍କ ପାଦରେ ଅର୍ପଣ କରି ବିଭୁ ପ୍ରୀତି ଭାବନାରେ ଜୀବନକୁ ସାର୍ଥକ ମଣି କବି ଗଭୀର ଆଶାପୋଷଣ କରିଛନ୍ତି ଯେ ତାଙ୍କୁ ଶ୍ରୀଚରଣରେ ଓ ନନ୍ଦିଘୋଷ ରଥର ଛାଇରେ ଟିକିଏ ରହିବାକୁ ସ୍ଥାନ ମିଳିବ ।

'ଅପଲକ ଦୃଷ୍ଟି କରରେ ମାନସ
ଆଉ ଏ ସମୟ ପାଇକି
ଗଉରଚରଣ ପଶିଲା ଶରଣ
ନନ୍ଦିଘୋଷ ରଥ ଛାଇକି ।'

ଅନ୍ୟ ଏକ ଗୀତରେ କବି ଗୌରଚରଣ ଶ୍ରୀଗୁଣ୍ଡିଚା ଯାତ୍ରାର ମହତ୍ତ୍ୱ ଉପସ୍ଥାପନା କରିଛନ୍ତି । ରଥ ଦଉଡ଼ି ତାଙ୍କୁ ଦିଶିଛି ବାସୁକୀ ସର୍ପ ପରି ଏବଂ ଦେବତାମାନେ ଭକ୍ତ ରୂପରେ ରଥ ଟାଣିଲା ପରି କବିଙ୍କୁ ଦୃଶ୍ୟ ହୋଇଛି । କବିଙ୍କ ଭାଷାରେ -

'ରଥର ଦଉଡ଼ି ଲମ୍ବେ ଧାଡ଼ି ଧାଡ଼ି
କିବା ସେ ବାସୁକୀ ଫଣୀକି
ନର ସ୍ୱରୂପେ ଅମରଗଣ ମିଶି
ସଧୀରେ ଧରନ୍ତି ଟାଣିକି ।'

ନନ୍ଦିଘୋଷ ରଥ ଆଗକୁ ଚାଲିଲା ବେଳେ ହେଉଥିବା ଘୋର ଘର୍ଘର ନାଦକୁ କବି ପାପ ତାପହାରୀ ଦେବ ନିର୍ଦ୍ଦେଶନାମା ବୋଲି କହିଛନ୍ତି । ବଡ଼ଦାଣ୍ଡରେ ପଶିପାରେ ନାହିଁ ପାତକ ସେତେବେଳେ, କାରଣ ରଥର ଘୋଷଧ୍ୱନି ଏହାକୁ ଆସିବାକୁ ପ୍ରତିରୋଧ କରେ, ବିରୋଧ କରେ । ଯାହା ଆଗରୁ ପଶି ଆସିଥାଏ ତାହାକୁ ଯଥାଶୀଘ୍ର ଅଠରନଳା ଡେଇଁ ପଳାଇ ଯିବାକୁ ସେହି ଘୋଷଧ୍ୱନି କଠୋର ଆଦେଶ ଦିଏ । କବିଙ୍କ କଥାରେ -

'ଗର୍ଜୁ ନାହିଁ ତର୍ଜୁ ଅଛି ସେ ପ୍ରକୋପେ
ବର୍ଜୁଛି ପାତକ ଶ୍ରେଣୀକି
ପଳାତୁ ଅଠର ନଳାଠାରୁ ବଳି
ନ ଆସିବୁ ଆଉ ଏଣିକି ।'




ଅନ୍ୟତମ କବି ଶ୍ରୀ ବାଞ୍ଛାନିଧି ଦାସ ସ୍ୱରଚିତ 'ଗୁଣ୍ଡିଚା ଗୀତ'ରେ ଶ୍ରୀଜଗନ୍ନାଥଙ୍କର ମହିମା ଶତକଣ୍ଠରେ ଗାନ କରିଛନ୍ତି । ପୁରୁଷୋତ୍ତମ ଧାମରେ ନାହିଁ ବ୍ରାହ୍ମଣ ଚାଣ୍ଡାଳର ଭେଦ ବରଂ ବିଶ୍ୱମୈତ୍ରୀର ଜୟଧ୍ୱଜା ସେଠାରେ ଫର୍‌ଫର୍ ହୋଇ ଉଡୁଅଛି । ମାନବିକତାର ମହାମନ୍ତ୍ରରେ ଅଭିମନ୍ତ୍ରିତ ଶ୍ରୀଜଗନ୍ନାଥ ସଂସ୍କୃତିର ଅନୁଲମ୍ଭ ଉତ୍ତରଣ ଯେତିକି ଅନୁପ୍ରସ୍ଥ ପ୍ରସାରଣ ମଧ୍ୟ ସେତିକି । କବିଙ୍କ ବର୍ଣ୍ଣମାଳାରେ-

'ବ୍ରାହ୍ମଣ ଚାଣ୍ଡାଳ ଭେଦ ବିନାଶନ
ସାମ୍ୟ ମୈତ୍ରୀ ଛତି ଧରା
ଯୁଗେ ଯୁଗେ ଯାର ଶ୍ରୀକ୍ଷେତ୍ର ମହତ୍ୱ
ଧରା ମାଣିକ୍ୟ ପସରାରେ
ଦ୍ୱିଜ ପ୍ରସାରି ହାତ
ଖାଏ ଚଣ୍ଡାଳ ହାତରୁ ଭାତ ଲୋ ।'

କବି ଗୋକୁଳାନନ୍ଦ ମହାନ୍ତିଙ୍କର ଅନ୍ତରରେ ଝଙ୍କୃତ ହୋଇଛି ଶ୍ରୀଜଗନ୍ନାଥଙ୍କ ମହିମାର ମଧୁମୂର୍ଚ୍ଛନା । ପ୍ରଭୁଙ୍କର ଦର୍ଶନରେ ନେତ୍ର ହେବ ପବିତ୍ର ଓ ସାର୍ଥକ ବୋଲି ଭକ୍ତମାନଙ୍କୁ ସେ ଆଦର ଆହ୍ୱାନ ଜଣାଇଛନ୍ତି । ବିଶ୍ୱଭ୍ରାତୃତ୍ୱର ପ୍ରତୀକ ଭାବରେ ସେ ଶ୍ରୀଜଗନ୍ନାଥ ସଂସ୍କୃତିକୁ ବିଚାର କରିବା ସହିତ ଏହାର ପ୍ରଚାର ଓ ପ୍ରସାରରେ ବିଶ୍ୱ ଉପକୃତ ହେବ ବୋଲି ମନ୍ତବ୍ୟ ପ୍ରକାଶ କରିଛନ୍ତି । ଏତେବଡ଼ ସାଂସ୍କୃତିକ ଦେବତାକୁ ନେଇ ଓଡ଼ିଶା ଓ ଓଡ଼ିଆର ଗର୍ବ ଅକଳ୍ପନୀୟ । ଓଡ଼ିଶାର ମାଟି ସେତିକି ପବିତ୍ର ନ ହୋଇଥିଲେ ପୁରୁଷୋତ୍ତମଙ୍କୁ ଧରି ରଖି ପାରିନଥାନ୍ତା । ଓଡ଼ିଆ ଜାତିର ଅମୂଲ୍ୟଧନ ଭାବରେ ଅଭିହିତ କରି କବି କହିଛନ୍ତି -

'ତାହାରେ ପତିତଜନ ପତିତପାବନକୁ
ଓଡ଼ିଆ ଗରବଧନ ଜାତି ସନମାନକୁ
ପଛେ ନନ୍ଦୀଘୋଷ ଧୀରେ
ଚଳେ ମାତଙ୍ଗ ଗତିରେ
ଘେନି କଳା କଞ୍ଜଦଳା
ମଦନ ମୋହନକୁ ।'

କଲ୍ଲୋଳ କବି ଦୀନକୃଷ୍ଣଙ୍କ ରଚିତ 'ଗୁଣ୍ଡିଚା ଭାବନା ଚଉତିଶା'ରେ ରଥଯାତ୍ରାର ମନୋରମ ଦୃଶ୍ୟ ଅଙ୍କିତ ହୋଇଛି । ରାଜାଙ୍କର କ୍ରୂର ନିର୍ଦ୍ଦେଶରେ କବିଙ୍କୁ ଶ୍ରୀକ୍ଷେତ୍ର ପ୍ରବେଶ ମନା ହୋଇଥିଲା । ତେଣୁ କବି ଶ୍ରୀକ୍ଷେତ୍ରକୁ ଆସିନପାରି ଦୂରରେ ରହି କଳ୍ପନାନେତ୍ରରେ ରଥଯାତ୍ରା ଦେଖି ସେହି ଦୃଶ୍ୟକୁ ଭାବରେ ଜାରିତ କରି ଭାଷାରେ ସଜାଇଛନ୍ତି । ଶ୍ରୀଜଗନ୍ନାଥଙ୍କର ପହଣ୍ଡି ବିଜେ କବି ତାଙ୍କର ମାନସ ନେତ୍ରରେ ଯେପରି ଦେଖିଛନ୍ତି, ସେପରି ଲେଖିଛନ୍ତି । ସେ ଲେଖିଛନ୍ତି ଯେ ନୀଳଗିରି ଶିଖରରୁ ସଦର୍ପରେ ଖସି ଆସୁଥିବେ ନୀଳାଦ୍ରି କେଶରୀ ଶ୍ରୀଜଗନ୍ନାଥ । ତାଙ୍କ ଦର୍ଶନରେ ଆତ୍ମବିଭୋର ହେଉଥିବେ ଭକ୍ତ ସମାଜ, ଗୀତବାଦ୍ୟ ବାଜୁଥିବ ନୂତନ ଛନ୍ଦରେ, ଦିବ୍ୟ ଭାବରେ ନାଚୁଥିବେ ନର୍ତ୍ତକୀବୃନ୍ଦ, ଛତ୍ର ଓ ଚାମର ପଡ଼ିବାରୁ ଦିଶୁଥିବ କ୍ଷୀର ସମୁଦ୍ର ଉଚ୍ଛୁଳିଲା ପରି । ସଭିଁଙ୍କର ଆଖି ଲାଖି ଯାଉଥିବ ସେହି ଭୁବନ ଭୁଲା ଦୃଶ୍ୟରେ । ଲାଗୁଥିବ ସତେଅବା ନାନାରଙ୍ଗର ଲାବଣ୍ୟ କମଳ ଯମୁନାର ଜଳବେଣୀରେ ଫୁଟି ଝୁଲିଅଛି । ବିଶ୍ୱଶାନ୍ତି, ବିଶ୍ୱମୈତ୍ରୀ ଓ ବିଶ୍ୱଭ୍ରାତୃତ୍ୱର ଉଦ୍‌ଘୋଷଣା କରିବ ଘୋର ଘର୍ଘର ନାଦରେ ନନ୍ଦିଘୋଷ ରଥ । ଶ୍ରୀଜଗନ୍ନାଥଙ୍କ ଅନୁରୋଧରେ ଶ୍ରୀବଳଭଦ୍ର ଆଗରେ ଯିବେ । କବିଙ୍କ ଭାଷାରେ -

'ଶ୍ରବଣ ମଙ୍ଗଳ ଜଗନ୍ନାଥ ହସି ବଳ ଦେବଙ୍କୁ ଅନାଇଁ
ଶୁଭେ ଆଗେ ବିଜେ କର ବୋଲିବାରୁ ବିଜେ କରିବେ ଗୋସାଇଁ
ସଙ୍ଗେ ସୁଭଦ୍ରା ଯିବେ
ଶତଶତ ଘଣ୍ଟାଦି ବାଜିବେ ସେ
ସେହି ସଙ୍ଗରେ ପ୍ରଭୁ ସାଜିବେ ସେ ।'

ଉଦାହରଣ ସ୍ୱରୂପ ୨/୪ ଜଣ କବିଙ୍କର ଭକ୍ତି ଭାବନା ଉକ୍ତ ପ୍ରବନ୍ଧରେ ଉପସ୍ଥାପିତ ହେଲେ ହେଁ ବହୁ କବିଙ୍କର କୃତିତ୍ୱରେ ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତିଭାବ ପ୍ରକଟିତ ହୋଇଛି । ରଥଯାତ୍ରା କାଳୀନ ଦୃଶ୍ୟ ମଧ୍ୟ ବହୁକବିଙ୍କ କାବ୍ୟ କବିତାରେ ସ୍ଥାନିତ ହୋଇଛି । ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ, ଶ୍ରୀଜଗନ୍ନାଥଙ୍କର ମହିମା ଯେତେ ଗାନ କଲେ ମଧ୍ୟ ତାହା ସରିବ ନାହିଁ, ଅଧିକ ଗାନର ଅପେକ୍ଷା ରଖିବ । ମହାସମୁଦ୍ରକୁ ଜାଲ ପକାଇ ଧରି ହେବ ନାହିଁ । କେବଳ ଧରି ହେବ କେତେ ବିନ୍ଦୁ ଜଳ ମାତ୍ର ।

ଶ୍ରୀଜଗନ୍ନାଥ ହେଉଛନ୍ତି ଭାବର ଠାକୁର, ଅନୁଭବର ଠାକୁର । ଭାଷାର ବଳୟ ବାହାରେ ତାଙ୍କର ସ୍ଥିତି ଓ ଅଭିବ୍ୟକ୍ତି । ଅନ୍ତଃମନରେ ତାଙ୍କୁ ବୁଝି ହୁଏ, ଅନ୍ତଃକର୍ଣ୍ଣରେ ତାଙ୍କର କଥା ଶୁଣିହୁଏ । ଅନ୍ତଃ ନେତ୍ରରେ ଦେଖିହୁଏ ତାଙ୍କର ଘୋଷଯାତ୍ରା । ଏହି ଘୋଷଯାତ୍ରା ପ୍ରକୃତରେ ମାନବ ବାଦର ଜୟଯାତ୍ରା । ଆଜି ନୁହେଁ ଆଗାମୀ କାଲି ତାହାର ମହତ୍ୱ ଓ ମୂଲ୍ୟବୋଧ ହୃଦୟଙ୍ଗମ କରାଯିବା ପାଇଁ ଉଦ୍ଦିଷ୍ଟ । ଏଥିରୁ ବିଚ୍ଛୁରିତ ଆଲୋକ ରଶ୍ମିରେ ଆଗାମୀ ସମୟ ଉଦ୍‌ଭାସିତ ହେବା ପାଇଁ ଅଭିପ୍ରେତ । ଏହି ଅବକାଶରେ ଏତିକି କୁହାଯାଇପାରେ ଯେ ଏହି ଘୋଷଯାତ୍ରାର ଜୟହେଉ, ଆଗାମୀ କାଲିର ଜୟହେଉ, ମହାମାନବିକତାର ଜୟ ହେବା ସଂଗେସଂଗେ ଅତି ମାନବିକତାର ଜୟ ହେଉ ।

ପ୍ରଫେସର
ଓଡ଼ିଆ ବିଭାଗ, ବାଣୀବିହାର, ଭୁବନେଶ୍ୱର









# ବିଶ୍ୱ ଚେତନାରେ ଶ୍ରୀଜଗନ୍ନାଥ

ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା

ବିଶ୍ୱ ଦୃଷ୍ଟିରେ ଶ୍ରୀଜଗନ୍ନାଥଙ୍କ ବିଷୟ ଆଲୋଚନା କରିବା ପୂର୍ବରୁ ବିଶ୍ୱ ସମୁଦାୟର ସଂସ୍କୃତି କଥା ବିଚାର କରାଯିବା ଉଚିତ । ପ୍ରଥମେ ସଂସ୍କୃତି କଥା ନିଆଯାଉ । ସଂସ୍କୃତିର ବିତ୍ପ୍ୟୁତିଗତ ଅର୍ଥ ହେଉଛି ସମ୍+କୃ+ତି ଅର୍ଥାତ୍, ଯାହା ମାନବ ସମାଜର ଅଭିବୃଦ୍ଧି ସାଧନ କରି ଏକ ପ୍ରତିଷ୍ଠା ପ୍ରଦାନ କରିଥାଏ । ଅନ୍ୟ ଅର୍ଥରେ କହିଲେ ସାମାଜିକ, ଆଧାତ୍ମିକ ଓ ରାଜନୈତିକ କ୍ଷେତ୍ରରେ ମାନବ ସମାଜ ଯାହା ମାଧ୍ୟମରେ ପ୍ରତିଷ୍ଠା ଅର୍ଜନ କରିଥାଏ, ତାହା ହିଁ ସଂସ୍କୃତି । ସୁତରାଂ ମାନବ ସମାଜର ସାମଗ୍ରିକ ପ୍ରତିଫଳନ ସଂସ୍କୃତି ମାଧ୍ୟମରେ ହିଁ ହୋଇଥାଏ । ପଶୁ ଜଗତରେ ସଂସ୍କୃତି ନାହିଁ । କେବଳ ମାନବ ସମାଜରେ ସଂସ୍କୃତି ବିଦ୍ୟମାନ ଏବଂ ଏହି ସଂସ୍କୃତି ମାନବ ଜାତିର ପ୍ରାଣ ସ୍ୱରୂପ । ସଂସ୍କୃତି ବ୍ୟତିରେକ ମାନବ ସମାଜର ଅସ୍ତିତ୍ୱ ପରିକଳ୍ପନା କରାଯାଇନପାରେ । ଏହି ସଂସ୍କୃତି ମାନବ ସଭ୍ୟତାର ଆରମ୍ଭରୁ ରହି ଆସିଛି । ସମୟକ୍ରମେ ଗୋଟିଏ ପରେ ଗୋଟିଏ ସଂସ୍କୃତି ମୂଳ ସଂସ୍କୃତିରେ ମିଶ୍ରିତ ହୋଇଛି ତ, ପୁଣି କେତେବେଳେ ତା'ର ବିଲୋପ ସାଧନ ହୋଇଛି କିନ୍ତୁ ମୂଳ ସଂସ୍କୃତିର ଆଭିମୁଖ୍ୟରେ ଯେଉଁ ସାର୍ବଜନୀନ ସମୃଦ୍ଧି ଓ ପ୍ରଗତି ବିଦ୍ୟମାନ, ତାହା କେବେହେଲେ ଲୋପ ପାଇ ନାହିଁ । ବିଶ୍ୱ ସମୁଦାୟ କଥା ଚିନ୍ତା କଲେ ଆମ ଦୃଷ୍ଟିକୁ ଯେଉଁ ସଂସ୍କୃତି ଆସିଥାଏ, ସେଗୁଡ଼ିକ ହେଲା ସାମ୍ୟବାଦ, ଖ୍ରୀଷ୍ଟିୟାନ୍, ଇସ୍‌ଲାମୀୟ ଓ ହିନ୍ଦୁ ସଂସ୍କୃତି । ଏହି ମୁଖ୍ୟ ଚାରୋଟି ସଂସ୍କୃତି ମାନବବାଦୀ ଆଭିମୁଖ୍ୟକୁ ଗ୍ରହଣ କରିଅଛି । ସାମଗ୍ରିକ ଭାବରେ ଶ୍ରୀଜଗନ୍ନାଥ ସଂସ୍କୃତିରେ ଏହା ପ୍ରତିଫଳନ ହୋଇ ଆଜି ଏକ ସ୍ୱତନ୍ତ୍ର ସଂସ୍କୃତି ରୂପେ ବିଶ୍ୱ ସମୁଦାୟ ଆଗରେ ଦଣ୍ଡାୟମାନ । ଏଥିପାଇଁ ବିଶ୍ୱବାସୀ ଶ୍ରୀଜଗନ୍ନାଥ ସଂସ୍କୃତିକୁ ଆଦର୍ଶ ସଂସ୍କୃତି ବୋଲି ଗ୍ରହଣ କରିବାକୁ ବ୍ୟଗ୍ରତା ପ୍ରକାଶ କରିଛନ୍ତି । ପ୍ରାତଃ ସ୍ମରଣୀୟ ପ୍ରଭୁପାଦ ଭକ୍ତି ବେଦାନ୍ତ ସ୍ୱାମୀ ଆନ୍ତର୍ଜାତିକ କୃଷ୍ଣ ଭାବନା ସଂଘ (ISKCON) ପ୍ରତିଷ୍ଠା କରି ପୃଥିବୀର କୋଣ ଅନୁକୋଣରେ ଶ୍ରୀଜଗନ୍ନାଥ ଚେତନା ପ୍ରଚାର ପ୍ରସାର କରିବାକୁ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ସେଥିପାଇଁ ଜଗନ୍ନାଥ ସଂସ୍କୃତି ସର୍ବବ୍ୟାପକ ହୋଇପାରିଛି ।

ଯେଉଁ ମୌଳିକ ଉପାଦାନର ଭିତ୍ତିଭୂମି ଉପରେ ଜଗନ୍ନାଥ ସଂସ୍କୃତି ପ୍ରତିଷ୍ଠିତ, ତାହା ହେଉଛି ମାନବ ସମାଜର ସର୍ବାଙ୍ଗୀନ ବିକାଶ ସହିତ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବା । ଏହି ଦୃଷ୍ଟିରୁ ଜଗନ୍ନାଥ ସଂସ୍କୃତି କଥା ଆଲୋଚନା କଲେ ଆମ୍ଭେ ଦେଖୁ ଯେ ବିଶ୍ୱର ପ୍ରାଚୀନତମ ସଂସ୍କୃତିର ସ୍ୱରୂପ ଏଥିରେ ଦେଖିବାକୁ ମିଳିଥାଏ । ପୃଥିବୀରେ ଯେଉଁ ପ୍ରମୁଖ ସଂସ୍କୃତି କଥା ଉପରେ କୁହାଗଲା, ତାହା ଧର୍ମଭିତ୍ତିକ ସଂସ୍କୃତି । ସେହି ସେହି ଧର୍ମର ପ୍ରତିଷ୍ଠାତା ହେଉଛନ୍ତି ଜଣେ ଜଣେ ମହାପୁରୁଷ । ଏହି ମହାପୁରୁଷମାନଙ୍କର ଆଦର୍ଶ, ଧର୍ମ, ଦର୍ଶନ ଓ ଉପଦେଶକୁ ଭିତ୍ତିକରି ସାମ୍ୟବାଦ ସଂସ୍କୃତି, ଖ୍ରୀଷ୍ଟିଆନ ସଂସ୍କୃତି ଓ ଇସ୍‌ଲାମୀୟ ସଂସ୍କୃତି ପ୍ରତିଷ୍ଠିତ କିନ୍ତୁ ଜଗନ୍ନାଥ ସଂସ୍କୃତି ନିର୍ଦ୍ଦିଷ୍ଟ ଧର୍ମଭିତ୍ତିକ ନୁହେଁ । ଜଗନ୍ନାଥ ସାଂସ୍କୃତିକ ଦେବତା ହୋଇଥିବାରୁ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ସଂସ୍କୃତି ତାଙ୍କର ରୀତି-ନୀତି, ଧର୍ମଧାରଣା, ଆଚାର-ବିଚାରରେ ପ୍ରତିଫଳିତ । ଯେଉଁ ସଂସ୍କୃତି ଆଞ୍ଚଳିକ ଗଣ୍ଡି ମଧ୍ୟରୁ ଉର୍ଦ୍ଧ୍ୱକୁ ଯାଇ ବିଶ୍ୱ ସଂସ୍କୃତିରେ ରୂପାୟିତ ହୋଇପାରିଛି । ଏଣୁ ଓଡ଼ିଆ ଜାତିର ରାଷ୍ଟ୍ର ଦେବତା ଭାବରେ ଆରାଧିତ ହୋଇ ଶ୍ରୀଜଗନ୍ନାଥ ବିଶ୍ୱ ମାନବ ସମାଜର ସର୍ବୋତ୍ତମ ସାଂସ୍କୃତିକ ଚିନ୍ତାଧାରାରେ ଅନ୍ୱିତ ହୋଇଅଛନ୍ତି । ଏଥିପାଇଁ ସେ ସାଂସ୍କୃତିକ ଦେବତା ହେବା ସଂଗେସଂଗେ ବିଶ୍ୱ ଦେବତାରେ ପରିଣତ ହୋଇଛନ୍ତି । ବିଶ୍ୱ ଚେତନାର ମୌଳିକ ଭାବଧାରା ଓ ଆଦର୍ଶ ତାଙ୍କଠାରେ ବିଦ୍ୟମାନ । ତେଣୁ ଶ୍ରୀଜଗନ୍ନାଥ ଓଡ଼ିଶା ମାଟିରେ ପ୍ରତିଷ୍ଠିତ ହେଲେ ହେଁ, ଓଡ଼ିଆମାନଙ୍କର କେବଳ ଦେବତା ନ ହୋଇ ବିଶ୍ୱ ସମୁଦାୟର ଦେବତା ରୂପେ ପରିଣତ ହୋଇଅଛନ୍ତି । ଅନ୍ୟ ଅର୍ଥରେ କହିଲେ ଯେଉଁ ଯେଉଁ ଆଦର୍ଶ ସଂସୃତିର ଭିତ୍ତିଭୂମି ଉପରେ ଶ୍ରୀଜଗନ୍ନାଥ ଦଣ୍ଡାୟମାନ, ସେହି ସଂସ୍କୃତି ସମଗ୍ର ମାନବ ସମାଜର ଶାନ୍ତି ଓ ପ୍ରଗତି ପାଇଁ ଉଦ୍ଦିଷ୍ଟ । ଆଜି ସେ ଓଡ଼ିଶାର ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ହେଲେ ହେଁ ସମଗ୍ର ବିଶ୍ୱକୁ ଏକତା ଓ ବନ୍ଧୁତ୍ୱ ରଜ୍ଜୁରେ ବାନ୍ଧି ପାରିଛନ୍ତି । ବିଜ୍ଞାନର ବିକାଶ ଓ ପ୍ରଗତି ଦ୍ୱାରା ଦେଶ ଦେଶ ମଧ୍ୟରେ ହିଂସା, ଦ୍ୱେଷ ପରଶ୍ରୀକାତରତା ଓ ପ୍ରତିଯୋଗିତା ମନୋବୃତ୍ତି ବୃଦ୍ଧି ପାଉଥିବା ବେଳେ ମାନବ ସମାଜକୁ





ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏକ କରିବାର ଦିଗ୍‌ଦର୍ଶନ କେବଳ ଜଗନ୍ନାଥ ସଂସ୍କୃତିରେ ହିଁ ବିଦ୍ୟମାନ । ସେଥିପାଇଁ ସେ ବିଶ୍ୱ ଚେତନା ସହିତ କିଭଳି ଜଡ଼ିତ ଏବଂ ବିଶ୍ୱର ଆକର୍ଷଣର କେନ୍ଦ୍ରବିନ୍ଦୁ ହେଇ ଉଠିଛନ୍ତି, ତାହା ଆଲୋଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

ପ୍ରଥମତଃ, ଶ୍ରୀଜଗନ୍ନାଥଙ୍କର ନାମର ବିଶେଷତ୍ୱ ବିଚାର୍ଯ୍ୟ । ସେ ଜଗତର ନାଥ । ଷଷ୍ଠୀ ତତ୍‌ପୁରୁଷ ସମାସ ଅର୍ଥାତ୍ ଜଗତର ପ୍ରଭୁ । ତାଙ୍କରି ଆଦେଶରେ ଜଗତ ପରିଚାଳିତ । ସେ ହର୍ତ୍ତା, କର୍ତ୍ତା ଓ ବିଧାତା । ଏହି ନାମ ହିଁ ବିଶ୍ୱ ଚେତନାର ଦ୍ୟୋତକ । ଏହି ନାମଟି ଏକ ବଚନ ନାମ ବାଚକ ବିଶେଷ୍ୟ 'ଜଗନ୍ନାଥ' ହୋଇଥିଲେ ହେଁ ଏକ ବଚନ ନାମରେ ସେ ପରିଚିତ ନୁହନ୍ତି । ଏକକରେ ସେ ପତିତପାବନ ବା ଦଧିବାମନ ନାମରେ ପରିଚିତ । ବହୁ ବଚନରେ ଅର୍ଥାତ୍ ରତ୍ନସିଂହାସନ ବା କୌଣସି ମନ୍ଦିରରେ ଭାଇ ବଳଭଦ୍ର, ଭଉଣୀ ସୁଭଦ୍ରା ଓ ସୁଦର୍ଶନଙ୍କ ସହିତ ଥିଲେ ତାଙ୍କୁ ଜଗନ୍ନାଥ କୁହାଯାଏ । ସୁତରାଂ ଜଗନ୍ନାଥ ଏକ ନାମ ଚତୁର୍ଦ୍ଧା ବିଭକ୍ତ ହୋଇଛନ୍ତି । ଏ ସଂପର୍କରେ 'ଜଗନ୍ନାଥ ଚରିତାମୃତ'ର ସପ୍ତଦଶ ଅଧ୍ୟାୟରେ ଉକ୍ତ ନାମର ମହତ୍ୱ ସମ୍ପର୍କରେ କୁହାଯାଇଛି ଯେ -

'ଜ-କାରସ୍ତୁ ଜଗନ୍ନାଥଃ ବଳଭଦ୍ର ଗ କାରକଃ
ଭଦ୍ରାନ କାର ରୂପା ଚ ଥକାରୋପି ସୁଦର୍ଶନଃ ।'

ଏଣୁ ଜଗନ୍ନାଥ ନାମରେ ସମସ୍ତେ ସମ୍ମିଳିତ ଭାବରେ ବିଦ୍ୟମାନ ତଥା ଏକ ଓ ଅଭିନ୍ନ । ଆଦର୍ଶ ପାରିବାରିକ ସହାବସ୍ଥାନର ସେ ଦ୍ୟୋତକ । ଜ୍ୟେଷ୍ଠ ଭ୍ରାତା ବଳରାମ, ଭଉଣୀ ସୁଭଦ୍ରା ସହିତ ରତ୍ନସିଂହାସନ ରୂଢ଼ ହୋଇଛନ୍ତି । ତାଙ୍କର ଉପବେଶନ ଆତ୍ମକେନ୍ଦ୍ରିକ ଚିନ୍ତାଧାରାର ବିପରୀତାତ୍ମକ । ନାମରେ ସେ ବ୍ୟଷ୍ଟି ଭାବରେ ପରିଚିତ ହେବାକୁ ଚାହାନ୍ତି ନାହିଁ । ବରଂ ସମଷ୍ଟିରେ ହିଁ ତାଙ୍କର ପରିଚିତି ।

ଦ୍ୱିତୀୟତଃ, ପୃଥିବୀରେ ଅଧିଷ୍ଠିତ ସମସ୍ତ ଦେବାଦେବୀ ପ୍ରସ୍ତର କିମ୍ବା ଧାତୁରେ ନିର୍ମିତ ହୋଇଥିବାବେଳେ ଜଗନ୍ନାଥଙ୍କର ବିଗ୍ରହ ଦାରୁ ବା କାଷ୍ଠରେ ନିର୍ମିତ । ଏହି ରହସ୍ୟର ମୂଳରେ ରହିଛି ଆଦିମାନବର ବୃକ୍ଷ ଉପାସନା । ଏହି ବୃକ୍ଷ ଉପାସନା କାଳକ୍ରମେ ପରିବର୍ତ୍ତିତ ରୂପ ଗ୍ରହଣ କରି ଦାରୁ ଉପାସନାରେ ପରିଣତ ହୋଇଛି । ବୃକ୍ଷ ସହିତ ମାନବ ଜୀବନ ଓ ସଭ୍ୟତା ଆବହମାନ କାଳରୁ ସମ୍ପର୍କିତ । ଆଦିମ ମାନବ ବଣ ଜଙ୍ଗଲରେ ଏକକ ଜୀବନଯାପନ କରୁଥିବାବେଳେ ବୃକ୍ଷ ହିଁ ଥିଲା ତା'ର ବଞ୍ଚି ରହିବାର ଅବଲମ୍ବନ । ଶ୍ୱାସ ପ୍ରଶ୍ୱାସଠାରୁ ଆରମ୍ଭ କରି ଖାଦ୍ୟ ପାନୀୟ, ବସ୍ତ୍ର ତଥା ଆଶ୍ରୟର ଉତ୍ସ ଥିଲା ବୃକ୍ଷ । ବୃକ୍ଷର ଫଳମୂଳ ଓ ପତ୍ରକୁ ସେ ଖାଦ୍ୟରୂପେ ଗ୍ରହଣ କରି ବଞ୍ଚି ରହିଥିଲା । ଏହି ଦୃଷ୍ଟିରୁ ବୃକ୍ଷକୁ ଆଦିମ ମାନବର ଆଜନ୍ମ ସାଥୀ କୁହାଯାଇପାରେ । ଆଜି ମଧ୍ୟ ମନୁଷ୍ୟ ବୃକ୍ଷ ବା ଉଦ୍ଭିଦକୁ ଛାଡ଼ି ଜୀବନ ନିର୍ବାହ କରିବା ଅସମ୍ଭବ । ବିଶ୍ୱର ବିଭିନ୍ନ ସ୍ଥାନର ଅଧିବାସୀମାନେ ବୃକ୍ଷକୁ ଦେବତା ଜ୍ଞାନରେ ପୂଜା କରି ଆସୁଥିବାର ପ୍ରମାଣ ରହିଅଛି । ସଭ୍ୟତାର ପ୍ରାଚୀନତମ ଗ୍ରନ୍ଥ ଋକ୍‌ବେଦର ଦଶମ ମଣ୍ଡଳ ୧୫୫ ଶ୍ଳୋକରେ ଦାରୁ ସଂପର୍କରେ କୁହାଯାଇଛି ଯେ-

'ଅଦୋଯଦ୍‌ଦାରୁଃ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍
ତଦାରଭସ୍ୱ ଦୁର୍ହଣୋ ତେନ ଗଛ ପରସ୍ତରମ୍ ।'

ଏହାକୁ ସାୟାଣାଚାର୍ଯ୍ୟ ଭାଷ୍ୟ କରି କହିଛନ୍ତି ଯେ, ଦୂରବର୍ତ୍ତୀ ସ୍ଥାନରେ ବିରାଜିତ ଅପୌରୁଷେୟ ଦାରୁ ସମୁଦ୍ର ତୀରରେ ବିରାଜମାନ । ସେହି ଦାରୁବ୍ରହ୍ମକୁ ଆଶ୍ରୟ କରି ତାଙ୍କର ଉପାସନା ଦ୍ୱାରା ବିଷ୍ଣୁଲୋକକୁ ଗମନ କର । ଭାରତୀୟ ସଂସ୍କୃତିରେ ମଧ୍ୟ ଅଶ୍ୱତ୍ଥ, ପିପ୍ପଳ, ଧାତ୍ରୀ, ନିମ୍ବ, ତୁଳସୀ, ବେଲ, ସାହାଡ଼ା, ବ୍ରହ୍ମମୂଳି ଇତ୍ୟାଦି ବୃକ୍ଷମାନଙ୍କର ସ୍ଥାନ ଅତି ପବିତ୍ର । ଭାରତୀୟ ପରମ୍ପରାରେ ସନ୍ତାନ ଲାଭ ଆଶାରେ ବୃକ୍ଷପୂଜା ପ୍ରଚଳିତ ହୋଇ ଆସୁଛି । ନିୟୁଜିଲାଣ୍ଡର ମ୍ୟାରିଓମାନଙ୍କର ବୃକ୍ଷ ପୂଜା ସହିତ ଏହାର ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ସାହାଡ଼ା ବୃକ୍ଷ ସହିତ ବିବାହ ପ୍ରଥା ଆମ ସଂସ୍କୃତିରେ ପ୍ରଚଳିତ । ସାରଳା ମହାଭାରତ ବର୍ଣ୍ଣିତ ଗାନ୍ଧାରୀଙ୍କ ସହିତ ଧୃତରାଷ୍ଟ୍ରଙ୍କ ବିବାହ ଘଟଣାରେ ସାହାଡ଼ା ଗଛର ଭୂମିକା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଆୟୁର୍ବେଦିକ ଶାସ୍ତ୍ରରେ ବୃକ୍ଷମାନଙ୍କର ଭୂମିକା ମଧ୍ୟ ବିଶେଷ ଗୁରୁତ୍ୱପୂର୍ଣ୍ଣ । ବୃକ୍ଷର ଅନ୍ୟନାମ 'ଔଷଧୀ' ସୁତରାଂ ବୃକ୍ଷ ବ୍ୟତିରେକେ ମନୁଷ୍ୟ ମୁହୂର୍ତ୍ତଟିଏ ବି ବଞ୍ଚିବା କଷ୍ଟକର । ନିଃଶ୍ୱାସ ପ୍ରଶ୍ୱାସଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ଅନ୍ୟ ଅର୍ଥରେ ଭୂମିଷ୍ଠ ହେବାଠାରୁ ଭସ୍ମରେ ପରିଣତ ହେବାଯାଏଁ ବୃକ୍ଷର ଅବଦାନ ପ୍ରତି ସ୍ତରରେ ରହି ଆସିଅଛି । ବୌଦ୍ଧ ଏବଂ ଜୈନ ଧର୍ମରେ ବୃକ୍ଷ ଉପାସନା ପ୍ରଚଳିତ । ଭୁବନେଶ୍ୱର ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫାରେ ଗୋଟିଏ ପଲ୍ଲବିତ କଳ୍ପବୃକ୍ଷର ଚିତ୍ର ଦେଖିବାକୁ ମିଳିଥାଏ । ବୁଦ୍ଧଦେବଙ୍କ ଜୀବନର ବହୁ ସ୍ମରଣୀୟ ତଥା ଉଲ୍ଲେଖଯୋଗ୍ୟ ଘଟଣା ବୃକ୍ଷ ମୂଳରେ ହିଁ ସଂଗଠିତ । ବୋଧିଦ୍ରୁମ ତଳେ ସେ ଧ୍ୟାନସ୍ଥ ହୋଇ ଦିବ୍ୟଜ୍ଞାନ ଲାଭ କରିଥିଲେ । ଏଥିପାଇଁ ବୌଦ୍ଧ ଧର୍ମାବଲମ୍ବୀମାନେ ବୋଧିଦ୍ରୁମ (ଅଶ୍ୱତ୍ଥ)କୁ ଉପାସନା କରିଆନ୍ତି । ସନାତନ ହିନ୍ଦୁ ସଂସ୍କୃତିର ପ୍ରାଚୀନତମ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ କାଷ୍ଠ ଏହି ଏକ ବସ୍ତୁ, ଯାହାର ସହାୟତାରେ ବିଶ୍ୱକର୍ମା, ପ୍ରଥମେ ଏ ସୃଷ୍ଟିକୁ ନିର୍ମାଣ କରିଥିଲେ । ବୈଦିକ ଯୁଗ ପରେ ପୁରାଣ ଯୁଗରେ ମହାଭାରତ, ବ୍ରହ୍ମପୁରାଣ, ମତ୍ସ୍ୟପୁରାଣ, ଭବିଷ୍ୟପୁରାଣ, ଗରୁଡ଼ପୁରାଣ, ସ୍କନ୍ଦ ପୁରାଣ, ଶ୍ରୀମଦ୍ ଭାଗବତ ମହାପୁରାଣ ଆଦିରେ ବୃକ୍ଷ ଉପାସନାର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଗୀତାରେ ଭଗବାନ ନିଜକୁ ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ ବୃକ୍ଷ ବୋଲି କହିଛନ୍ତି । ଗୀତାର ପଞ୍ଚଦଶ ଅଧ୍ୟାୟରେ ମନୁଷ୍ୟ ଶରୀରକୁ ଓଲଟ ବୃକ୍ଷ ସହିତ ତୁଳନା କରାଯାଇଛି । ଏଥିରୁ ସ୍ୱଷ୍ଟ ପ୍ରମାଣିତ ହୁଏ ଯେ ବିଶ୍ୱରେ ବୃକ୍ଷ ଉପାସନା ବହୁ ପ୍ରାଚୀନ ଏବଂ ସେହି ଉପାସନାର ରୂପାନ୍ତରିତ ରୂପ ଦାରୁ ବିଗ୍ରହ ଶ୍ରୀଜଗନ୍ନାଥ ଏଥିରେ ସନ୍ଦେହ ନାହିଁ । ଏହି କାରଣରୁ ବିଶ୍ୱବାସୀଙ୍କ ଚେତନାରେ ଶ୍ରୀଜଗନ୍ନାଥ ଗ୍ରହଣୀୟ ଓ ଆରାଧ୍ୟ ହେବା ସ୍ୱାଭାବିକ ।





ତୃତୀୟରେ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ବିଶ୍ୱ ସମୁଦାୟ ଅଧିବାସୀଙ୍କ ଶରୀର ବର୍ଣ୍ଣର ପ୍ରତିନିଧିତ୍ୱ କରୁଅଛନ୍ତି । ନାମ କରଣରେ ମଧ୍ୟ ଜଗତର ନାଥ ଜଗନ୍ନାଥ । ବଳଯୁକ୍ତ ଏବଂ ଭଦ୍ରତାର ପ୍ରତିଭୂ ବଳଭଦ୍ର, ଉତ୍ତମ ଭଦ୍ରା ଦେବୀ ସୁଭଦ୍ରା ଓ ଉତ୍ତମ ଦର୍ଶନର ପ୍ରତୀକ ସୁଦର୍ଶନ । ଶ୍ରୀଜଗନ୍ନାଥଙ୍କ ବ୍ୟତୀତ ପୃଥିବୀର ଅନ୍ୟ କୌଣସି ଆରାଧ୍ୟଙ୍କଠାରେ ଏହିଭଳି ସାର୍ବଜନୀନ ଆବେଦନ ଦୃଷ୍ଟିଗୋଚର ହୁଏ ନାହିଁ । ସୁତରାଂ ଶ୍ରୀଜଗନ୍ନାଥ ନାମ କରଣରେ, ଲିଙ୍ଗ ପରିକଳ୍ପନାରେ ଓ ବର୍ଣ୍ଣ ବିନ୍ୟାସରେ ବିଶ୍ୱମାନବର ପ୍ରତିନିଧିତ୍ୱ କରୁଛନ୍ତି । ଏହି ଦୃଷ୍ଟିରୁ ବିଶ୍ୱର ଯେକୌଣସି ସ୍ଥାନର ମଣିଷ ନିଜକୁ ଜଗନ୍ନାଥଙ୍କଠାରେ ଆବିଷ୍କାର କରିବା ସ୍ୱାଭାବିକ ।

ଚତୁର୍ଥରେ, ଜଗନ୍ନାଥ ସଂସ୍କୃତିରେ ସାମ୍ୟ, ମୈତ୍ରୀ, ସ୍ୱାଧୀନତା, ଭ୍ରାତୃଭାବ, ଅମାୟିକତା ଓ ସମଦର୍ଶୀଭାବ ପ୍ରଭୃତି ଗୁଣାବଳୀ ପ୍ରକାଶିତ । ଏ ସମସ୍ତ ଗୁଣ ସାର୍ବଜନୀନ ଏବଂ ସର୍ବକାଳୀନ । ଦିବ୍ୟ ମାନବ ସମାଜ ଗଠନରେ ଏହି ଗୁଣ ଅପରିହାର୍ଯ୍ୟ । ଜଗନ୍ନାଥଙ୍କ ମହାପ୍ରସାଦ ସେବନରେ ଓ ଶ୍ରୀଗୁଣ୍ଡିଚା ଯାତ୍ରା ସମୟରେ ଜାତି, ଧର୍ମ, ବର୍ଣ୍ଣ ସଂପ୍ରଦାୟର ବାଛ ବିଚାର ନଥାଏ । ଏଥିରେ ସାମ୍ୟବାଦ ପ୍ରକାଶିତ । ତାଙ୍କର ମନ୍ଦିରରେ ଉଡୁଥିବା ପତାକା ପତିତପାବନ ବାନା ଅହରହ ସାମ୍ୟବାଦର ଉଦ୍‌ଘୋଷଣା କରିଥାଏ । ତାଙ୍କର ନାମ କରଣରେ ମୈତ୍ରୀଭାବନା ପରିପୁଷ୍ଟ । ସେ ନିଜେ ମୈତ୍ରୀଦେବ । ସବୁଧର୍ମ, ସବୁ ସମ୍ପ୍ରଦାୟ, ସବୁ ମତବାଦକୁ ସେ ଗ୍ରହଣ କରି ନେଇଛନ୍ତି । ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ସୌର ପ୍ରଭୃତି ସମ୍ପ୍ରଦାୟର ସେ ଆରାଧ୍ୟ । ସେ ସବୁଧର୍ମର ଇଷ୍ଟଦେବତାରେ ପରିଣତ ହୋଇଛନ୍ତି । ଜଗବନ୍ଧୁ ନାମରେ ସେ ସର୍ବତ୍ର ପରିଚିତ । ତାଙ୍କର ସେବାରେ ବ୍ରାହ୍ମଣ, ଶବର, ଦ୍ରାବିଡ଼, ତାନ୍ତ୍ରିକ ସମସ୍ତେ ନିୟୋଜିତ । ଜଣକ ସେବାରେ ଏ ସମସ୍ତ ସମ୍ପ୍ରଦାୟଙ୍କ ସଂପୃକ୍ତି ମୈତ୍ରୀ ଭାବନା ବିନା ଅନ୍ୟକିଛି ନୁହଁ । ବ୍ୟକ୍ତି ସ୍ୱାଧୀନତା ଦୃଷ୍ଟିରୁ ଶ୍ରୀମନ୍ଦିର ମଧ୍ୟରେ ମନୁଷ୍ୟର ସ୍ୱାଧୀନତା ଅନସ୍ୱୀକାର୍ଯ୍ୟ । ମନ ପୁରାଇ ନିଜ ଦେବତାଙ୍କୁ ଦର୍ଶନ କରିବା, ନିକଟକୁ ଯାଇ ଗୁହାରି ଜଣାଇବା ଓ ପ୍ରସାଦ ସେବନ କରିବାର ସ୍ୱାଧୀନତା ଅନ୍ୟ କୌଣସି ଦେବମନ୍ଦିରରେ ମିଳିନଥାଏ । ଭ୍ରାତୃ ଭାବନା ଉପରେ ତାଙ୍କର ପ୍ରତିଷ୍ଠା । ସିଂହାସନ ରୂଢ଼ ଜଗନ୍ନାଥ, ସୁଭଦ୍ରା, ବଳଭଦ୍ର ପରସ୍ପର ଭାଇଭଉଣୀ । ଭାଇଭଉଣୀ ଏକତ୍ର ପୂଜା ପାଇବା ଏକ ଅନନ୍ୟ ସାଧାରଣ ଘଟଣା । ବିଶ୍ୱରେ ଭ୍ରାତୃଭାବ ପ୍ରତିଷ୍ଠାର ଏହା ଜ୍ୱଳନ୍ତ ଉଦାହରଣ । ରତ୍ନସିଂହାସନର ସେ ମଉଡ଼ମଣି । ତେତ୍ରିଶ କୋଟି ଦେବଦେବୀଙ୍କ ପୂଜ୍ୟ । ରାଜାଧି-ରାଜ ପୁରୁଷୋତ୍ତମ ହେଲେ ହେଁ ବର୍ଷକରେ ଥରେ ବିଶ୍ୱଜନ ସମୁଦାୟ ସହିତ ମିଶିଯିବା ପାଇଁ ସେ ବଡ଼ଦାଣ୍ଡକୁ ଓହ୍ଲାଇ ଆସନ୍ତି । ଜନସାଧାରଣ ତାଙ୍କୁ କୋଳାଗ୍ରତ କରନ୍ତି ଏବଂ ତାଙ୍କର ସାନ୍ନିଧ୍ୟ ଲାଭ କରିଥାନ୍ତି । ନବଦିନ ଯାତ୍ରାକାଳରେ ମାଉସୀମାଠାରୁ ପୋଡ଼ପିଠା ଗ୍ରହଣ କରିବା ଇତ୍ୟାଦି ନିରହଂକାରୀତାର ପରିଚୟ ଦେଇଥାଏ ।

କିମ୍ବଦନ୍ତୀ ଅନୁସାରେ, ଇନ୍ଦ୍ରଦ୍ୟୁମ୍ନ ଦେଉଳ ତୋଳାଇ ଜଗନ୍ନାଥ ପ୍ରତିଷ୍ଠା କଲାପରେ ପ୍ରଭୁ ପ୍ରସନ୍ନ ହୋଇ ବର ଯାଚିଥିଲେ । ଇନ୍ଦ୍ରଦ୍ୟୁମ୍ନ ନିର୍ବଂଶ ହେବାକୁ ବର ମାଗିବାରୁ ଜଗନ୍ନାଥ ନିଜେ ପୁତ୍ର ସ୍ୱରୂପ ହୋଇ ଓଡ଼ିଆ ଲୋକାଚାର ଅନୁସାରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଶ୍ରାଦ୍ଧ ପ୍ରଦାନ କରିଆସୁଛନ୍ତି । ମାର୍ଗଶିର କୃଷ୍ଣ ଅମାବାସ୍ୟା ପୂର୍ବଦିନ ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରଭୁ ନିଜେ ପୁତ୍ର ଭଳି ପିଣ୍ଡ ଦାନ ଓ ଦୀପଦାନ କରିଥାନ୍ତି । ଏସବୁର ଊର୍ଦ୍ଧ୍ୱରେ ଯେଉଁ ଚେତନା ଯୋଗୁଁ ଜଗନ୍ନାଥ ବିଶ୍ୱ ସମୁଦାୟର ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇଛନ୍ତି ତାହା ହେଉଛି 'ବସୁଧୈବ କୁଟୁମ୍ବକମ୍' ଅର୍ଥାତ୍ ସମଗ୍ର ବିଶ୍ୱକୁ ଗୋଟିଏ ପରିବାରଭୁକ୍ତ କରିବା । ବିଶ୍ୱର ସବୁ ଧର୍ମଗ୍ରନ୍ଥର ସାର ନିର୍ଯ୍ୟାସ ଜଗନ୍ନାଥ ସଂସ୍କୃତିରେ ପ୍ରତିଫଳିତ ହୋଇଥିବାରୁ ବିଶ୍ୱମାନବ ସମାଜର ସମସ୍ତ ଜିଜ୍ଞାସାର ସମାଧାନ ଜଗନ୍ନାଥ ସଂସ୍କୃତିରେ ରହିଅଛି । ତାଙ୍କର ଉପାସନା, ରୀତି-ନୀତି, ବେଶଭୂଷା, ଖାଦ୍ୟପେୟ, ପର୍ବପର୍ବାଣୀ ଓ ପରମ୍ପରା ଅନୁଧ୍ୟାନ କଲେ ଦେଖାଯାଏ ଯେ କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟ ନୀତିନିୟମରେ ସେ ଆବଦ୍ଧ ନୁହନ୍ତି କି କୌଣସି ଆଞ୍ଚଳିକ ସଂକୀର୍ଣ୍ଣତା ମଧ୍ୟରେ ନାହାନ୍ତି ବରଂ ଏସବୁର ଊର୍ଦ୍ଧ୍ୱରେ ରହି ଏକ ସାଂସ୍କୃତିକ ଦେବତା ଭାବରେ ସମସ୍ତଙ୍କର ଆରାଧ୍ୟ ଓ ଇଷ୍ଟ ହୋଇପାରିଛନ୍ତି । ସେ ସତେ ଯେପରି ବିଶ୍ୱମାନବ ଇତିହାସର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସଂସ୍କୃତିର ସେତୁ । ସାଂସ୍କୃତିକ ବିଶ୍ୱରେ ସେ ଜାଜ୍ୱଲ୍ୟମାନ ଅଖଣ୍ଡ ଜ୍ୟୋତି । ନାମ କରଣରେ ଯେଭଳି ବିଶ୍ୱ ପ୍ରଭୁତ୍ୱର ଦ୍ୟୋତନା, ସଂସ୍କୃତିରେ ମଧ୍ୟ ବିଶ୍ୱ ସମୁଦାୟର ଅଭିବୃଦ୍ଧି, ପ୍ରଗତି, ଶାନ୍ତି, ମୈତ୍ରୀ, ଉଦାରତା ପ୍ରତିଫଳିତ । ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ ଜାତିସଂଘରେ ଭିନ୍ନଭିନ୍ନ ପଦକ୍ଷେପ ନିଆଯାଇ ଧର୍ମନିରପେକ୍ଷତା ଓ ଜାତୀୟ ସଂହତି ପ୍ରତିଷ୍ଠା ହେବାକୁ ଉଦ୍ୟମ ଜାରି ରହିଥିବାବେଳେ କେଉଁ ସ୍ମରଣାତୀତ କାଳରୁ ଜଗନ୍ନାଥ ସଂସ୍କୃତିରେ ତାହା ପ୍ରକାଶିତ ହୋଇଅଛି । ଏଥିପାଇଁ ଜଗନ୍ନାଥ ସଂସ୍କୃତି ଆଜି ସର୍ବଗ୍ରାହ୍ୟ ଲୋକପ୍ରିୟ ହୋଇପାରିଛି । ପରମାଣୁ ଯୁଗ ବିଶ୍ୱରେ ଶାନ୍ତି ମୈତ୍ରୀ, ସଂହତି, ନିରହଂକାରିତା ପ୍ରସାର କରି ବିଶ୍ୱକୁ ଏକ କୁଟୁମ୍ବରେ ପରିଣତ କରିବା କେବଳ ଜଗନ୍ନାଥ ସଂସ୍କୃତି ହିଁ ପ୍ରଦାନ କରିପାରିଛି ।

ପଞ୍ଚମତଃ, ଶ୍ରୀଜଗନ୍ନାଥଙ୍କର ଦୈନିକ ରୀତିନୀତି, ସେବାପୂଜା ଦେଖିଲେ ଜଣାଯାଏ ଯେ ଏକ ମାନବୀୟ ଚାଲିଚଳଣ ମଧ୍ୟରେ ସେ ଅନୁବନ୍ଧିତ । ପ୍ରାତଃ ସମୟରେ ମଙ୍ଗଳା ଆଳତୀଠାରୁ ପହଡ଼ ପର୍ଯ୍ୟନ୍ତ ଦୈନନ୍ଦିନ ମନୁଷ୍ୟ ଜୀବନଚର୍ଯ୍ୟା ଅନୁସାରେ ସେ ପରିଚାଳିତ । ଶଯ୍ୟାତ୍ୟାଗ ପରେ ମଙ୍ଗଳ ଆଳତୀ, ବେଶ ଉଲାଗି, ସ୍ନାନବସ୍ତ୍ର ପରିଧାନ, ମୁଖ ପ୍ରକ୍ଷାଳନ, ଦନ୍ତମାର୍ଜନ, ସ୍ନାନ, ସର୍ବସାଧାରଣ ଦର୍ଶନ, ପ୍ରାତଃ ଜଳଖିଆ ଗ୍ରହଣ, ପ୍ରଥମ ଭୋଜନ, ଦ୍ୱିତୀୟ ଭୋଜନ, ବିଶ୍ରାମ, ସନ୍ଧ୍ୟା ଆଳତୀ, ରାତ୍ର ଭୋଜନ ଓ ଶୟନ ଇତ୍ୟାଦି ନୀତିରେ ମାନବୀୟ ଦୈନନ୍ଦିନ ଜୀବନଚର୍ଯ୍ୟା ପ୍ରତିଫଳିତ । ତା'ସହିତ ରୋଗ ବୈରାଗ୍ୟ ଗ୍ରସ୍ତ । ଚିକିତ୍ସା ସେବା ତଥା ଔଷଧ ଗ୍ରହଣ କରି ଆରୋଗ୍ୟ ଲାଭ କରିବା, ଆରୋଗ୍ୟ ପରେ ମନରେ ପ୍ରଫୁଲ୍ଲତା ଆଣିବାକୁ ପରିଭ୍ରମଣରେ





ଯିବା, ବିଭିନ୍ନ ଋତୁ ଅନୁଯାୟୀ ବସ୍ତ୍ର ପରିଧାନ କରିବା ଯଥା ଶୀତଦିନେ ଘୋଡ଼ବସ୍ତ୍ର ଏବଂ ଗ୍ରୀଷ୍ମ ଋତୁରେ ଝୀନବସ୍ତ୍ର ପରିଧାନ । ଏହା ସହିତ ଜନ୍ମଦିନ ପାଳନ କରିବା, ଭିନ୍ନ ଭିନ୍ନ ପର୍ବପର୍ବାଣି ମେଳା ମହୋତ୍ସବ ଅନୁଷ୍ଠାନ ଉପଭୋଗ କରିବା, ସ୍ତ୍ରୀ ସହିତ ପଶାଖେଳ, ରୁକ୍ମଣୀ ବିବାହ ଇତ୍ୟାଦି ସମସ୍ତ ରୀତିନୀତିରେ ମାନବୀୟ ଆଚରଣ ପରିଦୃଷ୍ଟ । ମନୁଷ୍ୟଭଳି ଜନ୍ମମୃତ୍ୟୁ, ଜରାବ୍ୟାଧିରୁ ମୁକ୍ତ ନହୋଇ ବାରବର୍ଷରେ ଥରେ ପୁରାତନ ଶରୀର ପରିତ୍ୟାଗ କରି ନବକଳେବର ଧାରଣ କରିଥାନ୍ତି । ଏହି ସବୁଥିରେ ମାନବାତ୍ମାର ମୂର୍ଚ୍ଛନା ପ୍ରକଟିତ । ଷଷ୍ଠତଃ ଶ୍ରୀଜଗନ୍ନାଥଙ୍କର ମୂର୍ତ୍ତି ପରିକଳ୍ପନା ଏକ ଅପୂର୍ବ ବ୍ୟତିକ୍ରମ । ଅଦ୍‌ଭୂତ ତାଙ୍କର ଅଭିବ୍ୟକ୍ତି । ଅସଂପୂର୍ଣ୍ଣ ମୂର୍ତ୍ତି । ସେହି ମୂର୍ତ୍ତିରେ ଶରୀରର ସମସ୍ତ ଅବୟବ ଅଭାବ । କେବଳ ଅବୟବ କହିଲେ ଉର୍ଦ୍ଧ୍ୱଭାଗର ମୁଖ ମଧ୍ୟରେ ଆକର୍ଷଣୀୟ ଦୁଇଟି ଗୋଲାକୃତି ପଲକ ଓ ଭ୍ରୁଲତା ବିହୀନ ଚକ୍ଷୁର ଆଭାସ । ଅଧରରେ ରକ୍ତିମ ଆଉ ନାସିକା ସ୍ଥାନରେ ଏକ ସ୍ଫୀତ ଅଂଶ । କର୍ଣ୍ଣ ହୀନ ମୁଖମଣ୍ଡଳ । ନିମ୍ନଭାଗରେ ଉଦରାକୃତି ଗୋଲାକାର ଅଂଶ । ପାଦ, ବକ୍ଷ, ଗ୍ରୀବା ହୀନ ଶରୀର । ଅଙ୍ଗୁଳି ବିହୀନ ଦୁଇଟି ବିଶାଳ ବାହୁ ଅଗ୍ରଭାଗକୁ ପ୍ରସାରିତ । ତାଙ୍କୁ କୌଣସି ଶିଳ୍ପୀ ଆକୃତିର ପରିସୀମା ମଧ୍ୟରେ ନିର୍ଦ୍ଦିଷ୍ଟ ଆକାରରେ ବର୍ଣ୍ଣନା କରିବାକୁ ଅକ୍ଷମତା ପ୍ରକାଶ କରେ । ଉର୍ଦ୍ଧ୍ୱଭାଗ କୃଷ୍ଣବର୍ଣ୍ଣ, ନିମ୍ନ ଅଂଶ ଶୁକ୍ଳବର୍ଣ୍ଣ, ଦୁଇଟି ବିରୋଧାତ୍ମକ ବର୍ଣ୍ଣରେ ସେ ପ୍ରକାଶିତ । ତତ୍ତ୍ୱ ଦୃଷ୍ଟିରୁ ଚିନ୍ତାକଲେ, ଗୋଟିଏ ବିନ୍ଦୁ ଉପରେ ହିଁ ଇନ୍ଦୁଟିର ପ୍ରକାଶିତ ରୂପ ବୋଲି କହିହେବ । ଅନ୍ୟ ଅର୍ଥରେ ଅର୍ଦ୍ଧମାତ୍ରା ଓ ବିନ୍ଦୁର ପ୍ରତୀକାତ୍ମକ ପରିପ୍ରକାଶ ମାତ୍ର । ସାଧାରଣ ଆଖିକୁ ଅସଂପୂର୍ଣ୍ଣ ଦେଖାଯାଉଥିଲେ ହେଁ ଏହି ଅସଂପୂର୍ଣ୍ଣତା ମଧ୍ୟରେ ପୂର୍ଣ୍ଣତାର ବ୍ୟଞ୍ଜନା ପ୍ରତିଭାତ । ସାଧାରଣ ଦୃଷ୍ଟିରେ କମନୀୟ ନ ହେଲେ ହେଁ ତାଙ୍କର ସେହି ରୂପ ଯେ ଆକର୍ଷଣୀୟ ଏଥିରେ ଦ୍ୱିମତ ନାହିଁ । ଏହିଭଳି ଏକ ବିଶ୍ୱ ବିସ୍ମୟ ମୂର୍ତ୍ତି ପୃଥିବୀର ସବୁଧର୍ମର ସଙ୍କେତ ବହନ କରି ପ୍ରତିଭାତ ହୋଇଛି । ଏଇଥିପାଇଁ ଯେଉଁ ଧର୍ମାବଲମ୍ବୀ ଜଗନ୍ନାଥଙ୍କୁ ଦେଖିଛି ତାଙ୍କ ରୂପରେ ନିଜର ଇଷ୍ଟଙ୍କୁ ଆବିଷ୍କାର କରି ଭାବବିହ୍ୱଳ ହୋଇପଡ଼ିଛି ।

ସପ୍ତମରେ, ଜଗନ୍ନାଥଙ୍କର ସେବାସଂସ୍ଥା ଏକ ଗଣତାନ୍ତ୍ରିକ ଶାସନରେ ପରିଚାଳିତ । ତାଙ୍କର ସେବାନୀତିରେ ଛତିଶା ନିଯୋଗ ସଂଯୋଜିତ, ଯାହାର ମୁଖ୍ୟ ଗଜପତି ମହାରାଜା । ମନ୍ଦିର ପରିଚାଳନା ଓ ସେବା ପୂଜାର ନୀତି ନିର୍ଦ୍ଧାରଣ ଦାୟିତ୍ୱ ମୁକ୍ତିମଣ୍ଡପର ପଣ୍ଡିତମାନେ କରିଥାନ୍ତି । ମନ୍ଦିରର ପରିଚାଳନା ଦାୟିତ୍ୱରେ ଥିବା ସଭ୍ୟମାନଙ୍କ ଦ୍ୱାରା ଏହିସବୁ କାର୍ଯ୍ୟ ଶୃଙ୍ଖଳିତ ଭାବରେ କରିବାକୁ ଦାୟିତ୍ୱ ଅର୍ପଣ କରାଯାଇଛି । ଏଥିରୁ ଜଗନ୍ନାଥ ସଂସ୍କୃତିରେ ଗଣତାନ୍ତ୍ରିକ ବିଧି ବ୍ୟବସ୍ଥା ପ୍ରଚଳନ ସ୍ପଷ୍ଟ ପ୍ରମାଣ ମିଳେ । ମନ୍ଦିରର ସେବାପୂଜାରେ ନିୟୋଜିତ ସବୁ ସଂପ୍ରଦାୟର ସେବକମାନଙ୍କର କାର୍ଯ୍ୟ ପ୍ରଣାଳୀକୁ ଅନୁଧ୍ୟାନ କଲେ ଦେଖାଯାଏ ଯେ, ଶ୍ରମର ବିଭାଗୀକରଣ ଅନୁସାରେ କାର୍ଯ୍ୟ ପରିଚାଳିତ । ଜଣଙ୍କର କାର୍ଯ୍ୟ ଅନ୍ୟ ଜଣଙ୍କ କାର୍ଯ୍ୟକୁ ପ୍ରେରଣା ଦେଇଥାଏ । ଛୋଟ ବଡ଼ ସବୁ ସେବା ସମାନ ଓ ପ୍ରତ୍ୟେକ ସେବାରେ ଗୁରୁତ୍ୱ ରହିଅଛି । କାହାରି ସେବାକୁ ହେୟ ମନେ କରାଯାଇନାହିଁ । ପ୍ରତ୍ୟେକ ପ୍ରତ୍ୟେକଙ୍କ ଉପରେ ନିର୍ଭରଶୀଳ । ଏହି ବିଧି ସ୍ୱାୟତ୍ତଶାସନର ପ୍ରମାଣ ଦେଇଥାଏ । ତାଙ୍କର ମହାନପର୍ବ ଶ୍ରୀଗୁଣ୍ଡିଚା ଯାତ୍ରାରେ ଧନୀ, ଦରିଦ୍ର, ଜାତି, ଧର୍ମ ନିର୍ବିଶେଷରେ ସମସ୍ତେ ଏକ ହୋଇ ରଥକୁ ଟାଣିନେବା ପାଇଁ ସହଯୋଗ କରିବା ଏକ ଗଣତାନ୍ତ୍ରିକ ପ୍ରକ୍ରିୟା । ଏହି ରଥଯାତ୍ରାରେ ମନୁଷ୍ୟ ମନରୁ ଆତ୍ମଗ୍ଲାନି, ହୀନମନ୍ୟତା ଓ ଅସୂୟା ଭାବ ଦୂରୀଭୂତ ହୋଇ ବିଶ୍ୱ ଭ୍ରାତୃତ୍ୱ ବୋଧ ସୃଷ୍ଟି କରିଥାଏ । ସାଂପ୍ରତିକ ବସ୍ତୁବାଦୀ ବିଶ୍ୱରେ ଶାନ୍ତିର ଅନ୍ୱେଷଣ ଏବଂ ପ୍ରାପ୍ତି କେବଳ ଜଗନ୍ନାଥ ସଂସ୍କୃତିରେ ହିଁ ଦୃଷ୍ଟିଗୋଚର ହୋଇଥାଏ । ଏଥିପାଇଁ ପୃଥିବୀର ବହୁ ଦେଶରେ ଜଗନ୍ନାଥ ମନ୍ଦିର ନିର୍ମାଣ ହେବା ସଂଗେସଂଗେ ରଥଯାତ୍ରା ଅନୁଷ୍ଠିତ ହେଉଅଛି । ଦିନକୁ ଦିନ ବିଶ୍ୱବାସୀଙ୍କ ଦୃଷ୍ଟି ଜଗନ୍ନାଥ ସଂସ୍କୃତି ଆଡ଼କୁ ପ୍ରସାରିତ ହେବା ଓ ଜଗନ୍ନାଥଙ୍କୁ ଆପଣେଇ ସେହି ସଂସ୍କୃତିରେ ନିଜ ଜୀବନକୁ ପରିଚାଳିତ କରିବା ପାଇଁ ବ୍ୟଗ୍ରତା ପ୍ରକାଶ କରିବା ସ୍ୱାଭାବିକ । ଧାର୍ମିକ ଦୃଷ୍ଟିରୁ ବିଚାର କଲେ ବିଶ୍ୱର ସବୁଧର୍ମର ଚରମ ଲକ୍ଷ୍ୟ ଯଦି ମୋକ୍ଷ ହୋଇଥାଏ ତେବେ ଜଗନ୍ନାଥ ହିଁ ସେହି ମୋକ୍ଷର ଚରମ ଉତ୍ସ ।

ଉପସଂହାରରେ ଏତିକି କୁହାଯାଇପାରେ ଯେ, ଜଗନ୍ନାଥ ସଂସ୍କୃତିର ମୌଳିକ ନିର୍ଯ୍ୟାସ ବିଶ୍ୱ ସମୁଦାୟ ସଂସ୍କୃତିରେ ପ୍ରତିଫଳିତ । ପରମ୍ପରା ବିଶ୍ୱାସ, ଚିନ୍ତାଚେତନା, ଜ୍ଞାନବିଜ୍ଞାନ, ବିଚାର ବିମର୍ଷ, ଧର୍ମ, ମୋକ୍ଷ ଆଦି ସକଳ ସାଧନାକୁ ଆଧାର କରି ସମୃଦ୍ଧିଲାଭ କରିଅଛି । ମୂର୍ତ୍ତି କଳ୍ପନାରେ ବିଭିନ୍ନ ଧର୍ମର ସଙ୍କେତ ଯେଉଭଳି ପ୍ରକାଶିତ, ଏହି ସଂସ୍କୃତିରେ ଥିବା ତ୍ୟାଗ, ଅହିଂସା, ଏକତା, ସହିଷ୍ଣୁତା ଇତ୍ୟାଦି ଅତି ମାନବୀୟ ଗୁଣରେ ଋଦ୍ଧିମନ୍ତ । ବହୁଘାତ ପ୍ରତିଘାତ ଅତିକ୍ରମ କରି କେଉଁ ଅବିସ୍ମରଣୀୟ କାଳରୁ ଏହି ସଂସ୍କୃତି ଆଜି ପର୍ଯ୍ୟନ୍ତ ରହି ଆସିଅଛି ଓ ଚିରଦିନ ରହିଥିବ । ପ୍ରଜ୍ଞାଶୀଳ ଜନ ଜୀବନର ମୂଲ୍ୟବୋଧଭିତ୍ତିକ ବିକାଶୋନ୍ମୁଖୀ ସୃଜନାତ୍ମକ ଆଦର୍ଶ ଏଥିରେ ପ୍ରକଟିତ । ଏହାର ଭାବଧାରା ମୈତ୍ରୀ ଚେତନା, ଉଦାରତା, ବିଶ୍ୱଭ୍ରାତୃତ୍ୱ ଭାବ, ମହାମାନବିକ ଐକ୍ୟ, ସମନ୍ୱୟବାଦ, ଜାତୀୟ ସଂହତି, ସୁସ୍ଥ ସାମାଜିକ ପରମ୍ପରା ସହିତ ଆଦର୍ଶ ମାନବିକତାର ସ୍ୱାକ୍ଷର ବହନ କରିଅଛି । ଏହି ସଂସ୍କୃତି ମାନବ ସମାଜର ଶ୍ରୀବୃଦ୍ଧି କରିବା ସଂଗେସଂଗେ ମନୁଷ୍ୟକୁ ଅତିମାନବରେ ରୂପାନ୍ତରିତ କରିବାକୁ ପ୍ରେରଣା ଯୋଗାଇଥାଏ । ଜଗନ୍ନାଥ ଆଜି ଗଣଦେବତା ରୂପେ ପ୍ରତିଷ୍ଠିତ । ବିଶ୍ୱ ସମୁଦାୟର ମାନସିକତାରେ ଜଗନ୍ନାଥ ସଂସ୍କୃତି ହିଁ ଏକମାତ୍ର ସଂସ୍କୃତି ଯାହାଦ୍ୱାରା ମନୁଷ୍ୟର ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ଅଭିବୃଦ୍ଧି ସାଧିତ ହୋଇପାରିବ । ଜଗନ୍ନାଥ ହିଁ ଆଦର୍ଶ ବିଶ୍ୱମାନବୀୟ ଚେତନାର ପ୍ରତିଭୂ ।

ପ୍ରାଧ୍ୟାପକ
ସ୍ନାତକୋତ୍ତର ଓଡ଼ିଆ ଭାଷା-ସାହିତ୍ୟ ବିଭାଗ
ସାମନ୍ତଚନ୍ଦ୍ରଶେଖର ମହାବିଦ୍ୟାଳୟ (ସ୍ୱୟଂଶାସିତ), ପୁରୀ






# ଓଡ୍ରରେ ବୌଦ୍ଧ ଧର୍ମ

ଡକ୍ଟର ହରିହର କାନୁନ୍‌ଗୋ



**ହ**ର୍ଷବର୍ଦ୍ଧନ ଓଡ୍ର, କଙ୍ଗୋଦ ଓ ତା' ପରବର୍ତ୍ତୀ ଅବସ୍ଥାରେ ଉତ୍ତର ତୋଷାଳୀ ବା ଉତ୍କଳ ଇତ୍ୟାଦି ଅଞ୍ଚଳମାନ ନିଜ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ କରିସାରିବା ପରେ ତାଙ୍କର ବନ୍ଧୁ ହୁଏନ୍‌ସାଂ ଖ୍ରୀଷ୍ଟୀୟ ୬୩୯ରେ ଓଡ୍ରଦେଶ ଭ୍ରମଣରେ ଆସିଥିଲେ ।[୧] ହୁଏନ୍‌ସାଂଙ୍କର ଓଡ଼ିଶା ପରିଭ୍ରମଣ ବେଳେ କଙ୍ଗୋଦ ଓ କଳିଙ୍ଗରେ ବୌଦ୍ଧ ଧର୍ମର ପ୍ରଭାବ ବିଶେଷ ଭାବରେ ହ୍ରାସ ପାଇଥିଲା । ମାତ୍ର ଓଡ୍ର ଦେଶରେ ତାହା ଅତି ଉଜ୍ଜ୍ୱଳ ଭାବରେ ପ୍ରକାଶିତ ହେଉଥିଲା ବୋଲି ଡକ୍ଟର ନବୀନ କୁମାର ସାହୁ ମତପ୍ରଦାନ କରିଅଛନ୍ତି ।[୨] ହୁଏନ୍‌ସାଂ ତାଙ୍କର ଭ୍ରମଣ ବୃତ୍ତାନ୍ତରେ ଓଡ୍ରଦେଶର ଦକ୍ଷିଣ ପଶ୍ଚିମ ସୀମାରେ ପୋ-ଷେ-ପୋ-କି-ଲି (ପୁଷ୍ପଗିରି) ସଂଘାରାମ ଥିବା କଥା ଉଲ୍ଲେଖ କରିଅଛନ୍ତି ବୋଲି ଡକ୍ଟର ସାହୁ ଦର୍ଶାଇଛନ୍ତି ।[୩] ଏହି ପୋ-ଷେ-ପୋ-କି-ଲି (ପୁଷ୍ପଗିରି) ପାର୍ବତ୍ୟ ଅଞ୍ଚଳଟି ଫୁଲବାଣୀ ଓ ଘୁମୁସର ଅଞ୍ଚଳରେ ରହିଥିବାର ସମ୍ଭାବନାକୁ ଡକ୍ଟର ସାହୁ ଅନୁମାନ କରିଅଛନ୍ତି ।[୪] ମାତ୍ର ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଘୁମୁସର ଅଞ୍ଚଳଟି ଅତୀତର କୌଣସି ସମୟରେ ଓଡ୍ରଦେଶର ଅଂଶବିଶେଷ ନଥିଲା । ଇତିହାସରୁ ଜଣାଯାଏ ଯେ ଏହା କୌଣସି ଏକ ସମୟରେ କୋଶଳର ଅଂଶବିଶେଷ ହୋଇ ରହିଥିବାବେଳେ ଅନ୍ୟ କେତେକ ସମୟରେ କଙ୍ଗୋଦର ଅଂଶବିଶେଷ ହୋଇ ରହିଥିଲା । ସେହିପରି ଫୁଲବାଣୀ ଅଞ୍ଚଳଟି ଓଡ୍ରଦେଶର ଅଂଶବିଶେଷ ଥିବାର ସମ୍ଭାବନାକୁ ପୂର୍ବୋକ୍ତ ଆଲୋଚନାଗୁଡ଼ିକରେ ସ୍ୱୀକାର କରାଯାଇଥିଲେ ମଧ୍ୟ ବିଜୟଚନ୍ଦ୍ର ମଜୁମଦାର ପ୍ରାଚୀନ ଓଡ୍ରଦେଶର ସୀମା ନିର୍ଣ୍ଣୟ କରି କହିଅଛନ୍ତି ଯେ କେନ୍ଦୁଝରର ଦକ୍ଷିଣ ସୀମାଠାରୁ ଆରମ୍ଭ କରି ମହାନଦୀର ବାମତଟ ପର୍ଯ୍ୟନ୍ତ ଓଡ୍ରଦେଶର ପ୍ରାଚୀନ ଓ ପାରମ୍ପରିକ ସୀମା ପରିବ୍ୟାପ୍ତ ଥିଲା । ଏକଥା ମଧ୍ୟ ପୂର୍ବରୁ ଆଲୋଚନା କରାଯାଇଛି । ଏ ଦୃଷ୍ଟିରୁ ଓଡ୍ରଦେଶର ଦକ୍ଷିଣ ପଶ୍ଚିମ ସୀମାରେ ଅବସ୍ଥିତ ନନ୍ଦିନିଆଁ ପର୍ବତମାଳା ହୁଏନ୍‌ସାଂଙ୍କ ବର୍ଣ୍ଣିତ ପୋ-ଷେ-ପୋ-କି-ଲି ବା ପୁଷ୍ପଗିରି ହୋଇଥିବାର ସମ୍ଭାବନା ଅଧିକ । ସମ୍ଭବତଃ ହୁଏନ୍‌ସାଂ ଓଡ୍ରଦେଶର ଦକ୍ଷିଣ-ପଶ୍ଚିମ ସୀମାରେ ଅବସ୍ଥିତ ମହାନଦୀର ଜଳପଥ ଦେଇ ଦକ୍ଷିଣ କୋଶଳ ଯାତ୍ରା କଲାବେଳେ ନନ୍ଦିନିଆଁ ପର୍ବତମାଳା ମଧ୍ୟରେ ଅବସ୍ଥିତ ପୋ-ଷେ-ପୋ-କି-ଲି ବା ପୁଷ୍ପଗିରି ବିହାରଟି ଦୃଷ୍ଟି ଆକର୍ଷଣ କରିଥିଲେ । ଏହି ସ୍ଥାନଟି ବୌଦ-ଫୁଲବାଣୀ ସମେତ ଉପରବର୍ଣ୍ଣିତ ସମଗ୍ର ଓଡ୍ରଦେଶର ଦକ୍ଷିଣ-ପଶ୍ଚିମ ସୀମାନ୍ତବର୍ତ୍ତୀ ଅଞ୍ଚଳରେ ମହାନଦୀର ବାମତଟରେ ଅବସ୍ଥିତ । ମହାନଦୀର ବାମତଟରେ ଏହି ନନ୍ଦିନିଆଁ ପର୍ବତମାଳା ନରସିଂହପୁର, ଅନୁଗୋଳ ଓ ହିନ୍ଦୋଳ ରାଜ୍ୟମାନଙ୍କରେ ପରିବ୍ୟାପ୍ତ । ଘଞ୍ଚ ଅରଣ୍ୟାନୀ ପରିବେଷ୍ଟିତ ଏହି ପର୍ବତମାଳାର ଦ୍ରୁତ ଅବକ୍ଷୟ ଘଟି ସାରିଥିଲେ ହେଁ ଏହାର ବହୁ ଅଞ୍ଚଳ ଅଦ୍ୟାବଧି ଅଗମ୍ୟ ଓ ଦୁର୍ଭେଦ୍ୟ ହୋଇରହିଛି । ଏହା ଭିତରେ ରହୁଥିବା ଅନେକ ବହୁତଳ ଗୁମ୍ଫା ପ୍ରାଚୀନ କାଳରୁ ଅଧ୍ୟାବଧି ନାନା ସାଧୁ ଓ ସନ୍ନ୍ୟାସୀମାନଙ୍କର ଆଶ୍ରୟସ୍ଥଳୀ ହୋଇ ରହିଆସିଅଛି । ସେଥିପାଇଁ ଏହାକୁ ଦେବଭୂମି ବୋଲି ବର୍ଣ୍ଣନା କରାଯାଇଥାଏ ।[୫]

ଏହାର ଦୁର୍ଗମ ଅଞ୍ଚଳମାନଙ୍କରେ ଅବସ୍ଥିତ ଗୁମ୍ଫାଗୁଡ଼ିକ ସଂପର୍କରେ ଅନେକ ରହସ୍ୟପୂର୍ଣ୍ଣ କଥା ଲୋକମୁଖରେ ଶୁଣିବାକୁ ମିଳେ । ବହୁତଳ ବିଶିଷ୍ଟ ଗୁମ୍ଫା, ପ୍ରାକୃତିକ ଉଦ୍ୟାନ ଓ ଝରଣା ଏହି ନନ୍ଦିନିଆଁ ପର୍ବତମାଳାର ପ୍ରାକୃତିକ ଶୋଭା ବର୍ଦ୍ଧନ କରୁଛି । ସେଥିପାଇଁ ଏକ





ପର୍ଯ୍ୟଟନ କେନ୍ଦ୍ର ରୂପେ ସ୍ୱୀକୃତି ଦେଇ ସରକାର ଏହାର ପାଦଦେଶରେ ପର୍ଯ୍ୟଟକଙ୍କ ସୁବିଧା ନିମନ୍ତେ ଏକ ବଙ୍ଗଳା ନିର୍ମାଣ କରିଛନ୍ତି । ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ ଯେ ଏହି ପୁ-ଷେ-ପୋ-କି-ଲି (ପୁଷ୍ପଗିରି) ଏକ ମହାବିହାର ତଥା ଅଗ୍ରଗଣ୍ୟ ଶିକ୍ଷାକେନ୍ଦ୍ର ଥିଲା । ନନ୍ଦିନିଆଁ ପର୍ବତମାଳା ମଧ୍ୟରେ ଅବସ୍ଥିତ ବହୁତଳ ବିଶିଷ୍ଟ ଗୁମ୍ଫା ପ୍ରାକୃତିକ ଝରଣା ଓ ଉଦ୍ୟାନମାନ ସେଥିପାଇଁ ଏକ ପ୍ରକୃଷ୍ଟ ସ୍ଥାନ ଥିଲା । ନନ୍ଦିନିଆଁ ପର୍ବତମାଳାର ପାଦଦେଶର ଅନତି ଦୂରରେ ନରସିଂହପୁରର ବାଣେଶ୍ୱରନାସୀ ମହାନଦୀର ଗର୍ଭଦେଶରେ ଅବସ୍ଥିତ । ଏହି ବାଣେଶ୍ୱରନାସୀରେ ବୁଦ୍ଧ, ପ୍ରଜ୍ଞାପାରମିତା ଓ ପଦ୍ମପାଣି ଅବଲୋକିତେଶ୍ୱର ମୂର୍ତ୍ତିମାନ ଦେଖିବାକୁ ମିଳେ । ଅଦୂରବର୍ତ୍ତୀ ମହାନଦୀ କୂଳସ୍ଥ ନରାଜରେ ମଧ୍ୟ ଅନେକ ବୌଦ୍ଧ ଗୁମ୍ଫା ଓ ସ୍ଥାପତ୍ୟ ରହିଅଛି । ଏହା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଓ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ମଧ୍ୟରେ ଜନୈକ ବୌଦ୍ଧରାଜା ଚନ୍ଦ୍ରପାଳିତଙ୍କ ସମୟରେ ଖୋଦିତ ହୋଇଥିଲା ।[୬] ଅତୀତର କୌଣସି ଏକ ସମୟରେ ଏଠାରେ ବୌଦ୍ଧଧର୍ମର ପ୍ରଭାବ ରହିଥିଲା । ଏହି ମୂର୍ତ୍ତିଗୁଡ଼ିକ ସମ୍ଭବତଃ ନନ୍ଦିନିଆଁ ପର୍ବତମାଳାରେ ଅବସ୍ଥିତ ପୁଷ୍ପଗିରି ମହାବିହାରର ବୌଦ୍ଧ ସନ୍ନ୍ୟାସୀମାନଙ୍କର କଳାକୃତି ।

ପୁଷ୍ପଗିରି ସଂପର୍କରେ ଡକ୍ଟର ସାହୁ ଉଲ୍ଲେଖ କରିଛନ୍ତି, 'ଜନତା ଧର୍ମର ପ୍ରଧାନ ପୀଠ ରୂପେ ପ୍ରସିଦ୍ଧିଲାଭ କରିଥିଲା ଏହି ପୁଷ୍ପଗିରି । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରୁ ସପ୍ତମ ଶତାବ୍ଦୀଯାଏ ଭାରତର ଏକ ବିଶିଷ୍ଟ ବୌଦ୍ଧକ୍ଷେତ୍ର ରୂପେ ପୁଷ୍ପଗିରି ଖ୍ୟାତିଲାଭ କରିଥିବା ଜଣାଯାଏ । ତୃତୀୟ ଶତାବ୍ଦୀରେ ଉପାସିକା 'ବୋଧିଶ୍ରୀ' ନିଜ ପିତାମାତାଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ସେଠାରେ ଏକ 'ଶୈଳମଣ୍ଡପ' ନିର୍ମାଣ କରାଇଥିଲେ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନ୍‌ସାଂ ପୁଷ୍ପଗିରିକୁ ଆସି ସେଠାରେ ଥିବା ସ୍ତୂପ ଓ ଚୈତ୍ୟରେ ନାନା ଅଦ୍‌ଭୁତ ବ୍ୟାପାର ଘଟୁଥିବା ବର୍ଣ୍ଣନା ଲିପିବଦ୍ଧ କରିଛନ୍ତି । ପୁଷ୍ପଗିରିର ସ୍ତୂପ ଓ ଚୈତ୍ୟ ଏତେ ବିଶାଳ ଓ ସୁନ୍ଦର ଥିଲା ଯେ ହୁଏନ୍‌ସାଂ ସେଗୁଡ଼ିକ ମନୁଷ୍ୟ ସ୍ତରରେ ନିର୍ମିତ ହୋଇଥିବା କଥା ବିଶ୍ୱାସ କରିପାରି ନଥିଲେ । ସେହି ପୁଣ୍ୟକ୍ଷେତ୍ରର ମହିମାରେ ଆକୃଷ୍ଟ ହୋଇ ପର୍ବଦିନମାନଙ୍କରେ ସହସ୍ର ସହସ୍ର ବୌଦ୍ଧଭିକ୍ଷୁ ସେଠାକୁ ଆସି ବହୁ ସମ୍ଭାରରେ ସ୍ତୂପ ପୂଜା କରୁଥିଲେ । ପୁଷ୍ପଗିରି ବୌଦ୍ଧ କ୍ଷେତ୍ର ଥିଲା ହୀନଯାନ ବୌଦ୍ଧଧର୍ମର ପୀଠସ୍ଥଳୀ । ହୁଏନ୍‌ସାଂଙ୍କ ବିବରଣୀରୁ ସୂଚିତ ହୁଏ ଯେ ପୁଷ୍ପଗିରି ହୀନଯାନ ମହାଯାନ ନିର୍ବିଶେଷରେ ସମସ୍ତ ବୌଦ୍ଧ ଜନତାର ଆରାଧ୍ୟ ଓ ଉପାସ୍ୟ ଥିଲା ।'[୭] ଅର୍ଥାତ୍ ବୌଦ୍ଧଧର୍ମର ଦୁଇଟି ଶାଖା ହୀନଯାନ ଓ ମହାଯାନ ମଧ୍ୟରେ ଏକ ସମନ୍ୱୟ ରକ୍ଷାକାରୀ ଅନୁଷ୍ଠାନ ରୂପେ ଏହି ମହାବିହାରଟି କାର୍ଯ୍ୟ କରୁଥିଲା ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏ ସଂପର୍କରେ ଉଲ୍ଲେଖ କରିଛନ୍ତି - ''ପ୍ରଥମେ ବୌଦ୍ଧ ସଭ୍ୟତା ଓଡ଼ିଆକୁ ଦକ୍ଷିଣ କୋଶଳବାଟେ ଆସିଅଛି । ସମ୍ବଲପୁର, ବଲାଙ୍ଗିର ପାଟଣା, ସୋନପୁର, ବୌଦ ପ୍ରଭୃତି ଗଡ଼ଜାତ ବାଟେ ମହାନଦୀ କୂଳେ କୂଳେ ଅନେକ ବୌଦ୍ଧଭିକ୍ଷୁ ଓଡ଼ିଶାକୁ ଆସିଛନ୍ତି । ସେମାନେ ଯେଉଁସବୁ ବିହାର ନିର୍ମାଣ କରିଯାଇଛନ୍ତି, ସେସବୁ ପ୍ରାୟ ମହାନଦୀ କୂଳ ଓ ତା'ର ଅତି ନିକଟବର୍ତ୍ତୀ ଅଞ୍ଚଳରେ ଦେଖାଯାଏ ।[୮] ଆଲୋଚ୍ୟ ଏହି ନନ୍ଦିନିଆଁ ପର୍ବତମାଳା ଓ ତହିଁରେ ଅବସ୍ଥିତ ପୁଷ୍ପଗିରି ମହାବିହାରଟି ମହାନଦୀର ବାମତଟର ଅନତିଦୂରରେ ଅନୁଗୋଳ ଓ ନରସିଂହପୁର ମଧ୍ୟରେ ପରିବ୍ୟାପ୍ତ ହୋଇ ରହିଛି । ସମ୍ବଲପୁର ଓ ବଲାଙ୍ଗିର ପାଟଣା ଦକ୍ଷିଣ କୋଶଳର ଅନ୍ତର୍ଗତ । ବୌଦଠାରୁ ନରସିଂହପୁର ପର୍ଯ୍ୟନ୍ତ ମହାନଦୀର ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକ ଓଡ୍ରଦେଶରେ ଅବସ୍ଥିତ ଥିବାର ସମ୍ଭାବନା କଥା ପୂର୍ବରୁ ଆଲୋଚନା କରାଯାଇଛି । ଏହିସବୁ ଅଞ୍ଚଳରେ ଅଦ୍ୟାବଧି ଯେଉଁସବୁ ବୌଦ୍ଧ ସ୍ଥାପତ୍ୟର ଅବଶେଷାଂଶ ଆବିଷ୍କୃତ ହୋଇଛି ତାହା ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ଉପରୋକ୍ତ ଉକ୍ତିର ଯଥାର୍ଥତା ପ୍ରତିପାଦନ କରୁଅଛି । ଏ ସଂପର୍କରେ ବୌଦର ବୁଦ୍ଧଭୂମିସ୍ପର୍ଶ ମୁଦ୍ରା, ମୈତ୍ରେୟ ବୁଦ୍ଧ ଏବଂ ଲୋକେଶ୍ୱର ବୁଦ୍ଧମୂର୍ତ୍ତି ତଥା ନରସିଂହପୁରର ନନ୍ଦିନିଆଁ ପର୍ବତମାଳାର ଅନତି ଦୂରରେ ଅବସ୍ଥିତ ମହାନଦୀର ପୃଷ୍ଠଦେଶରେ ଥିବା ବାଣେଶ୍ୱରନାସୀର ବୁଦ୍ଧ, ପ୍ରଜ୍ଞାପାରମିତା ଓ ପଦ୍ମପାଣି ଅବଲୋକିତେଶ୍ୱର ମୂର୍ତ୍ତି ଏବଂ ନରାଜର ବୌଦ୍ଧ ଗୁମ୍ଫାମାନ ଆମ ଦୃଷ୍ଟି ଆକର୍ଷଣ କରେ । ଏହିସବୁ ସ୍ଥାନଗୁଡ଼ିକରେ ଥିବା ବୌଦ୍ଧ ଦେବଦେବୀ ମୂର୍ତ୍ତିମାନ ବର୍ତ୍ତମାନ ସିନ୍ଦୂରର ପ୍ରଲେପରେ ଆବରଣ କରାଯାଇ ହିନ୍ଦୁ ଦେବଦେବୀ ରୂପେ ପୂଜା କରାଯାଉଅଛି ।

ସୋମବଂଶୀମାନଙ୍କର ଆବିର୍ଭାବ ପୂର୍ବରୁ ବୌଦଠାରୁ ନରସିଂହପୁର ପର୍ଯ୍ୟନ୍ତ ମହାନଦୀର ଉଭୟ ତଟସ୍ଥ ଅଞ୍ଚଳମାନ ଖିଞ୍ଜଳିମଣ୍ଡଳର ଭଞ୍ଜରାଜାମାନଙ୍କ ଶାସନାଧୀନରେ ରହିଥିଲା ବୋଲି ପୂର୍ବରୁ ଆଲୋଚନା କରାଯାଇଅଛି । ଏହି ଭଞ୍ଜବଂଶୀୟ ପରବର୍ତ୍ତୀ କୌଣସି ଏକ ସମୟରେ ଏମାନେ ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲେ ଓ ସେମାନଙ୍କର ପୃଷ୍ଠପୋଷକତାରେ ଏହିସବୁ ଅଞ୍ଚଳରେ ବୌଦ୍ଧଧର୍ମର ପ୍ରଭାବ ବୃଦ୍ଧିପାଇ ପ୍ରତିଷ୍ଠା ଲାଭ କରିଥିଲା । ବୌଦ୍ଧଠାରୁ ନରସିଂହପୁର ପର୍ଯ୍ୟନ୍ତ ମହାନଦୀର ଉଭୟ ତଟସ୍ଥ ଘଞ୍ଚ ଅରଣ୍ୟାନୀ ମଧ୍ୟରେ ଅନେକ ଅଞ୍ଚଳ ଐତିହାସିକ ଗବେଷକମାନଙ୍କ ଦ୍ୱାରା ଅନାବିଷ୍କୃତ ହୋଇ ରହିଛି । ଉଦାହରଣ ସ୍ୱରୂପ ଦେଖିବାକୁ ମିଳେ ଯେ ମହାନଦୀ କୂଳରେ ଯେଉଁ ବିନିକେଇ ଠାକୁରାଣୀ ବର୍ତ୍ତମାନ ପୂଜା ପାଉଛନ୍ତି, ତାହାକୁ ନିରୀକ୍ଷଣ କରି ଦେଖିଲେ ତାହା ଯେ ବୌଦ୍ଧଧର୍ମର ଦେବଦେବୀ ସ୍ପଷ୍ଟ ଭାବରେ ଜଣାପଡ଼େ । ମାତ୍ର ତାହା ବର୍ତ୍ତମାନ ହିନ୍ଦୁଧର୍ମର ଦେବୀ ରୂପରେ ସେଠାରେ ପୂଜା ପାଉଛନ୍ତି । ବୌଦଠାରୁ ନରସିଂହପୁର ପର୍ଯ୍ୟନ୍ତ ମହାନଦୀର ଉଭୟ ତଟସ୍ଥ ଅଞ୍ଚଳମାନ ଘଞ୍ଚଅରଣ୍ୟାନୀ ଭେଦ କରି ଅନୁସନ୍ଧାନ କଲେ ଏହିପରି ଅନେକ ଦୃଷ୍ଟାନ୍ତ ଲୋକଲୋଚନକୁ ଆସିବାର ସମ୍ଭାବନାକୁ ଏଡାଇ ଦିଆଯାଇନପାରେ । ବସ୍ତୁତଃ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ତାହା ହିଁ ଇଙ୍ଗିତ ପ୍ରଦାନ କରିଛନ୍ତି ।

ବୁଦ୍ଧଦେବଙ୍କ ଜୀବନୀରୁ ଜଣାଯାଏ ଯେ ବୁଦ୍ଧଦେବ ସିଦ୍ଧିଲାଭ କରି ଧର୍ମ ପ୍ରଚାର କାର୍ଯ୍ୟ ଆରମ୍ଭ କରିବା ସମୟରେ ତପସୁ ଓ ଭଲ୍ଲିକ ନାମକ ଦୁଇଜଣ ଆଦିବାସୀ ଉତ୍କଳୀୟ ବଣିକ ତାହାଙ୍କ ଦ୍ୱାରା ଦୀକ୍ଷିତ ହୋଇ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କରିବାପରେ ଏହି ଦୁଇଜଣ ଉତ୍କଳରେ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର କରିଥିଲେ । ସେସମୟରେ ଉତ୍କଳର ପ୍ରାଚୀନତମ ତଥା ପାରମ୍ପରିକ ସୀମା ଅଧୁନା କେନ୍ଦୁଝର, ମୟୂରଭଞ୍ଜ ଓ ବାଲେଶ୍ୱର ନୀଳଗିରି ଅଞ୍ଚଳ ମଧ୍ୟରେ ପରିବ୍ୟାପ୍ତ ଥିଲା ବୋଲି ଅନେକ ଐତିହାସିକ ନିର୍ଣ୍ଣୟ କରିଛନ୍ତି । ତପସୁ ଓ ଭଲ୍ଲିକ ଯେଉଁ ଧର୍ମ ପ୍ରଚାର କାର୍ଯ୍ୟ ଆରମ୍ଭ କରିଥିଲେ, ତାହାର ପ୍ରଭାବରେ ପରବର୍ତ୍ତୀ ଅବସ୍ଥାରେ ଉପରୋକ୍ତ ଅଞ୍ଚଳଗୁଡ଼ିକରେ ବୌଦ୍ଧଧର୍ମର ଭିତ୍ତି ଦୃଢ଼ୀଭୂତ ହେବା ସଂଗେସଂଗେ ପଡ଼ୋଶୀ ଓଡ୍ରଦେଶକୁ ମଧ୍ୟ ବ୍ୟାପୀ ଯାଇଥିଲା । ଶବରୀ ସ୍ଥାନ ଅନ୍ତର୍ଗତ ଏହି ଓଡ୍ରଦେଶର ପାରମ୍ପରିକ ସୀମା ମଗଧସୀମାର ଅନତିଦୂରରୁ ଆରମ୍ଭ ହୋଇ ମହାନଦୀ ବାମତଟ ପର୍ଯ୍ୟନ୍ତ ପରିବ୍ୟାପ୍ତି ହୋଇ ରହିଥିଲା । ଏହି ତଥାକଥିତ ଦେଶରେ ଆର୍ଯ୍ୟ ସଭ୍ୟତା ପ୍ରବେଶ କରିପାରି ନଥିବାରୁ ବୌଦ୍ଧଧର୍ମର ପ୍ରଚାର ପାଇଁ ଏହା ଏକ ପ୍ରକୃଷ୍ଟ କ୍ଷେତ୍ର ଥିଲା । ଚୀନ ପରିବ୍ରାଜକ ହୁଏନ୍‌ସାଂ ଭ୍ରମଣ ବୃତ୍ତାନ୍ତରେ ଉଲ୍ଲେଖ କରି ଅଛନ୍ତି, 'ଅଶୋକ ଓଡ୍ରଦେଶରେ କେତେଗୁଡ଼ିଏ ସ୍ତୂପ ନିର୍ମାଣ କରିଥିଲେ । ଏହି ଓଡ୍ରଦେଶରେ ବୌଦ୍ଧଧର୍ମ ସେତେବେଳେ ଏକ ଜୀବନ୍ତ ଧର୍ମ ଥିଲା । ସେଠାରେ ଏକ ଶହରୁ ଊର୍ଦ୍ଧ୍ୱ ବୌଦ୍ଧ ଉପାସନା କେନ୍ଦ୍ର ଥିଲା । ଏହିଠାରେ ପୁଷ୍ପଗିରି ନାମକ ଏକ ପ୍ରସିଦ୍ଧ ବୌଦ୍ଧ ବିହାର ଥିଲା ।'[୧୦] ତାଙ୍କ ବିବରଣୀରୁ ପୁନଶ୍ଚ ଜଣାଯାଏ ଯେ ଏହି ଦେଶରେ ମହାଯାନ ଶାଖାର ପ୍ରତିପତ୍ତି ଥିଲେ ହେଁ ହୀନଯାନୀମାନେ ମଧ୍ୟ ବାସ କରୁଥିଲେ । ମହାଯାନ ଶାଖାର ପୃଷ୍ଠପୋଷକ ସମ୍ରାଟ ହର୍ଷବର୍ଦ୍ଧନ ୬୩୯ ଖ୍ରୀଷ୍ଟାବ୍ଦରେ କଙ୍ଗୋଦ ବିଜୟ କରି ଫେରୁଥିବାବେଳେ ଓଡ୍ରଦେଶର ହୀନଯାନୀ ବୌଦ୍ଧମାନେ ସାତଶହ ଶ୍ଳୋକ ବିଶିଷ୍ଟ ଏକ ଗ୍ରନ୍ଥ ତାଙ୍କୁ ପ୍ରଦାନ କରିଥିଲେ, ଯେଉଁଥିରେ ହୀନଯାନର ବୈଶିଷ୍ଟ୍ୟ ଓ ମହାଯାନର ଅସାରତା ପ୍ରତିପାଦିତ ହୋଇଥିଲା ।'[୧୧]

ଓଡ଼ିଶାରେ ଅଦ୍ୟାବଧି ଆବିଷ୍କୃତ ହୋଇଥିବା ବୌଦ୍ଧ କେନ୍ଦ୍ରମାନଙ୍କ ମଧ୍ୟରେ ଜୟାଶ୍ରମ ବିହାର ଅନ୍ୟତମ । ଏହା ତାଳଚେର ରାଜ୍ୟର ଜଗତି ଗ୍ରାମରେ ଅବସ୍ଥିତ ବୋଲି ଗବେଷକମାନେ ନିର୍ଣ୍ଣୟ କରିଛନ୍ତି । ଏହାର ଅନତିଦୂରରେ ଅବସ୍ଥିତ ସମଲ ଓ ବଜ୍ରକୋଟରୁ ଅଦ୍ୟାବଧି ମିଳୁଥିବା ବୌଦ୍ଧ ଭାସ୍କର୍ଯ୍ୟର ଅବଶେଷାଂଶମାନ ସୂଚନା ଦିଏ ଯେ ଏକ ସମୟରେ ଏଠାରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଓ ପ୍ରତିପତ୍ତି ରହିଥିଲା । ଉପରୋକ୍ତ ଜଗତି ଗ୍ରାମଟିକୁ ହୁଏନ୍‌ସାଂଙ୍କ ବର୍ଣ୍ଣିତ ଜତିବାନ ବା ଜଷ୍ଟିବନ ଗ୍ରାମ ସହିତ ଚିହ୍ନଟ କରାଯାଇପାରେ । ହୁଏନ୍‌ସାଂଙ୍କ ବର୍ଣ୍ଣନାନୁସାରେ ଏହି ଜଗତି ବା ଜତିବାନ ବା ଜଷ୍ଟିବନ ଗ୍ରାମଟିରେ ଜୟସେନ ନାମକ ଜଣେ ବୌଦ୍ଧ ପଣ୍ଡିତ ବାସ କରୁଥିଲେ । ପାଣ୍ଡିତ୍ୟରେ ମୁଗ୍ଧ ହୋଇ ହର୍ଷବର୍ଦ୍ଧନ ତାଙ୍କୁ ଓଡ୍ର ଦେଶର ଅଶୀଟି ସହର ବା ନଗର ଦାନ କରିବା ପାଇଁ ପ୍ରସ୍ତାବ ଦେଇଥିଲେ । ମାତ୍ର ଜୟସେନ ତାହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ସମ୍ଭବତଃ ସେହି ଜୟସେନଙ୍କ ନାମାନୁସାରେ ଜୟାଶ୍ରମ ବିହାରଟି ନିର୍ମାଣ କରାଯାଇଥିଲା । ଏହାର ପ୍ରାଧାନ୍ୟ ଏପରି ଥିଲା ଯେ ପରବର୍ତ୍ତୀ ସମୟରେ ଭୌମକର ରାଜାମାନେ ଏହାର ରକ୍ଷଣାବେକ୍ଷଣ ନିମନ୍ତେ କଲ୍ଲାଣି ନାମକ ଗ୍ରାମଟି ଦାନ କରିଥିଲେ ।[୧୨] ଏହା ସେମାନଙ୍କ ଦ୍ୱାରା ପ୍ରଦତ୍ତ ତାମ୍ର ଶାସନଗୁଡ଼ିକରୁ ଜଣାଯାଏ । ସେହିପରି ସମ୍ଭବତଃ ସମଲ ଓ ବଜକୋଟ ବଜ୍ରଯାନର ପ୍ରବର୍ତ୍ତକ ଇନ୍ଦ୍ରଭୂତିଙ୍କର ସାଧନାକେନ୍ଦ୍ର ଥିଲା । ସେହି ଅଞ୍ଚଳରୁ ମିଳୁଥିବା ବୌଦ୍ଧ ଭାସ୍କର୍ଯ୍ୟଗୁଡ଼ିକରୁ ଏହି ସୂଚନା ମିଳିଥାଏ । ସମଲ ଓ ବଜ୍ରକୋଟ ଅଞ୍ଚଳରୁ ମିଳୁଥିବା ବୌଦ୍ଧ ଭାସ୍କର୍ଯ୍ୟର ଅବଶେଷାଂଶମାନ ଅତି ଉଚ୍ଚକୋଟୀର ହୋଇଥିବାରୁ ଏହା ସେଠାରେ ରହିଥିବା ବୌଦ୍ଧ କେନ୍ଦ୍ରମାନଙ୍କର ପ୍ରାଚୀନତାର ପ୍ରମାଣ ଦିଏ । ଜଗତି, ସମଲ ଓ ବଜକୋଟ ଅଞ୍ଚଳଗୁଡ଼ିକ ବ୍ରାହ୍ମଣୀ ନଦୀକୂଳରେ ଅବସ୍ଥିତ । ଏହି ବ୍ରାହ୍ମଣୀ ନଦୀ ଉପତ୍ୟକାରେ ଥିବା ସମଲରୁ ପ୍ରାଚୀନ ପ୍ରସ୍ତର ଯୁଗର ବସ୍ତୁ ମିଳିଛି ।[୧୩]

ବ୍ରାହ୍ମଣୀ ନଦୀର ଜଳପଥରେ ଗମନାଗମନର ସୁବିଧା ଥିବାରୁ ଏହା ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାରର ସାହାଯ୍ୟ କରୁଥିଲା । ଅଧୁନା ତାଳଚେର ରାଜ୍ୟରେ ଅବସ୍ଥିତ ଜଗତି, ସମଲ ଓ ବଜ୍ରକୋଟ ପ୍ରଭୃତି ଅଞ୍ଚଳର ଉତ୍ତର ସୀମାରେ କେନ୍ଦୁଝର ଓ ମୟୂରଭଂଜ ଅଞ୍ଚଳମାନ ଅବସ୍ଥିତ । ମୟୂରଭଞ୍ଜ ଓ କେନ୍ଦୁଝରର ଖିଚିଙ୍ଗ, ଢେଙ୍କିକୋଟ ଓ ସୀତାବିଞ୍ଜି ପ୍ରଭୃତି ଅଞ୍ଚଳମାନ ପ୍ରସିଦ୍ଧ ବୌଦ୍ଧ କେନ୍ଦ୍ର ରୂପେ ଖ୍ୟାତିଲାଭ କରିଛି । ସମ୍ଭବତଃ ତାଳଚେରର ଜୟାଶ୍ରମ ବିହାର, ସମଲ, ବଜ୍ରକୋଟ ପ୍ରଭୃତି ବିଖ୍ୟାତ ବୌଦ୍ଧ ସାଧନାପୀଠମାନ ଖିଚିଙ୍ଗ, ଢେଙ୍କିକୋଟ ଓ ସୀତାବିଞ୍ଜି ପ୍ରଭୃତି ଅଞ୍ଚଳ ସହିତ ଯୋଗାଯୋଗ ରକ୍ଷା କରୁଥିଲେ । ଇତିହାସରୁ ଜଣାଯାଏ ଯେ ଏହି ଅଞ୍ଚଳଗୁଡ଼ିକ ଅତି ପ୍ରାଚୀନ କାଳରୁ ଭଂଜବଂଶୀୟ ରାଜାମାନଙ୍କ ଦ୍ୱାରା ଶାସିତ ହୋଇ ଆସୁଥିଲା । ଏହି ଭଂଜବଂଶୀୟ ରାଜାମାନେ କୌଣସି ଏକ ସମୟରେ ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏହି ଭଂଜମାନଙ୍କୁ ଐତିହାସିକମାନେ ନାଗବଂଶ ସହିତ ଚିହ୍ନିତ କରାଇଅଛନ୍ତି । ଏମାନେ ପ୍ରଥମାବସ୍ଥାରେ ନାଗପୂଜା କରୁଥିଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ବୁଦ୍ଧଙ୍କୁ ପୂଜା କଲେ । ଉତ୍କଳ, ଓଡ୍ର, ବୌଦ, ଫୁଲବାଣୀ ଓ ସୋନପୁର ପ୍ରଭୃତି ଅଞ୍ଚଳଗୁଡ଼ିକରେ ବୌଦ୍ଧଧର୍ମର ଯେଉଁ ପ୍ରଚାର ଓ ପ୍ରସାର ହୋଇଥିଲା, ତାହା ସମ୍ଭବତଃ ଏହି ଭଂଜବଂଶୀୟ ରାଜାମାନଙ୍କ ପୃଷ୍ଠପୋଷକତାରେ ଘଟିଥିଲା ।

### ଉଡ୍ଡୀୟାନ୍‌ର ଅବସ୍ଥିତି

ପୂର୍ବରୁ ଆଲୋଚନା ପ୍ରସଙ୍ଗରେ କୁହାଯାଇଅଛି ଯେ ପ୍ରଥମେ ବୌଦ୍ଧ ସଭ୍ୟତା ଓଡ଼ିଶାକୁ ଦକ୍ଷିଣ କୋଶଳ ବାଟେ ଆସିଅଛି । ସମ୍ବଲପୁର, ବଲାଙ୍ଗିର ପାଟଣା, ସୋନପୁର, ବୌଦ ଫୁଲବାଣୀ ପ୍ରଭୃତି ଗଡ଼ଜାତ





ବାଟେ ମହାନଦୀ କୂଳେ କୂଳେ ଅନେକ ବୌଦ୍ଧଭିକ୍ଷୁ ଓଡ଼ିଶାକୁ ଆସିଛନ୍ତି । ସେମାନେ ଯେଉଁସବୁ ବିହାର ନିର୍ମାଣ କରିଯାଇଛନ୍ତି, ସେସବୁ ପ୍ରାୟ ମହାନଦୀ କୂଳ ଓ ତା'ର ଅତି ନିକଟବର୍ତ୍ତୀ ଅଞ୍ଚଳରେ ଦେଖାଯାଏ ।[୧୪] ମହାନଦୀ କୂଳର ଏହି ଅଞ୍ଚଳଗୁଡ଼ିକ ପ୍ରାଚୀନ ଓଡ୍ରଦେଶର ଦକ୍ଷିଣ-ପଶ୍ଚିମ ସୀମାନ୍ତରେ ଅବସ୍ଥିତ । ଏହିସବୁ ଅଞ୍ଚଳଗୁଡ଼ିକରେ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ହେବା ଫଳରେ ତାହା ଓଡ୍ରଦେଶକୁ ମଧ୍ୟ ପ୍ରଭାବିତ କରିଥିଲା । ସେହିପରି ଉପରୋକ୍ତ ଆଲୋଚନାମାନଙ୍କରୁ ଜଣାଯିବ ଯେ ପ୍ରାଚୀନ ଓଡ୍ରଦେଶର ଉତ୍ତରାଞ୍ଚଳରେ ବୌଦ୍ଧଧର୍ମର ଯେଉଁ ପ୍ରଚାର ଓ ପ୍ରସାର ହେଉଥିଲା, ତାହା ଉତ୍ତରରେ ମଗଧରୁ ପ୍ରଭାବିତ ପ୍ରଚାରିତ ଓ ପ୍ରସାରିତ ହୋଇ ଓଡ୍ରଦେଶକୁ ଅନୁପ୍ରବେଶ କରିଥିଲା । ଏଇଥିପାଇଁ ଓଡ୍ରଦେଶର ଉତ୍ତରାଞ୍ଚଳରେ ଆମେ ଜୟାଶ୍ରମ ବିହାର, ସମଲ ଓ ବଜକୋଟ ପ୍ରଭୃତି ବୌଦ୍ଧଧର୍ମର ସାଧନା କେନ୍ଦ୍ରମାନ ଦେଖିବାକୁ ପାଉ । ଏହିପରି ଓଡ୍ରଦେଶର ଉତ୍ତର ଓ ଦକ୍ଷିଣ ପଶ୍ଚିମ ଦିଗରୁ ବୌଦ୍ଧଧର୍ମ ଓଡ୍ରଦେଶକୁ ପ୍ରବେଶ କରି ତାହାକୁ ସେଠାରେ ଏକ ଜୀବନ୍ତ ଧର୍ମ ରୂପେ ଗଢ଼ି ତୋଳିଥିଲା । ହୁଏନ୍‌ସାଂ ତାଙ୍କ ଭ୍ରମଣ ସମୟରେ ଓଡ୍ରଦେଶରେ ଯେଉଁ ଏକ ଶହରୁ ଊର୍ଦ୍ଧ୍ୱ ବୌଦ୍ଧ ଉପାସନା କେନ୍ଦ୍ର ଦେଖିଥିଲେ ବୋଲି ଉଲ୍ଲେଖ କରିଛନ୍ତି, ସେ ସମସ୍ତ ଅଦ୍ୟାବଧି ଅନାବିଷ୍କୃତ ହୋଇରହିଛି । ତଥାପି ତାଳଚେରର ଜୟାଶ୍ରମ ବିହାର, ସମଲ ଓ ବଜ୍ରକୋଟ ପ୍ରଭୃତି ଅଞ୍ଚଳଗୁଡ଼ିକରୁ ମିଳୁଥିବା ବୌଦ୍ଧ କୀର୍ତ୍ତିମାନଙ୍କ ଅବଶେଷାଂଶରୁ ଜଣାଯାଏ ଯେ ଏକ ସମୟରେ ବୌଦ୍ଧ ଧର୍ମ ଓଡ୍ରଦେଶରେ ପ୍ରଭାବ ଓ ପ୍ରତିପତ୍ତି ବିସ୍ତାର କରିପାରିଥିଲା । ତାନ୍ତ୍ରିକ ବଜ୍ରଯାନର ପ୍ରବକ୍ତା ଇନ୍ଦ୍ରଭୂତିଙ୍କର ସାଧନାପୀଠ ତାଳଚେରର ବଜ୍ରକୋଟରେ ଥିଲାବୋଲି ଅନୁମାନ କରିବା ଅଧିକ ଯୁକ୍ତିସଂଗତ ମନେହୁଏ । ଅନେକ ଗବେଷକ ଏହାକୁ ପ୍ରସିଦ୍ଧ ଉଡ୍ଡୀୟାନ ପୀଠ ସହ ଚିହ୍ନିତ କରାଇବା ପାଇଁ ଉଦ୍ୟମ କରିଅଛନ୍ତି । ଡକ୍ଟର ରାଜଗୁରୁଙ୍କ ମତ ଉଦ୍ଧାର କରି ଡକ୍ଟର ମହେଶ ପ୍ରସାଦ ଦାଶ ଏହି ଅଞ୍ଚଳକୁ ଉଡ୍ଡୀୟାନ ସହିତ ଚିହ୍ନିତ କରି କହିଅଛନ୍ତି, 'ସମ୍ଭବତଃ ଯମଗର୍ତ୍ତମଣ୍ଡଳ (ଆଧୁନିକ ଅନୁଗୋଳ ଓ ତାହାର ସମୀପବର୍ତ୍ତୀ ଅଞ୍ଚଳ)ରେ ଥିବା ଉତ୍ତର ତୋଷାଳୀର ବିଷୟ ବା ଜିଲ୍ଲା ଯାହାକି ବର୍ତ୍ତମାନ ଢେଙ୍କାନାଳ ଓ ତାଳଚେର ମଧ୍ୟରେ ଅବସ୍ଥିତ, ତାହା ହିଁ ଉଡ୍ଡୀୟାନ ବୋଲି ଚିହ୍ନିତ କରାଯାଇପାରେ ।'[୧୫] ଏଠାରେ ଉଲ୍ଲେଖନୀୟ ଯେ ଡକ୍ଟର ରାଜଗୁରୁ ପ୍ରଥମାବସ୍ଥାରେ ଉଡ୍ଡୀୟାନକୁ ଗଞ୍ଜାମ ଜିଲ୍ଲାର ସମୁଦ୍ର ଉପକୂଳବର୍ତ୍ତୀ ଉଦ୍ୟାନଖଣ୍ଡକୁ ଚିହ୍ନିତ କରିବାକୁ ଚେଷ୍ଟା କରିଥିଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ମତ ପରିବର୍ତ୍ତନ କରି ଯମଗର୍ତ୍ତମଣ୍ଡଳର ଉତ୍ତର ତୋଷାଳୀରେ (ଆଧୁନିକ ଅନୁଗୋଳ ଓ ତାହାର ସମୀପବର୍ତ୍ତୀ ଅଞ୍ଚଳରେ) ଉଡ୍ଡୀୟାନକୁ ଚିହ୍ନିତ କରାଇଅଛନ୍ତି । 'ପାଗ୍-ସାମ୍-ଜୋନ୍-ଜାଙ୍ଗ' ଅନୁସାରେ ଉଡ୍ଡୀୟାନରୁ ପ୍ରଥମେ ବୌଦ୍ଧ ତାନ୍ତ୍ରିକ ମତବାଦ ବିକାଶଲାଭ କରିଥିଲା ।

ଲାମା ତାର ନାଥ ଚୌରାଅଶୀ ସିଦ୍ଧଙ୍କର ଇତିହାସ ବର୍ଣ୍ଣନା କଲାବେଳେ ଉଡ୍ଡୀୟାନ ଦେଶର ପରିଚୟ ଦେଇ କହିଛନ୍ତି ଯେ ଉଡ୍ଡୀୟାନ ରାଜ୍ୟରେ ୫୦୦-୬୦୦ ନଗର ଥିଲା । ଏହି ଉଡ୍ଡୀୟାନ ଦୁଇଟି ରାଜ୍ୟରେ ବିଭକ୍ତ ହୋଇଥିଲା । ଗୋଟିକର ନାମ ସମ୍ଭଳକ ତହିଁରେ ଇନ୍ଦ୍ରଭୂତି ରାଜତ୍ୱ କରୁଥିଲେ ଓ ଅନ୍ୟଟିର ନାମ ଥିଲା ଲଙ୍କାପୁରୀ, ଜଳେନ୍ଦ୍ର ତହିଁର ରାଜାଥିଲେ । ଜଳେନ୍ଦ୍ରଙ୍କ ପୁତ୍ର ଇନ୍ଦ୍ରଭୂତିଙ୍କ ଭଗ୍ନୀ ଲକ୍ଷ୍ମୀଙ୍କରାଙ୍କୁ ବିବାହ କରିଥିଲେ । ଇନ୍ଦ୍ରଭୂତି ଲକ୍ଷ୍ମୀଙ୍କରାଙ୍କୁ ବଜ୍ରଯାନରେ ଦୀକ୍ଷିତ କରି ପୁତ୍ରଙ୍କୁ ରାଜ୍ୟ ସମର୍ପଣ ପୂର୍ବକ ସନ୍ନ୍ୟାସ ଗ୍ରହଣ କଲେ । ଲକ୍ଷ୍ମୀଙ୍କରା ସିଦ୍ଧିଲାଭ କରି ସହଜଯାନ ଧର୍ମର ପ୍ରଚାର କଲେ ।[୧୬] ପ୍ରାଚୀନ କାଳରେ ସୋନପୁର ରାଜ୍ୟକୁ ଲଙ୍କାପୁର ଓ ସୁବର୍ଣ୍ଣପୁର ବୋଲି କୁହାଯାଉଥିଲା । ସୋନପୁର ନଗରରୁ ପ୍ରଦତ୍ତ କୁମାର ସୋମେଶ୍ୱର ଦେବଙ୍କ ଦାନପତ୍ରରେ ସୁନୁପୁର ପଶ୍ଚିମ ଲଙ୍କା ନାମରେ ବର୍ଣ୍ଣିତ ହୋଇଛି । ସୋନପୁର ନିକଟବର୍ତ୍ତୀ ମହାନଦୀ ଗର୍ଭରେ ଛୋଟ ପାହାଡ଼କୁ ଲଙ୍କେଶ୍ୱରୀ ବୋଲି ଲୋକେ କହନ୍ତି । ଏହି ଲଙ୍କେଶ୍ୱରୀକୁ ଯୋଗେଶ୍ୱର ବର୍ମାଙ୍କ ମହଦା ତାମ୍ରଶାସନରେ 'ଲଙ୍କାବର୍ତ୍ତକ' ବୋଲି କୁହାଯାଇଛି । ଏହି ଲଙ୍କାପୁର ଉଡ୍ଡୀୟାନ ରାଜ୍ୟର ଅଂଶ ଥିଲା ବୋଲି ୱାଡ଼େଲ ସାହେବ କହିଛନ୍ତି । ଅତଏବ ଉଡ୍ଡୀୟାନ ଅଂଶବିଶେଷ ସମ୍ଭଳର ରାଜା ଇନ୍ଦ୍ରଭୂତି କେବଳ ଓଡ୍ର ରାଷ୍ଟ୍ର ଦେବତା ଜଗନ୍ନାଥଙ୍କୁ ହିଁ ସ୍ତୁତି କରିଛନ୍ତି - 'ପ୍ରଣିପତ୍ୟ ଜଗନ୍ନାଥ ସର୍ବଜୀନ ବରାର୍ଚ୍ଚିତଂ' । ସେ ଅନ୍ୟକୌଣସି ଦେବତା ବା ଗୁରୁଙ୍କୁ ଜଗନ୍ନାଥ ରୂପେ ସ୍ତୁତି କରି ନାହାନ୍ତି । କାରଣ ଉଡ୍ଡୀୟାନର ରାଜା ଓଡ଼ିଆ ଦେବତାଙ୍କୁ ସ୍ତୁତି କରିବା ସ୍ୱଭାବିକ୍ । ଏହି ଉଡ୍ଡୀୟାନ୍ ଅନ୍ତର୍ଗତ ସମ୍ଭଳ ରାଜ୍ୟର ଅବସ୍ଥିତି ସଂପର୍କରେ ଏଠାରେ ଆଲୋଚନା କରାଯିବା ଆବଶ୍ୟକ । ବହୁ ଐତିହାସିକ ଗବେଷକ ଆଧୁନିକ ସମ୍ବଲପୁର ଓ ଯାଜପୁରକୁ ଉଡ୍ଡୀୟାନ ସହିତ ଚିହ୍ନିତ କରିଥା'ନ୍ତି । କିନ୍ତୁ ଏହା ଗ୍ରହଣଯୋଗ୍ୟ ନୁହେଁ । ତାଳଚେର ରାଜ୍ୟ ନିକଟବର୍ତ୍ତୀ ସମଲକୁ ଉଡ୍ଡୀୟାନର ସମ୍ଭଳ ରାଜ୍ୟ ବୋଲି ଚିହ୍ନିତ କରାଯାଇପାରେ । ଏହି ଉଡ୍ଡୀୟାନର ଅନତି ଦୂରରେ ପାଲଲହଡ଼ାଠାରେ ପ୍ରସିଦ୍ଧ ମାଲ୍ୟଗିରି ପର୍ବତମାଳା ଅବସ୍ଥିତ । ତେଣୁ ତାଳଚେର ରାଜ୍ୟରେ ଅବସ୍ଥିତ ବଜ୍ରକୋଟ, ସମଲ ଓ ଜଗତି ଆଦି ଅଞ୍ଚଳଗୁଡ଼ିକ ଯେ ଗୋଟିଏ ସମୟରେ ବୌଦ୍ଧ ତାନ୍ତ୍ରିକ ସାଧନା କ୍ଷେତ୍ର ଥିଲା, ତାହା ନିଃସନ୍ଦେହରେ କୁହାଯାଇପାରେ । ଉଡ୍ଡୀୟାନର ରାଜା ଇନ୍ଦ୍ରଭୂତି ସମ୍ଭଳରେ ରାଜତ୍ୱ କରୁଥିଲେ ବୋଲି କୁହାଯାଇପାରେ । ଉଡ୍ଡୀୟାନରର ରାଜା ଇନ୍ଦ୍ରଭୂତି ସମ୍ଭଳରେ ରାଜତ୍ୱ କରୁଥିଲେ ବୋଲି କୁହାଯାଇଛି । ଏହି ସମ୍ଭଳକୁ ଆଧୁନିକ ସମ୍ବଲପୁର ସହିତ ଚିହ୍ନିତ କରିବାକୁ ଡକ୍ଟର ସାହୁ ଉଦ୍ୟମ କରିଛନ୍ତି ।[୧୭] ମାତ୍ର ବଜ୍ରକୋଟକୁ ଯଦି ବଜ୍ରଯାନର ସାଧନାପୀଠ ବୋଲି ଧରାଯାଏ, ତେବେ ବଜ୍ରକୋଟର ପାର୍ଶ୍ୱରେ ଅବସ୍ଥିତ 'ସମଲ' ଅଞ୍ଚଳକୁ ଇନ୍ଦ୍ରଭୂତିଙ୍କର ରାଜ୍ୟ ଉଡ୍ଡୀୟାନ ଥିଲା ବୋଲି ଧରିନେବା ଅଧିକ ଯୁକ୍ତିସଂଗତ ମନେହୁଏ । ସମ୍ଭବତଃ ଏହି ସମଲ ନାମଟି ଇନ୍ଦ୍ରଭୂତିଙ୍କର ରାଜ୍ୟ ସମ୍ଭଳ ଅପଭ୍ରଂଶ ରୂପ ବୋଲି କୁହାଯାଇପାରେ । ଇନ୍ଦ୍ରଭୂତିଙ୍କର ପୁତ୍ର ପଦ୍ମସମ୍ଭବ ପିତାଙ୍କ ଦ୍ୱାରା ନିଜ ରାଜ୍ୟରୁ ନିର୍ବାସିତ ହୋଇ ଜାହୋର ରାଜ୍ୟର ରାଜକନ୍ୟାଙ୍କୁ ବିବାହ କରିଥିଲେ ।

ଜାହୋର ରାଜ୍ୟକୁ ଆଧୁନିକ କେନ୍ଦୁଝର ସହିତ ଚିହ୍ନଟ କରାଯାଇଛି । ତାଳଚେରର ସମଲ ଓ କେନ୍ଦୁଝର ପରସ୍ପର ସୀମାରେ ଅବସ୍ଥିତ । ତେଣୁ ସମଲ ଅଞ୍ଚଳରୁ ନିର୍ବାସିତ ହୋଇ ପଡ଼ୋଶୀ କେନ୍ଦୁଝର ରାଜ୍ୟରେ ପ୍ରବେଶ କରି ସେଠାକାର ରାଜକନ୍ୟା ଶାନ୍ତରକ୍ଷିତଙ୍କ ଭଗ୍ନୀଙ୍କୁ ବିବାହ କରିଥିବା ଅଧିକ ଯୁକ୍ତିସଂଗତ ମନେହୁଏ । ଏ ସମସ୍ତ ଘଟଣାରୁ ଏପରି ମନେହୁଏ ଯେ ତାଳଚେରରେ ଅବସ୍ଥିତ ସମଲ ଅଞ୍ଚଳଟି ଏକ ସମୟରେ ଇନ୍ଦ୍ରଭୂତିଙ୍କର ରାଜ୍ୟ ଥିଲା ଓ ସମଲର ପାର୍ଶ୍ୱବର୍ତ୍ତୀ ବଜ୍ରକୋଟ ଅଞ୍ଚଳଟି ବଜ୍ରଯାନର ସାଧନାକେନ୍ଦ୍ର ଥିଲା ଏବଂ ଉଭୟ କେନ୍ଦ୍ର ବ୍ରାହ୍ମଣୀ ନଦୀକୂଳରେ ଅବସ୍ଥିତ । ସେହିପରି ହୁଏନ୍‌ସାଂଙ୍କ ଭ୍ରମଣ ବୃତ୍ତାନ୍ତରେ ବର୍ଣ୍ଣିତ ବିଖ୍ୟାତ ପୁଷ୍ପଗିରି ବିହାର ଓଡ୍ର ଦେଶର ଦକ୍ଷିଣ-ପଶ୍ଚିମ ସୀମାରେ ଫୁଲବାଣୀ ଓ ଘୁମୁସର ଅଞ୍ଚଳରେ ଅବସ୍ଥିତ ବୋଲି ଡକ୍ଟର ନବୀନ କୁମାର ସାହୁ ଅନୁମାନ କରନ୍ତି ।

ପୁଷ୍ପଗିରିର ଅବସ୍ଥିତି ସଂପର୍କରେ ଏପର୍ଯ୍ୟନ୍ତ କୌଣସି ସିଦ୍ଧାନ୍ତ ହୋଇପାରିନାହିଁ । ମହାନଦୀର ଉଭୟ ତଟରେ ଥିବା ଘଞ୍ଚ ଅରଣ୍ୟ ମଧ୍ୟରୁ ଅନେକ ବୌଦ୍ଧ କୀର୍ତ୍ତି କ୍ରମେ ଆବିଷ୍କୃତ ହୋଇ ଆସୁଅଛି । ପୁଷ୍ପଗିରି ବିହାରଟି ମହାନଦୀର ବାମତଟରେ ନନ୍ଦିନିଆଁ ପର୍ବତମାଳା ମଧ୍ୟରେ ଅବସ୍ଥିତ ହୋଇଥିବା କଥା ପୂର୍ବରୁ ଆଲୋଚନା କରାଯାଇଅଛି । ଏହି ନନ୍ଦିନିଆଁ ପର୍ବତମାଳା ମହାନଦୀର ବାମତଟରେ ଫୁଲବାଣୀ ସୀମା ନିକଟରେ ଅବସ୍ଥିତ । ତେଣୁ ଡକ୍ଟର ନବୀନ କୁମାର ସାହୁଙ୍କ ଅନୁମାନ ଅନୁଯାୟୀ ଫୁଲବାଣୀ ସୀମା ନିକଟବର୍ତ୍ତୀ ଏହି ନନ୍ଦିନିଆଁ ପର୍ବତମାଳା ମଧ୍ୟରେ ପୁଷ୍ପଗିରି ଅବସ୍ଥିତିର ସମ୍ଭାବନାକୁ ଏଡାଇ ଦିଆଯାଇନପାରେ । ଏହାର ଅଦୂରରେ ନରସିଂହପୁର ଓ ନରାଜର ବୌଦ୍ଧ କୀର୍ତ୍ତିମାନ ଏହି ସମ୍ଭାବନାକୁ ଉଜ୍ଜ୍ୱଳ କରେ ।

**ପାଦଟୀକା :**


୧. ସାହୁ, (ଡଃ) ଯଜ୍ଞ କୁମାର - ଓଡ଼ିଶା ଇତିହାସ, ପ୍ରଥମ ଭାଗ, ନାଳନ୍ଦା, ବିନୋଦ ବିହାରୀ, କଟକ-୨, ୧୯୯୧, ପୃ.୮୦ ।

୨. ସାହୁ, (ଡଃ) ନବୀନ କୁମାର - ଓଡ଼ିଶାରେ ବୌଦ୍ଧଧର୍ମ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ପୃ.୨୫ ।

୩. ଏଜନ୍, ପୃ. ୨୫ ।

୪.a. Sahu, (Dr.) N.K. - Buddhism in Orissa, Utkal University, 1958, p.50.

b. Sahu, (Dr.) N.K. - Buddhism in Orissa, Vol-I, Utkal University, 1964, p.144.

୫. ମହାପାତ୍ର, ଚକ୍ରଧର - ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ, ପ୍ରକାଶନ- ଫ୍ରେଣ୍ଡସ୍ ପବ୍ଲିସର୍ସ, ବିନୋଦ ବିହାରୀ, କଟକ-୨, ୧୯୮୯, ପୃ.୨୪୨ ।

୬. କର, ବିରୁପାକ୍ଷ - ଉତ୍କଳରେ ବୌଦ୍ଧ ଯୁଗର ଇତିହାସ ଓ ଅନ୍ୟାନ୍ୟ ପ୍ରବନ୍ଧ, ସଂପାଦକ- ଡକ୍ଟର ଅସିତ୍‌କବି ଓ ଅଧ୍ୟାପକ ବାଉରୀ ବନ୍ଧୁକର, ଓଡ଼ିଶା ବୁକ୍‌ଷ୍ଟୋର, ୧୯୮୧, ପୃ.୨୧

୭. ସାହୁ, (ଡଃ) ନବୀନ କୁମାର - ଓଡ଼ିଶାରେ ବୌଦ୍ଧଧର୍ମ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ପୃ.୧୭, ୧୮

୮. ଦାଶ, (ପଣ୍ଡିତ) ସୂର୍ଯ୍ୟନାରାୟଣ - ଓଡ଼ିଆ ସାହିତ୍ୟର ପରିଚୟ (ପ୍ରଥମ ଖଣ୍ଡ), କଟକ ଟ୍ରେଡିଙ୍ଗ କମ୍ପାନୀ, କଟକ, ୧୯୫୧, ପୃ.୧୯ ।

୯. ମହାରଣା (ଡଃ) ସୁରେନ୍ଦ୍ର କୁମାର - ଓଡ଼ିଶାରେ ବୌଦ୍ଧ ସଂସ୍କୃତି, ଫ୍ରେଣ୍ଡସ୍ ପବ୍ଲିସର୍ସ, ବିନୋଦ ବିହାରୀ, କଟକ-୨ ୧୯୯୩, ପୃ.୨୧

୧୦. ଏଜନ, ପୃ.୨୩, ୨୪

୧୧. Sahu, (Dr.) N.K. - Buddhism in Orissa, Utkal University, 1958, p.89.

୧୨. ଏଜନ, ପୃ.୪

୧୩. ଦାସ, (ପଣ୍ଡିତ) ସୂର୍ଯ୍ୟ ନାରାୟଣ - ଓଡ଼ିଆ ସାହିତ୍ୟର ପରିଚୟ (ପ୍ରଥମ ଖଣ୍ଡ) କଟକ ଟ୍ରେଡ଼ିଙ୍ଗ କମ୍ପାନୀ, କଟକ, ୧୯୫୧, ପୃ.୧୯

୧୪. ଦାଶ, (ଡଃ) ମହେଶ ପ୍ରସାଦ - ଓଡ଼ିଶାର ଶାକ୍ତ ସଂସ୍କୃତି, ସଂପାଦକ- ଓଡ଼ିଶା କଲଚରାଲ୍ ଫୋରମ୍, ଭୁବନେଶ୍ୱର, ପ୍ରକାଶକ : ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨, ୧୯୮୦, ପୃ.୫୭ ।

୧୫. କର, (ଡଃ) କରୁଣାକର - ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୯, ପୃ.୮ ।

୧୬. Sahu, (Dr.) N.K. - Buddhism in Orissa, Utkal University, 1958, p.148.


ବରିଷ୍ଠ ପ୍ରାଧ୍ୟାପକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ବି.ଜେ.ବି. (ସ୍ୱୟଂଶାସିତ) ମହାବିଦ୍ୟାଳୟ
ଭୁବନେଶ୍ୱର-୭୫୧୦୧୪







# ବାମନ ଜଗନ୍ନାଥ

ରଜତ କୁମାର କର

'ରଥସ୍ଥଂ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।।'

**ବା**ମନ ରୂପରେ ରଥ ଆରୋହଣ କରିଛନ୍ତି ପ୍ରଭୁ ଜଗନ୍ନାଥ । ଏହାଙ୍କୁ ଦେଖିଲେ ପୁନର୍ଜନ୍ମ ହେବ ନାହିଁ । ଇଏ ମୁକ୍ତି ସ୍ୱରୂପ । ଏ ପ୍ରଭୁ ମୁକ୍ତିର ଧାମ ।

'ଯଂ ପ୍ରବିଶ୍ୟେନ ନିବର୍ତ୍ତନ୍ତି ତଦ୍ଧାମ ପରମଂ ମମ ।'

ଯେଉଁଠିକି ଯାଇ ଆଉ ଲେଉଟିବାକୁ ହୁଏ ନାହିଁ, ସେହି ଧାମ ବିଷ୍ଣୁଙ୍କର । ବିଷ୍ଣୁଙ୍କର ସେହି ପରମ ପଦକୁ ସାଧୁମାନେ ଚକ୍ଷୁ ସମ୍ମୁଖରେ ଭାସମାନ ହେଉଥିବା ଦେଖନ୍ତି, ସେମାନଙ୍କ ଧ୍ୟାନ ଚକ୍ଷୁରେ ଭାସି ଉଠେ ବିଷ୍ଣୁଙ୍କର ପରମ ପଦ । 'ତଦ୍‌ବିଷ୍ଣୋଃ ପରମ ପଦ ସଦା ପଶ୍ୟନ୍ତି ସୁରୟଃ ଦିବିବ ଚକ୍ଷୁରାତତଂ ।'

ବୈଦିକ 'ବିଷ୍ଣୁ ବିଚକ୍ରମେ' ମନ୍ତ୍ରରେ ବାମନ ରୂପୀ ବିଷ୍ଣୁଙ୍କର ତ୍ରିପାଦକୁ ଲକ୍ଷ୍ୟ କରାଯାଇଛି । ତିନି ପାଦରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ଧାରଣ କରିଛନ୍ତି, ପୁରାଣ ଉପାଖ୍ୟାନର ବାମନଙ୍କ ତ୍ରିପାଦ ସୂର୍ଯ୍ୟଙ୍କର ତ୍ରିରୂପ ପ୍ରାତଃ, ସନ୍ଧ୍ୟା, ମଧ୍ୟାହ୍ନ ରୂପକୁ ମଧ୍ୟ କୁହାଯାଇଛି । ଭୂଃ, ଭୁର୍ମଃ ଓ ସ୍ୱଃକୁ ପ୍ରଭୁ ତ୍ରିପାଦରେ ଧାରଣ କରିଛନ୍ତି । ସେ ପ୍ରଭୁ ସବିତା, ସେ ଜଗତର ପ୍ରସବକାରୀ । ଗାୟତ୍ରୀ ମନ୍ତ୍ରର ଏହି ସବିତା ଭର୍ଗଦେବ । ସେ ତେଜପୁଞ୍ଜର ଅଧିକାରୀ, ତାଙ୍କୁଧ୍ୟାନ କଲେ ଆମର ଧୀଶକ୍ତି ଜାଗ୍ରତ ହୋଇ ଆମକୁ ଶକ୍ତିପ୍ରଦାନ କରିବ, ତ୍ରିପାଦ ବହନକାରୀ ବାମନ ସେହି ସୂର୍ଯ୍ୟ ।

ସେହି ସୂର୍ଯ୍ୟ ରଥରେ ବିଚରଣ କରି ଉଦୟାଚଳରୁ ଅସ୍ତାଚଳ ଯାଆନ୍ତି । ରଥରେ ଅଧିରୂଢ଼ ବାମନ ରୂପୀ ଜଗନ୍ନାଥଙ୍କ ଯାତ୍ରାରେ ତେଣୁ ସୌର ପୂଜାର ସଙ୍କେତ ରହିଛି । ସୂର୍ଯ୍ୟ ପୂଜା ସମାପ୍ତ ପରେ ଗୁଣ୍ଡିଚା ଓ ବାହୁଡ଼ା ଯାତ୍ରାର ଶୁଭାରମ୍ଭ ହୁଏ ।

ରଥାରୋହୀ ସୂର୍ଯ୍ୟ ସେହି ଆଦିତ୍ୟ । ବେଦାନ୍ତ ଏହାଙ୍କ ସମ୍ବନ୍ଧରେ କହିଛି, 'ଆଦିତ୍ୟ ବର୍ଣ୍ଣଃ ତମସଃ ପରସ୍ତାତ୍ ।' ଘୋର ତମସାର ପରପାରରେ ଅବିଚ୍ଛେଦ୍ୟ ବର୍ଣ୍ଣ, ଚିର ଜାଜ୍ଜ୍ୱଲ୍ୟମାନ ଆଦିତ୍ୟ । ଏହି ହେଉଛନ୍ତି ସହସ୍ର ଶୀର୍ଷା ପୁରୁଷଃ,



ସଃ ଭୂମି ସର୍ବତ୍ର ବ୍ୟାପ୍ତ୍ୱା
ଅତ୍ୟ ତିଷ୍ଠ ଦଶାଙ୍ଗୁଳିନ୍

ଏହି ସହସ୍ର ମସ୍ତକ ବା ଅନେକ ମସ୍ତକ ମଣ୍ଡିତ ପୁରୁଷ ସର୍ବତ୍ର ବ୍ୟାପିଛନ୍ତି, ଏହିଭଳି ବ୍ୟାପ୍ତ ହୋଇ ମଧ୍ୟ ସେ ଏହାକୁ ଅତିକ୍ରମ କରି ତା'ର ଉର୍ଦ୍ଧ୍ୱରେ ଦଶାଙ୍ଗୁଳି ସ୍ଥିତିରେ ଅଛନ୍ତି । ଅନ୍ୟ ଅର୍ଥରେ, ଜୀବ ମଧ୍ୟରେ ସେଇ ଅନନ୍ତ ଶୀର୍ଷା ପୁରୁଷ ସର୍ବତ୍ର ବ୍ୟାପ୍ତ ହୋଇ ମଧ୍ୟ ସ୍ୱତନ୍ତ୍ର ଭାବେ ତାହାର ହୃଦୟ ଓ ମସ୍ତିଷ୍କର ଦଶାଙ୍ଗୁଳି ପରିମିତ ସ୍ଥାନରେ ବିଜେ କରୁଛନ୍ତି । ଧ୍ୟାନ ନେତ୍ରରେ ସେ ହୃଦୟରେ ଓ ମସ୍ତିଷ୍କ ଅଭ୍ୟନ୍ତରରେ ଦୃଶ୍ୟମାନ ହେବେ ।

ସେ ବେଦ ବର୍ଣ୍ଣିତ 'ଅଙ୍ଗୁଷ୍ଠ ମାତ୍ର ପୁରୁଷ' । ସେହି ପୁରୁଷଙ୍କୁ ଲକ୍ଷ୍ୟ କରି କୃଷ୍ଣ କହିଥିଲେ 'ହୃଦ୍ ଦେଶେର୍ଜ୍ଜୁନ ତିଷ୍ଠତି' । ଏଇ ଅଙ୍ଗୁଷ୍ଠ ମାତ୍ର ପୁରୁଷ ହିଁ ବାମନ । ସୂକ୍ଷ୍ମାତିସୂକ୍ଷ୍ମ ପରମାଣୁ ହିଁ ବାମନ । କ୍ଷୁଦ୍ରାତି କ୍ଷୁଦ୍ର, କିନ୍ତୁ ଅମିତ ପରାକ୍ରମୀ । ବାମନ ମଣି, ବଳିରାଜା ତାଙ୍କୁ ନ୍ୟୂନ ଦୃଷ୍ଟିରେ ଦେଖିଥିଲା । ତାକୁ ବିସ୍ମୟାରୂଢ଼ କରି ତ୍ରିବିକ୍ରମ ହେଲେ ବାମନ । ବାମନ ମଧ୍ୟରେ ଅମିତ ବିକ୍ରମ ଗୁପ୍ତ । କ୍ଷୁଦ୍ରାତିକ୍ଷୁଦ୍ର ପରମାଣୁ ଓ ଏହାର ବିଭାଜିତ ଅଂଶ ପ୍ରଖର ତେଜ ସମ୍ପନ୍ନ ତୀବ୍ର ବିକ୍ରମଶାଳୀ ।

ଏହି ଅର୍ଥରେ ପ୍ରଭୁଙ୍କ ବାମନ ରୂପର କଳ୍ପନା ହୋଇଅଛି । ସ୍କନ୍ଦ ପୁରାଣର ପୁରୁଷୋତ୍ତମ ଖଣ୍ଡରେ ଉପନିଷଦ ଓ ଶାସ୍ତ୍ର ବର୍ଣ୍ଣିତ ସ୍ତୋତ୍ରରେ ଇନ୍ଦ୍ରଦ୍ୟୁମ୍ନ 'ଯୋଗାରୂଢ଼ ତନୁ' ଅର୍ଥାତ୍ ଯୋଗାସନରେ ବସିଥିବା ନୃସିଂହଙ୍କୁ ପ୍ରାର୍ଥନା କରି କହୁଛନ୍ତି -





'ଏକାନେକ ସ୍ଥୂଳ ସୂକ୍ଷ୍ମାଣୁ ମୂର୍ତ୍ତେ
ବ୍ୟୋମାତୀତ ବ୍ୟୋମ ରୂପୈକ ରୂପ ।'

ଅର୍ଥାତ୍ ଆପଣ ଏକ ହୋଇ ମଧ୍ୟ ଅନେକ, ସ୍ଥୂଳ ହୋଇ ମଧ୍ୟ ଅଣୁ ପରି ସୂକ୍ଷ୍ମ ମୂର୍ତ୍ତି । ଆପଣ ଆକାଶରୁ ଅତୀତ, ପୁଣି ଆକାଶ ରୂପୀ । ଆକାଶ ତୁଲ୍ୟ ସର୍ବବ୍ୟାପୀ ଆପଣ । ଆକାଶ ଆପଣଙ୍କଠାରୁ ଉତ୍ପନ୍ନ ।

'ସୂକ୍ଷ୍ମାଣୁ ମୂର୍ତ୍ତି, ରୂପେ ପ୍ରଭୁ ବାମନ ଓ ତ୍ରିବିକ୍ରମ । ରଥରେ ଯିଏ ବାମନ ରୂପୀ ସେ ଇନ୍ଦ୍ରଦ୍ୟୁମ୍ନଙ୍କ ଭାଷାରେ -

ଜ୍ୟୋତି ରୂପ, ଜ୍ଞାନ ରୂପ ପ୍ରକାଶ ସ୍ତୋମ ବ୍ୟୂହାକାର ନିର୍ମାଣ ହେତୋ । ସେ ଜ୍ୟୋତି ସ୍ୱରୂପ, ଜ୍ଞାନ ରୂପ ଓ ପ୍ରକାଶ ସ୍ତୋମ ବା ଏହି ସବୁ ରୂପର ସମୂହ ମୂର୍ତ୍ତି । ସେ 'ମୂଳଭୂତ ଚତୁର୍ଣ୍ଣାଂ' - ଅର୍ଥାତ୍ ଧର୍ମ, ଅର୍ଥ, କାମ, ମୋକ୍ଷ ଆଦି ଚତୁଃବର୍ଗର ସେ ମୂଳ ସ୍ୱରୂପ । ରଥର ପ୍ରଭୁ ସେଦିନର ନୀଳମାଧବ ନୁହନ୍ତି ।

ସେ ପରମ ବ୍ରହ୍ମ - ନିରାକାର ତାଙ୍କ ପାଇଁ କୁହାଯାଇଛି 'ବନ୍ଦେ ପରମ ବାମନଂ' ରଥର ସେ ବାମନ 'ଅନନ୍ତ ପାଦଂ, ବହୁ ହସ୍ତ ନେତ୍ର ମନନ୍ତ କର୍ଣ୍ଣଂ' ଅନନ୍ତ ପାଦ ହସ୍ତ, କର୍ଣ୍ଣ, ନେତ୍ରଧାରୀ ପ୍ରଭୁଙ୍କର 'କକୁଭୌ ବସ୍ତ୍ରଂ' ଦିଗ ସମୂହ ତାଙ୍କର ବସ୍ତ୍ର ।'

ତାହାଙ୍କୁ ରଥାରୋହୀ ବାମନ ବୋଲି କାବ୍ୟରେ କୁହାଗଲା ଓ ଶେଷରେ ବହୁ ଚର୍ଚ୍ଚିତ ବାକ୍ୟରେ ବିଷ୍ଣୁ ସ୍ତୁତି କରି ସ୍ମରଣ କରିଦିଆଗଲା ।

'ଦୋଳେ ଚ ଦୋଳ ଗୋବିନ୍ଦଂ
ଚାପେ ଚ ମଧୁସୂଦନଂ
(ରଥେତୁ) ବା ରଥସ୍ଥଂ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନବିଦ୍ୟତେ ।'

ପ୍ରଭୁ ଯେତେବେଳେ ନୀଳମାଧବ ଥିଲେ, ସେତେବେଳେ ସେ ଥିଲେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ, ରଥରେ ଯେ ଆରୋହୀ, ସେ ହସ୍ତ, ପାଦ, କର୍ଣ୍ଣ ବିହୀନ ବେଦାନ୍ତ ବର୍ଣ୍ଣିତ, ଶଶୀ ସୂର୍ଯ୍ୟ ନେତ୍ରଧାରୀ, ପୁରୁଷୋତ୍ତମ, ନିରାକାର ଜଗନ୍ନାଥ ।

ରଥଯାତ୍ରାର ପ୍ରବର୍ତ୍ତନ କାଳରୁ ହିଁ ଏହି ମୂର୍ତ୍ତି ବାମନ ସ୍ୱରୂପୀ ହୁଅନ୍ତି, ତେବେ ଦାରୁମୂର୍ତ୍ତି ଭାବେ ପ୍ରଭୁ ଏକାକୀ ଥିଲେ ବୋଲି ସୂଚିତ ହେଉଛି ।

ତ୍ରିମୂର୍ତ୍ତିରେ ବାମନ ରହିପାରିବେ ନାହିଁ । ତ୍ରିମୂର୍ତ୍ତିରେ ତତ୍ତ୍ୱ ଆରୋପ କରି ସ୍କନ୍ଦ ପୁରାଣ ଯୋଗାରୂଢ଼ ନୃସିଂହଙ୍କ ଶିର ଦେଶରେ ଅନନ୍ତ ବଳଭଦ୍ର ଓ କ୍ରୋଡ଼ ଦେଶରେ ଲକ୍ଷ୍ମୀ ସ୍ୱରୂପିଣୀ ସୁଭଦ୍ରାଙ୍କୁ ସ୍ଥାନ ଦେଇଛି । ଏ କଳ୍ପନା ତ୍ରିମୂର୍ତ୍ତିଙ୍କ ଭ୍ରାତା ଭଗିନୀ ସମ୍ପର୍କର ବିରୁଦ୍ଧାଚରଣ କରୁଛି । ସ୍କନ୍ଦ ପୁରାଣ ଏହି ସମ୍ପର୍କକୁ ପୌରାଣିକ କଥା କହି ସୁଭଦ୍ରାଙ୍କୁ 'ସର୍ବ ଚୈତନ୍ୟ ରୂପିଣୀ' ଆଖ୍ୟା ଦେଇଛି ।

ପ୍ରଭୁଙ୍କ ବାମନ ରୂପ କଳ୍ପନା ମଧ୍ୟରେ ରହିଛି ସେହି ନିର୍ବିକାର, ନିରଞ୍ଜନ, ନିରାକାର ସ୍ୱରୂପ । ସ୍କନ୍ଦ ପୁରାଣ ଭାଷାରେ - 'ପୁରୁଷଂ ତମସଃ ପାରଂ ସାକ୍ଷାତ୍ ଦ୍ରକ୍ଷତି ମାନବ' - ଘୋର ତମିସ୍ରା ବା ଅନ୍ଧକାର ପରପାରରେ ପରମ ଜ୍ୟୋତି ସ୍ୱରୂପ ପୁରୁଷ ରୂପେ ଜଗନ୍ନାଥଙ୍କୁ କଳ୍ପନା କରାଯାଇ ବାମନ ତ୍ରିବିକ୍ରମ ରୂପରେ ରଥାରୋହୀ କରାଯାଇଛି । ସେ ନିଜେ ପରମ ବ୍ରହ୍ମଙ୍କ ପ୍ରତୀକ ମୂର୍ତ୍ତି । ରଥକୁ ମଧ୍ୟ ସାମଗ୍ରିକ ଭାବରେ ପ୍ରତୀକ ଧର୍ମୀ କରାଯାଇଛି । ଇନ୍ଦ୍ରିୟମାନେ ଏହାର ଅଶ୍ୱ । ସର୍ବଦେବମୟ ପ୍ରଭୁଙ୍କ ପାର୍ଶ୍ୱରେ ରଥରେ ବିଜେ ସର୍ବଦେବତା ଏକ ହୋଇ ଅନେକ ମୂର୍ତ୍ତି ସେ । ଗୁଣ୍ଡିଚା ଗୃହ ଥିବା ସ୍ଥାନରେ ପ୍ରଥମେ ତାଙ୍କର ନିର୍ମାଣ ହେଲା ସେଠାରୁ ରଥରେ ବସି ମନ୍ଦିର ଆସିଲେ । ବର୍ଷକୁ ବର୍ଷ ସେହି ସ୍ମୃତି - ଚାରଣ ପାଇଁ ରଥଯାତ୍ରା ।

ଜାତି ଏ ଯାତ୍ରାକୁ ସରସ କରିବା ପାଇଁ ଚୈତନ୍ୟ ମହାପ୍ରଭୁଙ୍କ ସାଙ୍ଗରେ ସ୍ୱର ମିଳାଇ କହିଲା - ପ୍ରଭୁଙ୍କର ଏହା ବୃନ୍ଦାବନ ଯାତ୍ରା ।

ବୃନ୍ଦାବନରେ ମଧୁର ରସ । ଉଦ୍ଧବ ଗୋପୀମାନଙ୍କୁ ଶିକ୍ଷା ଦେଲେ, 'ଶ୍ରୀକୃଷ୍ଣ ଶୂନ୍ୟ ପଦାର୍ଥ, କାହାରି ନୁହନ୍ତି ।' ଗୋପୀମାନେ ହସିଲେ । କହିଲେ- ଉଦ୍ଧବ ତୋ ଶୂନ୍ୟ ପୁରୁଷ ନେଇ ଫେରିଯା । ଆମ ପାଖରେ ସର୍ବଦା ରହିଛି ଲବଣୀ ଚୋର, ଚିତ୍ତ ଚୋର, ବସ୍ତ୍ର ଚୋର, ଚନ୍ଦନ ଚର୍ଚ୍ଚିତ ଗୋପାଳ ।'

ଗୁଣ୍ଡିଚା ଏହି ନିରାକାର ବାମନଙ୍କ ସାକାର ଭାବେ ରସାସ୍ୱାଦନର ଜନପାବନକାରୀ ଯାତ୍ରା ।

ଏନ୍-୧/୧୮୩
ଅନନ୍ୟ ନିକେତନ, ନୂଆପଲ୍ଲୀ
ଭୁବନେଶ୍ୱର









# ଯୁଗେ ଯୁଗେ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ

ସଦାଶିବ ମିଶ୍ର

**ପୃ**ଥିବୀ ମଧ୍ୟରେ ଭାରତ ଦେଶ, ଭାରତ ମଧ୍ୟରେ ଓଡ଼ିଶା ରାଜ୍ୟ, ଓଡ଼ିଶା ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ବା ପୁରୀ ଏକ ବିଶ୍ୱ ପ୍ରସିଦ୍ଧ ସ୍ଥାନ । ଭୌଗୋଳିକ, ଐତିହାସିକ, ପୌରାଣିକ, ଧାର୍ମିକ ଦୃଷ୍ଟିକୋଣରୁ ଏହି ସ୍ଥାନ ବୈଚିତ୍ର୍ୟମୟ ଓ ମହିମାମୟ । ଏହି ସ୍ଥାନ ବିଷୟରେ ଚିନ୍ତାକଲା ବେଳେ ଭାବନାର ଖିଅ ସରେ ନାହିଁ, ଅନେକ ଚିନ୍ତା ଓ ଚେତନାର ଖିଅ ବୁଢ଼ିଆଣୀ ଜାଲପରି ଛନ୍ଦି ହୋଇଯାଏ ମନ ରାଜ୍ୟରେ । ଏହି କ୍ଷେତ୍ରର ଅଧିପତି ବା ଶିରୋମଣି ସର୍ବମୟ କର୍ତ୍ତା ଶ୍ରୀପୁରୁଷୋତ୍ତମ ହୋଇଥିବାରୁ ଏହି ସ୍ଥାନର ନାମ ପୁରୁଷୋତ୍ତମ ଥିଲା । କାଳକ୍ରମେ ଏହା ପୁରୀ ନାମରେ ବିଦିତ ହୋଇଅଛି । ୧୮୪୦-୪୧ ମସିହା ପର୍ଯ୍ୟନ୍ତ ପୁରୁଷୋତ୍ତମ କ୍ଷେତ୍ର ନାମ ବ୍ୟବହାର କରାଯାଉଥିବାର ପ୍ରମାଣ ମିଳେ ।

ପୁରୁଷୋତ୍ତମ କହିଲେ ଆମେ ବିଷ୍ଣୁଙ୍କୁ ବୁଝିଥାଉ । ବେଦ, ଉପନିଷଦ ଓ ବିଭିନ୍ନ ଶାସ୍ତ୍ର, ଗ୍ରନ୍ଥମାନଙ୍କରେ ଆମ୍ଭେ ଏହି ନାମଟି ଦେଖିବାକୁ ପାଉ । ଜଗନ୍ନାଥ ନାମ କେବେ ଲୋକମୁଖରେ ପ୍ରଚଳିତ ହେଲା ସେ ସଂପର୍କରେ ସଠିକ୍ ତଥ୍ୟ ନଥିଲେ ମଧ୍ୟ ପୁରୁଷୋତ୍ତମଙ୍କୁ ଜଗନ୍ନାଥ ନାମରେ ନାମିତ କରାଯାଇଥିବା ଜଣାଯାଏ । ବୌଦ୍ଧ ଧର୍ମାବଲମ୍ବୀ ରାଜା ଇନ୍ଦ୍ରଭୂତି ତାଙ୍କ ରଚିତ 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ବୁଦ୍ଧଙ୍କର ସ୍ତୁତିଗାନ କରିବାକୁ ଯାଇ ଲେଖିଛନ୍ତି -

'ପ୍ରଣ ପତ୍ୟ ଜଗନ୍ନାଥ ସର୍ବଜୈନ ବରାର୍ଚ୍ଚିତମ୍
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।'

ଏହା ଅଷ୍ଟମ ଶତାବ୍ଦୀରେ ରଚିତ । ଖ୍ରୀଷ୍ଟୀୟ ଚତୁର୍ଥ ଶତକ ବେଳକୁ ଉଡ୍ର ଦେଶରେ ସମୁଦ୍ର ତୀରବର୍ତ୍ତୀ ଏକ ସ୍ଥାନରେ 'ପୁରୁଷ ମଣ୍ଡପ' ନାମରେ ଏକ ପ୍ରସିଦ୍ଧ ମଣ୍ଡପ ଥିଲା, ସେଠାର ଅଧିବାସୀମାନେ ପୁରୁଷୋତ୍ତମ ବିଗ୍ରହ ସ୍ଥାପନା କରି ଉପାସନା କରୁଥିଲେ । ଏଠାର ବ୍ରାହ୍ମଣମାନେ ନିତ୍ୟ ବେଦପାଠ କରୁଥିଲେ । ମଣ୍ଡପ ନିକଟ ମହୋଦଧିରେ ସ୍ନାନ କରି ପୁଣ୍ୟ ଅର୍ଜନ କରୁଥିଲେ । ନାଗପୁର ସଂଗ୍ରହାଳୟରେ ଗଚ୍ଛିତ ତ୍ରିଫଳି ତାମ୍ର ଶାସନରେ ପୁରୁଷ ମଣ୍ଡପ ନାମ ଦେଖିବାକୁ ମିଳେ ।

ଅଷ୍ଟମ ଶତାବ୍ଦୀ ବେଳକୁ ପୁରୁଷୋତ୍ତମ କ୍ଷେତ୍ର ସମଗ୍ର ଭାରତବର୍ଷରେ ଏକ ପ୍ରଧାନ ତୀର୍ଥସ୍ଥଳ ରୂପେ ପରିଗଣିତ ହୋଇଥିଲା । ଏହି ପରମ ତୀର୍ଥ ସ୍ଥଳକୁ ଆସି ପୁଣ୍ୟ ଅର୍ଜନ ପାଇଁ ଯାତ୍ରୀଙ୍କ ସମାଗମ ହୋଇଥିଲା । ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ପୁରୁଷୋତ୍ତମ କ୍ଷେତ୍ରକୁ ଆସି ଏହି କ୍ଷେତ୍ରର ମହାନତାରେ ମୁଗ୍ଧ ହୋଇଥିଲେ ଓ ଏହି କ୍ଷେତ୍ରରେ ନିଜର ଏକ ମଠ ସ୍ଥାପନ କରି ଜଣେ ଶିଷ୍ୟଙ୍କୁ ରଖାଇଥିଲେ ଯାହା 'ଗୋବର୍ଦ୍ଧନ ମଠ' ବା ପୀଠ ଭାବରେ ବିଦିତ । ଶଙ୍କରାଚାର୍ଯ୍ୟ ପୁରୁଷୋତ୍ତମଙ୍କୁ ଜଗନ୍ନାଥ ଭାବେ ବନ୍ଦନା କରିଛନ୍ତି ଜଗନ୍ନାଥାଷ୍ଟକମ୍‌ରେ

'କଦାଚିତ କାଳିନ୍ଦୀ-ତଟ ବିପିନ ସଙ୍ଗୀତ କରବୋ
ମୁଦାଭୀରୀ-ନାରୀ ବଦନ-କମଳା ସ୍ୱାଦ-ମଧୁପଃ
ରମା-ଶମ୍ଭୁ-ବ୍ରହ୍ମା-ସୁରପତି ଗଣେଶାର୍ଚ୍ଚିତ ପଦୋ
ଜଗନ୍ନାଥ ସ୍ୱାମୀ, ନୟନ ପଥଗାମୀ ଭବ ତୁମେ ।'

ମହାଶିବ ଗୁପ୍ତ ଯଯାତି ଓଡ଼ିଶାରେ ରାଜତ୍ୱ କଲାପରେ ସମୁଦ୍ର ବେଳା ଭୂମିରେ ଶ୍ରୀପୁରୁଷୋତ୍ତମଙ୍କ ସକାଶେ ଏ ମଣ୍ଡପ ବା ମନ୍ଦିର ନିର୍ମାଣ କରିଥିଲେ । ପୁରୁଷୋତ୍ତମ ଉପାସନା ବହୁବର୍ଷ ଧରି ଏହି ଉଡ୍ର, ଉତ୍କଳ, କଳିଙ୍ଗ ଭୂଖଣ୍ଡରେ ହେଉଥିବାର ଜଣାଯାଏ । ଅଷ୍ଟମ ଶତାବ୍ଦୀରେ ଗଙ୍ଗସମ୍ରାଟ ଦେବେନ୍ଦ୍ର ବର୍ମାଙ୍କ ପ୍ରଦତ୍ତ ତାମ୍ର ଶାସନରୁ ଏହି କ୍ଷେତ୍ର ପୁରୁଷ ବନ ନାମରେ ନାମିତ ହୋଇଥିବା ଜଣାଯାଏ ।

ଶ୍ରୀକ୍ଷେତ୍ରର ସମୁଦ୍ର ତୀରବର୍ତ୍ତୀ ତମାଳ ଅରଣ୍ୟ ରାଜି ମଧ୍ୟରେ ପୁରୁଷୋତ୍ତମଙ୍କ ସୁଦୃଶ୍ୟ ପ୍ରାସାଦ ଥିବା କଥା ସଂସ୍କୃତ ନାଟ୍ୟକାର ମୁରାରୀ ମିଶ୍ରଙ୍କ 'ଅନର୍ଘ ରାଘବ' ନାଟକରୁ ଜଣାପଡ଼େ । ଏ ନାଟକ ଶ୍ରୀକ୍ଷେତ୍ରର ରଥଯାତ୍ରା ଅବସରରେ ଅଭିନୀତ ହୋଇଥିଲା । ପୁରୁଷୋତ୍ତମଙ୍କ ଯାତ୍ରାରେ ଭାଗ ନେବା ପାଇଁ ଅନୁରୋଧ କରି ନାଟକର ସୂତ୍ରଧର କହିଛନ୍ତି -

ଭୋ ଭୋ ଲବଣାବଧି ବେଳା ବନାନୀ
ତମାଳ ତରୁ କଲ୍ଲକ ତ୍ରିଭୁବନ ମୌଳିମଣ୍ଡନସ୍ୟ
ମହା ନୀଳମଣେ କମଳା କୁଚ କଳସ କେଳି ପତ୍ରୀଙ୍କୁ ରସ୍ୟ
ଭଗବତାଃ ପୁରୁଷୋତ୍ତମସ୍ୟ ଯାତ୍ରାୟାମୁ ପସ୍ଥାପନୀୟା ସଭାସଦଃ ।





ପ୍ରବୋଧ ଚନ୍ଦ୍ରୋଦୟ ନାଟକରେ ନାଟ୍ୟକାର କୃଷ୍ଣ ମିଶ୍ର ମଧ୍ୟ ପୁରୁଷୋତ୍ତମଙ୍କ କଥା ଉଲ୍ଲେଖ କରିଛନ୍ତି -

ଅହମ୍ଭ ଉତ୍କଳ ଦେଶାଦାଗତୋସ୍ମି
ଅସ୍ତିତତ୍ର ସାଗରତୀରେ ପୁରୁଷୋତ୍ତମ ମାଖ୍ୟମଂ ଦେବାୟତନମ୍ ।

ନାଟ୍ୟକାର ମୁରାରୀ ମିଶ୍ର ଓ କୃଷ୍ଣ ମିଶ୍ର ଉଭୟେ ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିର ସମୁଦ୍ରତଟରେ ଥିଲା ବୋଲି ଦର୍ଶାଇଛନ୍ତି । ସତ୍ୟ ନାରାୟଣ ରାଜଗୁରୁ ତାଙ୍କର ଗ୍ରନ୍ଥରେ ପୁରୀ କ୍ଷେତ୍ର ପୁରୁଷୋତ୍ତମରୁ ସୃଷ୍ଟି ହୋଇଛି ବୋଲି ବର୍ଣ୍ଣନା କରିଛନ୍ତି ।

ମାଦଳା ପାଞ୍ଜି ବର୍ଣ୍ଣନା ଅନୁସାରେ ସମୁଦ୍ରର ବାରମ୍ବାର ଜୁଆର ଭଙ୍ଗା ଓ ପ୍ଲାବନ ଯୋଗୁଁ ପୁରୁଷୋତ୍ତମଙ୍କୁ ପୁରୁଷୋତ୍ତମ କ୍ଷେତ୍ରରୁ ଦକ୍ଷିଣ କୋଶଳର ରାଜଧାନୀ ସୁବର୍ଣ୍ଣପୁର (ସୋନପୁର) ସୀମାବର୍ତ୍ତୀ ବିନିକା ଗ୍ରାମକୁ ନିଆଯାଇଥିଲା । ମହାଭବ ଗୁପ୍ତ ଯଯାତିଙ୍କ ଦ୍ୱାରା ପୁରୁଷୋତ୍ତମ ବିଗ୍ରହ ଉଦ୍ଧାର ହେବା ସହ ଯଯାତି ପୁରୁଷୋତ୍ତମଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରି ଠାକୁରଙ୍କ ପାଖେ ସ୍ୱର୍ଣ୍ଣମୁଦ୍ରା ଭେଟି ଦେଇଥିବାର ଜଣାଯାଏ । କାଳକ୍ରମେ ଯବନ ଆକ୍ରମଣ ଯୋଗୁଁ ଠାକୁରଙ୍କୁ ବାରମ୍ବାର ସ୍ଥାନାନ୍ତରିତ କରିବା ଯୋଗୁଁ ଓ ମନ୍ଦିରର ଉପଯୁକ୍ତ ଯତ୍ନ ନନେବା ଫଳରେ ଯଯାତିଙ୍କ ଦ୍ୱାରା ନିର୍ମିତ ମନ୍ଦିର ମଧ୍ୟ ଅବକ୍ଷୟର ଶିକାର ହୋଇଥିବା ଜଣାଯାଏ । ପରବର୍ତ୍ତୀ କାଳରେ ଗଙ୍ଗବଂଶର ସମ୍ରାଟ ଚୋଡ଼ଗଙ୍ଗ ଦେବ ଓ ଅନଙ୍ଗ ଭୀମଦେବ ବର୍ତ୍ତମାନର ମନ୍ଦିର ନିର୍ମାଣ କରିଥିବାର ଜଣାଯାଏ । ଚୋଡ଼ଗଙ୍ଗ ଦେବ ଜଣେ ପ୍ରତାପଶାଳୀ ରାଜା ଥିଲେ । ବହୁ ଯୁଦ୍ଧରେ ସେ ଜୟ ଲାଭ କରି ଅପାର ଧନରତ୍ନ ଲାଭ କରି ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ । ଚୋଡ଼ଗଙ୍ଗ ଦେବଙ୍କ ଜଗନ୍ନାଥ ମନ୍ଦିର ନିର୍ମାଣ ରାଜପ୍ରଶସ୍ତି ଶ୍ଳୋକରୁ ପୁରୁଷୋତ୍ତମଙ୍କ ସଂପର୍କରେ ଚମତ୍କାର ବର୍ଣ୍ଣନା ଦେଖିବାକୁ ମିଳେ ।

'ପାଦୌ ଯସ୍ୟ ଧରାନ୍ତରୀକ୍ଷ ମଖିଳଂ
ନାଭିଷ୍ଟ ସର୍ବାଦିଶଃ

ଶ୍ରୋତ୍ରେ ନେତ୍ର ଯୁଗଂ ରବୀନ୍ଦୁ ଯୁଗଳଂ
ମୂର୍ଦ୍ଧା ପିଚ ଦୌରସୌ ।
ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତେଃ
କୋ ନାମ କର୍ତ୍ତୁଂକ୍ଷମ-
ସ୍ତସ୍ୟେତାଦ୍ୟ - ନୃପୈରୁପେକ୍ଷିତ ମୟଂ
ଚକ୍ରେସ୍ମି ଗଙ୍ଗେଶ୍ୱର ।'

ଶ୍ଳୋକଟିର ଅର୍ଥ ଏହିପରି- 'ଯାହାଙ୍କର ପାଦଦ୍ୱୟ ଅଖିଳ ଧରଣୀ ଏବଂ ଅନ୍ତରୀକ୍ଷକୁ ଆଚ୍ଛାଦନ କରିଛି, ଯାହାଙ୍କର ନାଭି ସମସ୍ତ ଦିଗମାନଙ୍କର ଆବର୍ତ୍ତନ ତୁଲ୍ୟ, ନେତ୍ରଦ୍ୱୟ ସୂର୍ଯ୍ୟ ଓ ଚନ୍ଦ୍ର କିରଣ ପରି ଉଦ୍ଭାସିତ, ଯାହାଙ୍କର ମୂର୍ଦ୍ଧା ସୁବିସ୍ତୀର୍ଣ୍ଣ ଦ୍ୟୁଲୋକ ପରି ପ୍ରସାରିତ, ସେହି (ଦେବ ଦେବ) ପୁରୁଷୋତ୍ତମଙ୍କ ବିରାଟ ପ୍ରାସାଦ, ଯାହାକି ପ୍ରାଚୀନ ନୃପତିମାନଙ୍କ ଦ୍ୱାରା ଉପେକ୍ଷିତ ହୋଇ ରହିଥିଲା ତାହା ଗଙ୍ଗେଶ୍ୱର (ଚୋଡ଼ଗଙ୍ଗ) ବିନା ଅନ୍ୟ କିଏ ବା ନିର୍ମାଣ କରିବାକୁ ସକ୍ଷମ ହୋଇପାରନ୍ତେ ।' ଚୋଡ଼ଗଙ୍ଗ ଦେବ, ଦେବ ଦେବ ପୁରୁଷୋତ୍ତମଙ୍କ ପାଇଁ ମନ୍ଦିରଟିଏ ନିର୍ମାଣ କରି ପୁରୁଷୋତ୍ତମ ଉପାସନା କରୁଥିବା ଶ୍ରଦ୍ଧାଳୁ ଭକ୍ତମାନଙ୍କର ଅଶେଷ କଲ୍ୟାଣ କରିଯାଇଛନ୍ତି ଓ ଏହାଦ୍ୱାରା ତାଙ୍କର ଯଶ ମଧ୍ୟ ବହୁଗୁଣିତ ହୋଇଥିବାର ଜଣାଯାଏ ।

ଶ୍ରୀପୁରୁଷୋତ୍ତମ କ୍ଷେତ୍ର ସଂପର୍କରେ ଅନେକ ପୁରାଣ ଓ ଶାସ୍ତ୍ରରେ ଏହାର ଭୂରି ଭୂରି ମହିମା ଦେଖିବାକୁ ମିଳେ । ଏପରିକି ପ୍ରଳୟ କାଳରେ ପ୍ରଳୟ ଜଳରେ ପୁରୁଷୋତ୍ତମ କ୍ଷେତ୍ର ମଗ୍ନ ହୋଇନଥିବା ବର୍ଣ୍ଣନା ଦେଖିବାକୁ ମିଳେ । 'କପିଳ ସଂହିତା'ରେ ଉଲ୍ଲେଖ ଅଛି -

'ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ପୁରୁଷୋତ୍ତମଃ
ସେର୍ବଷାଂ ଚୈବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମଃ ।'

ପୁରୁଷୋତ୍ତମ କ୍ଷେତ୍ର ଏକ ଦେବ ଦୁର୍ଲ୍ଲଭ କ୍ଷେତ୍ର, ପୁରୁଷୋତ୍ତମଙ୍କ ଉପସ୍ଥିତି ଏହି କ୍ଷେତ୍ରକୁ ମହନୀୟ କରି ତୋଳିଛି ବୋଲି ବ୍ରହ୍ମ ପୁରାଣ ବର୍ଣ୍ଣନା କରିଛି ।

'ଆସ୍ତେ ତତ୍ର ମୁନିଶ୍ରେଷ୍ଠ ବିଖ୍ୟାତ ପୁରୁଷୋତ୍ତମଃ
ଯାବତ ଉତ୍କଳ ମର୍ଯ୍ୟାଦା ଦିକ୍ କ୍ରମେଣ ପ୍ରକୀର୍ତ୍ତିତ ।
ତାବତ୍ କୃଷ୍ଣ ପ୍ରସାଦେନ ଦେଶଃ ପୁଣ୍ୟ ତମୋହିସଃ
ଯତ୍ର ତ୍ରିଷ୍ଠତି ବିଶ୍ୱାତ୍ମା ଦେଶେ ସ ପୁରୁଷୋତ୍ତମ ।'

ଅର୍ଥାତ୍, 'ହେ ମୁନିମାନେ ସେହି କ୍ଷେତ୍ରରେ ବିଖ୍ୟାତ ପୁରୁଷୋତ୍ତମ ବିରାଜମାନ । ଦିଗ ବିଭାଗ ଅନୁସାରେ ଯେତେ ଦୂର ପର୍ଯ୍ୟନ୍ତ ଉତ୍କଳ ଦେଶର ସୀମା ଅଛି, ଯେଉଁଠାରେ ବିଶ୍ୱାତ୍ମା ପୁରୁଷୋତ୍ତମ ବିରାଜମାନ, କୃଷ୍ଣଙ୍କର ପ୍ରସାଦରେ ସେହି ଦେଶ ପୁଣ୍ୟତମ । ତନ୍ତ୍ରଯାମଳ ଗ୍ରନ୍ଥର ୧୭ଶ ଖଣ୍ଡରେ ପୁରୁଷୋତ୍ତମ କ୍ଷେତ୍ର ଓ ଜଗନ୍ନାଥଙ୍କ ନାମ ଆମେ ଦେଖିବାକୁ ପାଉ । ଏହି ଗ୍ରନ୍ଥଟି ଚତୁର୍ଥ ଶତାବ୍ଦୀ ବା ତା' ପୂର୍ବରୁ ରଚିତ ହୋଇଥିବାର ଜଣାଯାଏ -

'ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମଂ
ଦାରୁରୂପୀ ଜଗନ୍ନାଥେ ଭକ୍ତନାମ ଭୟପ୍ରଦଃ ।'

ନାରଦୀୟ ପୁରାଣରେ ପୁରୁଷୋତ୍ତମ କ୍ଷେତ୍ରର ଚମତ୍କାର ବର୍ଣ୍ଣନା ଦେଖିବାକୁ ମିଳେ ।

'ଦଶ ଯୋଜନ ବିସ୍ତୀର୍ଣ୍ଣଂ କ୍ଷେତ୍ର ପରମ ଦୁର୍ଲ୍ଲଭମ୍
ନକ୍ଷତ୍ରାଣାଂ ଯଥା ସୋମଃ ସରସା ସାଗରୋଯଥା ।
ତଥା ସମସ୍ତ ତୀର୍ଥାନାଂ ବରିଷ୍ଠ ପୁରୁଷୋତ୍ତମ
ବସୁନାଂ ପାବକୋ ଯଦ୍ ବଦ୍ରୁଦ୍ରାଣାଂ ଶଙ୍କରୋ ଯଥା ।
ତଥା ଶ୍ରେଷ୍ଠଂହି ତୀର୍ଥାନାଂ ସର୍ବୋଷାଂ ପୁରୁଷୋତ୍ତମ
ବର୍ଣ୍ଣନା ବ୍ରାହ୍ମଣା ଯଦ୍‌ବଦ୍ ବୈନତେୟଶ୍ଚ ପକ୍ଷିଣାମ୍ ।





ତଥା ସମସ୍ତ ତୀର୍ଥାନାଂ ବରିଷ୍ଠ ପୁରୁଷୋତ୍ତମ
ସେନାନୀନାଂ ଯଥା ସ୍କନ୍ଦଃ ସିଦ୍ଧାନାଂ କପିଳୋ ଯଥା ।।'

ମୁକ୍ତିଲାଭ କରିବା ସକାଶେ ପୁରୁଷୋତ୍ତମ କ୍ଷେତ୍ର ଛଡ଼ା ଅନ୍ୟକ୍ଷେତ୍ର ସଂସାରରେ ନାହିଁ । ଏହି କ୍ଷେତ୍ରରେ ସାକ୍ଷାତ୍ ପରମବ୍ରହ୍ମ ଦାରୁବ୍ରହ୍ମ ରୂପେ ବିରାଜମାନ ବୋଲି 'ଶିବ ପୁରାଣ' ବର୍ଣ୍ଣନା କରିଛି ।

'ପୁରୁଷୋତ୍ତମାତ୍ ପରଂକ୍ଷେତ୍ର ନାସ୍ତ୍ୟନ୍ୟତ୍ ଭବମୋଚନଂ
ତତ୍ର ସାକ୍ଷାତ୍ ପରଂବ୍ରହ୍ମ ଦାରୁବ୍ରହ୍ମ ଶରୀର ଭୃଦ ।'

ଓଡ଼ିଆ ସାହିତ୍ୟର ଆଦିକବି ସାରଳା ଦାସ ନିଜ କୃତ ମହାଭାରତର ଭୀଷ୍ମ ପର୍ବରେ ପୁରୁଷୋତ୍ତମ କ୍ଷେତ୍ର ଓ ପୁରୁଷୋତ୍ତମଙ୍କ ନାମ ଉଲ୍ଲେଖ କରିଛନ୍ତି ।

'ପୁରୁଷୋତ୍ତମ କ୍ଷେତ୍ର ଯେ କୋଟିୟେ ତୀର୍ଥ ଘେନି
ବସିଲେ ହରି ବଳରାମ ସୁଭଦ୍ରା ଯେ ତିନି
ପୁରୁଷମାନଙ୍କର ଉତ୍ତମ ଯେଣୁ ପୁରୁଷୋତ୍ତମ ନାମ
ପରମାନନ୍ଦ ସ୍ୱାମୀ ଅଧମ ଉଦ୍ଧାରଣ ।'

ପ୍ରକୃତି ଓ ପୁରୁଷ ଏକ କାଳୋତ୍ତୀର୍ଣ୍ଣ ସ୍ତରରେ ମିଳିତ ହୋଇ ଆଉ ଏକ ଦ୍ରଷ୍ଟା ପୁରୁଷକୁ ତା'ର ରସ ଓ ରହସ୍ୟ ବୁଝିବାକୁ ଏଠି ଆହ୍ୱାନ ଜଣାଇ ଆସୁଛନ୍ତି । ସେ ଶବ୍ଦ କେହି ଶୁଣୁ ବା ନଶୁଣୁ, ତାହା ହିଁ ନିର୍ଘୋଷିତ ତରଙ୍ଗର ତଟ ଦେଶରେ, ଏଠାକାର ଗଗନ ପବନର ଘଣ୍ଟ ଘଣ୍ଟାର ଅନାହତ ଧ୍ୱନିରେ । ଏହି ଅନାହତ ସ୍ୱର କମ୍ପନରେ ଲୟବଦ୍ଧ କାବ୍ୟ ଚେତନା ଅଶ୍ରୁତ ପୂର୍ବ ସଂଗୀତକୁ କେତେବେଳେ କରାୟତ କରିଛି ତ କେତେବେଳେ ଜୀବନ ଓ ମାନବ ଐତିହ୍ୟର ପରିବର୍ତ୍ତିତ ପଟ୍ଟଭୂମିରେ ଏହା ରୂପାନ୍ତରିତ ହୋଇଛି ଭିନ୍ନ ଭିନ୍ନ ଚେତନାରେ ।

ତନ୍ତ୍ର, ପୁରାଣଠାରୁ ଆରମ୍ଭ କରି ପ୍ରାଚୀନ ଯୁଗର ଓ ବର୍ତ୍ତମାନ ଯୁଗର ବହୁ କବିଙ୍କ କାବ୍ୟ ଚେତନାରେ ମହିମାମୟ ହୋଇ ଉଠିଛି ଶ୍ରୀକ୍ଷେତ୍ର । ଏ କ୍ଷେତ୍ରରେ ପାଦଥାପି ଦେଲେ ଦେହରେ, ମନରେ ଖେଳିଯାଏ ଅପୂର୍ବ ଶ୍ରୀହରଣ । ମନପକ୍ଷୀ ଉଡ଼ିବୁଲେ କେତେ ବେଳେ ଶ୍ରୀମନ୍ଦିର ପାଟ ଅଗଣାରେ ତ କେତେବେଳେ ସାଗର ବେଳା ଭୂମିରେ । ଏହି କ୍ଷେତ୍ର ଗୋପ, ପୁଣି ବୃନ୍ଦାବନ, ଏହି କ୍ଷେତ୍ର ଅଯୋଧ୍ୟା ପୁଣି ଦ୍ୱାରକା, ଏହିଠାରେ ନିତ୍ୟ ରାସ ହୁଏ ବୋଲି ଓଡ଼ିଆ ଭାଗବତକାର ଅତିବଡ଼ୀ ଜଗନ୍ନାଥ ଦାସ 'ପରିଚୟ ବୋଧିନୀ'ରେ ନିତ୍ୟ ବୃନ୍ଦାବନ କବିତାରେ ଉଲ୍ଲେଖ କରିଛନ୍ତି ।

ଏ କ୍ଷେତ୍ର ପୁରୁଷ ଉତ୍ତମ । ଅଟଇ ନିତ୍ୟ ବୃନ୍ଦାବନ ।
ଭାର୍ଗବୀ ନଦୀ ଯେ ଯମୁନା । ବୃନ୍ଦାବନକୁ ଘରଘେନା ।।
ଶଙ୍ଖର ଅଗ୍ରଭାଗ ଯହିଁ । ଗୋପୁର ବୃନ୍ଦାବନ କହି ।।
ସେ ବଳଗଣ୍ଡି ଯେ ଅଯୋଧ୍ୟା । ଦ୍ୱାରକା ଘଟ ମହାସିଦ୍ଧା ।।
ଗଙ୍ଗା ସାଗର ଯେ ସଙ୍ଗମ । ସକଳ ତୀର୍ଥ ସମାଗମ ।।
ଏ ଶଙ୍ଖ ନାଭି ମଣ୍ଡଳରେ । ନିତ୍ୟ ରାହାସକୁ ଆଚରେ ।।
ରାଧା ଯେ ନିମ୍ନଅଙ୍ଗ ବହି । କୃଷ୍ଣ ଉର୍ଦ୍ଧ୍ୱରେ ଛନ୍ତି ରହି ।।

ରୀତି ଯୁଗର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କର କାବ୍ୟ କବିତାରେ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କୁ ସ୍ଥାନ ଦେଇଛନ୍ତି । କ୍ଷେତ୍ର ମଧ୍ୟରେ ଶ୍ରେଷ୍ଠ କ୍ଷେତ୍ର ହେଉଛି ପୁରୁଷୋତ୍ତମ କ୍ଷେତ୍ର, କାରଣ ଏଠାରେ ସ୍ୱୟଂ ପୁରୁଷୋତ୍ତମ ବିରାଜମାନ କରିଛନ୍ତି ବୋଲି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ବର୍ଣ୍ଣନା କରିଥିବାବେଳେ 'ସୁଭଦ୍ରା ପରିଣୟ' କାବ୍ୟରେ ଉଲ୍ଲେଖ କରିଛନ୍ତି ।

ସିନ୍ଧୁତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ ଅଛି ତହିଁ ବହୁତ ଆଶ୍ଚର୍ଯ୍ୟ ହେ ।

ଏହି କ୍ଷେତ୍ରର ମହିମା ଅନନ୍ୟ । ଏହି କ୍ଷେତ୍ରର ଦାଣ୍ଡ-ବଡ଼ଦାଣ୍ଡ, ବାଲି ଶରଧା ବାଲି, ମନ୍ଦିର-ଶ୍ରୀମନ୍ଦିର, ସମୁଦ୍ର-ମହୋଦଧି, ଶ୍ମଶାନ-ସ୍ୱର୍ଗଦ୍ୱାର, ମନ୍ଦିରର ନେତ-ପତିତପାବନ ବାନା, ଠାକୁର-ବଡ଼ଠାକୁର, ପ୍ରସାଦ-ମହାପ୍ରସାଦ । ପୁରୁଷୋତ୍ତମଙ୍କ ପାଇଁ ସବୁକିଛି ମହିମାମୟ ହୋଇଉଠିଛି । ପରଂବ୍ରହ୍ମ ପୁରୁଷୋତ୍ତମଙ୍କ ଯୋଗୁଁ ଏହି କ୍ଷେତ୍ରର ଧୂଳି, ବାଲି ମଧ୍ୟ ମହାନ୍ ଓ ପବିତ୍ର । ଭକ୍ତ ଓ ଦର୍ଶନାର୍ଥୀ ଶ୍ରୀମନ୍ଦିର ସମ୍ମୁଖରେ ପତିତପାବନଙ୍କୁ ଦର୍ଶନ କରିବା ସହିତ ବଡ଼ଦାଣ୍ଡର ଧୂଳି ମୁଣ୍ଡରେ ମାରି ପୁଣ୍ୟ ଅର୍ଜନ କରନ୍ତି । ଏହି କ୍ଷେତ୍ରର ପବିତ୍ରତା, ମହାନତା ଓ ଆକର୍ଷଣରେ ଆତ୍ମହରା ହୋଇ ଅନେକ କବିଙ୍କ କଣ୍ଠରୁ ଝରିପଡ଼ିଛି ଅସଂଖ୍ୟ ଭଜନ, ଜଣାଣ, କାବ୍ୟ କବିତାର ସାବଲୀଳ ପଂକ୍ତି ।

ଏହି କ୍ଷେତ୍ରର ଆକର୍ଷଣରେ ଯୁଗେ ଯୁଗେ ବହୁ ମନୀଷୀ, ତପସ୍ୱୀ, ସାଧକ, ଧର୍ମ ପ୍ରଚାରକ, ଦାର୍ଶନିକ, କବି, ଲେଖକ, ପର୍ଯ୍ୟଟକ, ସାଧୁ, ସନ୍ଥ, ଜ୍ଞାନୀ, ମାନୀ ଆସିଛନ୍ତି । ଏହି ପବିତ୍ର ମହିମାବନ୍ତ କ୍ଷେତ୍ରର ମହିମାରେ ଅଭିଭୂତ ହୋଇଛନ୍ତି । କେହି କେହି ଶ୍ରୀଜଗନ୍ନାଥଙ୍କ ରୂପରେ ନିଜର ଇଷ୍ଟଙ୍କୁ ଦର୍ଶନ କରି ତୃଷ୍ଟ ହୋଇଛନ୍ତି, ଧନ୍ୟ ହୋଇଛନ୍ତି ।

ପୁରୁଷୋତ୍ତମ ବା ଶ୍ରୀକ୍ଷେତ୍ରର ବର୍ଣ୍ଣନା ଯେପରି ବହୁ ଶାସ୍ତ୍ର ଓ ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ, ସେହିପରି ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି କେତେ ଯେ ସାହିତ୍ୟ ସୃଷ୍ଟି ହୋଇଛି ତା'ର କଳନା କରିହେବ ନାହିଁ । ଅନେକ ପ୍ରକାଶ ପାଇଛି । ଅନେକ ଏବେ ମଧ୍ୟ ଅପ୍ରକାଶିତ ବା ଲୋକଲୋଚନକୁ ଆସିପାରିନାହିଁ ।

ପୁରୀ ଗୋବର୍ଦ୍ଧନ ମଠର ପ୍ରତିଷ୍ଠାତା ଆଦି ଶଙ୍କରାଚାର୍ଯ୍ୟ ଲେଖିଥିଲେ -

ପୁରୁଷୋତ୍ତମସ୍ତୁ କ୍ଷେତ୍ରଂ
ବିମଳାଖ୍ୟାହି ଦେବୀ ଜଗନ୍ନାଥୋ[illegible]ଷ୍ୟ ଦେବତା ।

ଶଙ୍କରାଚାର୍ଯ୍ୟ ତାଙ୍କ ରଚିତ ଜଗନ୍ନାଥାଷ୍ଟକମ୍‌ର 'ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁମେ' - ବୋଲି ବର୍ଣ୍ଣନା କରିଛନ୍ତି ।

ଶଙ୍କରାଚାର୍ଯ୍ୟ ଜଗନ୍ନାଥ ଶବ୍ଦଟି ବ୍ୟବହାର କରିଥିଲେ ମଧ୍ୟ ଏହାର ବହୁ ପରେ ଏହି ନାମଟି ଲୋକମୁଖରେ ପ୍ରଚଳିତ ହୋଇଥିବା ଜଣାଯାଏ । ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଜଗନ୍ନାଥ ନାମ ଶିଳାଲିପିରେ ଦେଖିବାକୁ ମିଳେ । ଆମର (ହିନ୍ଦୁ ଧର୍ମାବଲମ୍ବୀ) ଆଧାତ୍ମିକ ପରମ୍ପରାରେ ବିଶ୍ୱନାଥ, ଲୋକନାଥ, ବଦ୍ରିନାଥ, ଦ୍ୱାରକାନାଥ, ବିଠଲନାଥ, ଭେଙ୍କଟନାଥ ଓ ଜଗନ୍ନାଥ ପରିଚିତ । ବିଷ୍ଣୁ ସହସ୍ର ନାମରେ କୁହାଯାଇଛି -

'ତସ୍ୟ ଲୋକ ପ୍ରଧାନସ୍ୟ
ଜଗନ୍ନାଥସ୍ୟ ଭୁପତେଃ
ବିଷ୍ଣୋର୍ନାମ ସହସ୍ରଂ ମେ
ଶୃଣୁ ପାପ ଭୟାପହ ।'

ସପ୍ତଶତୀ ଶ୍ରୀଚଣ୍ଡୀରେ ଉଲ୍ଲେଖ ଅଛି-

'ଉଦ୍‌ଘୋଚିତ ଜଗନ୍ନାଥ
ତୟା ମୁକ୍ତୋ ଜନାର୍ଦ୍ଦନ ।'

ବେଦ ଓ ଉପନିଷଦରେ 'ଜଗନ୍ନାଥ' ଶବ୍ଦର ଉଲ୍ଲେଖ ନଥିଲେ ମଧ୍ୟ ବେଦୋକ୍ତ 'ପ୍ରଣବ'କୁ ଜ୍ଞାନୀ ଓ ପଣ୍ଡିତମାନେ 'ଜଗନ୍ନାଥ'ଙ୍କର ମାନ୍ୟତା ଦେଇଥାନ୍ତି ।

କବି ଦିବାକର ଦାସ 'ଶ୍ରୀ-ଜ-ଗ-ନ୍ନା-ଥ' ଏହି ପାଞ୍ଚୋଟି ବର୍ଣ୍ଣର ବିଶଦ ବ୍ୟାଖ୍ୟା କରିଛନ୍ତି, ଯଥା- ଶ୍ରୀ - ଲକ୍ଷ୍ମୀ, ଭକ୍ତି, ପ୍ରୀତି ଓ ଶୋଭାଦାୟିନୀ ଶକ୍ତି । ସେ ସଂସାରର କାରିଣୀ ଶକ୍ତି ରୂପେ ବିଦ୍ୟମାନ ।

ଜ-'ଜ'ର ଅର୍ଥ ହେଉଛି ସୃଷ୍ଟି ବା ଜନ୍ମର ସ୍ଥଳ । ସର୍ବଦେବତା ସେହିଠାରୁ ହିଁ ସମ୍ଭବ ହୋଇଛନ୍ତି । ସେ ବେଦ, ମନ୍ତ୍ର, ଯୋଗ, ଜ୍ଞାନ ସବୁର ଉତ୍ପତ୍ତିସ୍ଥଳ । ସେ ମଧ୍ୟ ଜଗନ୍ମୟ ଓ ଜ୍ୟୋତି ସ୍ୱରୂପ ।

ଗ-'ଗ'ର ଅର୍ଥ ଗୁହ୍ୟ, ଗୁରୁତର ସାଗର ପରି ଗଭୀର ଓ ଅନନ୍ତ । ସେ ଗୋଲୋକ, ସେ ଗର୍ବ ଗଞ୍ଜନ ଓ ଗଜୋଦ୍ଧାରଣ ପରି ଦୁଃଖୀର କଷ୍ଟ ନିବାରକ ।

ନ୍ନା-'ନ'ର ଅର୍ଥ ନିର୍ବିକଳ୍ପ, ନିରୀହ, ବ୍ରହ୍ମ ନିରାକାର, ନତୀତ, ନିର୍ଭର, ନିରାଲମ୍ବ ସ୍ଥାନ, ନରକ ବିସ୍ତାରଣ, ନିତ୍ୟ, ମହାନିତ୍ୟ, ଅବିନାଶୀ, ନିର୍ମଳ, ନିର୍ମାୟା ଓ ସେ ନାମ ରୂପୀ ଅଟନ୍ତି ।

ଥ-'ଥ'ର ଅର୍ଥ ସେ ସର୍ବଭୂତର ଆତ୍ମା, ସେ ସୁଦର୍ଶନ, ସ୍ଥିରବୁଦ୍ଧି, ଧର୍ମ, ଅର୍ଥ, କାମ ଓ ମୋକ୍ଷର ଜନ୍ମସ୍ଥଳ । ଏଥିରୁ ସ୍ଥାବର ଜଙ୍ଗମ ଓ ଅଷ୍ଟାଦଶ ସିଦ୍ଧି ଜନ୍ମଲାଭ କରିଛନ୍ତି । 'ଥ' ଅନାଥର ନାଥ ଓ ସର୍ବପ୍ରାଣୀ ହିତକାରୀ ଅଟନ୍ତି ।

ଶ୍ରୀଜଗନ୍ନାଥ ଯେପରି ସର୍ବ ରହସ୍ୟମୟ, ବିସ୍ମୟର ଠାକୁର, ତାଙ୍କ ସଂପର୍କରେ ଯେତେ ବର୍ଣ୍ଣନା କଲେ ବର୍ଣ୍ଣନାର ଶେଷ ହୁଏ ନାହିଁ । ସେ ହେଉଛନ୍ତି ସର୍ବଦର୍ଶନ, ଧର୍ମଧାରଣା, ଚିନ୍ତା ଚେତନାର ସମନ୍ୱୟ ଠାକୁର । ସେହିପରି ସେ ଯେଉଁ କ୍ଷେତ୍ରରେ ଅବସ୍ଥାନ କରୁଛନ୍ତି, ସେହି କ୍ଷେତ୍ର ନୀଳାଚଳ ପୁରୁଷୋତ୍ତମ ପୁରୀ ମହିମାମୟ । ଏହି କ୍ଷେତ୍ରର ମହିମା ଯେତେ ବର୍ଣ୍ଣନା କଲେ ମଧ୍ୟ ତାହା ଅପୂର୍ଣ୍ଣ ଅପୂର୍ଣ୍ଣ ଲାଗେ । ଏହି କ୍ଷେତ୍ରର ମହିମା ବର୍ଣ୍ଣନା କରିବାକୁ ଯାଇ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଲେଖିଛନ୍ତି -

'ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ
ଚାରି ବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ।'

ଦିବାକର ଦାସଙ୍କ ଭାଷାରେ-

ସେହି ଗୋଲୋକ ନିତ୍ୟସ୍ଥଳ । ସେହିଟି ଗିରି ନୀଳାଚଳ ॥
କୋଟି ଯୁଗ ଯେବେ ଯାଇ । ଏଥିରେ ଲୀଳା ନସରଇ ॥

ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ମହିମାରେ ଆତ୍ମ ବିଭୋର ହୋଇ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଗାଇ ଉଠିଥିଲେ -

'ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ
ପ୍ରତି ସ୍ଥାନ ମୋର ପ୍ରିୟ ପୁରୀ ଧାମ
ସକଳ ସଲିଳ ପଞ୍ଚତୀର୍ଥ ଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।'

ନୃସିଂହ ପୁରାଣରେ ଉଲ୍ଲେଖ ଅଛି -

'ପୁରୁଷୋତ୍ତମ ପର କ୍ଷେତ୍ରଂ
ନାସ୍ତତ୍ର ପୃଥିବୀ ତଳେ
ଭୂସ୍ୱର୍ଗ ମିତି ବିଖ୍ୟାତଂ
ଦେବାନାଂ ମପିଦୁର୍ଲ୍ଲଭ ।'

ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ଆଜି ବିଶ୍ୱବ୍ୟାପକ । ଶ୍ରୀଜଗନ୍ନାଥ ସଂସ୍କୃତିର ମହାନତା ଆଜି ସମଗ୍ର ବିଶ୍ୱବାସୀଙ୍କୁ ଆକୃଷ୍ଟ କରିଛି । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଆଜି ଦେଶ ବିଦେଶରେ ହର୍ଷ ଉଲ୍ଲାସ ଓ ଉତ୍ସାହର ସହିତ ଜାତି, ଧର୍ମ, ବର୍ଣ୍ଣ, ସଂପ୍ରଦାୟ ନିର୍ବିଶେଷରେ ସମସ୍ତଙ୍କ ଦ୍ୱାରା ପାଳିତ ହେଉଛି ।

**ସହାୟକ ପ୍ରବନ୍ଧ**

୧. ଇତିହାସରେ ପୁରୀର ବୈଶିଷ୍ଟ୍ୟ - ଡଃ ସତ୍ୟ ନାରାୟଣ ରାଜଗୁରୁ, ଉତ୍କଳ ପ୍ରସଙ୍ଗ, ଜୁନ୍ ୨୦୦୧ ।

୨. କବି ଦୃଷ୍ଟିରେ 'ପୁରୀ' - କବିତା ସଂକଳନ ମୁଖବନ୍ଧ - ଅଧ୍ୟାପକ ହରିହର ମିଶ୍ର ।

ମୁଖ୍ୟ ସଂପାଦକ, 'ସୁଲେଖା'
ବିମାନ ବଡୁସାହି, ଚଟିଆପଡ଼ାଗଳି, ପୁରୀ



# ଶ୍ରୀମନ୍ଦିରର ଦୈନନ୍ଦିନ ନୀତିରେ ମଠମାନଙ୍କ ଭୂମିକା

ଭାସ୍କର ମିଶ୍ର

**ଶ୍ରୀ**କ୍ଷେତ୍ର ଓଡ଼ିଆ ଜାତିର ସାଂସ୍କୃତିକ ପ୍ରାଣକେନ୍ଦ୍ର । ଏହି ପୁଣ୍ୟ ଧାମର ମାହାତ୍ମ୍ୟ ଓ ମହିମା ବିଶ୍ୱବିଦିତ । ପୁରୀ ବିଶ୍ୱ ଆଧ୍ୟାତ୍ମିକ ଦିଗ୍‌ବଳୟର ଏକ ଦୀପ୍ତିମନ୍ତ ଉଜ୍ଜ୍ୱଳ ଜ୍ୟୋତିଷ୍କ । ସାଂସ୍କୃତିକ ଓ ଆଧ୍ୟାତ୍ମିକ ବିଶ୍ୱର ବିସ୍ମୟ ରୂପେ ଶ୍ରୀକ୍ଷେତ୍ର ପୁରୀ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବାରେ ସମର୍ଥ ହୋଇଛି । ଖ୍ରୀଷ୍ଟୀୟ ନବମ ଶତାବ୍ଦୀଠାରୁ ପ୍ରସିଦ୍ଧ ଆଚାର୍ଯ୍ୟ, ସନ୍ଥମାନେ ପୁରୁଷୋତ୍ତମ କ୍ଷେତ୍ର ପ୍ରତି ଆକୃଷ୍ଟ ହୋଇ ଶ୍ରୀଜଗନ୍ନାଥଙ୍କ ଦର୍ଶନ ତଥା କୃପାଭିକ୍ଷା କରିବାକୁ ଆସିଥିବା ବରେଣ୍ୟ ସିଦ୍ଧସାଧକ, ସାଧୁ, ସନ୍ଥ, ସନ୍ନ୍ୟାସୀମାନେ ଶ୍ରୀକ୍ଷେତ୍ରରେ ସ୍ୱ ସ୍ୱ ସଂପ୍ରଦାୟର ଅନେକ ମଠ ପ୍ରତିଷ୍ଠା କରିଥିଲେ ।

ମଠର ମହନ୍ତ ବା ମଠାଧୀଶମାନେ ଶ୍ରୀଜଗନ୍ନାଥ ସଂସ୍କୃତି ଓ ଚେତନା ପ୍ରଚାରର ମୂଳପିଣ୍ଡ । ଅଧିକାଂଶ ସମ୍ପ୍ରଦାୟର ଶିଷ୍ୟମଣ୍ଡଳୀ ଓ ବୈଷ୍ଣବମାନେ ମଠରେ ବାସ କରିଥାନ୍ତି । ମଠମାନଙ୍କରେ ମହନ୍ତମାନେ ପୂର୍ବେ ନିଜ ସମ୍ପ୍ରଦାୟର ଧର୍ମଧାରା ସମେତ ଶ୍ରୀଜଗନ୍ନାଥ ମନ୍ଦିର ପରମ୍ପରା ଓ ଚେତନାର ଯେଉଁ ପ୍ରଚାର କରୁଥିଲେ, ତାହା ସର୍ବସାଧାରଣରେ ଗୃହୀତ ହେଉଥିଲା । ବିଶେଷ କରି ଅତିଥି ଅଭ୍ୟାଗତମାନଙ୍କୁ ସଦାବ୍ରତ ଓ ଉତ୍ତମ ଆତିଥେୟତା ପ୍ରଦାନ କରୁଥିଲେ ।

ଏହି ମଠଗୁଡ଼ିକ ବୌଦ୍ଧଧର୍ମର 'ବିହାର' ଆଦର୍ଶରେ ଗଠିତ ହେଲେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ନିତ୍ୟ ନୈମିତ୍ତିକ ସେବାରେ ନିଜକୁ ନିୟୋଜିତ କରିଥିବାରୁ ସ୍ୱଦେଶାଗତ ବହୁ ବଦାନ୍ୟ ଧର୍ମପ୍ରାଣ ବ୍ୟକ୍ତି ଓ ରାଜନ୍ୟବର୍ଗ ଏହି ମଠମାନଙ୍କ ମାର୍ଫତରେ ହଜାର ହଜାର ବାଟି ଭୂ-ସମ୍ପତ୍ତି ଦାନ ଆକାରରେ ଦେଇଥିଲେ। ଫଳରେ ସେହି ଭୂରାଜସ୍ୱ ଦ୍ୱାରା ଶ୍ରୀଜଗନ୍ନାଥଙ୍କ ମନ୍ଦିର ସୁଚାରୁରୂପେ ପରିଚାଳିତ ହେଉଥିଲା । ଇତିହାସରୁ ଜଣାଯାଏ ଯେ, ଗଙ୍ଗବଂଶର ନରପତି ଅନଙ୍ଗ ଭୀମଦେବ (ତୃତୀୟ), ନରସିଂହ ଦେବ, କପିଳେନ୍ଦ୍ର ଦେବ, ପ୍ରତାପରୁଦ୍ର ଦେବ ଓ ଭୋଇବଂଶର ମୁକୁନ୍ଦ ଦେବ, ବୀରକିଶୋର ଦେବ, ରାମଚନ୍ଦ୍ର ଦେବ ପ୍ରମୁଖ ରାଜାମାନେ ମଠମାନଙ୍କୁ ବହୁ ଭୂସମ୍ପତ୍ତି ଦାନ ଦେଇଥିଲେ ।

ପୁରୀରେ ବିଭିନ୍ନ ମଠର ଉତ୍ପତ୍ତି ସମ୍ପର୍କରେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରୁ ଜଣାଯାଏ ଯେ, ଭିନ୍ନ ଭିନ୍ନ ସମ୍ପ୍ରଦାୟର ବା ପ୍ରତିଷ୍ଠାତାଙ୍କ




ନାମ ଅନୁସାରେ ମଠର ନାମ ହୋଇଥାଏ । ଯଥା-ଗୌଡୀୟମଠ, ସନ୍ନ୍ୟାସୀ ମଠ, ଦଣ୍ଡୀମଠ, ରାମାନନ୍ଦୀ ମଠ, ନିର୍ବାଣୀ ମଠ, ତ୍ରିଦଣ୍ଡୀ ମଠ, ରାମକୃଷ୍ଣ ମଠ ଇତ୍ୟାଦି । ମଠାଧାରୀମାନେ ଜଗନ୍ନାଥଙ୍କ ତଳେ ଖଞ୍ଜା ଥିବା ଅମୃତମଣୋହି ସ୍ୱତ୍ତ୍ୱ ଭୋଗ କରି ତହିଁରୁ ଉତ୍ପନ୍ନ ଆୟରୁ ଜଗନ୍ନାଥଙ୍କ ଭୋଗ, ମଠ ଠାକୁରଙ୍କ ଓ ଅତିଥି ଅଭ୍ୟାଗତମାନଙ୍କ ସେବା, ସଂସ୍କୃତ ଶିକ୍ଷାର୍ଥୀମାନଙ୍କର ଭରଣ ପୋଷଣ ଓ ଖଏରାତ ଆଦି କରନ୍ତି । ପୁରୀରେ ଏମାରମଠ, ଉତ୍ତରପାର୍ଶ୍ୱ, ଓଡ଼ିଆ, ପାପୁଡ଼ିଆ, ବଡସନ୍ଥ, ରାଧାକାନ୍ତ ମଠ, ତ୍ରିମାଳୀ, ବଡଛତା, ଜଗନ୍ନାଥବଲ୍ଲଭ, ସାନଛତା, ରାମଜୀ ଆଦି ଅନେକଗୁଡ଼ିଏ ମଠ ପ୍ରଧାନ । ଯେଉଁ ମଠର ମହନ୍ତ କୁମାର ବ୍ରତ ଧାରଣ କରିବାକୁ ବାଧ୍ୟ ତାହାକୁ ନିହଙ୍ଗ ମଠ ବୋଲାଯାଏ । ପୁରୀର ଅଧିକାଂଶ ମଠ ନିହଙ୍ଗ ମଠ ଅଟେ। ଯେଉଁ ମଠର ମହନ୍ତ ଗୃହସ୍ଥ ଅଟନ୍ତି ତାହାକୁ ଗୃହୀ ମଠ ବୋଲାଯାଏ ।

ପ୍ରଫେସର ବି.ଏମ୍. ଦାସ୍‌ଙ୍କ ମତାନୁଯାୟୀ ଶ୍ରୀକ୍ଷେତ୍ର ପୁରୀରେ ସ୍ଥାପିତ ଏହି ମଠଗୁଡ଼ିକ ଶ୍ରୀମନ୍ଦିରର ଦୈନନ୍ଦିନ ନୀତି, ପର୍ବପର୍ବାଣି, ଯାନିଯାତ୍ରା ବିଶେଷ ପର୍ବରେ ପ୍ରତ୍ୟକ୍ଷ ଭାବେ ସଂଶ୍ଲିଷ୍ଟ ଥିଲା । ମଠମାନଙ୍କ ପ୍ରତିଷ୍ଠା ମୂଳରେ ସମ୍ଭବତଃ ଚାରିଗୋଟି କାରଣ ସନ୍ନିହିତ । ଯଥା:-

(କ) ସନାତନ ହିନ୍ଦୁଧର୍ମର ସାରତତ୍ତ୍ୱ ଓ ଶ୍ରୀଜଗନ୍ନାଥ ସଂସ୍କୃତିର ପ୍ରଚାର ଓ ପ୍ରସାର ।

(ଖ) ପୁରୀକୁ ଆଗମନ କରୁଥିବା ଦର୍ଶନାର୍ଥୀ ଭକ୍ତ ଓ ତୀର୍ଥଯାତ୍ରୀଙ୍କ ସାମୟିକ ଆଶ୍ରୟ ଯୋଗାଣ ଓ ଆତିଥେୟତା ପ୍ରଦାନ ।

(ଗ) ପୁରୀରେ ଅବସ୍ଥାନ କରୁଥିବା ସାଧୁ, ସନ୍ଥ, ସନ୍ୟାସୀ, ବାବାଜି, ବିଦ୍ୱାନ, ପଣ୍ଡିତ, ଗୃହତ୍ୟାଗୀ, ଭିକାରୀ, ଜରା ଓ ରୁଗ୍ଣ ତଥା ବିଦ୍ୟାର୍ଥୀମାନଙ୍କୁ ପ୍ରସାଦ ଓ ଆଶ୍ରୟଜନିତ ସାହାଯ୍ୟ ଯୋଗାଣ ।

(ଘ) ଶ୍ରୀମନ୍ଦିରର ବିଭିନ୍ନ ନୀତି ଓ ଉତ୍ସବ ଇତ୍ୟାଦିରେ ଅଂଶଗ୍ରହଣ ।

ଶ୍ରୀକ୍ଷେତ୍ରରେ ସୁପ୍ରତିଷ୍ଠିତ ମଠାନୁଷ୍ଠାନମାନେ ଶ୍ରୀଜଗନ୍ନାଥ ମନ୍ଦିରର କେତେକ ନିର୍ଦ୍ଦିଷ୍ଟ ନୀତି, ପର୍ବପର୍ବାଣି ଓ ଯାନିଯାତ୍ରାରେ ପ୍ରତ୍ୟକ୍ଷ ଭାବେ ଅଂଶଗ୍ରହଣ କରିଥାନ୍ତି । ଏପରିକି ନିର୍ଦ୍ଦିଷ୍ଟ ମଠମାନଙ୍କ ତରଫରୁ ଭୋଗମଣ୍ଡପରେ ବହୁ ପରିମାଣର ଭୋଗ ଖଞ୍ଜା ପ୍ରଚଳିତ ଥିବାରୁ ସେଥିନିମନ୍ତେ ଶ୍ରୀମନ୍ଦିର ପରିସରସ୍ଥ ରୋଷଶାଳାରେ ତାଙ୍କୁ ଚୁଲି ଯୋଗାଇ ଦିଆଯାଇଥିଲା । ଏତଦ୍‌ବ୍ୟତୀତ ଅମୁଣିଆ ଜିନିଷାଦ୍ ମହଜୁଦ ରଖିବା ପାଇଁ ''ସରଘର'' (ଭଣ୍ଡାର ଘର) ମଧ୍ୟ ଦିଆଯାଇଥିଲା । ସ୍ଥଳ ବିଶେଷରେ ମଠମାନ 'ଲାଗି ଖଣ୍ଡୁଆପାଟ' ଓ 'ମହାପ୍ରସାଦ ଖେଇ' ଇତ୍ୟାଦି ମଧ୍ୟ ପ୍ରାପ୍ତ ହୋଇଥାନ୍ତି । ଅତୀତରେ ବିଭିନ୍ନ ଗଜପତି ମହାରାଜାମାନେ ଶ୍ରୀମନ୍ଦିରର ପରିଚାଳନା ଦାୟିତ୍ୱରେ ଥିବାବେଳେ ମଠମାନଙ୍କରେ ପ୍ରୋକ୍ତ ସେବାକୁ ସ୍ୱୀକୃତି ପ୍ରଦାନ କରିଥିଲେ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସେବାପୂଜା ସମ୍ପାଦନ ନିମିତ୍ତ ସମୟକ୍ରମେ ସନାତନ ଧର୍ମ ଅନ୍ତର୍ଭୁକ୍ତ ବିଭିନ୍ନ ସମ୍ପ୍ରଦାୟ ଓ ଗୋଷ୍ଠୀ ତରଫରୁ ପୁରୀରେ ଛୋଟବଡ ଅନେକ ମଠ ଗଢିଉଠିଥିଲା । ସୁଦୂର ଅତୀତରେ ପ୍ରଚଳିତ ଥିଲା ଯେ, ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ସେବାକାରୀ ପୂଜକ ହେବାକୁ ହେଲେ ପୁରୀସ୍ଥ ପୀଠାଧୀଶଙ୍କଠାରୁ ଶିକ୍ଷାଗ୍ରହଣ ଯୋଗ୍ୟତା ପ୍ରମାଣପତ୍ର ଆବଶ୍ୟକ ପଡୁଥିଲା । ଅଧୁନା ଉକ୍ତ ବ୍ୟବସ୍ଥାରେ ପରିବର୍ତ୍ତନ ଘଟି ସମ୍ପୃକ୍ତ ନିଯୋଗ ପକ୍ଷରୁ ସ୍ୱୀକୃତି ପତ୍ର ଶ୍ରୀମନ୍ଦିର ପ୍ରଶାସନକୁ ଦିଆଯାଉଛି ।

ଅନ୍ୟୂନ ତିରିଶଟି ମଠର ନିଜସ୍ୱ ପରମ୍ପରା, ମଠ ଠାକୁରମାନଙ୍କ ସେବାପୂଜା ସହିତ ଶ୍ରୀଜଗନ୍ନାଥ ମନ୍ଦିରର ବିଭିନ୍ନ ନୀତି ସମ୍ପାଦନରେ ସଂଶ୍ଳିଷ୍ଟ । ଏହି ଶ୍ରେଣୀର କେତେକ ମଠମାନଙ୍କୁ ରାଜଅଙ୍ଗିଲା ମଠ ବୋଲି କୁହାଯାଇଥାଏ । କାରଣ ସେହିଗୁଡିକ ଗଜପତି ମହାରାଜାମାନଙ୍କର ପ୍ରଚେଷ୍ଟା ତଥା ଆଦେଶରେ ଗଠିତ ହୋଇଥିଲା । ତନ୍ମଧ୍ୟରୁ କେତେକ ମଠମାନଙ୍କର ତାଲିକା ଓ କାର୍ଯ୍ୟାବଳୀ ନିମ୍ନରେ ପ୍ରଦତ୍ତ ହେଲା ।

| ମଠ | ସେବା |
|---|---|
| ୧. ବଡଝାଡୁ ମଠ | ଶ୍ରୀମନ୍ଦିରର ଗର୍ଭଗୃହ, ଅଣସରପିଣ୍ଡ ଓ ଜଗମୋହନ ମାର୍ଜନା ସେବା । |
| ୨. ସାନ ଝାଡୁମଠ | ନାଟମଣ୍ଡପ, କୂର୍ମବେଢା, ଭିତର ବେଢ଼ା ସଫା କରିବା ସେବା । |
| ୩. ସୁନାଗୋସାଇଁ ମଠ | ଶ୍ରୀମନ୍ଦିରସ୍ଥ ସୁନାକୂପ ଓ ରତ୍ନ ସିଂହାସନ ମାର୍ଜନା, ଦୈନିକ ଜଗନ୍ନାଥ ମହାପ୍ରଭୁଙ୍କ ବେଶ ନିମିତ୍ତ ପୁଷ୍ପ ଅଳଙ୍କାର ଯଥା ପଦକ ଓ ଅଳକା ଇତ୍ୟାଦି ଯୋଗାଣ । |
| ୪. ଡଗରା ମଠ | ଶ୍ରୀମନ୍ଦିରର ଦୈନିକ ସେବାପୂଜା ବା ନୀତି ସମ୍ପାଦନରେ ବିଘ୍ନ ବା ବିଳମ୍ବ ଘଟିଲେ ସର୍ବସାଧାରଣଙ୍କୁ ଅବଗତ କରାଇବା (ସଂପ୍ରତି ଅନେକ ବର୍ଷ ଧରି ଏହି ସେବା ହେଉନାହିଁ) । |
| ୫. ଛାଉଣୀ ମଠ | ଗଜପତି ମହାରାଜା, ରାଜଦମ୍ପତ୍ତି ଓ ରାଜପରିବାରର ସଦସ୍ୟମାନଙ୍କର ଶ୍ରୀମନ୍ଦିର ଦର୍ଶନ ସମୟରେ ସେମାନଙ୍କୁ ଧର୍ମୀୟ ଧାରା ଓ ଉପଦେଶ ଦେବା, ରଥଯାତ୍ରା ସମୟରେ ମଠ ବିଜେସ୍ଥଳୀରେ ଠାକୁରମାନଙ୍କ ସୋଲଚିତା ରଖାଯିବା ଇତ୍ୟାଦି ଅନ୍ୟତମ ସେବା । |
| ୬. ପୁରାଣ ସଭାମଠ | ବିଭିନ୍ନ ପୁରାଣ ଓ ଧର୍ମଶାସ୍ତ୍ର ପଠନ, ଅଧ୍ୟୟନ ଓ ଶ୍ରୀଜଗନ୍ନାଥ ଚେତନା ଓ ସଂସ୍କୃତି ପ୍ରଚାର ଓ ପ୍ରସାର । |
| ୭. କଦଳୀ ପଟୁକାମଠ | ଶ୍ରୀଜଗନ୍ନାଥଙ୍କ ଲାଗି ହେଉଥିବା ପୁଷ୍ପମାଲ୍ୟ ଗୁନ୍ଥିବା ପାଇଁ ଆବଶ୍ୟକୀୟ କଦଳୀ ପଟୁକା ଯୋଗାଣ । |
| ୮. କୋଠଭୋଗ ମଠ | ଶ୍ରୀଜୀଉମାନଙ୍କର ରାଜଭୋଗ (କୋଠଭୋଗ) ରନ୍ଧନ ପାଇଁ ଆବଶ୍ୟକୀୟ ଘିଅ, ଗୁଡ, ଅଟା ଇତ୍ୟାଦି ଦ୍ରବ୍ୟମାନଙ୍କର ସୁବ୍ୟବସ୍ଥା ଓ ରନ୍ଧନଶାଳା ତଦାରଖ । |
| ୯. କଳିତିଳକ ମଠ | ଚତୁଃ ସମ୍ପ୍ରଦାୟର ବୈଷ୍ଣବମାନଙ୍କୁ ତିଳକ ପ୍ରଦାନ । |

କେତେକ ଅଗ୍ରଣୀ ମଠ ଶ୍ରୀଜଗନ୍ନାଥଙ୍କ ଦୈନିକ ସେବାପୂଜା ତଥା ବିଭିନ୍ନ ପର୍ବପର୍ବାଣି ଯଥା- ଶ୍ରୀଗୁଣ୍ଡିଚା, ସ୍ନାନଯାତ୍ରା, ଚନ୍ଦନଯାତ୍ରା, ଝୁଲଣଯାତ୍ରା, ନବକଳେବର ଇତ୍ୟାଦିରେ ବିଶେଷ ଅଂଶଗ୍ରହଣ କରିଥାନ୍ତି । ତନ୍ମଧ୍ୟରେ ଜଗନ୍ନାଥବଲ୍ଲଭ ମଠ, ସୁନାଗୋସାଇଁ ମଠ, ଏମାର ମଠ, ବଡଓଡିଆ ମଠ, ରାଘବଦାସ ମଠ, ବଡଛତା ମଠ, ରାଧାକାନ୍ତ ମଠ, ଉତ୍ତରପାର୍ଶ୍ୱ ମଠ, ରେବ୍‌ସା ମଠ, ଛାଉଣୀ ମଠ, ଝାଞ୍ଜପିଟା

ମଠ, ମଙ୍ଗୁ ମଠ, ପାପୁଡିଆ ମଠ, ବଡସନ୍ଥ ମଠ, ଗୋପାଳତୀର୍ଥ ମଠ, ତ୍ରିମାଳି ମଠ ପ୍ରଭୃତି ଅନ୍ୟତମ ।

ଉପରଲିଖିତ ମଠମାନଙ୍କର କେତେକ ବିଶେଷ କାର୍ଯ୍ୟାବଳୀ-

୧) ଶ୍ରୀଜଗନ୍ନାଥଙ୍କ ବିଜେ ସମୟରେ ପନ୍ତି ଓ ପଣା ଭୋଗ ଅର୍ପଣ ।

୨) ବିଗ୍ରହମାନଙ୍କର ବିଭିନ୍ନ ବେଶ ଉପକରଣ ଯୋଗାଣ ।

୩) ଚନ୍ଦନ ଓ ସର୍ବାଙ୍ଗ ସେବା ନିମିତ୍ତ ଦ୍ରବ୍ୟ ଯୋଗାଣ ।

୪) ପୁଷ୍ପ ତୁଳସୀ, ପୁଷ୍ପମାଲ୍ୟ ଯୋଗାଇବା ।

୫) ସଂକୀର୍ତ୍ତନ ଓ ପାରମ୍ପରିକ ସଙ୍ଗୀତ ଗାୟନ ।

୬) ଆଲଟ ଓ ଚାମର ସେବା ।

୭) ବିଭିନ୍ନ ଧୂପ ଓ ଭୋଗ ମଣ୍ଡପରେ ଖଟଣୀ ଭୋଗ କରିବା ।

୮) ଶ୍ରୀଜୀଉମାନଙ୍କ କେତେକ ନିର୍ଦ୍ଦିଷ୍ଟ ନୀତି ସମ୍ପାଦନ ନିମିତ୍ତ ଆବଶ୍ୟକୀୟ ଦ୍ରବ୍ୟ ଯୋଗାଣ ।

ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ଆଇନ୍, ୧୯୫୨ ଅନ୍ତର୍ଗତ ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପିରେ ବର୍ଣ୍ଣିତ ବିଭିନ୍ନ ମଠମାନେ ଠାକୁରମାନଙ୍କ ନୀତି ସମ୍ପାଦନରେ କରୁଥିବା ସେବା ମଧ୍ୟରେ :

**ମଠର ନାମ ଓ ତାହାର ଦୈନିକ ସେବା ପୂଜାର ବିବରଣୀ**

**ଗୋବର୍ଦ୍ଧନ ମଠ :** ନବମ ଶତାବ୍ଦୀରେ ଆଦି ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ସ୍ଥାପିତ ଏହି ମଠର ନିଜସ୍ୱ ପରମ୍ପରା ରହିଛି । ଏହି ମଠର ପୀଠାଧିଶ ଶ୍ରୀମନ୍ଦିରସ୍ଥ ମୁକ୍ତିମଣ୍ଡପ ବ୍ରାହ୍ମଣ ପଣ୍ଡିତ ସଭାର ମୁଖ୍ୟ ଅଟନ୍ତି । ସେ ଶ୍ରୀମନ୍ଦିରର ରୀତି ନୀତି ଉପରେ ମନ୍ତବ୍ୟ ଦେବାକୁ ହକଦାର । ଶ୍ରୀମନ୍ଦିର ତରଫରୁ ପ୍ରତ୍ୟହ ଶଙ୍କରାଚାର୍ଯ୍ୟ ଯେତେବେଳେ ଶ୍ରୀମନ୍ଦିର ଦର୍ଶନ ଉଦ୍ଦେଶ୍ୟରେ ଯାଆନ୍ତି, ସେତେବେଳେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ତାଙ୍କ ପାଇଁ ବିଶେଷ ବ୍ୟବସ୍ଥା ଗ୍ରହଣ କରାଯାଇଥାଏ । ଶ୍ରୀମନ୍ଦିରରେ ଆସନ ପକାଇ ବସିବାର ଅଧିକାର ରହିଛି ।

**ବଡ଼ ଓଡ଼ିଆ ମଠ :** ପ୍ରତ୍ୟହ ବଲ୍ଲଭ ଭୋଗଯୋଗାଣ, ଆଲଟ ଓ ଚାମର ସେବା । ବଡ଼ଛତା ମଠ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପ୍ରତ୍ୟହ 'ମଙ୍ଗଳ ଆଳତୀ' ଓ 'ବଡ଼ସିଂହାର ନୀତି' ବେଳେ ଜୟ ବିଜୟ ଦ୍ୱାର ସମ୍ମୁଖରେ ସୁମଧୁର ପାରମ୍ପରିକ ସଙ୍ଗୀତ ଗାୟନ ଏହି ମଠ ପକ୍ଷରୁ କରାଯାଇଥାଏ ।

**ଜଗନ୍ନାଥ ବଲ୍ଲଭ ମଠ :** ପଦ୍ମବେଶ ଯୋଗାଇବା ଏହି ମଠର ପରମ୍ପରା ରହିଛି । ଦୈନିକ ଅବକାଶ ସମୟରେ ମଶାଲ ଯୋଗାଇବା, ବଲ୍ଲଭ ଭୋଗ ଓ ଖୁଆମଣ୍ଡା ଯୋଗାଣ, ପୁଷ୍ପ ଅଳଙ୍କାର ଯଥା ତିଳକ ଓ ଝୁମ୍ପା ଯୋଗାଣ ଓ ଚାମର ସେବା ।

**ପାପୁଡ଼ିଆ ମଠ :** ସୁନାବେଣ୍ଟ ଚାମର ଓ ଆଲଟ ସେବା ।

**ଚାଉଳିଆ ମଠ :** ଗୋପାଳ ବଲ୍ଲଭ ମଠ ପାଇଁ ପିଜୁଳି (ଚାଉଳିଆ) ଫଳ ଯୋଗାଣ ଓ ଚାମର ସେବା (ଏହି ସେବା ଦୀର୍ଘ ଦିନ ହେବ ବନ୍ଦ ରହିଛି) ।

**ରାଘବଦାସ ମଠ :** ଉପଚାର, ଚାମର ଓ ଆଲଟ ସେବା, ବଲ୍ଲଭ ଓ ଖଟଣି ଭୋଗ ।

**ଗଙ୍ଗାମାତା ମଠ :** ସୁନାବେଣ୍ଟ ଚାମର ଓ ଆଲଟ ସେବା ।

**ରାଧାକାନ୍ତ ମଠ :** ଉପଚାର ଚାମର ଓ ଆଲଟ ସେବା ।

**ରେବସା ମଠ :** ଉପଚାର, ଚାମର ଓ ଆଲଟ ସେବା ଓ ଖଟଣୀ ଭୋଗ ବ୍ୟବସ୍ଥା ।

**ଏମାର ମଠ :** ଦୈନିକ ବଲ୍ଲଭ ସାମଗ୍ରୀ ଯୋଗାଣ । ବଡ଼ସିଂହାର ବେଶ ପାଇଁ 'ଚନ୍ଦ୍ରିକା' ଓ 'ଚଉସାର' ଆଦି ପୁଷ୍ପାଳଙ୍କାର ଯୋଗାଣ । ଉପଚାର ଚାମର ଓ ଆଲଟ ସେବା । ଦୈନିକ ଖଟଣୀ ଭୋଗ ବ୍ୟବସ୍ଥା ।

**ରାଧାବଲ୍ଲଭ ମଠ :** ଉପଚାର ଚାମର ଓ ଆଲଟ ସେବା ।

**ତ୍ରିମାଳୀ ମଠ :** ଅବକାଶ ଓ ଗୋପାଳ ବଲ୍ଲଭ ସମୟରେ ଦିହୁଡ଼ି ଯୋଗାଣ, ଆଲଟ ଓ ଚାମର ସେବା ।

**ରାମଜୀ ମଠ :** ଚାମର ସେବା ।

**ସାନଛତା ମଠ :** ଆଲଟ ଚାମର ସେବା ।

**ରାଜଗୁରୁ ଗୋସ୍ୱାମୀ ମଠ :** ଅବକାଶ ଓ ଧୂପ ସମୟରେ ଚାମର ସେବା । ଭେଙ୍କଟାଚାରୀ ମଠ ଆଲଟ ଓ ଚାମରସେବା ।

**ନୂଆ ମଠ :** ଆଲଟ ଚାମର ସେବା ।

**ଛାଉଣୀ ମଠ :** ଆଲଟ ଚାମର ସେବା ।

**ବଳରାମକୋଟ ମଠ :** ଆଲଟ ଚାମର ସେବା ।

**ଶ୍ରୀରାମଦାସ ମଠ :** ଦୈନିକ ପୁଷ୍ପାଳଙ୍କାର ଯୋଗାଣ ଓ ଆଲଟ ଚାମର ସେବା । (ଦକ୍ଷିଣ ପାର୍ଶ୍ୱ)

**ଉତ୍ତର ପାର୍ଶ୍ୱ ମଠ :** ଆଲଟ ଚାମର ସେବା ଏବଂ ପ୍ରତ୍ୟହ ପାଞ୍ଚସେର ମହନଭୋଗ, ଖଟଣୀ ଭୋଗ ଇତ୍ୟାଦିର ସୁବ୍ୟବସ୍ଥା ।

**ମଙ୍ଗୁ ମଠ :** ଚାମର ସେବା ।

**ଝାଞ୍ଜପିଟା ମଠ :** ମଠ ପକ୍ଷରୁ ପ୍ରତ୍ୟହ ଭିତର ବେଢ଼ାସ୍ଥ ପାଦ ପଦ୍ମ ନିକଟରେ ସେବା ପୂଜା ଅର୍ପଣ । ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରତ୍ୟହ ଖଟଣି ଭୋଗ (ଅନ୍ନ, ବ୍ୟଞ୍ଜନାଦି) ଅର୍ପଣ କରିବା କ୍ଷେତ୍ରରେ ବହୁ ପ୍ରାଚୀନ ସମୟରୁ ଶ୍ରୀକ୍ଷେତ୍ରରେ ସୁପ୍ରତିଷ୍ଠିତ ମଠମାନଙ୍କର ଭୂମିକା





ରହିଆସିଅଛି । ନିମ୍ନଲିଖିତ ମଠମାନଙ୍କର ଖଟଣି ଭୋଗ ସେବା କାର୍ଯ୍ୟ ଉଲ୍ଲେଖଯୋଗ୍ୟ । ଯଥା:- ଗୋବର୍ଦ୍ଧନ ମଠ, ବଡ଼ସନ୍ଥ ମଠ, ରାଧାକାନ୍ତ ମଠ, ଜିୟର ସ୍ୱାମୀ ମଠ, ବଡ଼ଛତା ମଠ, ଜଗନ୍ନାଥ ବଲ୍ଲଭ ମଠ, ଏମାର ମଠ, ରାଘବଦାସ ମଠ, ବଡ଼ ଓଡ଼ିଆ ମଠ, ଉତ୍ତର ପାର୍ଶ୍ୱ ମଠ, ଦକ୍ଷିଣ ପାର୍ଶ୍ୱ ମଠ, ସିଦ୍ଧ ବକୁଳ ମଠ, ଗଙ୍ଗାମାତା ମଠ, ହରିଦାସ ଠାକୁର ମଠ, ରାଧାବଲ୍ଲଭ ମଠ, ଶଙ୍କରାନନ୍ଦ ମଠ, ଗୋପାଳ ତୀର୍ଥ ମଠ, ତ୍ରିମାଳି ମଠ, ବଡ଼ସନ୍ଥ ମଠ । ଉପର ଲିଖିତ ମଠମାନଙ୍କ ମଧ୍ୟରୁ ସଂପ୍ରତି କେତେକ ମଠ ଖଟଣି ଭୋଗ ବ୍ୟବସ୍ଥାରୁ ବିଚ୍ଛିନ୍ନ ହୋଇଯାଇଥିବା ଜଣାଯାଏ ।

ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ତ୍ୱଲିପିରୁ ସଂଗୃହୀତ ତଥ୍ୟ ଅନୁଯାୟୀ ଶ୍ରୀମନ୍ଦିର ରୋଷଶାଳାରେ ତତ୍‌କାଳୀନ ଗଜପତି ମହାରାଜା ଓ ସୁପରିନ୍‌ଟେଣ୍ଡେଣ୍ଟଙ୍କ ସମୟରେ ମୋଟ ୮୬ ଗୋଟି ଚୁଲି ବିଭିନ୍ନ ମଠ ମାରଫତ୍‌ରେ ଥିଲା । ସେହି ମଠଗୁଡ଼ିକ ପରମ୍ପରା ଅନୁଯାୟୀ ଖଟଣି ଭୋଗ ସମ୍ପାଦନ କରୁଥିଲେ । ତନ୍ମଧ୍ୟରେ ଏମାର ମଠ, ଶଙ୍କରାନନ୍ଦ ମଠ, ଗଙ୍ଗାମାତା ମଠ, କୌଶଲ୍ୟାଦାସ ମଠ, ବଡ଼ସନ୍ଥ ମଠ, ଶ୍ରୀରାମଦାସ ମଠ (ଦକ୍ଷିଣପାର୍ଶ୍ୱ), ଲକ୍ଷ୍ମୀଭଦ୍ର ମଠ (ଲଙ୍ଗୁଳି ମଠ), ପଞ୍ଜାବୀ ମଠ, ସିଦ୍ଧ ବକୁଳ ମଠ, ଜଗନ୍ନାଥ ବଲ୍ଲଭ ମଠ, ରାଘବଦାସ ମଠ, ରାଧାକାନ୍ତ ମଠ, ବଡ଼ ଓଡ଼ିଆ ମଠ, ମହୀପ୍ରକାଶ ମଠ, ବଡ଼ଝାଡୁ ମଠ, ଖଜୁରିଆ ମଠ, ଦୁଃଖିଶ୍ୟାମ ବାବାଜି ମଠ, ହରିଡ଼ାଖଣ୍ଡି ମଠ, ଉତ୍ତରପାର୍ଶ୍ୱ ମଠ, ତ୍ରିମାଳି ମଠ ଓ ନରସିଂହାଚାରୀ ମଠ ଅନ୍ୟତମ । ଏତଦ୍‌ବ୍ୟତୀତ ଶ୍ରୀମନ୍ଦିର ପରିସରରେ 'ରାଧାବଲ୍ଲଭ ମନ୍ଦିର' ଓ 'ପାଦ ପଦ୍ମ ଚଉରା' ଯଥାକ୍ରମେ ରାଧାବଲ୍ଲଭ ମଠ ଓ ଝାଞ୍ଜପିଟା ମଠ ଦ୍ୱାରା ପରିଚାଳିତ ହେଉଅଛି ।

ଶ୍ରୀମନ୍ଦିରର ବିଭିନ୍ନ ନୀତି, ଯାନିଯାତ୍ରା ଓ ଖଟଣି ଭୋଗ ସମ୍ପାଦନରେ ମଠମାନେ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ରହୁଥିବାରୁ ତତ୍‌କାଳୀନ ମନ୍ଦିର ପରିଚାଳକ ଓ ମହାରାଜାମାନେ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ କେତେକ ନିର୍ଦ୍ଦିଷ୍ଟ ମଠମାନଙ୍କୁ ଶ୍ରୀମନ୍ଦିର ପରିସରରେ ଅନ୍ୟୂନ ୩୦ ଗୋଟି ସରଘର (ଭଣ୍ଡାର ଘର) ପ୍ରଦାନ କରିଥିଲେ । ଉକ୍ତ ସରଘର ମଠମାନଙ୍କ ନାମେ ରେକର୍ଡ଼ଭୁକ୍ତ ହୋଇଥିବା ସ୍ୱତ୍ତ୍ୱଲିପିରୁ ଜଣାଯାଏ । ତନ୍ମଧ୍ୟରେ ଶଙ୍କରାଚାର୍ଯ୍ୟ ମଠ, ଶଙ୍କରାନନ୍ଦ ମଠ, ପାପୁଡ଼ିଆ ମଠ, ଆଚାରୀ ମଠ, ଜଗନ୍ନାଥ ବଲ୍ଲଭ ମଠ, ରେବସା ମଠ, ଉତ୍ତରପାର୍ଶ୍ୱ ମଠ, ଶିବତୀର୍ଥ ମଠ,ଏମାର ମଠ, ରାଧାବଲ୍ଲଭ ମଠ, ମହୀପ୍ରକାଶ ମଠ, କୋଠଭୋଗ ମଠ, ରାଘବଦାସ ମଠ, ତ୍ରିମାଳି ମଠ ଇତ୍ୟାଦି ଅନ୍ୟତମ ଅଟେ ।

ସଂପ୍ରତି ଉପରୋକ୍ତ ମଠମାନଙ୍କ ନାମେ ସରଘର ମଧ୍ୟରୁ କେତେକ ବିପଦ ସଙ୍କୁଳ ଅବସ୍ଥାରେ ଥିବାରୁ ସଂପୂର୍ଣ୍ଣରୂପେ ଭଙ୍ଗା ଯାଇଥିବାବେଳେ କେତେକ ସରଘର ରକ୍ଷଣାବେକ୍ଷଣ ଅଭାବରୁ ଜରାଜୀର୍ଣ୍ଣ ଅବସ୍ଥାରେ ରହିଅଛି । ଏପରିକି କେତେକ ସରଘର ସେବକମାନଙ୍କୁ ମଧ୍ୟ ହସ୍ତାନ୍ତର କରାଯାଇଛି । ଅତୀତରେ ଗଜପତି ମହାରାଜାମାନେ ବିଭିନ୍ନ ସନନ୍ଦ ଓ ରାଜକୀୟ ଆଦେଶ ମାଧ୍ୟମରେ କେତେକ ସେବା, ସରଘର ଓ ଚୁଲି ଇତ୍ୟାଦି ମଠମାନଙ୍କୁ ପ୍ରଦାନ କରିଥିଲେ । ଉଦ୍ଦେଶ୍ୟ ଥିଲା ଯେ, ଦୈନନ୍ଦିନ ନୀତି ସମ୍ପାଦନରେ ମଠମାନେ ସକ୍ରୀୟ ଅଂଶ ଗ୍ରହଣ କରିବେ ।

ଅଧୁନା ଅନେକ ମଠ ବିଭିନ୍ନ କାରଣରୁ ଏପରି ସେବାରୁ ବଞ୍ଚିତ ହେଲେଣି । ଆଲଟ ଚାମର ସେବା ଯାହାକି ଅତି ପବିତ୍ର ସେବା ବୋଲି ବିବେଚିତ ହୋଇଥାଏ ସେଥିରେ ମଧ୍ୟ ଅଧିକାଂଶ ମଠ ହେଳା ପ୍ରଦର୍ଶନ କଲେଣି । ଏପରିକି କେତେକ ସ୍ଥଳରେ ମାତ୍ର ତିନି ଚାରୋଟି ମଠର ମହନ୍ତ/ ମଠାଧୀଶ/ ଅଧିକାରୀମାନେ କେବଳ ପରମ୍ପରା ରକ୍ଷା ଉଦ୍ଦେଶ୍ୟରେ ଏହି ଆଲଟ ଚାମର ସେବାରେ ସାମୟିକ ଅଂଶ ଗ୍ରହଣ କରୁଛନ୍ତି ।

**ସହାୟକ ଗ୍ରନ୍ଥ ସୂଚୀ**


୧. ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ତ୍ୱଲିପି- ଦ୍ୱିତୀୟ ଭାଗ

୨. ପୁରୀର ମଠ ସଂସ୍କୃତି - ଲେଖକ ଶ୍ରୀ ଭାସ୍କର ମିଶ୍ର

୩. ଶ୍ରୀଜଗନ୍ନାଥ ରିସର୍ଚ୍ଚ ବୁଲେଟିନ୍

୪. ଓଡିଶା ରିଭ୍ୟୁ ନବକଳେବର ସ୍ପେଶାଲ ଇସ୍ୟୁ, ୧୯୯୬

୫. ଡିଷ୍ଟ୍ରିକ୍ଟ ଗେଜେଟ୍, ପୁରୀ-୧୯୭୭

୬. ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ - ୫ମ ଖଣ୍ଡ, ପୃ-୬୨୦୩



ଉପ ପ୍ରଶାସକ

ଶ୍ରୀଜଗନ୍ନାଥ ମନ୍ଦିର, ପୁରୀ






# କାନ୍ତକବିଙ୍କ ଦୃଷ୍ଟି ଓ ସୃଷ୍ଟିରେ ଜଗନ୍ନାଥ

ଗୁରୁକଲ୍ୟାଣ ମହାପାତ୍ର

**ପ୍ରା**ଚୀନ ଓଡ଼ିଆ କବିମାନଙ୍କ ପରି ଆଧୁନିକ କାଳର ଓଡ଼ିଆ କବିମାନଙ୍କ ଲେଖନୀ ମୁନରେ ମଧ୍ୟ ଜଗନ୍ନାଥ ଚେତନାର ପ୍ରତିଫଳନ ପରିଲକ୍ଷିତ ହୋଇଥାଏ । ଉଭୟ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟ ମଧ୍ୟରେ ଏକ ସୁବର୍ଣ୍ଣ ସେତୁର ଉଜ୍ଜ୍ୱଳ ପରମ୍ପରା ସୃଷ୍ଟି କରିଆରେ ସ୍ୱୀୟ ସୃଷ୍ଟିର ବୈଶିଷ୍ଟ୍ୟ ପ୍ରତିପାଦନ କରିଥିବା କାନ୍ତକବିଙ୍କର ଅଜସ୍ର ସଙ୍ଗୀତ, ଜଣାଣ, ଭଜନ ଓ ନାଟକମାନଙ୍କରେ ପ୍ରତ୍ୟକ୍ଷ ବା ପରୋକ୍ଷରେ ଅତି ସୁନ୍ଦର ଭାବେ ପ୍ରତିଫଳିତ ହୋଇଛି ଜଗନ୍ନାଥ ଚେତନା । ସାଧାରଣ ମଣିଷଠାରୁ ଆରମ୍ଭ କରି ଅସାଧାରଣ ବ୍ୟକ୍ତିତ୍ୱସଂପନ୍ନ ବ୍ୟକ୍ତିଟିର ଅବସାଦ, ଗ୍ଲାନି ଓ ଯନ୍ତ୍ରଣା ଜର୍ଜରିତ ଆର୍ତ୍ତିସବୁ ସତେ ଯେପରିକି ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସମର୍ପିତ ହୋଇଛି । ଆଉ ଏସବୁର ସଫଳ ଚିତ୍ରଣ ତାଙ୍କ ସାହିତ୍ୟରେ କରିଯାଇଛନ୍ତି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ।

ଦେଶଭକ୍ତିମୂଳକ ରଚନା 'ବନ୍ଦେ ଉତ୍କଳ ଜନନୀ' କିମ୍ବା 'କୋଟି କୋଟି କଣ୍ଠେ ଆଜି ଉଠୁରେ ଗମ୍ଭୀରେ ବାଜି ଉତ୍କଳର ଜୟଗୀତି ଉନ୍ମାଦନା ଭରା' ପ୍ରଭୃତି ସଙ୍ଗୀତ ରଚନା କରି କାନ୍ତକବି ପ୍ରାକ୍ ସ୍ୱାଧୀନତା କାଳରେ ଉନ୍ମାଦନା ସୃଷ୍ଟି କରିଥିଲେ । ମାତ୍ର ତା' ପୂର୍ବରୁ ମଧ୍ୟ ତାଙ୍କର ଭକ୍ତିମୂଳକ ରଚନା 'ସବୁଥିରୁ ବଞ୍ଚିତ କରି କେଉଁ ଯଶ ବାନା ଉଡ଼ାଇବ ହେ' କିମ୍ବା 'ଦେ ମୋତେ ବାଇଆ କରି ଆରେ ମୋର ବାଇଆ ରଜା' ପ୍ରଭୃତି ମଧ୍ୟ ଓଡ଼ିଶାର ପୁରପଲ୍ଲୀ ଓ ସହରମାନଙ୍କରେ ଆଦର ଲାଭ କରିଥିଲା । କାନ୍ତକବିଙ୍କର ସର୍ବୋତ୍କୃଷ୍ଟ କୃତି 'ଜୀବନ ସଂଗୀତ'ରେ ରହିଛି ଏହିପରି ଅନେକ ରହସ୍ୟଭରା ଓ ଆଧିଭୌତିକ ଚେତନାର ଭକ୍ତି ସଂଗୀତ । ପରୋକ୍ଷରେ ହେଉ ବା ପ୍ରତ୍ୟକ୍ଷରେ ହେଉ ସେସବୁର ଉଦ୍ଦିଷ୍ଟ ଯେ ଜଗନ୍ନାଥ ଚେତନା ଉଦ୍ଦେଶ୍ୟରେ, ଏହା ନିଃସନ୍ଦେହରେ କୁହାଯାଇପାରେ । କାନ୍ତକବିଙ୍କ 'ଲକ୍ଷ୍ମୀ ଚଣ୍ଡାଳୁଣୀ' ନାଟକରେ ମଧ୍ୟ ଶ୍ରୀମନ୍ଦିର ଓ ଶ୍ରୀକ୍ଷେତ୍ରର ବର୍ଣ୍ଣନା ସହିତ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରାଙ୍କ ବିଷୟ ଅତି ଚମତ୍କାରଭାବେ ସ୍ଥାନିତ ହୋଇଛି । ତେବେ ଏହି ସୀମିତ ଆଲୋଚନା ପରିସର ମଧ୍ୟରେ କେବଳ 'ଜୀବନ ସଂଗୀତ'ରୁ ଜଗନ୍ନାଥ ଚେତନାର ସାମାନ୍ୟ ଅନୁସନ୍ଧାନ ଓ ଅନୁଶୀଳନ ଏଠାରେ କରାଯାଇଛି ।

ପ୍ରଥମେ 'ସବୁଥିରୁ ବଞ୍ଚିତ କରି କେଉଁ ଯଶ ବାନା ଉଡ଼ାଇବ ହେ' ସଙ୍ଗୀତ ପ୍ରସଙ୍ଗକୁ ଆସିବା । ବିଶିଷ୍ଟ ଶିଶୁ ସାହିତ୍ୟ ସ୍ରଷ୍ଟା ଓ 'ଆହେ ଦୟାମୟ ବିଶ୍ୱବିହାରୀ' ପ୍ରାର୍ଥନାର ସ୍ରଷ୍ଟା ସ୍ୱର୍ଗୀୟ ରାମକୃଷ୍ଣ ନନ୍ଦ ଏକଦା କହୁଥିଲେ ଯେ, ଏହି ସଙ୍ଗୀତଟି ମହାତ୍ମା ଗାନ୍ଧୀଙ୍କର ଅତି ପ୍ରିୟ ସଙ୍ଗୀତ ଥିଲା । ଓଡ଼ିଆ ଭଜନ ଭାବେ ଏହା ଗାନ୍ଧିଜୀଙ୍କର 'ଆଶ୍ରମ ଭଜନ'ରେ ମଧ୍ୟ ସ୍ଥାନ ପାଇଥିଲା । ଆମ ସମାଜରେ ଏପରି ଜଣେ ବ୍ୟକ୍ତି ନାହିଁ, ଯାହାର ଦୁଃଖକଷ୍ଟ ବା ବିପଦ ନାହିଁ । ସେ ଧନୀ ହେଉ କି ଦରିଦ୍ର ହେଉ । ସେଥିପାଇଁ ଦୁଃଖ ଓ ଯନ୍ତ୍ରଣାରେ ଅଧୀର ସ୍ୱାଭିମାନୀ ମଣିଷଟି କାତର ହୋଇ ସାମାନ୍ୟ କ୍ରୋଧ ମିଶ୍ରିତ ଭକ୍ତିରେ ଭଗବାନଙ୍କୁ ବା ଜଗନ୍ନାଥଙ୍କୁ ପ୍ରାର୍ଥନା କରିଥାଏ - ସବୁଥିରୁ ବଞ୍ଚିତ କରି କେଉଁ ଯଶ ବାନା ଉଡ଼ାଇବ ହେ । ଯାହା ଦେଇଥିଲ ସବୁ ତ ନେଲଣି, ଆଉ ଏବେ କିସ ଛଡ଼ାଇବ ହେ .. ସବୁଥିରୁ ବଞ୍ଚିତ କରି ... ହାତଠାରି ଲୋଭ ଦେଖାଇ । ଡାକ ନାଟ ଦେଖିବା ପାଇଁ । ସିହାଣ କରୁଛ ଆହୁରି ଥରେ କି ନାକ ଘଷି କାନ ମୋଡ଼ାଇବ ହେ ... ।

'ଜୀବନ ସଂଗୀତ'ର ଅଧିକାଂଶ ସଙ୍ଗୀତରେ ରହିଛି ଜଗନ୍ନାଥଙ୍କ ପ୍ରତି ଅଚଳାଚଳ ଭକ୍ତି । ପ୍ରତ୍ୟେକ ଓଡ଼ିଆ ଅତି ଆପଣାର ବୋଲି ଭାବି ଯେଉଁ ଦେବତାଙ୍କ ନିକଟରେ ନିରୋଳାରେ ମନଖୋଲା କିଛି ଗାଇ ଥାଏ, ସେ ଜଗନ୍ନାଥଙ୍କ ବ୍ୟତୀତ ଆନ କେହି ହୋଇନପାରନ୍ତି । ସେଇ ଜଗନ୍ନାଥଙ୍କୁ କେବଳ ସ୍ୱାଭିମାନୀ ଓ ଶ୍ରଦ୍ଧାଳୁ ଓଡ଼ିଆମାନେ କ୍ରୋଧ-ମିଶ୍ରିତ ଶ୍ରଦ୍ଧା ଭାବରେ ପ୍ରାର୍ଥନା କରନ୍ତି ବା ଜଣାଣ ବୋଲିଥାନ୍ତି । କବିସୂର୍ଯ୍ୟ ବଳଦେବ ରଥ ଆଉ ନାହାନ୍ତି । କିନ୍ତୁ ତାଙ୍କ ରଚିତ 'ସର୍ପ ଜଣାଣ'ରେ ସ୍ୱାଭିମାନ ଭରା କଣ୍ଠରେ ସେ ତେଣୁ ଜଗନ୍ନାଥଙ୍କୁ ଗାଳି ଦେଇଥିଲେ, 'ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ ଭରତି କରି ଦେବି ଗାଳି ହେ ...' ଅଥଚ ସେହି କ୍ରୋଧ ମିଶ୍ରିତ ଭକ୍ତିର ମଧୁର ରସ ଭିନ୍ନ ଭାବେ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପରିବେଷିତ ହୋଇଛି 'ଜୀବନ ସଂଗୀତ'ର ଅନ୍ୟ ଏକ ଗୀତରେ । କାନ୍ତକବିଙ୍କର କାନ୍ତ କୋମଳ ଓ ସରଳ ତରଳ ଭାବ ଓ ଭାଷା ଏଠାରେ ଲକ୍ଷଣୀୟ । ତାହା ହେଲା -

ଯେବେ ଡାକେ ମୁହିଁ 'ଦୟାନିଧି' ବୋଲି
ପାଶେ ଆସି ଛିଡ଼ା ହୋଇଛ ହେ ।
ଦୀନବନ୍ଧୁ ବୋଲି ଯେବେ ମୁଁ ଡାକିଛି
ଆପେ ଆସି ଦେଖା ଦେଇଛ ହେ ।।





ଡାକିଛି ଯେବେ ମୁଁ ତୁମ୍ଭଙ୍କୁ କାତରେ
'ଆସ ପ୍ରଭୁ ଆସ ଆସ' ବୋଲି ଥରେ
ସେହି ଡାକ ମୋର ଶୁଣିବା ମାତରେ
ନିଜେ ଆସି ଦୁଃଖ ଫେଇଛ ହେ ।।

ବିଶ୍ୱ ପ୍ରସିଦ୍ଧ ଦେବତା ସେହି ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପରୋକ୍ଷରେ କାନ୍ତକବି ଲେଖି ଯାଇଛନ୍ତି ଅନେକଗୁଡ଼ିଏ ମନୋମୁଗ୍ଧକର ସଙ୍ଗୀତ ଓ ଜଣାଣ ଭିନ୍ନ ଶୈଳୀରେ । ହିନ୍ଦୁସ୍ଥାନୀ ଆଓ୍ୱାଜ ତେଓ୍ୱଟ ସ୍ୱରରେ ରଚିତ ତାଙ୍କର 'ଖାଲ ଖମାଣରେ ଯେବେ ଯାଏ ପଡ଼ି' ସଙ୍ଗୀତଟି ଏହିପରି -

ଖାଲ ଖମାଣରେ ଯେବେ ଯାଏଁ ପଡ଼ି
ଦେଉ ଅଛ କର ବଢ଼ାଇ ହେ,
ଅବାଟରେ ଯେବେ ଯାଏଁ ପଥ ହୁଡ଼ି
ନେଉଅଛ ବାଟ କଢ଼ାଇ ହେ ।
ହସାଉଛ ବେଳେ କନ୍ଦାଉଛ ବେଳେ
ଲାଗି ରହିଅଛ ଖିଆଲିଆ ଖେଳେ,
ହାତ ଟେକି ଯାହା ଆଜି ଦେଉଅଛ
କାଲି ନେଉଅଛ ଛଡ଼ାଇ ହେ ।।

'ବ୍ରହ୍ମ ପୁରାଣ'ରେ ଜଗନ୍ନାଥଙ୍କୁ କୃଷ୍ଣ ରୂପରେ କଳ୍ପନା କରାଯାଇଛି । ଆଧୁନିକ କାଳରେ କାନ୍ତକବି ସମ୍ଭବତଃ ଜଗନ୍ନାଥଙ୍କୁ ହିଁ କୃଷ୍ଣ ରୂପରେ କଳ୍ପନା କରିଛନ୍ତି । ତାଙ୍କ ଲେଖନୀରୁ ତେଣୁ ଝରି ପଡ଼ିଛି ଭକ୍ତିର ଫୁଲ । କବି ଗାଇଛନ୍ତି -

ଫୁଲଟି ଯେବେ ମୋର ଯାଏ ଝରି
ସେ ତୋ' କୁଂଜ ବନେ
ଯାଇ ଫୁଟଇ ହେ,
ଗୀତଟି ଯେବେ ମୋର ଯାଏ ସରି
ସେ ତୋ' ଗୁଂଜରଣେ
ଜାଗି ଉଠଇ ହେ ।।
ବ୍ୟର୍ଥ ଜୀବନର ଲକ୍ଷ୍ୟ ବ୍ୟଥା ମମ,
ବକ୍ଷେ ଫୁଟେ ତବ ରକ୍ତ ଜବା ସମ,
ମୋ' ନୟନ ନୀରଧାର ଚରଣ ତଳେ ତୋର
ଅର୍ଘ୍ୟ ରୂପେ ପଡ଼ି ଲୋଟଇ ହେ ।।

ପ୍ରଶ୍ନ ଉଠିଥାଏ ଏହି 'ରକ୍ତ ଜବା ସମ'ର ପ୍ରୟୋଗ କାନ୍ତକବି କାହିଁକି କରିଛନ୍ତି ? ମଣିଷର ଆହତ ମନର ରକ୍ତ ଜୁଡୁବୁଡୁ ଅବସ୍ଥାକୁ ଲକ୍ଷ୍ୟ କରି କିମ୍ବା ବୈପ୍ଳବିକ ମନୋବୃତ୍ତିର ପ୍ରତୀକ ଭାବେ ସମ୍ଭବତଃ କବି ଏପରି ବର୍ଣ୍ଣନା ଏଠାରେ କରିଛନ୍ତି ।

ଜଗନ୍ନାଥଙ୍କର ଯିଏ ପରମ ଭକ୍ତ ହୋଇଥିବେ ଓ ଆପଣାର ବୋଲି ଭାବି ତାଙ୍କ ଦୟାର ଆବଶ୍ୟକତା ନାହିଁ ବୋଲି ଦୁଃଖ ଓ ଅଭିମାନରେ କହି ପକାଉଥିବେ, ଅବସାଦଗ୍ରସ୍ତ ସେହି ମଣିଷ ବାପୁଡ଼ାଟି ଲକ୍ଷ୍ୟସ୍ଥଳରେ ପହଞ୍ଚିପାରେ ନାହିଁ । କିନ୍ତୁ ତଜ୍ଜନିତ ବିଫଳତା ଯୋଗୁଁ ସେ ବିଳାପ କରି ନଥାଏ । ମନେ ପଡ଼ିଯାଏ ଇଂରାଜୀ ଭାଷାର ସେହି ପ୍ରଖ୍ୟାତ ରୂଢ଼ିଟି - 'ବିଫଳତା ହେଉଛି ସଫଳତାର ଖମ୍ବ ।' ଜଗନ୍ନାଥଙ୍କର ସ୍ୱାଭିମାନୀ ଭକ୍ତ କାନ୍ତକବି ସେହିପରି ଭିନ୍ନ ଢଙ୍ଗରେ ଅଗଣିତ ଭକ୍ତଙ୍କର ପ୍ରତିନିଧିତ୍ୱ କରି ଗାଇଛନ୍ତି -

'ଚାହେଁନା ମୁଁ ତବ ଦୟା ଦୟାମୟ
ଚାହେଁନା ମୁଁ ତବ ଆଶିଷ ରାଶି,
ଚାହେଁନା ମୁଁ ତବ ସଂପଦ ତରଣୀ
ସୁଖ ପାରାବାରେ ଯିବାକୁ ଭାସି ।
ବିଫଳତା ମୋର ସାନ୍ତ୍ୱନା ପ୍ରାଣେ
ସନ୍ତାପ ଚିର ଶାନ୍ତି ହେ
ସଫଳତା ମହାଭ୍ରାନ୍ତି, ମହାଭ୍ରାନ୍ତି, ମହାଭ୍ରାନ୍ତି ହେ ... ।

ଜଗନ୍ନାଥଙ୍କ ପ୍ରତି ଐକାନ୍ତିକ ଭକ୍ତିରୁ ଜାତ ହୋଇଛି ସ୍ୱାଭିମାନ । ଅତି ଆପଣାର ଜଗନ୍ନାଥଙ୍କୁ ଭକ୍ତ କାନ୍ତକବି ତେଣୁ ମନଖୋଲା ପ୍ରଶ୍ନ ପଚାରିଛନ୍ତି -

'ଏବେ କିହେ ପୂରି ନାହିଁ ମନ ସାଧ ।
କାହିଁ ପାଇଁ ଆଉ ସାଧ ବାଦ ।।
ପରଖି ପରଖି ଏତେ ଦିନ ହେଲା,
ପରଖ ତୁମର ତେବେ ନ ସରିଲା,
ଆଉ କେତେ ଦିନ ଲାଗିବଟି ଭଲା,
ମେଣ୍ଟିବାକୁ ମୋର ଅପରାଧ ।।

ତୁମ୍ଭେ ପରା ନାଥ କାଙ୍ଗାଳି ଠାକୁର,
ଏବକୁ ସେ କଥା ଗଲ କି ପାଶୋର ।
ଏ ଦୀନକୁ ଯେବେ କରି ଦେବ ପର
ତୁମ୍ଭ ନାମେ ହେବ ଅପବାଦ ।।

ଜଗନ୍ନାଥଙ୍କର ପରମ ଭକ୍ତ କାନ୍ତକବିଙ୍କର ଅବସାଦର ଯେପରି ଅବସାନ ନାହିଁ । ପ୍ରତ୍ୟେକ ଦୁଃଖ ଜର୍ଜରିତ ମଣିଷର ଅବ୍ୟକ୍ତ ବେଦନାକୁ ହୃଦୟଙ୍ଗମ କରି କାନ୍ତକୋମଳ ସୁଲଳିତ ଭାବ ଓ ଭାଷାରେ କବି ତେଣୁ ଗାଇ ଉଠିଛନ୍ତି,

କେତେ କରୁଛ ହଟ ହଟା ।
କେ କିସ ନକରି ଖସି ଯାଉ ନାହିଁ
ମୋ' ବେଳକୁ ଲାଗିଛି ଅଠା ।
ଏତେ ବଡ଼ ପ୍ରଭୁ ପଦ ଆଶ୍ରା କରି
କରମ ଫାଶ ନ ତୁଟିଲା ମୋହରି
ତୋ' ଭରସା କରି ଯେବେ ଗଲି ସରି
ଜାଣିଲି କରମଟା ଫଟା ।।




କାହାକୁ କହିବି କିଏ ନେବ ଦୁଃଖ,
ଯାହାକୁ କହନ୍ତି (ସେ) ଦେଖେ କଉତୁକ
ରକ୍ଷକ ହୋଇଣ ହୋଇଲ ଭକ୍ଷକ
କାଳତ ହେଲାଣି ଉଲଟା ।।

ଭକ୍ତିଭାବର ସର୍ବୋଚ୍ଚ ସୋପାନରେ ଉପନୀତ ହୋଇ କାନ୍ତକବି ପୁଣି ଗାଇଛନ୍ତି,

ଦେ ମୋତେ ବାଇଆ କରି
ଆରେ ମୋର ବାଇଆ ରଜା
ନାଚିବି ମୁଁ ନଙ୍ଗଳା ହୋଇ
ତୁ ତାଳିମାରି ଦେଖିବୁ ମଜା ...

ମାର୍କସ୍‌ବାଦୀ ଚେତନା ବି ଜଗନ୍ନାଥ ଚେତନାରେ ରୂପାନ୍ତରିତ ହୋଇଛି ଅତି ବିଚିତ୍ର ଭାବେ । ଦୁଃଖ ଓ ଯନ୍ତ୍ରଣା ପ୍ରପୀଡ଼ିତ ଆଧୁନିକ ମଣିଷ ମନର ଉହଳବିକଳ ଭାବକୁ ଅତ୍ୟନ୍ତ ହୃଦୟସ୍ପର୍ଶୀ ଭାଷାରେ ତେଣୁ କାନ୍ତକବି ଲେଖିଛନ୍ତି 'ପତିତପାବନ ଜଣାଣ' । ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ କବି ଦୀନକୃଷ୍ଣ ଦାସ ଯେପରି 'କ'ରୁ 'କ୍ଷ' ପର୍ଯ୍ୟନ୍ତ ଚଉତିଶା ଲେଖିଥିଲେ, କାନ୍ତକବି ମଧ୍ୟ 'ପତିତପାବନ ଜଣାଣ'ରେ 'କ'ଠାରୁ 'କ୍ଷ' ପର୍ଯ୍ୟନ୍ତ ଏହି ଚଉତିଶା ଲେଖିଛନ୍ତି, ମାତ୍ର ଏହା ଭିନ୍ନ ଭାବ ଓ ଶୈଳୀରେ ଲିଖିତ । ନିଷ୍କପଟ ମଣିଷର ଆର୍ତ୍ତ ଓ ସମର୍ପଣ ଭାବ ଏଥିରେ ସୁସ୍ପଷ୍ଟ । ତାହା ହେଲା -

'ସମର୍ପି ତୋହରିଠାରେ ମୋର ଯାହା କିଛି
ସର୍ବହରା ନାମ ଆପେ ବାଛି ମୁଁ ନେଇଛି,
ପ୍ରଭୁ ହେ ସେହି ଆଣ୍ଠ ଧରି,
ସକଳ ସନ୍ତାପଯାକ ଦେଇଛି ପାଶୋରି ।'

କ୍ୱାଟର ନଂ- ଡି-୧୦/୫
ୟୁନିଟ୍-୮, ଭୁବନେଶ୍ୱର-୧୨

# ତୁ ପରା ମୋ'ର ସୁଖ ପସରା

ବାସନ୍ତୀ ପତି

ଲେଖୁଛି ଯେତିକି ଚିରୁଛି ସେତିକି
ଲେଖି ମୁଁ ପାରୁନି କବିତାଟିଏ
କେମିତି ଲେଖିବି କହରେ କାଳିଆ
ରଥରେ ବସିଛି ମାଦଳଟିଏ ।

ଢଳେଇ ଢଳେଇ କୋଳେଇ କୋଳେଇ
ଅଣ୍ଟାରେ ଲଗାଇ ପାଟ ଦଉଡ଼ି
ଆଗକୁ ପଛକୁ ଢଳି ପଡୁଥାଉ
ପଣ୍ଡା ପଢ଼ିଆରୀ ରଖନ୍ତି ଭିଡ଼ି ।

ଥାଳିପଟ ପରି କାଳିଆ ମୁହଁରେ
ଚକା ଚକା ଖାଲି ଦୁଇଟି ଆଖି
ତୁ ପୁଣି କାଳେ ତିନିଭୁବନର
ପାପ ପୁଣ୍ୟର ନୀରବ ସାକ୍ଷୀ ।

ହାତ ଗୋଡ଼ ନାହିଁ ମହାବାହୁ ବୋଲି
ରାଇଜ ଯାକରେ ପଡ଼ିଛି ହୁରି
ପାପ ପୁଣ୍ୟର ବିଚାର କରୁଛୁ
ଧରମ ନିକିତି ହାତରେ ଧରି ।

ଯୋଗୀ, ରୋଗୀ, ଭୋଗୀ ଜାତି କି ଅଜାତି
ଦେଇଛୁ ସତେ କି କିମିଆ କରି
ଗଡ଼ି ଯାଉଛନ୍ତି ଶରଧା ବାଲିରେ
ତୋ କରୁଣା ଟିକେ ପାଇବେ ବୋଲି ।

ଦେ'ରେ କାଳିଆ ଢାଳିଦେ ତୋ'ର
କରୁଣା ରେଣୁରୁ କଣିକାଟିଏ
ସେ କରୁଣା ରେଣୁ ବୋଳିଲେ ମଥାରେ
ଜନମ ଜନମ ପାତକ ଧୁଏ ।

ବରଷକେ ଥରେ ବସି ତୁ ରଥରେ
ପତିତ ତାରଣେ ଉଡ଼ାଉ ଧ୍ୱଜା
କୋଟିଏ କଣ୍ଠରେ ଗୋଟିଏ ଶବଦ
ତୁ ପରା ଆମ କାଳିଆ ରଜା ।

ତୋ' ଆଖିରେ ଥରେ ଆଖି ଲାଖିଗଲେ
କେଉଁ ସୁଖ ଭଲା ମାଗିବ କିଏ
ତୁ ପରା ମୋର ସୁଖର ପସରା
ହୁଅ ପଛେ ତୁ ମାଦଳଟିଏ ।

କଂସାର, କେନ୍ଦ୍ରାପଡ଼ା



# ନମାମି ପୁରୁଷୋତ୍ତମମ୍

ଡକ୍ଟର ଆରତି କର

**ଶ୍ରୀ**ପୁରୁଷୋତ୍ତମ ଧାମରେ ବିଜେ ଶ୍ରୀପୁରୁଷୋତ୍ତମଙ୍କ ମହିମା ଭୁବନ ବିଦିତ । ରତ୍ନ ସିଂହାସନସ୍ଥ ଚତୁର୍ଦ୍ଧାମୂର୍ତ୍ତି ଯଥା- ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ - 'ଜଗନ୍ନାଥ' ଚତୁରାକ୍ଷରରୁ ସୂଚିତ ହୋଇଥାଏ ।

'ଜ' କାରଶ୍ଚ ଜଗନ୍ନାଥ, 'ଗ' କାରଶ୍ଚ ବଳଦେବଃ
ଭଦ୍ରା 'ନ' କାର ଭାବେନ, 'ଥ' କାରଶ୍ଚ ସୁଦର୍ଶନଃ ।

ପରଂବ୍ରହ୍ମ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସୃଷ୍ଟି, ସ୍ଥିତି ଓ ବିଳୟର ସର୍ବମୟ କର୍ତ୍ତା ହୋଇଥିଲେ ମଧ୍ୟ ବିଶେଷତଃ ଏ ସଂସାରର ପାଳନକର୍ତ୍ତା ଭାବରେ ସେ ସର୍ବଜନ ବିଦିତ । ସେଥିପାଇଁ ଦାରୁବ୍ରହ୍ମ ରୂପୀ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ଏ ଜାତି ତା'ର ଇଷ୍ଟ ଦେବତା ଭାବରେ କେଉଁ ଅନାଦି କାଳରୁ ଆପଣେଇ ନେଇଛି । ପ୍ରଭୁ ପୁରୁଷୋତ୍ତମ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରୁଥିବାରୁ ସେହି ପୁରୁଷୋତ୍ତମ ଧାମ ମଧ୍ୟ ସବୁତୀର୍ଥର ତୀର୍ଥ - ତୀର୍ଥରାଜ । ପଞ୍ଚସଖା ଯୁଗର ବୟୋଜ୍ୟେଷ୍ଠ ସାଧକ କବି ବଳରାମ ଦାସ ଏହି ନୀଳଗିରି ପତି ଦାରୁବ୍ରହ୍ମ ରୂପୀ ଶ୍ରୀଜଗନ୍ନାଥ ହିଁ ପୁରୁଷୋତ୍ତମ ବୋଲି ବର୍ଣ୍ଣନା କରିଛନ୍ତି -

'ପୁରୁଷୋତ୍ତମ ପାଦ ଶିରେ ଧରି
ବଳରାମ ଦାସ ଏ ଗୀତା କରି ।'

ଭାଗବତକାର ଜଗନ୍ନାଥ ଦାସ ମଧ୍ୟ ପ୍ରଭୁ ଶ୍ରୀପୁରୁଷୋତ୍ତମଙ୍କୁ ଆକାର ରହିତ ସର୍ବଶ୍ରେଷ୍ଠ ତତ୍ତ୍ୱ ଭାବରେ ବର୍ଣ୍ଣନା କରିଛନ୍ତି । ଭକ୍ତ ପାଇଁ ସେ ଦାରୁ ପାଲଟି ଯାଆନ୍ତି, ଭୂମିରୁ ଭୂମାର ରୂପ ନେଇ ପାରନ୍ତି, ସୂକ୍ଷ୍ମରୁ ସ୍ଥୂଳ ପାଲଟି ଯାଆନ୍ତି, ନିରାଧାରରୁ ଆଧାର ଅବସ୍ଥାକୁ ମଧ୍ୟ ଆସି ପାରନ୍ତି । ସଗୁଣ ସାକାର ପ୍ରଭୁ, ନିର୍ଗୁଣ ନିରାକାରରେ ରୂପାନ୍ତରିତ ହୋଇପାରନ୍ତି । ଭାବରେ ଭକ୍ତ ତାଙ୍କୁ ଯେତେବେଳେ ଡାକିଛି ଗମ୍ଭୀରା ଭିତରେ ଥାଇ ସେ ଜବାବ ଦେଇଛନ୍ତି । ସେଇଥିପାଇଁ ଏ ଜାତିର ଇଷ୍ଟବନ୍ଧୁ, ପରମବନ୍ଧୁ ମଧ୍ୟ ସେହି ପୁରୁଷୋତ୍ତମ ଜଗବନ୍ଧୁ । ପ୍ରଭୁ ଦୀନବନ୍ଧୁ । ଏ ବସ୍ତୁବାଦୀ ସଂସାରର ମୋହରେ ଜଡ଼ିତ ନହୋଇ ଆଧ୍ୟାତ୍ମିକତାର ଶାଶ୍ୱତ ପଥରୁ ବିଚ୍ଛିନ୍ନ ନହେବାକୁ ତେଣୁ କବି 'ଦାରୁବ୍ରହ୍ମ ଗୀତା'ରେ ଶୁଣାଇଛନ୍ତି ଚେତାବନୀ -

'ତା'ଠାରୁ ଅନ୍ୟ କେହି ନାହିଁ, ଆକାର ଯେଣୁ ତା'ର ନାହିଁ,
ବିକାର ନ ଘେନନ୍ତି ଯେଣୁ, ନିରଞ୍ଜନଟି ନାମ ତେଣୁ
ସେହି ପୁରୁଷୋତ୍ତମ ରୂପ, ତାହାକୁ ଶୁଦ୍ଧ ମନେ ଜପ ।

ସର୍ବଧର୍ମ ଚେତନାର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି ହେଉଛନ୍ତି ଶ୍ରୀଜଗନ୍ନାଥ । ତତ୍ତ୍ୱଦର୍ଶୀମାନଙ୍କ ଦୃଷ୍ଟିରେ ସେ ଶୂନ୍ୟ, ନିର୍ଗୁଣ, ନିରାକାର ହେଲେ ମଧ୍ୟ ଭକ୍ତ ପାଇଁ ସେ ପୂର୍ଣ୍ଣ ବ୍ରହ୍ମ ସଗୁଣ-ସାକାର, ସେ ପତିତପାବନ, ଆର୍ତ୍ତତ୍ରାଣ, କରୁଣାସାଗର, ଦୀନବନ୍ଧୁ ଓ ଦୟାନିଧି । ସେ ହିଁ ନିଖିଳ ବ୍ରହ୍ମାଣ୍ଡର ସାର୍ବଭୌମ ଅଧୀଶ୍ୱର । ସଂହତି, ସଂପ୍ରୀତି ଓ ସୁନୀତିର ମହାମନ୍ତ୍ରରେ ପ୍ରତି ମୁହୂର୍ତ୍ତରେ ପ୍ରକମ୍ପିତ ହେଉଛି ପୁରୁଷୋତ୍ତମ କ୍ଷେତ୍ର । ଜୈନ, ବୌଦ୍ଧ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ସୌର - ସବୁଧର୍ମ, ସବୁ ସଂପ୍ରଦାୟର ଆରାଧ୍ୟ ଦେବତା ପ୍ରଭୁ ଶ୍ରୀପୁରୁଷୋତ୍ତମ । 'ସ ବେତ୍ତି ବେଦ୍ୟମ୍ ନ ତସ୍ୟାସ୍ତି ବେତ୍ତା' - ସେ ହିଁ ସମସ୍ତଙ୍କୁ ଜାଣିଲା ବାଲା ମାତ୍ର ତାଙ୍କୁ ଜାଣିଲା ବାଲା ଏ ସଂସାରରେ କେହି ନାହିଁ ।

ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ପୁରୁଷୋତ୍ତମ କ୍ଷେତ୍ର ପ୍ରତି ମୁହୂର୍ତ୍ତରେ ହୋଇଥାଏ ଉତ୍ସବ ମୁଖରିତ । କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଭାଷାରେ -

'ସିନ୍ଧୁ ତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ ଅଛି ତହିଁ ବହୁତ ଆଶ୍ଚର୍ଯ୍ୟ ହେ ।'

ପରଂବ୍ରହ୍ମ ପ୍ରଭୁ ପୁରୁଷୋତ୍ତମଙ୍କର ବାରମାସରେ ତେର ଯାତ୍ରା ଅନୁଷ୍ଠିତ ହେଉଥିଲେ ମଧ୍ୟ 'ରଥଯାତ୍ରା' ହିଁ ଶ୍ରେଷ୍ଠ ଯାତ୍ରା ଭାବରେ ପ୍ରସିଦ୍ଧି ଅର୍ଜନ କରିଛି । ଏହି ଯାତ୍ରାର ବିଶେଷତ୍ୱ ହେଲା - ପ୍ରଭୁଙ୍କର ବହୁ ପର୍ବପର୍ବାଣି ମନ୍ଦିର ଭିତରେ ଅନୁଷ୍ଠିତ ହେଉଥିବାବେଳେ ଏହି ପର୍ବରେ ପ୍ରଭୁ ଜଗନ୍ନାଥ ଭାଇଭଉଣୀଙ୍କ ସହ ଓହ୍ଲାଇ ଆସନ୍ତି ଜନତାର





ବଡ଼ଦାଣ୍ଡକୁ । କିମ୍ବଦନ୍ତୀ କହେ, ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ମହାରାଣୀ ଗୁଣ୍ଡିଚା ଦେବୀଙ୍କ ଅନୁରୋଧ କ୍ରମେ ଏ ଯାତ୍ରା ପ୍ରଚଳିତ ହୋଇ ଆସୁଥିବାରୁ ଏ ଯାତ୍ରାର ନାମ ଗୁଣ୍ଡିଚା ଯାତ୍ରା । ଏହି ଯାତ୍ରାର ଆକର୍ଷଣୀ ଶକ୍ତି ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଯାତ୍ରୀମାନଙ୍କୁ ଏକତ୍ର କରାଇଥାଏ ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡରେ । ଆଷାଢ଼ ଶୁକ୍ଳ ଦ୍ୱିତୀୟାଠାରୁ ଦଶମୀ ପର୍ଯ୍ୟନ୍ତ ନଅ ଦିନ ଧରି ଏହି ଯାତ୍ରା ଅନୁଷ୍ଠିତ ହେଉଥିବାରୁ ଏହାକୁ ନବଦିନାତ୍ମକ ଯାତ୍ରା ମଧ କୁହାଯାଏ । ପ୍ରଭୁଙ୍କର ବିବିଧ ଲୀଳା ହିଁ ଏହି ଉତ୍ସବର ବିବିଧ ନାମକରଣ କରିଥାଏ । ପତିତମାନଙ୍କୁ ଉଦ୍ଧାର କରିବା ନିମନ୍ତେ ପ୍ରଭୁ ପତିତପାବନ ଏହି ଯାତ୍ରା କରୁଥିବାରୁ ଏ ଯାତ୍ରାର ନାମ ମଧ ପତିତପାବନ ଯାତ୍ରା । ଏହି ନଅଦିନ ମଧ୍ୟରୁ ସାତ ଦିନ ଶ୍ରୀଜଗନ୍ନାଥ ଭାଇଭଉଣୀଙ୍କ ସହ ଗୁଣ୍ଡିଚା ମନ୍ଦିରର ଆଡ଼ପ ମଣ୍ଡପରେ ଅବସ୍ଥାନ କରୁଥିବାରୁ ଏ ଯାତ୍ରାର ନାମ ମଧ ଆଡ଼ପମଣ୍ଡପ ଯାତ୍ରା । ପ୍ରଭୁଙ୍କର ଜନ୍ମବେଦୀରେ ଏହି ଯାତ୍ରା ଅନୁଷ୍ଠିତ ହେଉଥିବାରୁ ଏହାକୁ କେହି କେହି ଜନ୍ମବେଦୀ ଯାତ୍ରା ମଧ କହିଥାଆନ୍ତି ।

ରଥଯାତ୍ରା ଅବସରରେ ସୁସଜ୍ଜିତ ତିନିରଥ ଜନତାର ବଡ଼ଦାଣ୍ଡରେ ପ୍ରତୀକ୍ଷମାଣ ଅବସ୍ଥାରେ ଦଣ୍ଡାୟମାନ । ପ୍ରଭୁଙ୍କର ଭୁବନ ପ୍ରସିଦ୍ଧ ରଥଯାତ୍ରାର ରଥ ନିର୍ମାଣରେ ପରମ ନିଷ୍ଠାର ସହ ଲାଗି ଥାଆନ୍ତି ବିଭିନ୍ନ ବର୍ଗର ବିଶ୍ୱକର୍ମାମାନେ । କିଏ କାଠ କାମ କରେ ତ କିଏ ଲୁହା କାମ କରେ, କିଏ ରଥରେ ସ୍ଥାନ ପାଇବା ମୂର୍ତ୍ତିଗୁଡ଼ିକରେ ରଙ୍ଗ କାମ କରେ ତ କିଏ ରଥ ପାଇଁ ବିଭିନ୍ନ କାରୁକାର୍ଯ୍ୟପୂର୍ଣ୍ଣ କପଡ଼ା ପ୍ରସ୍ତୁତ କରେ, ଆଉ କିଏ ସୋଲରେ ବିଭିନ୍ନ ପ୍ରକାରର ଫୁଲ ପ୍ରସ୍ତୁତ କରି ରଥକୁ ଆହୁରି ଆକର୍ଷଣୀୟ କରିଥାଏ । ସମସ୍ତେ ପାଲଟି ଯାଆନ୍ତି ଚଳଚଞ୍ଚଳ । କବିଙ୍କ ଭାଷାରେ -

ଆଜିତ ଗୁଣ୍ଡିଚା ଯାତ<br>
ଆହାକି ସୁନ୍ଦର ଦିଶେ ତିନି ରଥ<br>
ଫର ଫର ଉଡ଼େ ନେତ ।

ରାଜାଧିରାଜ ସମ୍ରାଟ ଶ୍ରୀପୁରୁଷୋତ୍ତମ ଓହ୍ଲାଇ ଆସିବେ ରତ୍ନ ସିଂହାସନରୁ । ଇଚ୍ଛାମୟ ସେ । ସେହି ଇଚ୍ଛାଶକ୍ତିକୁ ପ୍ରଣାମ ଜଣାଇ ସେବାୟତ, ଭକ୍ତ, ପ୍ରଶାସକ, ଅଧିକାରୀ ସମସ୍ତେ କର୍ମତତ୍ପର । ସେ ଏକ ଜୀବନ୍ତ ବିଗ୍ରହ । ବିଗ୍ରହ ଭକ୍ତମାନଙ୍କ ଗହଣକୁ ଆସିବା କେଉଁଠି ଦେଖାଯାଏ ନାହିଁ । ଏକମାତ୍ର ଦେଖାଦିଏ ଏହି ପୁରୁଷୋତ୍ତମ କ୍ଷେତ୍ରରେ । ଭକ୍ତଗଣଙ୍କର ସମସ୍ତ ଦୁଃଖକୁ, ସକଳ କଷ୍ଟକୁ ବିଦାରଣ କରିବା ନିମନ୍ତେ ପ୍ରଭୁଙ୍କର ଏ ଯାତ୍ରା । ଗୋପ-ମଥୁରା-ଅଯୋଧ୍ୟା-ଦ୍ୱାରକା ସବୁ ତୀର୍ଥ ସତେ ଯେପରି ଏକାକାର ହୋଇଯାଆନ୍ତି ଏହି ଶ୍ରୀକ୍ଷେତ୍ର ନୀଳାଚଳ ଧାମରେ ।

ରଥଯାତ୍ରାର ପ୍ରାରମ୍ଭରେ ପ୍ରଭୁଙ୍କର ଅପୂର୍ବ ସୁଦର୍ଶନ ଶକ୍ତି ବିଜେ କରନ୍ତି । ତେତିଶ କୋଟି ଦେବାଦେବୀଙ୍କର ଶକ୍ତିର ପ୍ରତୀକ ଏ ଚକ୍ର ।

'ଉଗ୍ରଂ ସୌମ୍ୟଂ ପ୍ରଶାନ୍ତଂ ମଣିମୟ ମୁକୁଟଂ<br>
କୋଟି ବାଳାର୍କ କାନ୍ତି ସମଂ ।'

ଏପରି ଯେଉଁ ରୂପଯୁକ୍ତ ସୁଦର୍ଶନ, ସେ ବିଜେ କରିବେ ବଡ଼ଦାଣ୍ଡକୁ ଓ ଅବସ୍ଥାପିତ ହେବେ ଦେବୀ ସୁଭଦ୍ରାଙ୍କ ରଥରେ । ଶଙ୍ଖ କ୍ଷେତ୍ରରେ ଚକ୍ରରାଜ ସୁଦର୍ଶନଙ୍କର ଯାତ୍ରା । କାଳ ଯେପରି ଅପ୍ରତିହତ ଗତିରେ ଚାଲିଥାଏ, କାହାକୁ ଅପେକ୍ଷା କରେ ନାହିଁ, ସୁଦର୍ଶନ ସେହିପରି କାଳର ପ୍ରତୀକ । ସେ କାହାରିକୁ ଅପେକ୍ଷା ନକରି ପହଣ୍ଡି ନକରି ବାହାରନ୍ତି ତ ଆସି ପହଞ୍ଚ ଯାଆନ୍ତି ଦର୍ପଦଳନ ରଥରେ । ଶକ୍ତିରାଜଙ୍କ ଆଗମନରେ ଭକ୍ତକଣ୍ଠରୁ ଝରି ପଡ଼େ ଆକୁଳ ନିବେଦନ - ପ୍ରତିଟି ମନର ଗର୍ବ, ଦର୍ପ, ଅହଂକାର ଲୋପ କର ପ୍ରଭୁ, ସମସ୍ତଙ୍କ ମନରେ ଭରିଦିଅ ସମର୍ପିତ ଭାବ ।

ପରେ ପରେ ନୀଳକନ୍ଦରର ସିଂହଦ୍ୱାରର ଗୁମୁଟିରୁ ବାହାରି ଆସନ୍ତି ପ୍ରଭୁ ବଳଭଦ୍ର କେତେ ସ୍ତବ, କେତେ ସ୍ତୋତ୍ରରେ ମୁଖରିତ ହୋଇଉଠେ ବଡ଼ଦାଣ୍ଡ । ତୁଳସୀ ଓ ଦୟଣାର ମହକରେ ମହକି ଉଠେ ବଡ଼ଦାଣ୍ଡ । ପ୍ରଭୁଙ୍କର ଆଗମନରେ ଯେ ଯେଉଁଠି ଥାଆନ୍ତୁ ନା କାହିଁକି ପ୍ରଭୁଙ୍କ ଉଦ୍ଦେଶ୍ୟରେ ପୁଷ୍ପାଞ୍ଜଳି ଅର୍ପଣ କରିଥାଆନ୍ତି । ସେଥିରୁ ଅଧିକାଂଶ ଫୁଲ ଝରିପଡ଼େ ଭକ୍ତମାନଙ୍କ ଉପରେ, ସତେ ଯେପରି ଏହା ହିଁ ପ୍ରଭୁଙ୍କର ଇଚ୍ଛା । କାଦମ୍ବରୀ ପାନ କରି ତାଳେ ତାଳେ ଟାହିଆ ହଲାଇ ଆସିଥାଆନ୍ତି ପ୍ରଭୁ ବଳଭଦ୍ର । ସେ ହିଁ ଦେବ ଦେବ ମହାଦେବ । ଶୁଦ୍ଧ ସ୍ଫଟିକ ସଦୃଶ ତାଙ୍କର କାନ୍ତି । ଆଦିକବି ସାରଳା ଦାସ ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାଙ୍କୁ ବର୍ଣ୍ଣନା କରିଛନ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଭାବରେ -

'ପୀତ କୁଙ୍କୁମ ବରନ ସେହି ବ୍ରହ୍ମ ମୂର୍ତ୍ତି<br>
ଡାହାଣେ ଶୁକଳ ବର୍ଣ୍ଣ ମହାଦେବ ଜ୍ୟୋତି<br>
ରୂପରେ ତ ଜଗନ୍ନାଥ ବର୍ଣ୍ଣ ଅଟେ କଳା<br>
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତିନି ଦେବ ମେଳା ।'

ବିକଚ ପଦ୍ମନେତ୍ର ଶୋଭାପାଏ ଅପୂର୍ବ ଠାଣିରେ, ଯାହାକୁ ଦେଖିବା ମାତ୍ରେ ଜଗତର ସବୁ ଦୁଃଖ ଦୂର ହୋଇଯାଏ । ମୁରବୀ ପଣରେ ପ୍ରଥମେ ଆସିଥାନ୍ତି ପ୍ରଭୁ ବଳରାମ । ଚଉଦ ଭୁବନର ପ୍ରତୀକ ସ୍ୱରୂପ ଏ ରଥ । ଏହାର ଅଗ୍ରଭାଗରେ ତାଳ ଚିହ୍ନ ଥିବାରୁ ଏ ରଥର ନାମ ତାଳଧ୍ୱଜ ।

ଅଗଣିତ ଭକ୍ତଙ୍କର ପ୍ରେମପୂର୍ଣ୍ଣ ଅଭିଭାଷଣରେ ଆସି ଥାଆନ୍ତି ମାଆ ସୁଭଦ୍ରା । ଶୂନ୍ୟ ପହଣ୍ଡିରେ ଆସନ୍ତି ଦେବୀ । ସମଗ୍ର ଜଗତକୁ ସ୍ନେହର ରଜ୍ଜୁରେ ବାନ୍ଧି ରଖିବା ପାଇଁ ମାଆଙ୍କର ଏ ଯାତ୍ରା । ଶଙ୍ଖ, ଘଣ୍ଟ ଓ ହୁଳହୁଳି ନିନାଦରେ ପ୍ରକମ୍ପିତ ହୁଏ ବଡ଼ଦାଣ୍ଡ ।

ଜନତାର ସମୁଦ୍ର ମଧକୁ ପରିଶେଷରେ ହଲି ହଲି ଝୁଲି ଝୁଲି ଆସି ଥାଆନ୍ତି ଅବ୍ୟକ୍ତ ତତ୍ତ୍ୱ - ବିରାଟ ବିସ୍ମୟ - ଶ୍ରୀଜଗନ୍ନାଥ, ଯେ

ଜଗତକୁ ତ୍ରିଗୁଣ ରଜ୍ଜୁରେ ବାନ୍ଧି ଥାଆନ୍ତି, ସେ ଆଜି ଭକ୍ତ ଗହଣରେ ବନ୍ଧା ପଡ଼ିଯାଆନ୍ତି -

'ଶ୍ରୀଅଙ୍ଗରେ ପାଟରଶି ବାନ୍ଧିଛନ୍ତି କଷି କଷି
ବିଶ୍ୱାବସୁ ଅବତଂଶୀ ଦଇତାପତି ।'

ପୂର୍ଣ୍ଣତାର ପ୍ରତୀକ ଶ୍ରୀଜଗନ୍ନାଥ । ସେ ଯେଉଁଠି ରହିବେ ତାହା ପୂର୍ଣ୍ଣ । ତାଙ୍କରି ଅଭାବରେ ସବୁକିଛି ଶୂନ୍ୟ ବା ଜଡ଼ ପାଲଟି ଯାଏ । ତାଙ୍କରି ଆଗମନରେ ନନ୍ଦିଘୋଷ ରଥରେ ହୋଇଥାଏ ଚେତନାର ପ୍ରବାହ । ଔଦାର୍ଯ୍ୟ, ମାଧୁର୍ଯ୍ୟ, ଶୌର୍ଯ୍ୟ, ବୀର୍ଯ୍ୟ, ଗାମ୍ଭୀର୍ଯ୍ୟ ସବୁକିଛିକୁ ପରିପ୍ରକାଶ କରିବା ଉଦ୍ଦେଶ୍ୟରେ ପ୍ରଭୁଙ୍କର ଏ ଯାତ୍ରା । ସେହି ବିରାଟ ଚକ୍ଷୁ ମଧ୍ୟରେ ଲାଖି ରହେ ଅସଂଖ୍ୟ ଚକ୍ଷୁ । ଭକ୍ତ ଓ ଭଗବାନଙ୍କର ଏପରି ଆତ୍ମିକ ସଂପର୍କ ଆଉ କୌଣସି ସଂସ୍କୃତିରେ ଦେଖାଯାଏ ନାହିଁ । ଭାବ ଓ ପ୍ରେମର ଏ ଯାତ୍ରା । ଯେପରି ଗୋପାଙ୍ଗନାମାନେ ଘରର ସବୁ ଆକଟକୁ ଏଡ଼ାଇ ପ୍ରଭୁ ଶ୍ରୀକୃଷ୍ଣଙ୍କ ନିକଟକୁ ଚାଲି ଆସିଥିଲେ, ରଥଯାତ୍ରା ଅବସରରେ ଠିକ୍ ସେହିପରି ଅନେକ ବାଧାବିଘ୍ନକୁ ଅତିକ୍ରମ କରି ଆସିଥା'ନ୍ତି ଅଗଣିତ ଭକ୍ତ ବିଭିନ୍ନ ସ୍ଥାନରୁ ।

ସମସ୍ତେ ଊର୍ଦ୍ଧ୍ୱବାହୁ । ପ୍ରଭୁ ହିଁ ସମସ୍ତଙ୍କୁ ଏ ଭବ ସାଗରରୁ ଉଦ୍ଧାର କରିବେ । ଭାବର କମନୀୟ ବିଗ୍ରହ ଶ୍ରୀଜଗନ୍ନାଥ । 'ତନ୍ତ୍ରଯାମଳ' ଗ୍ରନ୍ଥରେ ଯଥାର୍ଥରେ କୁହାଯାଇଛି -

'ଭାରତେଚୋତ୍କଳ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟ ପ୍ରଦଃ ।'

ଧନ୍ୟ ପ୍ରଭୁ ! ଧନ୍ୟ ତୁମର ଲୀଳା, ଧନ୍ୟ ତୁମର ସଂସ୍କୃତି ଓ ଧନ୍ୟ ତୁମର ଆଦର୍ଶ । ଶ୍ରୀଜଗନ୍ନାଥ ଚେତନା ଏପରି ଏକ ଚେତନା ଯାହା ଅତୀତକୁ ସାକ୍ଷୀ ରଖି, ଅତୀତରୁ ମହାର୍ଘ ଉଦାହରଣମାନଙ୍କୁ ପୁଞ୍ଜିକରି ସୁଦୂର ଭବିଷ୍ୟତକୁ ଲକ୍ଷ୍ୟ ରଖି ବର୍ତ୍ତମାନର ସ୍ଥିତିକୁ ନିୟନ୍ତ୍ରଣ କରିଥାଏ । ନାନା ଦୁଃଖକଷ୍ଟ, ଅଭାବ ଅନଟନ ଓ ଝଡ଼ଝଂଜା ମଧ୍ୟରେ ସେହି ମହାପ୍ରଭୁଙ୍କ ନିକଟରେ ନିଜକୁ ସଂପୂର୍ଣ୍ଣ ସମର୍ପଣ କରି ଯେକୌଣସି ବ୍ୟକ୍ତି ବିଶେଷ ଲାଭ କରିଥାଏ ଅସୁମାରି ଆନନ୍ଦ ଓ ଅଖଣ୍ଡ ପ୍ରଶାନ୍ତି ।

ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ମହିମାର ଅନ୍ତ ନାହିଁ । ତାହା ସୁଦୂରପ୍ରସାରୀ । ସେହି ଅନନ୍ତ କରୁଣାର ଊର୍ମିମାଳାର ପ୍ଲାବନରେ ସମଗ୍ର ଜଗତ ଆନନ୍ଦମୟ ହୋଇଉଠୁ । ତାଙ୍କୁ ହିଁ ଭଲ ପାଇବା ଓ ତାଙ୍କୁ ହିଁ ସୁଖ ଦୁଃଖର ସାଥୀ ଭାବେ ଗ୍ରହଣ କରିନେବା - ଏହି ପ୍ରକାରର ନିଷ୍ଠା ଓ ବିଶ୍ୱାସ ସେ ହିଁ ଆମମାନଙ୍କ ମନରେ ଭରି ଦିଅନ୍ତୁ ।

ଡି.ଏ.ଭି. ପବ୍ଲିକ୍ ସ୍କୁଲ
ୟୁନିଟ୍-୮, ଭୁବନେଶ୍ୱର

# ମହାବାହୁ

ପୁଷ୍ପିତା ମହାନ୍ତି

ଜୟ ଜଗନ୍ନାଥ ଜୟ ଜଗନ୍ନାଥ
ଜୟ ଆହେ ମହାବାହୁ
ପାଗଳ ଆଜି ମୁଁ ତୁମ ଦରଶନେ
ଆଖିରୁ ଝରାଏ ଲହୁ ।
ଆରତୀ ବେଳରେ ଭାବ ବିହ୍ୱଳରେ
ରହିଥାଏ ଖାଲି ଚାହିଁ
ତୁମ ରୂପ ଦେଖି ମନଯାଏ ଲାଖି
ନପାରେ କିଛି ମୁଁ କହି ।
ତୁମରି ଆଖିରେ ଆଖି ମିଳାଇଲେ
ମନ ମୋ ଚୋରାଇ ନେଉ
କେତେ ଭାବି ହୁଏ କହିବି ତୁମ୍ଭକୁ
ଭାବନାରେ ଖେଳେ ଢେଉ ।
କେତେ ଯୋଗୀ ଭୋଗୀ ଆସୁଛନ୍ତି ଧାଇଁ
ସଭିଁଙ୍କୁ ଦର୍ଶନ ଦେଉ
ଅନ୍ତର୍ଯ୍ୟାମୀ ବୋଲି ତୁମ୍ଭକୁ କୁହନ୍ତି
ମୋ' ପାଇଁ କଠୋର ହେଉ ।

ପଥର ଦେଉଳେ ଦାରୁର ଦେବତା
କିମ୍ପାଇ ମଉନ ରହୁ
ଗୁହାରି କରିବା ବିଅର୍ଥ ନ ହେଉ
ନିରାଶ ନକର ଆଉ ।
ଦୁଃଖର ସାଗରେ ଭାସୁଅଛି ମୁହିଁ
ସାହା କେହି ନାହିଁ ଆଉ
ତୁମ୍ଭେ ନ ରଖିଲେ ଆଉକେ ରଖିବ
ତୁମ୍ଭେ ପ୍ରଭୁ ଥାଉଁ ଥାଉଁ
ଉଠ ଉଠ ପ୍ରଭୁ ଗୁହାରି ଶୁଣ ହେ
ନିର୍ଦ୍ଦୟ ନହୁଅ ଆଉ
ତୁମରି ଶ୍ରୀମୁଖ ନିତି ଦେଖୁଥିବି
ଏହି ଆଜ୍ଞା ମୋତେ ହେଉ ।

ଶ୍ରୀନଅର
ବଡ଼ଦାଣ୍ଡ, ପୁରୀ

# ଶ୍ରୀକ୍ଷେତ୍ର ଓ ଘୋଷଯାତ୍ରାର ଐତିହ୍ୟ

ଡକ୍ଟର ହୃଷୀକେଶ ପଣ୍ଡା

ଶ୍ରୀଜଗନ୍ନାଥ ପ୍ରାକ୍‌ବୈଦିକ ଦେବତା । ବିଭିନ୍ନ ଧର୍ମ, ଦର୍ଶନ ଓ ଚେତନାର ସମନ୍ୱୟ ଘଟିଛି ଶ୍ରୀଜଗନ୍ନାଥଙ୍କଠାରେ । ସ୍ମାର୍ତ୍ତମାନଙ୍କର ସେ ବିଷ୍ଣୁ । ଗାଣପତ୍ୟଙ୍କର ସେ ଗଣପତି, ଜୈନପନ୍ଥୀଙ୍କର ସେ ମହାଜୀନ । ବୌଦ୍ଧମାନଙ୍କର ସେ ମହାବୁଦ୍ଧ । ଗୌଡ଼ୀୟମାନଙ୍କର ସେ ଭଗବାନ କୃଷ୍ଣ, ରାମପନ୍ଥୀଙ୍କର ସେ ଶ୍ରୀରାମଚନ୍ଦ୍ର । ତାନ୍ତ୍ରିକମାନଙ୍କର ସେ ଦକ୍ଷିଣ କାଳିକା, ଶୈବଙ୍କ ଶିବ, ଶାକ୍ତମାନଙ୍କର ସେ ମହାଭୈରବ । ଶବରମାନଙ୍କର ସେ ଶବରୀ ନାରାୟଣ । କନ୍ଧମାନଙ୍କର ସେ ପେନୁ, ସୌରମାନଙ୍କର ସେ ସୂର୍ଯ୍ୟ ନାରାୟଣ ଏବଂ 'ଗୀତା'ର ସେ ପୁରୁଷୋତ୍ତମ ।

ବହୁଧର୍ମ ଧାରାର ସମନ୍ୱୟରେ ଜଗନ୍ନାଥ ଧର୍ମ ପରିପୁଷ୍ଟ ହୋଇଛି । ବିଶ୍ୱ ଭ୍ରାତୃତ୍ୱ, ସଂପ୍ରୀତି ଓ ସଂହତିର ପ୍ରତୀକ ଏହି ଧର୍ମଧାରା ବିଶ୍ୱ ମାନବିକତାର ଆଧାର ହୋଇଛି ଏବଂ ଉତ୍କଳର ନାଥ ଜଗତର ନାଥ ଭାବରେ ସ୍ୱୀକୃତ ହୋଇଛନ୍ତି । ତେଣୁ ଜଗନ୍ନାଥ ଧର୍ମ, ଦର୍ଶନ ଓ ଚେତନାର ବୈଶିଷ୍ଟ୍ୟ ଅନନ୍ୟ । ଏହା ସାର୍ବଜନୀନ ଓ ସର୍ବକାଳୀନ ମଧ୍ୟ । ଗୀତାର ପୁରୁଷୋତ୍ତମ ହିଁ ଶ୍ରୀଜଗନ୍ନାଥ । ବେଦରେ ସେ ଅପୌରୁଷେୟ ରୂପେ ବର୍ଣ୍ଣିତ ।

ଶ୍ରୀଜଗନ୍ନାଥଙ୍କ ନୀଳାଚଳ ଧାମ, ଶ୍ରୀକ୍ଷେତ୍ର, ଶଙ୍ଖ କ୍ଷେତ୍ର, ଭୌମ କ୍ଷେତ୍ର, ନୀଳଗିରି, ପୁରୁଷୋତ୍ତମ କ୍ଷେତ୍ର ଆଦି ବିଭିନ୍ନ ନାମରେ ବୈଦିକ କାଳରୁ ପ୍ରତିଷ୍ଠା ଲାଭ କରିଆସିଛି । ବିଭିନ୍ନ ପୁରାଣ ଶାସ୍ତ୍ରରୁ ପୁରୁଷୋତ୍ତମ କ୍ଷେତ୍ରର ମହିମା ଓ ପ୍ରାଚୀନତା ସହିତ ଶ୍ରୀଜଗନ୍ନାଥଙ୍କ ପ୍ରାକ୍ ବୈଦିକ ସ୍ଥିତିର ପରିଚୟ ମିଳେ ।

ଅଥର୍ବ ବେଦର ଅନୁରୂପ ଏକ ଶ୍ଳୋକରେ ଅପୁରୁଷ ଦାରୁବ୍ରହ୍ମର ସୂଚନା ରହିଛି ।

'ଅଦୌ ଯଦ୍ଦାର ପବତେ ସିନ୍ଧୋର୍ବଧେ ଅପୁରୁଷମ
ତଦ ଲଭସ୍ୱ ଦୁର୍ଦାନୋ ତେନ ଯାହି ପରମସ୍ଥଳମ୍ ।'

ଭଗବଦ୍ ଗୀତାର 'ପୁରୁଷୋତ୍ତମ ଯୋଗ'ରେ ଏବଂ କଠୋପନିଷଦ'ରେ ସଂସାରକୁ ଉର୍ଦ୍ଧ୍ୱମୂଳ ଅଶ୍ୱତ୍ଥ ବୃକ୍ଷ ରୂପେ ବର୍ଣ୍ଣନା କରାଯାଇଛି ।



'ଉର୍ଦ୍ଧ୍ୱମୂଳ ମଧଃ ଶାଖମଶ୍ୱତ୍ଥଂ ପ୍ରାହେରୁବ୍ୟୟମ୍
ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ଦେବବିଦ୍ ।'

(ଭଗବଦ୍ ଗୀତା- ପୁରୁଷୋତ୍ତମ ଯୋଗ-ଷୋଡ଼ଷ, ଅଧ୍ୟାୟ ପ୍ରଥମ ଶ୍ଳୋକ)

ପୁଣି

'ଉର୍ଦ୍ଧ୍ୱ ମୂଳୋର ବାକ୍ ଶାଖ ଏଷୋ ଅଶ୍ୱତ୍ଥଚ ସନାତନଃ ।
ତଦେବ ଶୁକ୍ରଂ ତଦ୍ ବ୍ରହ୍ମ ତଦେବାମୃତ ମୁଚ୍ୟତେ ।'
- କଠୋପନିଷଦ - ୩ୟ ଅଧ୍ୟାୟ ୧ମ ଶ୍ଳୋକ

ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡ (୨୧ ଅଧ୍ୟାୟ), ରାମାୟଣ ଅଯୋଧ୍ୟାକାଣ୍ଡ (୧୧୮ଶ ସର୍ଗ), ମହାଭାରତର ବନପର୍ବ (୧୧୪ ଅ) ମତ୍ସ୍ୟପୁରାଣ (୩୫/୩୬ ଅଧ୍ୟାୟ) ରୁଦ୍ରଯାମଳ, କାଳିକା ପୁରାଣ, ତନ୍ତ୍ର ଯାମଳ, ବିଷ୍ଣୁ ପୁରାଣ ଆଦି ବହୁ ପ୍ରାଚୀନ ଗ୍ରନ୍ଥରେ ପୁରୁଷୋତ୍ତମ କ୍ଷେତ୍ର ଓ ଦାରୁବ୍ରହ୍ମ ଜଗନ୍ନାଥଙ୍କ ମହିମା ସଂପର୍କରେ ବର୍ଣ୍ଣନା ରହିଛି । ଏହା ଜଗନ୍ନାଥଙ୍କ ପୌରାଣିକତା ଓ ପ୍ରାଚୀନତାର ପ୍ରମାଣ ଦିଏ ।

କାଳିକା ପୁରାଣରେ ଜଗନ୍ନାଥ ପୀଠ ତାନ୍ତ୍ରିକ ପୀଠ ରୂପରେ ଓ ଜଗନ୍ନାଥ 'କାଳିକା' ରୂପରେ ବର୍ଣ୍ଣିତ ହୋଇଛନ୍ତି -





'ଓଡ୍ୟାଂଗଂ ପ୍ରଥମ ପୀଠଂ ଦ୍ୱିତୀୟଂ ଜାଳଶୈଳକଂ
ତୃତୀୟଂ ପୂର୍ଣ୍ଣ ପୀଠନ୍ତୁ କାମରୂପ ଚତୁର୍ଥକଂ-
ଓଡ୍ରପୀଠଂ ପଶ୍ଚିମେତୁ ତଥୈବୋଡ୍ରେଶ୍ୱରୀ ଶିବାଂ
କାତ୍ୟାୟିନୀ ଜଗନ୍ନାଥ ମୋଡ୍ରେଶ ଚ ପ୍ରପୁଜୟତ୍ ।'
(- ୬୪ ଅଧ୍ୟାୟ)

'ତନ୍ତ୍ର ଯାମଳ' ୨୬ ଶ୍ଲୋକରେ ପୁରୁଷୋତ୍ତମକୁ ଭୂସ୍ୱର୍ଗ ରୂପେ ବର୍ଣ୍ଣନା କରାଯାଇ ଦାରୁବ୍ରହ୍ମ ଜଗନ୍ନାଥଙ୍କ ମହିମାଗାନ କରାଯାଇଛି ।

'ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତନାମ ଭୟପ୍ରଦଃ ।।'

ଶାସ୍ତ୍ର ପୁରାଣ ବ୍ୟତୀତ ବହୁ ପ୍ରାଚୀନ କାବ୍ୟ କବିତା ଓ ଐତିହାସିକ ରଚନାରେ ପୁରୁଷୋତ୍ତମ କ୍ଷେତ୍ର ଓ ଦାରୁବ୍ରହ୍ମ ଜଗନ୍ନାଥଙ୍କ ମହିମାର ବର୍ଣ୍ଣନା ରହିଛି ।

ଗୋବର୍ଦ୍ଧନପୀଠର ପ୍ରତିଷ୍ଠାତା ଆଦିଶଙ୍କରାଚାର୍ଯ୍ୟଙ୍କ ରଚିତ ଜଗନ୍ନାଥାଷ୍ଟକ, ଜୟଦେବଙ୍କ 'ଗୀତଗୋବିନ୍ଦ' ନବମ ଶତାବ୍ଦୀରେ ମୁରାରୀ ମିଶ୍ରଙ୍କ ରଚିତ ଅନଙ୍ଗରାଘବ ନାଟକ ବୌଦ୍ଧ ସିଦ୍ଧାଚାର୍ଯ୍ୟଙ୍କ ରଚିତ 'ଚର୍ଯ୍ୟାପଦ' ଆଦିରେ ଏହି କ୍ଷେତ୍ରର ମହିମା ବର୍ଣ୍ଣିତ ହୋଇଛି ।

ଖ୍ରୀଷ୍ଟୀୟ ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ବୌଦ୍ଧ ଓ ବଜ୍ରଯାନୀମାନେ ଶୂନ୍ୟ ପୁରୁଷର ସାଧନା କରି ପ୍ରସିଦ୍ଧି ଲାଭ କରିଥିଲେ ।

ବଜ୍ରଯାନ ମାର୍ଗର ପ୍ରତିଷ୍ଠାତା ସମ୍ବଲପୁରର ରାଜା ଇନ୍ଦ୍ରଭୂତ 'ବୁଦ୍ଧ'ଙ୍କୁ ଜଗନ୍ନାଥ ନାମରେ ପରିଚିତ କରାଇଥିଲେ । ତାଙ୍କ ରଚିତ 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ତା'ର ସୂଚନା ରହିଛି ।

ସଃ ପୁରୁଃ ଶିଷ୍ୟ ସଂଗ୍ରାହୀ ସର୍ବବୁଦ୍ଧାନୁକାରକଃ
ଇତ୍ୟୁବ ଚ ଜଗନ୍ନାଥୋ ନାନୈ ବୈଗୁରବଃ ସ୍ମୃତୀଃ
ଜ୍ଞାନସିଦ୍ଧି-୧ମ ସର୍ଗ ପ୍ରଥମ ଶ୍ଲୋକ

ରାଜା ଇନ୍ଦ୍ରଭୂତିଙ୍କ ଭଗିନୀ ଲକ୍ଷ୍ମୀଙ୍କର ସହଜଯାନ ମାର୍ଗର ପୃଷ୍ଠପୋଷକତା କରିଥିଲେ ।

ପ୍ରାଚୀନ ଜଗନ୍ନାଥ ଧର୍ମ ଓ ଦର୍ଶନର ବୈଶିଷ୍ଟ୍ୟ ଓ ବ୍ୟାପକତା ଫଳରେ ବିଭିନ୍ନ ଧର୍ମ ଓ ସଂପ୍ରଦାୟର ସନ୍ଥ, ସାଧକ ଓ ପରିବ୍ରାଜକମାନେ ବିଭିନ୍ନ ସମୟରେ ଶ୍ରୀକ୍ଷେତ୍ରକୁ ଆସି ଜଗନ୍ନାଥଙ୍କ ପୂଜା ଉପାସନା କରିଥିଲେ ।

ସେମାନଙ୍କ ମଧ୍ୟରେ କବୀର, ନାନକ, ତୁକାରାମ, ଶଙ୍କରାଚାର୍ଯ୍ୟ, ଶ୍ରୀନିମ୍ବାର୍କ, ରାମାନୁଜ, ଶ୍ରୀଚୈତନ୍ୟ, ଶଙ୍କର ଦେବ ପ୍ରମୁଖ ଉଲ୍ଲେଖଯୋଗ୍ୟ । ଏପରିକି ଯୀଶୁଖ୍ରୀଷ୍ଟ ପୁରୀ ଆସି କିଛି ଦିନ ଅବସ୍ଥାନ କରିବା ସହିତ 'ବେଦ ଅଧ୍ୟୟନ' କରିଥିବା ଜଣାଯାଏ ।

ଏହିସବୁ କାରଣରୁ ସର୍ବଧର୍ମର ସମନ୍ୱୟରେ ଜଗନ୍ନାଥ ଧର୍ମ ଓ ଦର୍ଶନ କ୍ରମଶଃ ଲୋକପ୍ରିୟତା ଓ ପ୍ରସିଦ୍ଧି ଲାଭ କରିଥିଲା । ଧୀରେ ଧୀରେ ତାହା ବିଶ୍ୱମାନବତାବୋଧର ପ୍ରତୀକ ଭାବରେ ସ୍ୱୀକୃତି ଲାଭ କଲା । ଏହି ସ୍ୱୀକୃତିର ଆଧାର ହେଲା ଶ୍ରୀଜଗନ୍ନାଥଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରା । ଶ୍ରୀଜଗନ୍ନାଥ ହିନ୍ଦୁମାନଙ୍କର ଦେବତା ହେଲେ ମଧ୍ୟ ଅନ୍ୟ ଧର୍ମ ଓ ସଂପ୍ରଦାୟ ଦ୍ୱାରା ଉପାସିତ ହୋଇଛନ୍ତି, ବେଦର ଅଦ୍ୱୈତବାଦ, ପରବର୍ତ୍ତୀ କାଳରେ ଦ୍ୱୈତାଦ୍ୱୈତବାଦ ଓ ପୁରାଣ ଯୁଗରେ ଅବତାରବାଦର ସମନ୍ୱୟ ଘଟିଛି ଶ୍ରୀଜଗନ୍ନାଥ ଧର୍ମ ଓ ଦର୍ଶନରେ ।

ବିଷ୍ଣୁଙ୍କର ଦଶାବତାର ପୁରୁଷୋତ୍ତମ କ୍ଷେତ୍ରରେ ଦାରୁବ୍ରହ୍ମ ଜଗନ୍ନାଥଙ୍କଠାରେ ହୋଇଥିବା ପ୍ରାଚୀନ ଶାସ୍ତ୍ରରୁ ଜଣାପଡ଼େ ।

'ତତ୍ରାପି ଲୋକ ରକ୍ଷାର୍ଥଂ ଯେ ଅବତାରାକୃତାପୁରା
ମତ୍ସ୍ୟାଦ୍ୟା ଦିବ୍ୟ ରୂପାବୈ ପୁରାପ୍ରତେ କଥିତା ମୟା
ଅତ୍ରକ୍ଷେତ୍ର କରେ ବସ ତାଂସ୍ତାନ୍ ପ୍ରକୁରୁତେ ବିଭୂଃ
ଏତଦ୍ଧି ପରମଂ ସ୍ଥାନଂ ଦିବ୍ୟଂ ଭୌମଞ୍ଚ କଥ୍ୟତେ ।
ତତ୍ ଫଳଂ ଲଭତେ ମର୍ତ୍ତ୍ୟୋ ଦୃଷ୍ଟ୍ୱା ଶ୍ରୀପୁରୁଷୋତ୍ତମମ୍
ଦଶାବତାର ଭଞ୍ଜାଭ୍ୟ କଥିତା ପୁତ୍ରମେ ତୟା ।।'
ସ୍କନ୍ଦ ପୁରାଣ-ଉତ୍କଳ ଖଣ୍ଡ-୫୫ ଅଧ୍ୟାୟ

ଶ୍ରୀଜଗନ୍ନାଥଙ୍କ ଧର୍ମ, ଦର୍ଶନ ଓ ଚେତନାକୁ ବିଶ୍ୱପ୍ରସିଦ୍ଧ ଦେବାରେ ଦୁଇଟି ବିଶେଷ ଆଧାର ହେଉଛି, ଶ୍ରୀଗୁଣ୍ଡିଚା ବା ରଥଯାତ୍ରା ଏବଂ ଶ୍ରୀମନ୍ଦିରରେ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ପଂକ୍ତି ଭୋଜନରେ ମହାପ୍ରସାଦ ଭୋଜନର ପରମ୍ପରା । ଏହି ଧାର୍ମିକ ନୀତିରେ ସମାଜବାଦୀ ଚେତନା ଓ ସାମ୍ୟବାଦୀ ଆଦର୍ଶବାଦ ଏକ ପ୍ରମୁଖ କାରଣ, ଯାହାର ପ୍ରାସଙ୍ଗିକତା ଆଜିର ଅର୍ଥନୈତିକ ସମାଜ ବ୍ୟବସ୍ଥାକୁ ମଧ୍ୟ ତ୍ୱରାନ୍ୱିତ କରୁଛି ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ପରମ୍ପରା ମଧ୍ୟ ଅତିପ୍ରାଚୀନ । ବୈଦିକ ସାହିତ୍ୟରେ ରଥ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି, ଚନ୍ଦ୍ରଙ୍କର ରଥ, ସୂର୍ଯ୍ୟଦେବତାଙ୍କ ସପ୍ତାଶ୍ୱ ରଥ ଓ ବିଷ୍ଣୁଦେବଙ୍କର ରଥଥିବାର ଉଲ୍ଲେଖ ରହିଛି ।

ପାଞ୍ଚହଜାର ବର୍ଷ ପୂର୍ବେ ରଚିତ 'କଠୋପନିଷଦ'ରେ ଏକ ଶ୍ଲୋକରେ ମଣିଷ ଶରୀରକୁ ରଥ ସହିତ ତୁଳନା କରାଯାଇଛି ।

'ଆତ୍ମାନ୍ୟ ରଥିନଂ ବିଦ୍ଧି ଶରୀରଂ ରଥମେବତୁ
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନ ପ୍ରଗ୍ରହମେବ ଚ ।'
(କଠୋପନିଷଦ-୧ମ, ଅ.୩-୩)

ଏଠାରେ ଶରୀର ରଥ, ଆତ୍ମା ରଥି ବୁଦ୍ଧି ସାରଥୀ ଓ ମନ ଅଶ୍ୱ ରୂପେ ଆରୋପିତ ହୋଇଛି । ସୂର୍ଯ୍ୟଙ୍କ ସପ୍ତାଶ୍ୱ ରଥର ବର୍ଣ୍ଣନା କରି କୁହାଯାଇଛି -





'ଓଁ ଆକୃଷ୍ଣେନ ରାଜସା ବର୍ତ୍ତମାନୋ
ନିବେଶୟ ନ୍ନମୃତଂ ମର୍ତ୍ତ୍ୟଂଚ
ହିରଣ୍ମୟେନ ସବିତା ରଥେନ
ଦେବୋ ଯାତି ଭୁବନାନି ପଶ୍ୟନ ।'
କଠୋପନିଷଦ

ଓଡ଼ିଶାର ମନ୍ଦିର ଭାସ୍କର୍ଯ୍ୟରେ 'ରଥ' ଖୋଦିତ ହୋଇଛି, କୋଣାର୍କ ମନ୍ଦିର ରଥ ଶୈଳୀରେ ନିର୍ମିତ । ଦାକ୍ଷିଣାତ୍ୟର 'ହାମ୍ପି'ଠାରେ କୋଣାର୍କ ପରି ରଥାକୃତିର ମନ୍ଦିରଟିଏ ରହିଛି । ରଥର ବର୍ଣ୍ଣନା ଓ ମନ୍ଦିରର ଶିଳ୍ପକଳା ରଥଯାତ୍ରାର ପ୍ରାଚୀନ ଐତିହ୍ୟକୁ ସୂଚୀତ କରେ । (ଶ୍ରୀଜଗନ୍ନାଥ ମନ୍ଦିର ଓ ଶ୍ରୀଜଗନ୍ନାଥ ତତ୍ତ୍ୱ - ସୂର୍ଯ୍ୟନାରାୟଣ ଦାଶ, ପୃ.୨୦)

ପୁରୀର ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ବହୁକାଳରୁ ଚଳିଆସୁଛି । ରଥଯାତ୍ରାକୁ ନବଦିନ ଯାତ୍ରା, ଶ୍ରୀଗୁଣ୍ଡିଚା ଯାତ୍ରା, ପତିତପାବନ ଯାତ୍ରା, ଘୋଷଯାତ୍ରା, ମହାବେଦୀ ଯାତ୍ରା ଓ ଦଶାବତାର ଯାତ୍ରା ମଧ୍ୟ କହନ୍ତି । ବଡ଼ଦେଉଳରୁ ବଳଭଦ୍ର ତାଳଧ୍ୱଜ ରଥରେ, ଭଗିନୀ ସୁଭଦ୍ରା ଦେବୀଦଳନ ରଥରେ ଓ ଶ୍ରୀଜଗନ୍ନାଥ ନନ୍ଦିଘୋଷ ରଥରେ ଧାଡ଼ି ପହଣ୍ଡି ହୋଇ ରଥାରୂଢ଼ ହେବାପରେ ବଡ଼ଦାଣ୍ଡର ଶରଧାବାଲିରେ ଭକ୍ତଙ୍କ ଦ୍ୱାରା ଟଣା ହୋଇ ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯା'ନ୍ତି । ଶ୍ରୀଗୁଣ୍ଡିଚା ମନ୍ଦିର ବଡ଼ଦେଉଳର ଉତ୍ତରକୁ ଦେଢ଼ କିଲୋମିଟର ଦୂରରେ ଅବସ୍ଥିତ ।

ଶ୍ରୀଗୁଣ୍ଡିଚା ମନ୍ଦିର ମହାବେଦୀ ଭାବରେ ମଧ୍ୟ ପରିଚିତ । ଏହିଠାରେ ରାଜା ଇନ୍ଦ୍ରଦ୍ୟୁମ୍ନ ପାଞ୍ଚଶତ ବର୍ଷ ବିଷ୍ଣୁଙ୍କ ପ୍ରୀତ୍ୟାର୍ଥେ ଯଜ୍ଞ କରିଥିଲେ । ଯଜ୍ଞବେଦୀରେ ବିଷ୍ଣୁଙ୍କ ପ୍ରତିରୂପ ଭାବରେ ନୃସିଂହଙ୍କ ମୂର୍ତ୍ତି ରଖିଥିଲେ । ଇନ୍ଦ୍ରଦ୍ୟୁମ୍ନ ବେଦୀ ନିର୍ମାଣ କରି ଏଠାରେ ଅଶ୍ୱମେଧ ଯଜ୍ଞ କରିଥିଲେ । ତେଣୁ ଏହାକୁ ଯଜ୍ଞ ମଣ୍ଡପ ମଧ୍ୟ କହନ୍ତି । ଏହି ସ୍ଥାନରେ ରାଜର୍ଷି ଜନକ ଯଜ୍ଞ କରିଥିଲେ । ଯଜ୍ଞ ପରେ ଭୂମିରେ ହଳ କରିଥିବାରୁ ମାଟି ମଧ୍ୟରୁ ସୀତାଙ୍କ ଜନ୍ମ ହୋଇଥିଲା । ଜନକପୁତ୍ରୀ ଜାନକୀ ନାମରେ ସେ ପରିଚିତା ହୋଇଥିଲେ । ସେହି କାରଣରୁ ଏହିକ୍ଷେତ୍ର ଜନକପୁରୀ ନାମରେ ମଧ୍ୟ ପରିଚିତ । ରାବଣ ସ୍ପର୍ଶ କରିବାରୁ ବେଦମତୀ ତାକୁ ଅଭିଶାପ ଦେଇ ଅଗ୍ନିରେ ଝାସ ଦେଇଥିଲେ । ଏହିଠାରେ ଭୂମି ତଳୁ ସେ ରାଜର୍ଷି ଜନକଙ୍କ ଲଙ୍ଗଳ ମୁନରେ ବାହାରି ଜାନକୀ ନାମ ନେଲେ ।

'ମିଥିଳାଧିପତି ବୀରୋଜନକ ନାମ ଧର୍ମବିତ୍
କ୍ଷତ୍ରଧର୍ମେ ହ୍ୟ ଭିରତୋ ନ୍ୟାୟତଃ ଶାସ୍ତି ମେଦିନୀମ୍
ତସ୍ୟ ଲଙ୍ଗଳ ହସ୍ତସ୍ୟ କୃଷତଃ କ୍ଷେତ୍ର ମଣ୍ଡଳମ୍
ଅହଂ କିଲୋତ୍ଥିତା ଭିତ୍ୱା ଜଗତୀଂ ନୃପତେଃ ସୁତା ।'
(ବାଲ୍ମିକୀ ରାମାୟଣ ଅଯୋଧ୍ୟାକାଣ୍ଡ- ୧୧୮ଶ ସର୍ଗ)

ମହାରାଣୀ ଗୁଣ୍ଡିଚାଙ୍କ ଇଚ୍ଛାନୁସାରେ ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ରଥଯାତ୍ରାର ଆୟୋଜନ କରିଥିବାରୁ ଏହାକୁ ଶ୍ରୀଗୁଣ୍ଡିଚା ଯାତ୍ରା କହନ୍ତି । ଏହି ସ୍ଥାନରେ ନିର୍ମିତ ମନ୍ଦିର ଗୁଣ୍ଡିଚା ମନ୍ଦିର ନାମରେ ପ୍ରସିଦ୍ଧ ଲାଭ କରିଛି ।

ଚନ୍ଦ୍ରଭୂତିଙ୍କ ପରେ ଶୁଦ୍ରମୁନି ଶାରଳା ଦାସ ତାଙ୍କ ମହାଭାରତରେ ଶ୍ରୀଜଗନ୍ନାଥଙ୍କୁ 'ବୁଦ୍ଧ' ରୂପରେ ବର୍ଣ୍ଣନା କରିଛନ୍ତି । ତଟନିରଂଜନାରେ ସିଦ୍ଧିଲାଭ କରି ବୁଦ୍ଧଦେବ ଦୀର୍ଘ ତିନିଦିନ ଧରି ନିରଂଜନା ନଦୀରେ ଉତ୍ତପ୍ତ ଦେହକୁ ଶୀତଳ କରିବାକୁ ସ୍ନାନ କରିଥିଲେ । ତା'ପରେ ରଥାରୂଢ଼ ହୋଇ ସେ ଯାତ୍ରା କରିଥିଲେ । ସେହି ଯାତ୍ରା କାଳକ୍ରମେ ଜଗନ୍ନାଥ ମନ୍ଦିରରେ ପ୍ରଚଳିତ ହୋଇ ରଥଯାତ୍ରା ଅନୁଷ୍ଠିତ ହେବା କଥା ଅନେକ ଗବେଷକ ମତ ଦିଅନ୍ତି ।

ବୁଦ୍ଧଙ୍କ ନଦୀସ୍ନାନ ଶ୍ରୀଜଗନ୍ନାଥଙ୍କ ଦେବସ୍ନାନ ନୀତିରେ ପରିଣତ ହୋଇଥିବା କେତେକ ଗବେଷକଙ୍କ ମତ । ପୁଣି ଜୈନମାନଙ୍କର ଆରାଧ୍ୟ ଦେବ ମହାବୀର ଜୀନଙ୍କ ରଥଯାତ୍ରା ପ୍ରଭାବରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଶୁଭାରମ୍ଭ ହୋଇଥିବା ବିଶ୍ୱାସ କରାଯାଏ ।

ସ୍ୱୟଂ ଭଗବାନ ଇନ୍ଦ୍ରଦ୍ୟୁମ୍ନ ସରୋବର କୂଳରେ ଏକ ସପ୍ତାହ ନିବାସ କରିବା କଥା ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଥିଲେ -

'ଦିନାନି ନବଯାସ୍ୟାମି ତଥା ତସ୍ମାଦିହାଗତଃ
ତତ୍ରାସ୍ତିତେ ମହାରାଜ ସର୍ବ ତୀର୍ଥମୟଂ ଭର ।
ତତ୍ତୀରେ ସପ୍ତଦିବସାନ୍ ସ୍ଥାସ୍ୟାମାନୁ ଜିବୃକ୍ଷୟା
ତତ୍ରସିତଂ ମାଂ ପଶ୍ୟନ୍ତୋ ଯାନ୍ତି ମର୍ତ୍ତ୍ୟା ମମାଳୟମ୍ ।'
ସ୍କନ୍ଦପୁରାଣ - ଭ:ଖ: ୨୯ ଅ:

ଭଗବାନ ଏହି ସ୍ଥାନକୁ ନିଜର ଜନ୍ମସ୍ଥାନ ଓ ସର୍ବତୀର୍ଥରେ ସାର ବୋଲି କହିଥିବାରୁ ଆଧାତ୍ମିକ ପରିମଣ୍ଡଳରେ ଏହାର ପ୍ରସିଦ୍ଧି ଖୁବ୍ ବେଶୀ ।

ପୁଣି ଉଦାସୀନ ଜଗନ୍ନାଥଙ୍କୁ ବାମନ ରୂପରେ ଦେଖିଲେ ପୁନର୍ଜନ୍ମ ହୁଏ ନାହିଁ ବୋଲି ଧାର୍ମିକ ବିଶ୍ୱାସ ରହିଛି ।

'ରଥେତୁ ବାମନଂ ଦୃଷ୍ଟ୍ୱା
ପୁନର୍ଜନ୍ମ ନ ବିଦ୍ୟତେ ।'

ବୌଦ୍ଧ ଧର୍ମାବଲମ୍ବୀ ଶବରମାନେ ବୌଦ୍ଧ ତ୍ରିରତ୍ନ ଅନୁକରଣରେ କାଠରେ ତ୍ରିମୂର୍ତ୍ତି ନିର୍ମାଣ କରି ବୌଦ୍ଧ ରଥଯାତ୍ରା ପରି ଜଗନ୍ନାଥଙ୍କ ରଥଯାତ୍ରା ଆରମ୍ଭ କରିଥିଲେ ବୋଲି ଐତିହାସିକ ଡଃ ହରେକୃଷ୍ଣ ମହତାବ ମତବ୍ୟକ୍ତ କରିଛନ୍ତି । (ଓଡ଼ିଶା ଇତିହାସ, ୨ୟ ଖଣ୍ଡ, ପୃ.୫୮୧) ଚୀନ ପରିବ୍ରାଜକ ହୁଏନ୍‌ସାଂ ପଞ୍ଚମ ଖ୍ରୀ:ରେ ଭାରତର ବିଭିନ୍ନ ସ୍ଥାନରେ ବୌଦ୍ଧ ରଥଯାତ୍ରା ଅନୁଷ୍ଠିତ ହେଉଥିବାର ଉଲ୍ଲେଖ କରିଛନ୍ତି । ସେଥିରେ ରାଜା ରଥ ସମ୍ମୁଖରେ ଛେରାପହଁରା କରୁଥିବାର ବିବରଣୀ ମଧ୍ୟ ରହିଛି ।

ଐତିହାସିକ ରାଜେନ୍ଦ୍ରଲାଲ୍ ମିତ୍ର ତାଙ୍କ ରଚିତ 'Antiquities of Orissa' ପୁସ୍ତକରେ (Vol-11, ପୃ.-୧୩୬)ରେ ଉଲ୍ଲେଖ କରିଛନ୍ତି ଯେ, ଜଗନ୍ନାଥଙ୍କ ପର୍ବପର୍ବାଣି ଓ ରଥଯାତ୍ରା ବୌଦ୍ଧ ପର୍ବ ପରମ୍ପରାରୁ ଅନୁସୃତ । ରଥଯାତ୍ରା ବୁଦ୍ଧଙ୍କ ଜନ୍ମଦିନ ପାଳନର ସ୍ମୃତି ବୋଲି ସେ ମତ ଦେଇଛନ୍ତି ।

ସେହିପରି ଜୈନଧର୍ମର 'କେବଳୀ ଭାବ'ରୁ ଜଗନ୍ନାଥଙ୍କ ମହାପ୍ରସାଦ 'କୈବଲ୍ୟ'ର ସୃଷ୍ଟି । ଏହା ପୁରୁଷୋତ୍ତମଧାମ ଛଡ଼ା ଅନ୍ୟ କେଉଁଠାରେ ଦେଖିବାକୁ ମିଳେ ନାହିଁ । ଜୈନ ଧର୍ମର କୈବଲ୍ୟ ଓ ବୌଦ୍ଧଧର୍ମର ନିର୍ବାଣର ତତ୍ତ୍ୱ ଏହି ମହାପ୍ରସାଦରେ ରହିଛି ବୋଲି ଗବେଷକ ଡଃ ବାସୁଦେବ ସାହୁ କହିଛନ୍ତି । (ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ, ପୃ.୩୮)

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଲେଖିଛନ୍ତି -

'ମୁକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ<br>
ବୈଷ୍ଣବ ବିହୁନେ କେହୁ ଜାଣିବ ସଂସାରେ ।<br>
('କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ପ୍ରଥମ ଛାନ୍ଦ)

'ଲୋହିପାଦ' 'ଲୋହିଗୀତା'ରେ ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧ ରୂପେ ବର୍ଣ୍ଣନା କରି ଲେଖିଛନ୍ତି -

'ସଂସାର ଜନଙ୍କୁ ସେହୁ ତାରିବା ନିମନ୍ତେ<br>
ବଉଦ୍ଧ ରୂପରେ ବିଜେ ଅଛି ଶ୍ରୀଜଗନ୍ନାଥେ ।'<br>
(ଓଡ଼ିଶାରେ ବୌଦ୍ଧଧର୍ମ- ଡଃ ବଂଶୀଧର ମହାନ୍ତି, ପୃ.୪)

ପୁରୀର ରଥଯାତ୍ରା ସଂପର୍କରେ 'ନୀଳାଦ୍ରି ମହୋଦୟ'ରେ ବିଶେଷ ଭାବରେ ବର୍ଣ୍ଣିତ ହୋଇଛି ।

'ଆଷାଢ଼ସ୍ୟ ଚ ମାଉସ୍ୟ ସିତେ ପକ୍ଷେ ଗୁରୋର୍ଦିନେ<br>
ପୁଷ୍ୟର୍କ୍ଷେ ଚ ଦ୍ୱିତୀୟାୟାଂ ତତ୍ର କୁର୍ଯ୍ୟାଦ୍ରଥୋତ୍ସବମ୍ ।<br>
ରକ୍ଷା ଭାବେ ତିଥୌ କାର୍ଯ୍ୟଂ ସର୍ବ ଭାବେନ ଭୁପତେ<br>
ଗୁଣ୍ଡିଚାଖ୍ୟୋତ୍ସବଂ କୁର୍ଯ୍ୟାଦତି ପ୍ରୀତିକରଂ ମମ ।'

ଅକ୍ଷୟ ତୃତୀୟାରୁ ତ୍ରିରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ । ଜଗନ୍ନାଥ ରଥ-ନନ୍ଦିଘୋଷ ଉପରେ ଚକ୍ର ଓ ଗରୁଡ଼ ଅଧିଷ୍ଠିତ ହୁଅନ୍ତି ଓ ତେଇଶି ହାତ ଉଚ୍ଚ ହୁଏ । ପାଞ୍ଚ ହାତ ପରିଧି ବିଶିଷ୍ଟ ଅଠରଟି ଚକ ଥାଏ । ପୀତରଂଗର ବସ୍ତ୍ର ଲାଗିଥାଏ । ରକ୍ଷକ ନୃସିଂହ ସାରଥୀ ମାତଳି, ରେଚିକା ମୋଚିକା, ସୂକ୍ଷ୍ମା ଓ ଅମୃତା ନାମରେ ଚାରୋଟି ଶ୍ୱେତ ଅଶ୍ୱ ରହିଥାଏ । ବରାହ, କୃଷ୍ଣ, ଗୋପୀନାଥ, ନୃସିଂହ, ରାମ, ନାରାୟଣ, ତ୍ରିବିକ୍ରମ, ହନୁମାନ ଓ ରୁଦ୍ର ପାର୍ଶ୍ୱଦେବତା ରହିଥାନ୍ତି ।

ସେହିପରି ବଳଦେବଙ୍କ 'ତାଳଧ୍ୱଜ' ରଥ ବାଇଶି ହାତ ଉଚ୍ଚ, ସାଢ଼େ ଚାରିହାତ ପରିଧି ବିଶିଷ୍ଟ ଷୋହଳଟି ଚକ ଥାଏ, ନୀଳବସ୍ତ୍ର ଦ୍ୱାରା ରଥ ଆବୃତ ହୋଇଥାଏ । ଏଥିରେ ଶେଷ ରକ୍ଷକ, ପ୍ରଦ୍ୟୁମ୍ନ ସାରଥୀ ଏବଂ ସ୍ଥିରାଧୃତ, ସ୍ଥିତି ଓ ସିଦ୍ଧା ନାମରେ କଳାରଂଗର ଚାରିଗୋଟି ଘୋଡ଼ା ଲାଗିଥାଏ । ଗଣେଶ, କାର୍ତ୍ତିକେୟ, ସର୍ବମଙ୍ଗଳା, ହଳାୟୁଧ ମୃତ୍ୟୁଞ୍ଜୟ, ନାଟାମ୍ବର ମହେଶ୍ୱର ଓ ଶେଷଦେବ ପାର୍ଶ୍ୱଦେବତା ରହିଛନ୍ତି ।

ସୁଭଦ୍ରାଙ୍କ ଦର୍ପଦଳନ ବା ଦେବଦଳନ ରଥ ଚାରିହାତ ପରିଧିର ଚଉଦଟି ଚକ ଓ ଉଚ୍ଚତା ଏକୋଇଶହାତ ବିଶିଷ୍ଟ । କଳା ବଗଡ଼ାରେ ରଥ ଆଚ୍ଛାଦିତ । ରକ୍ଷକ ବନଦୁର୍ଗା, ସାରଥି ଅର୍ଜୁନ । ଅଧର୍ମ, ଅଜ୍ଞାନ, ଅପରାଜିତା, ଜ୍ୟୋତିନୀ ନାମରେ ଚାରି ଘୋଡ଼ା ଥା'ନ୍ତି । ପାର୍ଶ୍ୱଦେବଦେବୀ ଭାବରେ ଚଣ୍ଡୀ, ଚାମୁଣ୍ଡା, ଉଗ୍ରତାରା, ବନଦୁର୍ଗା, ମହିଷମର୍ଦ୍ଦିନୀ, ବରାହୀ, ଶ୍ୟାମାକାଳୀ, ମଂଗଳା, ବିମଳା, ଶ୍ରୀଦେବୀ, ଭୂଦେବୀ, ଥେଷ୍ଟ ଭୈରବୀ ରହିଥା'ନ୍ତି । ସୁଭଦ୍ରାଙ୍କ ରଥ ସହିତ ସୁଦର୍ଶନ ମଧ୍ୟ ଯାତ୍ରା କରିଥା'ନ୍ତି ।

ନନ୍ଦିଘୋଷ ଅଷ୍ଟାଦଶ ସିଦ୍ଧି, ବଳଦେବ ରଥ, ଷୋହଳ କଳା ଓ ସୁଭଦ୍ରାଙ୍କ ରଥ ଚତୁର୍ଦ୍ଦଶ ଭୁବନର ପ୍ରତୀକ । ସୁଦର୍ଶନ ନାରାୟଣଙ୍କ ସୁଦର୍ଶନ ଚକ୍ର ଖାଲି ନୁହେଁ । ସୁଭଦ୍ରା ଦେବୀଙ୍କ ସହ ଶକ୍ତିର ପ୍ରତୀକ ଭାବରେ ଶୋଭାପାଇଅଛି ।

ତାତ୍ତ୍ୱିକ ଦୃଷ୍ଟିରୁ ରଥଯାତ୍ରା ନିର୍ଗୁଣ-ସଗୁଣ, ଅରୂପ-ସରୂପ, ଜୀବ-ବ୍ରହ୍ମଙ୍କର ମିଳନର ପ୍ରତୀକ ।

ରଥଯାତ୍ରାର ପୃଷ୍ଠଭୂମିରେ ବିଭିନ୍ନ ଧର୍ମଧାରାର ସମନ୍ୱୟବାଦ ଅଦ୍ୱୈତ ଓ ଦ୍ୱୈତାଦ୍ୱୈତ ବାଦର ପରିପ୍ରକାଶ ହେଲେ ମଧ୍ୟ ଏହାର ଲୌକିକ, ସାର୍ବଜନୀନ, ମାନବୀୟ ଆବେଦନଟି ଗୁରୁତ୍ୱପୂର୍ଣ୍ଣ ।

ଅପୂର୍ଣ୍ଣତା ଭିତରେ ପୂର୍ଣ୍ଣତାକୁ ଅନୁଭବ କରିବା ଏହାର ପରମ ଲକ୍ଷ୍ୟ ।

ଓଁ ପୂର୍ଣ୍ଣମିଦଂ ପୂର୍ଣ୍ଣମେବଃ<br>
ପୂର୍ଣ୍ଣାତ୍‌ପୂର୍ଣ୍ଣ ମୁଦଚ୍ୟତେ<br>
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ<br>
ପୂର୍ଣ୍ଣମେବା ବସିସ୍ୟତେ ।'<br>
(କଠୋପନିଷଦ)

ବଳଦେବଙ୍କ ବର୍ଣ୍ଣ ଶ୍ୱେତ, ଜଗନ୍ନାଥଙ୍କ କୃଷ୍ଣ ଓ ସୁଭଦ୍ରାଙ୍କ ପୀତ ରଂଗ ପୃଥିବୀର ସମସ୍ତ ମଣିଷଙ୍କ ମୁଖ୍ୟ ତିନିରଂଗର ସମନ୍ୱୟ ଓ ସଂହତିର ପ୍ରତୀକ । ପୁଣି, ତିନି ଦେବତା ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ପ୍ରତୀକ । ଭିନ୍ନ ମତରେ ଏହା ଆର୍ଯ୍ୟ, ଦ୍ରାବିଡ଼ ଓ ଅନାର୍ଯ୍ୟ ବା ଆଦିମ ଅଧିବାସୀମାନଙ୍କର ସମନ୍ୱୟ ।

ବଡ଼ଭାଇ ସାନଭଉଣୀକୁ ସାଙ୍ଗରେ ନେଇ ଶ୍ରୀଗୁଣ୍ଡିଚା ଯାତ୍ରା କରିବା ମଧ୍ୟରେ ବିଶ୍ୱ ଭ୍ରାତୃତ୍ୱ ଓ ମୈତ୍ରୀର ବାର୍ତ୍ତା ଦେବା ଘୋଷଯାତ୍ରାର





ମହାନ ଲକ୍ଷ୍ୟ । ମାତ୍ର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟଟି ହେଲା ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ମାନବ ଓ ମାଧବଙ୍କର ମହାମିଳନ ଦ୍ୱାରା ଶାନ୍ତି, ମୈତ୍ରୀ, ସଂହତି ଓ ମୁକ୍ତିର ପଥ ଦେଖାଇବା ହିଁ ରଥଯାତ୍ରାର ପରମ ଲକ୍ଷ୍ୟ ଓ ଚରମ ପ୍ରାପ୍ତି ।

**ସହାୟକ ଗ୍ରନ୍ଥ**


୧. ଶ୍ରୀଜଗନ୍ନାଥ ମନ୍ଦିର ଓ ଶ୍ରୀଜଗନ୍ନାଥ ତତ୍ତ୍ୱ - ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ, ୪ର୍ଥ ସଂ., ୧୯୮୫

୨. ଶ୍ରୀଜଗନ୍ନାଥ ସଂସ୍କୃତି- ସଂ- ଓଡ଼ିଶା କଲ୍‌ଚରାଲ୍ ଫୋରମ୍, ଭୁବନେଶ୍ୱର - ୧୯୭୮

୩. ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ - ଡଃ ବାସୁଦେବ ସାହୁ - ୧୯୮୧

୪. ଦାରୁଦେବତା - ଡଃ ବେଣୀମାଧବ ପାଢ଼ୀ

୫. ଜଗନ୍ନାଥ ଚରିତାମୃତ - ଦିବାକର ଦାସ

୬. ସ୍କନ୍ଦ ପୁରାଣ (ଉତ୍କଳ ଖଣ୍ଡ) - ଧର୍ମଗ୍ରନ୍ଥ ଷ୍ଟୋର

୭. ଓଡ଼ିଶା ଇତିହାସ (୨ୟ ଖଣ୍ଡ) - ଡଃ ହରେକୃଷ୍ଣ ମହତାବ

୮. ଗୀତଗୋବିନ୍ଦ - ଜୟଦେବ

୯. ଓଡ଼ିଶାରେ ବୌଦ୍ଧ ଧର୍ମ - ଡଃ ବଂଶୀଧର ମହାନ୍ତି

୧୦. Modern Buddhism in Orissa - N.N. Basu

୧୧. The Antiquities of Orissa - vol-II, R.L. Mitra



ସହ କେନ୍ଦ୍ର ନିର୍ଦ୍ଦେଶକ
ଆକାଶବାଣୀ, ସମ୍ବଲପୁର


# ଭଜ ଚକାଡୋଳାକୁ

ଚନ୍ଦ୍ରଶେଖର ପଣ୍ଡା

ଭଜରେ ମନ ଭଜ ଥରେ ଚକାଡୋଳାକୁ
ଭଜିଲେ ସେ ନାମ ଧୋଇଯିବ ତୋର
ହୃଦେ ଲାଗିଛି ଯା' କଳି କଳାକୁ
ପାପମାଳାକୁ ।

ହରି ହରି ହରି କଳାବୋଲି ହୁରି
ଅରି ମଣିବାରୁ ତାର ବଳାକୁ
ଖମ୍ବ ଭାଂଗି ହିରଣାକ୍ଷ ଦମ୍ଭଚୁରି
ଅରପି ଦେଲା ସେ ଦୈତ୍ୟ ବଳାକୁ
ଧ୍ରୁବ ଖଳାକୁ ।

ଭଜିବାରୁ ସୁଗ୍ରୀ ଛଳେ ବଧି ବାଳି
ଅରପିଲା ରାଜ୍ୟ ସଂଗେ ତାରାକୁ
ବଇଶ୍ରବଣ ବିନାଶି ବିଭୀଷଣେ
ରାଜା କଲା ଧ୍ୱଂସି ମହୀ ଜ୍ୱାଳାକୁ
ପାପଦଳାକୁ ।

ଦିନକର ପ୍ରିୟା ଅରି ଉଦ୍ଧରିଲା
ଗ୍ରାହନାଶି ପେଶି ବିଷ୍ଣୁ କଳାକୁ
ଏଣୀ ଉଦ୍ଧରିଲା କୋଟି ବସ୍ତ୍ର ଦେଲା
ଡାକିଲା ବୋଲି ଦ୍ରୁପଦ ବାଳାକୁ
ଲଜ୍ଜା ଦଳାକୁ ।

ଷଣ୍ଢା, ବକା, ଅଘା, ପୁତନା ନାଶିଲା
ପାନ କରି କ୍ଷୀରେ ହଳହଳାକୁ
ମନ୍ଦର ଟେକିଲା ଗରବ ଗଂଜିଲା
ଶଚିପତି ଗଣ୍ଡେ ଦେଇ କଳାକୁ
ନନ୍ଦ ବଳାକୁ ।

ପର ଆପଣାର ନାହିଁ ଭେଦ ତା'ର
ହରିନେଲା ସଖା ହରିକଳାକୁ
ମାତୁଳ ମାଇଲା କୁବୁଜା ତାରିଲା
ପୋଛି ଦେଲା ଭବୁ ଅନ୍ଧ ବଳାକୁ
ଦର୍ପଦଳାକୁ ।

ବ୍ରହ୍ମା ପୁରନ୍ଦର ଜଳାଧିପହର
ଜପୁଛନ୍ତି କରି ଗଳାମାଳାକୁ
ଶୁକ ସନାତନ ଭଜି ଦିନୁଦିନ
ପାଇ ନାହାନ୍ତି ଯା' ଅଂଶ କଳାକୁ
ଗୁଂଜା ମାଳାକୁ ।

ଏକ ଏକ କଳା ଧରି ନନ୍ଦବଳା
ରଚିଛନ୍ତି ସିନା ଲୀଳା ଖେଳାକୁ
ଷୋଳ କଳାପରା ଏକାଠି ହୋଇଛି
ଚିନ୍ତ ଥରେ ଏ ଚିକ୍କଣ କଳାକୁ
ଚକାଡ଼ୋଳାକୁ ।


ଟୁ.ଆର୍.ବି.-୪୨
ରୋଡ୍ ନଂ-୬, ୟୁନିଟ୍-୯
ଭୁବନେଶ୍ୱର



# ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଶ୍ରୀଜଗନ୍ନାଥ ବିଗ୍ରହ ଓ ମନ୍ଦିର ପ୍ରତିଷ୍ଠା

ଡକ୍ଟର ଉଦ୍ଧବ ଚରଣ ନାୟକ

**ସ**ତ୍ୟଯୁଗର କଥା । ମାଳବ ପ୍ରଦେଶର ଅବନ୍ତିକା ପୁରୀରେ ଇନ୍ଦ୍ରଦ୍ୟୁମ୍ନ ନାମରେ ଜଣେ ପ୍ରସିଦ୍ଧ ରାଜା ରାଜପଣ କରୁଥିଲେ । ସେ ଥିଲେ ସୂର୍ଯ୍ୟବଂଶୀ କ୍ଷତ୍ରୀୟ । ବ୍ରହ୍ମାଙ୍କର ପଞ୍ଚମ ପୁରୁଷ । ରାଜା ଇନ୍ଦ୍ରଦ୍ୟୁମ୍ନ ଥିଲେ ସତ୍ୟବାଦୀ, ସଦାଚାରୀ, ଶୁଦ୍ଧାତ୍ମା ତଥା ସାତ୍ତ୍ୱିକ ପୁରୁଷ । ପୁତ୍ରକନ୍ୟା ପରି ପ୍ରଜାମାନଙ୍କୁ ସେ ପାଳନ କରୁଥିଲେ । ଜଣେ ମହାନ୍ ଆଧାତ୍ମ୍ୟବାଦୀ, ଶୂର, ବୀର, ଶୁଦ୍ଧଚେତା, ଉଦ୍ୟମଶୀଳ, ଗୋ-ବ୍ରାହ୍ମଣ ପାଳକ, ବିଦ୍ୱାନ, ରୂପବାନ, ସୌଭାଗ୍ୟଶାଳୀ, ଶୀଳବାନ୍, ଦାନୀ, ପ୍ରିୟବାଦୀ, ଯଜ୍ଞାନୁଷ୍ଠାନକାରୀ ଓ ସତ୍ୟପ୍ରତିଜ୍ଞ ବ୍ୟକ୍ତି ଭାବରେ ରାଜା ଇନ୍ଦ୍ରଦ୍ୟୁମ୍ନ ଥିଲେ ସୁପ୍ରସିଦ୍ଧ । ଭଗବାନ୍ ଶ୍ରୀମନ୍ନାରାୟଣଙ୍କ ଚରଣାରବିନ୍ଦରେ ତାଙ୍କର ଅନନ୍ୟ ଭକ୍ତି । ଚର୍ମଚକ୍ଷୁରେ ଭଗବାନ ଶ୍ରୀହରିଙ୍କ ସାକ୍ଷାତ ଦର୍ଶନ ପାଇଁ ସେ ସର୍ବଦା ଉତ୍କଣ୍ଠିତ ।

ଦିନକର କଥା । ସେଦିନ ଦେବର୍ଷି ନାରଦ ଆସି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଉଆସରେ ପହଞ୍ଚିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ଦେବର୍ଷିଙ୍କର ପୂଜା ଅର୍ଚ୍ଚନା କରି ତାଙ୍କୁ ସିଂହାସନରେ ବସାଇ ବିନୟ ସହକାରେ କହିଲେ, 'ହେ ଭଗବାନ ! ଆପଣଙ୍କ ଆଗମନରେ ମୋର ଗୃହ ଓ କୁଳ ଆଜି ପବିତ୍ର ହୋଇ ଉଠିଛି । ଆପଣଙ୍କ ଦର୍ଶନ ଲାଭ କରି ଏହି ସେବକ ଧନ୍ୟ ହୋଇଛି । ଯୋଗ୍ୟ ସେବା ନିମନ୍ତେ ଆଦେଶ ପ୍ରଦାନ କରି ମୋତେ ଅନୁଗୃହୀତ କରନ୍ତୁ ।' ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ଏପରି ବିନୟପୂର୍ଣ୍ଣ କଥା ଶୁଣି ଦେବର୍ଷି ହସି ହସି କହିଲେ, 'ହେ ନୃପଶ୍ରେଷ୍ଠ ! ମୁଁ ଶୁଣିଲି, ତୁମେ ଭଗବାନ ଶ୍ରୀହରିଙ୍କ ସାକ୍ଷାତ ଦର୍ଶନଲାଭ ନିମନ୍ତେ ନୀଳାଚଳ ଗମନ କରିବା ପାଇଁ ମନସ୍ଥ କରିଛ । ଏହା ଯଦି ସତ୍ୟ, ତେବେ ତୁମେ ଉଚିତ ଚିନ୍ତା କରିଛ । ଏ ସଂସାର ହେଉଛି ଏକ ଭୟଙ୍କର ଅରଣ୍ୟ । ଏହି ସଂସାରର ଚାରିଆଡ଼େ ଦୁଃଖ ଓ ସଂକଟର କଣ୍ଟା ବିଛା ହୋଇରହିଛି । ଏ ସଂସାରର ମାୟାଜାଲରେ ବାନ୍ଧି ହୋଇ ପଡ଼ିଥିବା ମଣିଷ ପାଇଁ ବିଷ୍ଣୁଭକ୍ତି ହିଁ ଏକମାତ୍ର ସୁଖପୂର୍ଣ୍ଣ ଆଶ୍ରୟ । ମଣିଷ ଅର୍ଜନ କରୁଥିବା ଭୟାବହ ପାପ ବିଷ୍ଣୁଙ୍କ ଅଗ୍ନିରେ ପୋଡ଼ି ପାଉଁଶ ହୋଇଯାଏ । ପ୍ରୟାଗ-ଗଙ୍ଗା ଆଦି ତୀର୍ଥ, ତପସ୍ୟା, ଶ୍ରେଷ୍ଠ ଅଶ୍ୱମେଧ ଯଜ୍ଞ, ବୃହତ୍ତ ଧରଣର ଦାନ ଓ ଉପବାସ ଏସବୁ ସହସ୍ରବାର ଆୟୋଜନ କରି ଏଥିରୁ ଲବ୍ଧ କୋଟି କୋଟି ଗୁଣର ପୁଣ୍ୟକୁ ଏକାଠି ରଖି ବିଷ୍ଣୁ ଭକ୍ତି ସହ ସମତୁଳ କଲେ ତାହା କେବେ ହେଲେ ସମାନ ହୋଇପାରିବ ନାହିଁ ।'

ରାଜା ଇନ୍ଦ୍ରଦ୍ୟୁମ୍ନ ପଚାରିଲେ 'ହେ ମହାଭାଗ ! ଭକ୍ତିର ସ୍ୱରୂପ କ'ଣ ?'

ନାରଦ ମହର୍ଷି କହିଲେ, 'ହେ ମହାରାଜ ! ତୁମେ ଏକଥା ସାବଧାନ ହୋଇ ଶ୍ରବଣ କର । ଗୁଣ ଭେଦରେ ଭକ୍ତି ତିନିପ୍ରକାର ଯଥା- 'ସାତ୍ତ୍ୱିକୀ', 'ରାଜସୀ' ଓ 'ତାମସୀ' ଏହା ଉପରେ ଆଉ ଏକ ଚତୁର୍ଥ ଭକ୍ତି ମଧ୍ୟ ରହିଛି, ତାହାକୁ କୁହାଯାଏ 'ନିର୍ଗୁଣ' ଭକ୍ତି । ଯେଉଁ ଲୋକ କାମକ୍ରୋଧରେ ବଶୀଭୂତ ହୋଇ ଇହଲୋକ ଓ ପରଲୋକ ପ୍ରତି ଦୃଷ୍ଟି ନଦେଇ ନିଜର ଲାଭ ଓ ଅନ୍ୟର କ୍ଷତି ନିମନ୍ତେ ପ୍ରାର୍ଥନା କରେ ତାହା 'ତାମସୀ' ଭକ୍ତି ଭାବରେ ବିବେଚିତ । ଇହଲୋକରେ ଅଧିକ ଯଶ ଉପାର୍ଜନ ନିମନ୍ତେ ଅନ୍ୟର ଗାରିମାକୁ ସହ୍ୟ କରି ନପାରି ତା' ସହିତ ଶତ୍ରୁତା ଆଚରଣ କରିବା ଏପରିକି ପରଲୋକରେ ଯଶପ୍ରାପ୍ତି ନିମନ୍ତେ ପ୍ରାର୍ଥନା କରିବା ହେଉଛି 'ରାଜସୀ' ଭକ୍ତି । ପରଲୋକର ଲାଭକୁ ସ୍ଥାୟୀ ଜ୍ଞାନ କରି ଇହଲୋକର ସମସ୍ତ ପଦାର୍ଥକୁ ନଶ୍ୱର ଭାବି ନିଜର ବର୍ଣ୍ଣ ଓ ଆଶ୍ରମ ଧର୍ମକୁ ପରିତ୍ୟାଗ ନକରି ଆତ୍ମଜ୍ଞାନ ଲାଭ ପାଇଁ ଯେଉଁ ଭକ୍ତି କରାଯାଏ, ତାହା 'ସାତ୍ତ୍ୱିକୀ' ଭକ୍ତି ଭାବରେ ବିବେଚିତ । ଏହି ଜଗତ ଜଗନ୍ନାଥ ସ୍ୱରୂପ । ତାଙ୍କ ଭିନ୍ନ ଅନ୍ୟ ଗତି ନାହିଁ । 'ମୁଁ ଭଗବାନଙ୍କଠାରୁ ଭିନ୍ନ ନୁହେଁ ଓ ସେ ମୋ'ଠାରୁ ଭିନ୍ନ ନୁହନ୍ତି' ଏହାକୁ ଜ୍ଞାନକରି ଭେଦ ସୃଷ୍ଟି କରୁଥିବା ବାହ୍ୟ ଉପଚାରଗୁଡ଼ିକୁ ତ୍ୟାଗ କରି ଅଧିକ ପ୍ରେମରେ ଭଗବାନଙ୍କଠାରେ ନିମଜ୍ଜିତ ହେବା 'ଅଦ୍ୱୈତ' ବା 'ନିର୍ଗୁଣ' ଭକ୍ତି ଭାବରେ ବିବେଚିତ । ଯାହାକି ହେଉଛି ମୁକ୍ତିର ସାକ୍ଷାତ ସାଧନ । ଏହା ଅତ୍ୟନ୍ତ ଦୁର୍ଲ୍ଲଭ ।

ଏହାପରେ ମହର୍ଷି ନାରଦ କହିଲେ, 'ମୁଁ ଏବେ ବିଷ୍ଣୁଭକ୍ତମାନଙ୍କର ଲକ୍ଷଣ କହୁଛି । ତୁମେ ମନ ଦେଇ ଶୁଣ । ଯାହାର ଚିତ୍ତ ଅତ୍ୟନ୍ତ ଶାନ୍ତ, ଯିଏ ସମସ୍ତଙ୍କ ପ୍ରତି କୋମଳ ଭାବ ପ୍ରଦର୍ଶନ କରେ, ଯିଏ ନିଜ ଇଚ୍ଛାରେ ଇନ୍ଦ୍ରିୟମାନଙ୍କୁ ଜୟ କରିଥାଏ, ଯିଏ ମନ, ପ୍ରାଣ, ବାଣୀ ଓ କ୍ରିୟା ଦ୍ୱାରା ଅନ୍ୟକୁ ଦ୍ରୋହ କରିବା ପାଇଁ ଇଚ୍ଛା କରେ ନାହିଁ, ଯାହାର ଚିତ୍ତ ସର୍ବଦା ଦୟାରେ ବଶୀଭୂତ, ଯିଏ ଚୋରୀ ଓ ହିଂସାକୁ ଘୃଣା କରେ, ସଦ୍‌ଗୁଣ ସଂଗ୍ରହ କରେ, ଅନ୍ୟର କାର୍ଯ୍ୟ ସଂପାଦନରେ ଯୋଡ଼ି ହୋଇ ରହେ, ସଦାଚାରରେ ଯିଏ ନିଜକୁ ସର୍ବଦା ଉଜ୍ଜ୍ୱଳ କରି ରଖିଥାଏ, ଅନ୍ୟର ଉତ୍ସବକୁ ନିଜର ଉତ୍ସବ ବୋଲି ଗ୍ରହଣ କରେ, ସମସ୍ତ ପ୍ରାଣୀଙ୍କଠାରେ ଭଗବାନ ବାସୁଦେବ ବିରାଜମାନ





ହୋଇଥିବା ଦେଖି କେବେ କାହା ଉପରେ ଈର୍ଷାଦ୍ୱେଷ ରଖେ ନାହିଁ, ଦୀନ ଉପରେ ଦୟା କରିବା ଯାହାର ସ୍ୱଭାବ, ଯିଏ ପରହିତ ସାଧନରେ ସଦାବ୍ରତୀ, ନିତ୍ୟ କର୍ତ୍ତବ୍ୟ ବୁଦ୍ଧି ଦ୍ୱାରା ବିଷ୍ଣୁ ସ୍ୱରୂପ ତାଙ୍କର ଆଦି ଦେବତାମାନଙ୍କର ପୂଜା ଓ ଧ୍ୟାନ କରେ, ପରଲୋକରେ ଭଗବାନ ବିଷ୍ଣୁଙ୍କଠାରେ ଧ୍ୟାନ ରଖେ, ଭଗବାନ ବିଷ୍ଣୁଙ୍କ ବ୍ୟତୀତ ଅନ୍ୟ କୌଣସିଠାରେ ମନ ରଖେ ନାହିଁ, ଏକ ଏବଂ ବହୁଧା ସମସ୍ତେ ଭଗବାନଙ୍କ ସ୍ୱରୂପ, ଭଗବାନ ଜଗତରୁ ଭିନ୍ନ ହୋଇ ମଧ୍ୟ ଭିନ୍ନ ନୁହନ୍ତି, ଏହା ଭାବି ଯେ ଭଗବାନଙ୍କୁ ପ୍ରାର୍ଥନା କରି କହେ, 'ହେ ଭଗବାନ ଜଗନ୍ନାଥ ! ମୁଁ ଆପଣଙ୍କ ଦାସାନୁଦାସ, ମୁଁ ଆପଣଙ୍କ ସ୍ୱରୂପରେ ସଦାରହିଛି, ଆପଣଙ୍କଠାରୁ କଦାପି ଭିନ୍ନ ନୁହେଁ, ଯେଣୁ ଆପଣ ଭଗବାନ ବିଷ୍ଣୁ ଅନ୍ତର୍ଯ୍ୟାମୀ ସ୍ୱରୂପରେ ସମସ୍ତଙ୍କ ହୃଦୟରେ ବିରାଜମାନ କରିଛନ୍ତି, ତେଣୁ ସେବ୍ୟ ଓ ସେବକ କେହି ଭିନ୍ନ ନୁହନ୍ତି ।' ଏହିପରି ଭାବରେ ସଦା ସତର୍କ ରହି ଯେଉଁ ବ୍ୟକ୍ତି ବ୍ରହ୍ମାଙ୍କ ଦ୍ୱାରା ବନ୍ଦନୀୟ ଯୁଗଳ ଚରଣାର ବିନ୍ଦ ଶ୍ରୀହରିଙ୍କୁ ସର୍ବଦା ପ୍ରଣାମ କରେ, ତାଙ୍କ ନାମ କୀର୍ତ୍ତନ ଭଜନରେ ସଦା ନିମଗ୍ନ ରହେ, ସଂସାରର ଲୋକଙ୍କ ପାଖରେ ନିଜକୁ ତୃଣ ସମାନ ତୁଚ୍ଛ ଜ୍ଞାନ କରେ, ବିନୟ ଭାବରେ ନିଜକୁ ସମର୍ପଣ କରେ, ଜଗତର ପ୍ରତ୍ୟେକ ଲୋକର ଉପକାର କରି ନିଜର ଦକ୍ଷତା ପ୍ରତିପାଦନ କରେ, ଅନ୍ୟର ଦକ୍ଷତାକୁ ସମ୍ମାନ ପ୍ରଦର୍ଶନ କରେ, ଅନ୍ୟ କେହି ଅପମାନିତ ହେବାବେଳେ ତା'ପ୍ରତି ଦୟା ପ୍ରଦର୍ଶନ କରେ ଓ ପ୍ରତ୍ୟେକଙ୍କର ସର୍ବଦା କଲ୍ୟାଣ କାମନା କରେ, ସେ ହିଁ ବିଷ୍ଣୁ ଭକ୍ତ ଭାବରେ ପରିଚିତ । ଏହାବ୍ୟତୀତ ଯେଉଁ ବ୍ୟକ୍ତି ପଥର ଗୋଡ଼ି, ମାଟି, ପରଧନ, ପରସ୍ତ୍ରୀ, ଶତ୍ରୁ, ମିତ୍ର, ଭାଇ ତଥା ବନ୍ଧୁବର୍ଗଙ୍କୁ ସମାନ ତଥା ପବିତ୍ର ଚକ୍ଷୁରେ ଦେଖେ, ସେହି ବ୍ୟକ୍ତି ହିଁ ନିଶ୍ଚିତ ଭାବରେ ବିଷ୍ଣୁ ଭକ୍ତ ଭାବରେ ପ୍ରସିଦ୍ଧ । ଆହୁରି ମଧ୍ୟ ଯେଉଁ ବ୍ୟକ୍ତି ଅନ୍ୟର ଉତ୍ତମ ଗୁଣରେ ପ୍ରସନ୍ନ ଓ ଆନନ୍ଦିତ, ପରଦୋଷକୁ ଘୋଡ଼ାଇବା ପାଇଁ ସଦା ଚେଷ୍ଟିତ ବା ଯତ୍ନବାନ ହୋଇ ସମସ୍ତଙ୍କୁ ସୁଖପ୍ରଦାନ କରେ, ଭଗବାନଙ୍କ ପାଖରେ ସଦା ମନ ଧ୍ୟାନ ଦେଇ ରହିଥାଏ, ପ୍ରିୟ ବଚନ କହୁଥାଏ, ସେ ହିଁ ବୈଷ୍ଣବ ନାମରେ ପ୍ରସିଦ୍ଧ ।

ମହର୍ଷି ନାରଦଙ୍କଠାରୁ ଏପରି ଉପଦେଶମାନ ଶ୍ରବଣ କରି ରାଜା ଇନ୍ଦ୍ରଦ୍ୟୁମ୍ନ ବହୁତ ଆନନ୍ଦିତ ହେଲେ । ବିନୟ ଭାବରେ କହିଲେ, 'ହେ ଭଗବାନ ! ଆପଣଙ୍କର ସଙ୍ଗ ଏବଂ ସତ୍ ଉପଦେଶ ଦ୍ୱାରା ମୋର ଅଜ୍ଞାନମୟ ଅନ୍ଧକାର ଦୂର ହୋଇଗଲା । ଏବେ ମୋର ମନ ଭଗବାନ ଶ୍ରୀନୀଳମାଧବଙ୍କ ଦର୍ଶନ ନିମନ୍ତେ ଉତ୍ସୁକ ଓ ବ୍ୟାକୁଳ ହୋଇ ଉଠିଲାଣି । ଏଣୁ ଆପଣଙ୍କ ସହ ରଥରେ ବସି ନୀଳାଚଳ ଯାଇ ସେଠାରେ ଭଗବାନଙ୍କର ଦର୍ଶନ ପାଇଁ ମୋର ମନପ୍ରାଣ ବ୍ୟାକୁଳିତ ।'

ମହର୍ଷି ନାରଦ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ କଥାରେ ଏକମତ ହେଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ଯାତ୍ରାର ଆବଶ୍ୟକୀୟ ପ୍ରସ୍ତୁତି ଆରମ୍ଭ କଲେ । ନଅରରେ ଥିବା ଭଗବାନ ବିଷ୍ଣୁଙ୍କୁ ଦର୍ଶନ କରି ନାରଦ ମହର୍ଷି ଓ ମହାରାଜା ରଥରେ ବସିଲେ । ପଥରେ ମହାନଦୀ, ଭୁବନେଶ୍ୱର ଆଦି ବହୁ ପୁଣ୍ୟପୀଠ ଓ ଦେବ ଦର୍ଶନ କରି ସେମାନେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଆସି ପହଞ୍ଚିଲେ । ଏଠାରେ ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦ ମହର୍ଷିଙ୍କ ସହ ଭଗବାନ ନୃସିଂହଙ୍କ ସମେତ କଳ୍ପବଟ ତଥା ନୀଳମାଧବଙ୍କ ସ୍ଥାନ ପରିଦର୍ଶନ କଲେ । ମହର୍ଷି ନାରଦ ଏଠାରେ ଭଗବାନ ନୃସିଂହଙ୍କ ମୂର୍ତ୍ତି ସ୍ଥାପନା କରିବା ସମୟରେ ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରାର୍ଥନା କରି କହିଲେ, 'ହେ ଭଗବାନ ! ମୋତେ ଆପଣଙ୍କ ଚରଣାରବିନ୍ଦରେ ଶ୍ରେଷ୍ଠ ଭକ୍ତି ପ୍ରଦାନ କରନ୍ତୁ । ମୋ' ପରି ଅନାଥ ପ୍ରତି କୃପା କରନ୍ତୁ । ମୁଁ ଯେପରି ଚର୍ମଚକ୍ଷୁରେ ଆପଣଙ୍କ ଦର୍ଶନ ଲାଭ କରିବି, ସେଥିପାଇଁ ମୋତେ ଆଶୀର୍ବାଦ କରନ୍ତୁ ।'

ଏହାପରେ ରାଜା ଇନ୍ଦ୍ରଦ୍ୟୁମ୍ନ ସେଠାରେ ଏକ ହଜାର ଅଶ୍ୱମେଧ ଯଜ୍ଞର ଆୟୋଜନ କଲେ । ଏହି ଯଜ୍ଞ ନଅଶହ ଅନେଶତରେ ଆସି ପହଞ୍ଚିବାବେଳେ ସେଥିରୁ ସୋମରସ ଉଦ୍‌ଗୀରଣ ହେଲା । ସୋମରସ ଉଦ୍‌ଗୀରଣର ସାତଦିନ ପରେ ଆସିଲା ଯେଉଁ ରାତ୍ରି ସେହି ରାତ୍ରିର ଚତୁର୍ଥ ପ୍ରହରରେ ରାଜା ଇନ୍ଦ୍ରଦ୍ୟୁମ୍ନ ଅବିନାଶୀ ପରଂବ୍ରହ୍ମ ବିଷ୍ଣୁଙ୍କୁ ଧ୍ୟାନ କଲେ । ସେହି ଧ୍ୟାନରେ ସେ ରତ୍ନସିଂହାସନରେ ଆବିର୍ଭୂତ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଭଗବାନଙ୍କର ଦର୍ଶନ ଲାଭ କଲେ । ତାଙ୍କ ଶ୍ରୀଅଙ୍ଗର କାନ୍ତି ନୀଳ ମେଘ ସଦୃଶ ଶ୍ୟାମବର୍ଣ୍ଣ ଥିଲା । ସେ ବନମାଳାରେ ଥିଲେ ବିଭୂଷିତ । ତାଙ୍କର ଦକ୍ଷିଣ ପାଖରେ ଶେଷ ଦେବ ମହାରାଜ ଫଣାରୂପୀ ମୁକୁଟକୁ ଧାରଣ କରି ବିରାଜିତ ହୋଇଥିବାବେଳେ ବାମ ଭାଗରେ ମା' ଭଗବତୀ ଲକ୍ଷ୍ମୀ ବିରାଜମାନ ହୋଇଥିଲେ । ଭଗବାନଙ୍କ ସମ୍ମୁଖ ଭାଗରେ ସୃଷ୍ଟିକର୍ତ୍ତା ବ୍ରହ୍ମା ହାତଯୋଡ଼ି ଦଣ୍ଡାୟମାନ ହୋଇ ସ୍ତୁତି କରୁଥାଆନ୍ତି । ସନକାଦି ମୁନିଋଷିମାନେ ତାଙ୍କ ସ୍ତୁତି ଗାନରେ ରତ । ଧ୍ୟାନରେ ଭଗବାନଙ୍କର ଏପରି ରୂପ ଦର୍ଶନ କରି ରାଜା ଇନ୍ଦ୍ରଦ୍ୟୁମ୍ନ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଭଗବାନଙ୍କୁ ସ୍ତୁତି ଓ ପ୍ରଣାମ ଜଣାଇଲେ । ଧ୍ୟାନ ଶେଷ ହେବା ପରେ ରାଜା ମହର୍ଷି ନାରଦଙ୍କ ପାଖରେ ସମସ୍ତ କଥା ବର୍ଣ୍ଣନା କଲେ । ମହର୍ଷି ନାରଦ କହିଲେ, 'ହେ ରାଜା ! ଏହି ଯଜ୍ଞ ଶେଷରେ ତୁମେ ଏଠାରେ ଭଗବାନଙ୍କୁ ପ୍ରତ୍ୟକ୍ଷ ଭାବରେ ଦର୍ଶନ କରିବ । ଏକଥା ଅନ୍ୟ ଆଗରେ ଆଉ ପ୍ରକାଶ କର ନାହିଁ ।'

ଅଶ୍ୱମେଧ ଯଜ୍ଞ ସମାପ୍ତ ହେବାପରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଶୂନ୍ୟବାଣୀ ହେଲା, ସେହି ଅନୁସାରେ ଭଗବାନ ଏଠାରେ ଚାରି ବିଗ୍ରହରେ ପ୍ରକଟିତ ହେଲେ । ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ସହ ଭଗବାନ ଶ୍ରୀଜଗନ୍ନାଥ ଦିବ୍ୟ ଆସନରେ ବିରାଜମାନ କଲେ । ଭଗବାନଙ୍କର ଚାରି ଦିବ୍ୟରୂପ ସମ୍ପନ୍ନ ହୋଇଯିବା ପରେ ପୁଣି ଥରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଶୂନ୍ୟବାଣୀ ହେଲା, 'ଏହି ଚାରି ପ୍ରତିମାଙ୍କୁ ନୀଳାଚଳର କଳ୍ପବୃକ୍ଷର ବାୟବ୍ୟ କୋଣରେ ଶହେ ହାତ ଦୂରରେ ଓ ଭଗବାନ ନୃସିଂହଙ୍କ ଉତ୍ତର ପାର୍ଶ୍ୱରେ ଯେଉଁ ପଡ଼ିଆ ଅଛି, ସେଠାରେ ମନ୍ଦିର ତିଆରି କରି ସ୍ଥାପନ କର ।' ରାଜା ଇନ୍ଦ୍ରଦ୍ୟୁମ୍ନ ଏହାକୁ ଆନନ୍ଦ ସହକାରେ ପାଳନ କଲେ । ଭଗବାନଙ୍କ ମୂର୍ତ୍ତି ସ୍ଥାପନା ପରେ ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରାର୍ଥନା କଲେ । ଏହି ଚାରି କାଷ୍ଠମୟ ପ୍ରତିମାଙ୍କୁ ବିଧିବଦ୍ଧ ଭାବରେ ପୂଜା କଲେ ।

ଏ ହେଉଛି ସେହି ପୁରୁଷୋତ୍ତମ କ୍ଷେତ୍ର, ଯିଏ ଚାରିଧାମରୁ ଅନ୍ୟତମ ଶ୍ରୀଜଗନ୍ନାଥ ପୁରୀ ନାମରେ ପ୍ରସିଦ୍ଧ । ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଭଗବାନ ପୁରୁଷୋତ୍ତମଙ୍କୁ ପ୍ରସନ୍ନ କରି ନାରଦ ମହର୍ଷିଙ୍କ ସହ ବ୍ରହ୍ମ ଲୋକକୁ ଯାତ୍ରା କଲେ ।

ସାଇ ଦିଗ୍‌ବଳୟ, ଇ-୬୫
ୟୁନିଟ୍-୮, ଭୁବନେଶ୍ୱର-୭୫୧୦୧୨




# ପାତାଳୀ ଶ୍ରୀକ୍ଷେତ୍ର କୋଟ୍ ସମଲାଇ

ହରିଶ୍ଚନ୍ଦ୍ର ବେହେରା

**ସୋ**ନପୁର ଜିଲ୍ଲାର ସଦର ମହକୁମାର ଉତ୍ତର ପଶ୍ଚିମ ଦିଗକୁ ମହାନଦୀ ପାରି ହୋଇ ପ୍ରାୟ ତିରିଶି କିଲୋମିଟର ରାସ୍ତା ଅତିକ୍ରମ କରିଗଲେ କୋଟ ସମଲାଇ ନାମକ ଏକ ଗ୍ରାମ ପଡ଼େ । ସେହି ଗ୍ରାମର ଅନତି ଦୂରରେ ଛଳିଆ ପାହାଡ଼ ଅବସ୍ଥିତ । ଏହା ସୋନପୁର ଜିଲ୍ଲାର ବୀର ମହାରାଜପୁର ସବ୍‌ଡିଭିଜନ ଅନ୍ତର୍ଗତ । ଉକ୍ତ ପାହାଡ଼ ପୃଷ୍ଠ ଦେଶର ନାମ ଦାରୁକୋଣ । ଏହି ପାହାଡ଼ର ପଶ୍ଚିମପଟକୁ ଅଛି ଗୁଜା ପାହାଡ଼ । ଗୁଜା ପାହାଡ଼କୁ ଲାଗି କରି ଅଛି ଶୂନ୍ୟ ପାହାଡ଼ । ଶୂନ୍ୟ ପାହାଡ଼ ପାଦ ଦେଶରେ ଅଛି ରାଣୀବସା । ଚାରିଆଡ଼େ ପାହାଡ଼ ଘେରି ହୋଇ ରହିଥିବାରୁ ଏହା ଏକ ଉପତ୍ୟକା ଭଳି ମନେ ହୁଏ । ଶତ୍ରୁ ସେ ସ୍ଥାନକୁ ଯିବାକୁ ହେଲେ ଅତିକ୍ରମ କରିବାକୁ ପଡ଼େ ଅନେକ ପ୍ରାକୃତିକ ପ୍ରତିବନ୍ଧକ । ତତ୍କାଳୀନ ସୋନପୁର ରାଜାଙ୍କ ରାଣୀ ଏହି ସ୍ଥାନକୁ ଅତ୍ୟନ୍ତ ନିରାପଦ ମଣି ସେଇ ପାହାଡ଼ ଦେହରେ ଗୁମ୍ଫାମାନ ନିର୍ମାଣ କରିଥିଲେ ଓ ଯବନ ଶତ୍ରୁମାନଙ୍କ ଭୟରୁ ରକ୍ଷା ପାଇବା ପାଇଁ ବିପଦ ସମୟରେ ପରିବାରର ଲୋକେ ଏଠାରେ ଆଶ୍ରୟ ନେଉଥିଲେ । ଅନେକେ ବିଶ୍ୱାସ କରନ୍ତି ଏହି ଗୁମ୍ଫାମାନଙ୍କରେ ଅନେକ ଧନରତ୍ନ ଲୁକ୍କାୟିତ ଅବସ୍ଥାରେ ଅଛି । ସେଇ ଗୁମ୍ଫାଗୁଡ଼ିକରେ ମୁନିଋଷିମାନେ ରହି ପୂଜା କରିଆସୁଛନ୍ତି । ସେଇ ପାହାଡ଼କୁ ଲାଗି ରହିଛି ଧୋଇଆ ବନ୍ଧ ପାହାଡ଼ । ସେଇ ପାହାଡ଼ରେ ମଧ୍ୟ ଅନେକ ଗୁମ୍ଫା ଦେଖାଯାଏ । ଛଳିଆ ପାହାଡ଼ର ଠିକ୍ ପଶ୍ଚିମ ଦିଗକୁ ଅଛି ଚନ୍ଦନ ଖୋଲ । ଏହି ଖୋଲ ନିକଟରେ ଥିବା ଗୋଟିଏ ବଡ଼ ଆମ୍ବଗଛ ମୂଳରୁ ଝରଣାଟିଏ ବାହାରିଛି । ଏହି ସ୍ଥାନର ମାଟି ଚନ୍ଦନ ଭଳିଆ ବାସ୍ନା ହେଉଥିବାରୁ ଏହାକୁ ଚନ୍ଦନ ଖୋଲ ବୋଲି ଲୋକମାନେ କହନ୍ତି । ସେଇ ଚନ୍ଦନ ଖୋଲ ନିକଟରେ ଅଛି ତାଳ ଖୋଲ । ଏଠାରେ ପଥରର ଏକ ବଡ଼ ମଣ୍ଡପ ରହିଛି । ଏହି ମଣ୍ଡପରେ ଏକ ସଙ୍ଗେ ୩୦/୪୦ ଜଣ ବସି ପାରିବେ । କୁହାଯାଏ ଯେ ଏଠାରେ ପାତାଳୀ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଭଜନ କୀର୍ତ୍ତନ କରାଯାଉଥିଲା । ସେଇ ପାହାଡ଼ରେ ଥିବା ଗୁମ୍ଫାଗୁଡ଼ିକୁ ସ୍ଥାନୀୟ ଲୋକମାନେ ବିଭିନ୍ନ ନାମରେ ନାମକରଣ କରିଛନ୍ତି, ଯଥା- ମାଧବ ଗୁମ୍ଫା ଧନା ଗୁମ୍ଫା, ରାଣୀ ଖୋଲଗୁମ୍ଫା, ଦାରୁକୋଣ ଗୁମ୍ଫା ଇତ୍ୟାଦି । ଦାରୁକୋଣ ଗୁମ୍ଫାରେ ହିଁ ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାଙ୍କୁ ପାତାଳୀ କରାଯାଇଥିଲା ।



ଷଷ୍ଠ ଶତାବ୍ଦୀ ଅର୍ଥାତ୍ ୫୮୮ ଖ୍ରୀ:ଅ:ରେ ଓଡ଼ିଶାରେ ଶ୍ରୀ ଶୋଭନ ଦେବ ବା ଶୁଭାକର ଦେବ କେଶରୀ ବଂଶର ରାଜା ରାଜୁତି କରୁଥିଲେ । ତାଙ୍କ ରାଜତ୍ୱ କାଳରେ ଭାରତରେ ହୁଣ ଓ ଶକମାନଙ୍କର ପ୍ରଭାବ ବୃଦ୍ଧି ପାଇଥିଲା । ତାଙ୍କ ରାଜତ୍ୱ କାଳରେ ରକ୍ତବାହୁ ନାମକ ଜଣେ ଯବନ ସେନାପତି ଶ୍ରୀମନ୍ଦିର ଆକ୍ରମଣ କରିଥିଲା । ଯବନମାନଙ୍କ ଆକ୍ରମଣକୁ ପ୍ରତିହତ କରିନପାରି ସେ ଠାକୁରମାନଙ୍କୁ ସୁରକ୍ଷା ଦେବା ନିମନ୍ତେ ସେମାନଙ୍କୁ ଡଙ୍ଗାରେ ବସାଇ ମହାନଦୀ ପଥରେ ସୋନପୁର ରାଜ୍ୟକୁ ନେଇ ଯାଇଥିଲେ । ସେଠାରେ ତତ୍କାଳୀନ ରାଜାଙ୍କ ସହାୟତାରେ ଠାକୁରମାନଙ୍କୁ ହାତୀ ପିଠିରେ ଲଦି ଗୋପାଳୀ ଗ୍ରାମକୁ ନେଇ ଯାଇଥିଲେ । ସେତେବେଳେ ଶୋଭନ ଦେବଙ୍କର ରାଜତ୍ୱର ଦ୍ୱିତୀୟ ଅଙ୍କ ଚାଲୁଥିଲା । ହାତୀ ପିଠିରେ ଠାକୁରମାନଙ୍କୁ ବସାଇ ସେବକମାନେ ଘୋର ଜଙ୍ଗଲ ମଧ୍ୟରେ ପ୍ରବେଶ କଲେ । ବାଟବଣା ହୋଇ କେଉଁ ଦିଗକୁ ଯିବେ କିଛି ଠିକ୍ କରିନପାରି ସେବକମାନେ କାନ୍ଦିବାକୁ ଲାଗିଲେ । ସେତେବେଳକୁ ସନ୍ଧ୍ୟା ହୋଇ ଯାଇଥାଏ । ହଠାତ୍ ସେମାନେ ଦେଖିଲେ ଛଳିଆ ପାହାଡ଼ ଉପରୁ ଏକ ଉଜ୍ଜ୍ୱଳ ଆଲୋକର ଶିଖା, ସତେ ଯେମିତି ସେମାନଙ୍କୁ ତା'ର ଶିଖା ମାଧ୍ୟମରେ ହାତଠାରି ଡାକୁଥିଲା ସେହିବାଟେ ଯିବା ପାଇଁ । ଅନ୍ଧକାର ରାତି ପୁଣି ଘୋର ଜଙ୍ଗଲ । ସେବକମାନେ ଆଗକୁ ଯାଇ ନପାରି ସକାଳ ହେବା ପର୍ଯ୍ୟନ୍ତ ସେହିଠାରେ ଅପେକ୍ଷା କରିରହିଥିଲେ । ସକାଳ ହେବାପରେ ସେବକମାନେ ସେହି ଆଲୋକ ଆସୁଥିବା ଦିଗକୁ ଆଗେଇ ଚାଲିଲେ

ଓ ଶେଷରେ ଯାଇ ପହଞ୍ଚିଲେ ଦାରୁକୋଣ ଗୁମ୍ଫା ନିକଟରେ । ସେହି ଗୁମ୍ଫା ମଧ୍ୟରେ ତିନିଠାକୁରଙ୍କୁ ରଖି ଗୁମ୍ଫା ଦ୍ୱାରକୁ ପଥର ଦ୍ୱାରା ବନ୍ଦ କରି ଦେଇ ମାଟି ଲିପି ଦେଲେ ଓ ସାମ୍ନାରେ ଚିହ୍ନ ସ୍ୱରୂପ ଏକ ବରଗଛ ଲଗାଇ ଦେଲେ । କାଳକ୍ରମେ ବରଗଛଟି ବଡ଼ ହୋଇ ସମଗ୍ର ଗୁମ୍ଫାଟିକୁ ମାଡ଼ି ବସିଥିଲା, ତେଣୁ ଏହାର ନାମ ଦାରୁକୋଣ ଗୁମ୍ଫା ହୋଇଗଲା । ଦାରୁ ଆଦିବାସୀ ଶବ୍ଦ, କୋଣ ଅର୍ଥାତ୍ ଗୁମ୍ଫାଟି ପାହାଡ଼ର ଗୋଟିଏ କୋଣରେ ଥିବାରୁ ତାର ନାମ 'ଦାରୁକୋଣ' ବୋଲି ଲୋକ ମୁଖରେ ପ୍ରଚଳିତ ।

ଶୋଭନକର ଦେବଙ୍କ ପରେ ଚନ୍ଦ୍ରକର ଦେବ ରାଜା ହେଲେ । ତାଙ୍କ ରାଜତ୍ୱ କାଳରେ ମଧ୍ୟ ଠାକୁରମାନଙ୍କୁ ଠାବ କରାଯାଇପାରିଲା ନାହିଁ । ଏହିପରି ଭାବରେ ଠାକୁରମାନେ ସେଇ ଛଳିଆ ପାହାଡ଼ର ଗୁମ୍ଫାରେ ୧୪୪ ବର୍ଷ ପର୍ଯ୍ୟନ୍ତ ପାତାଳୀ ହୋଇ ରହିଥିଲେ ।

ଯବନମାନେ କ୍ରମେ କ୍ରମେ ଦୁର୍ବଳ ହୋଇଯିବାରୁ ଯଯାତି କେଶରୀ ରାଜା ହେଲେ । ତାଙ୍କର ୧୧ ଅଙ୍କରେ ସେ ସନ୍ନ୍ୟାସୀ ବ୍ରହ୍ମଚାରୀମାନଙ୍କୁ ଡାକି ପଚାରିଲେ 'ଓଡ଼ିଶା ରାଜାର ପ୍ରଭୁ ଜଗନ୍ନାଥ ମହାପ୍ରଭୁ କେଉଁଠାରେ ଅଛନ୍ତି, ସାଧୁ ସନ୍ନ୍ୟାସୀମାନେ କହିଲେ ମୋଗଲ ଗୋଳ ହୋଇଲାରୁ ସମୁଦ୍ର ଥୋକାଏ ଦୂର ମାଡ଼ି ଆସିଲା (ମାଦଳାପାଞ୍ଜି ଅନୁସାରେ) । ଠାକୁରମାନଙ୍କୁ ସୁରକ୍ଷା ଦେବାରେ ସମ୍ଭବପର ନହେବାରୁ ରାଜା ପରମେଶ୍ୱରଙ୍କୁ ନୌକାରେ ବସାଇ ମହାନଦୀ ଜଳପଥରେ ସୋନପୁର ଆଡ଼େ ବିଜେ କରାଇଲେ । ତାହାପରେ କ'ଣ ହେଲା ଆମର ଜ୍ଞାତବ୍ୟ ନାହିଁ ।' ଯଯାତି କେଶରୀ ମହାରାଜା ସୋନପୁର ପର୍ଯ୍ୟନ୍ତ ଆସି ଖଣ୍ଡାୟତମାନଙ୍କୁ ପଚାରନ୍ତେ ଠାକୁରମାନେ ପାତାଳୀ ହୋଇଥିବା ସେମାନଙ୍କଠାରୁ ଶୁଣିଲେ କିନ୍ତୁ କେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ପାତାଳୀ ହୋଇଛନ୍ତି କେହି କହିପାରିଲେ ନାହିଁ । ତହୁଁ ଯଯାତି କେଶରୀ ଗୋପାଳୀ ଗ୍ରାମକୁ ଯାଇ ଲୋକମାନଙ୍କୁ ପଚାରନ୍ତେ ସେମାନେ କହିଲେ ଠାକୁର କେଉଁଠାରେ ଅଛନ୍ତି ଆମର ଜ୍ଞାତବ୍ୟ ନାହିଁ । ହେଲେ ପାହାଡ଼ ଉପରେ ଥିବା ବରଗଛଟିକୁ ଆମର ବାପ ଅଜା ଅମଳରୁ ଦିଅଁବର ବୋଲି ପୂଜା କରି ଆସୁଅଛୁଁ । ପର୍ବପର୍ବାଣିରେ ଆମର ବାପ ଅଜା ଫୁଲଚନ୍ଦନ ଭୋଗ ରାଗ ଦେଇ ବରଗଛଟିକୁ ଭକ୍ତି ସହକାରେ ପୂଜା କରି ସାଷ୍ଟାଙ୍ଗ ପ୍ରଣାମ କରିଆସୁଥିବାର ଆମେ ଜାଣୁ । ଆମ୍ଭେମାନେ ମଧ୍ୟ ଆମର ବାପ ଅଜାଙ୍କ ପଦାଙ୍କ ଅନୁସରଣ କରି ଆସୁଛୁ । ପର୍ବପର୍ବାଣି ଦିନ ଫୁଲଫଳ ଭୋଗ ଇତ୍ୟାଦି ସହିତ ସେଇ ଦିଅଁବର ଅର୍ଥାତ୍ ବରଗଛଟିକୁ ପୂଜା କରି ଆସୁଛୁଁ । ଏହା ଶ୍ରବଣ କରନ୍ତେ, ଯଯାତି କେଶରୀଙ୍କ ମନରେ ସନ୍ଦେହ ଜାତ ହେଲା । ସେ ଗ୍ରାମବାସୀଙ୍କ ସହିତ ଛଳିଆ ପାହାଡ଼ ଉପରକୁ ଯାଇ ଦିଅଁବର ବା ବରଗଛଟିକୁ କଟାଇ ଗୁମ୍ଫା ମୁହଁକୁ ଖନନ କରାଇ ତିନି ଠାକୁରଙ୍କୁ ଉଦ୍ଧାର କଲେ । ତିନି ଠାକୁରଙ୍କ ଜିର୍ଣ୍ଣଶୀର୍ଣ୍ଣ ମୂର୍ତ୍ତିକୁ ଘେନି ପୁରୁଷୋତ୍ତମ ଶଙ୍ଖନାଭି ମଣ୍ଡଳରେ ଦେଉଳ ତୋଳାଇ ପରମେଶ୍ୱରଙ୍କୁ ସେଠାରେ ବିଜେ କରାଇଲେ । ସେଥିପାଇଁ ତାଙ୍କୁ ଲୋକେ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କହିଲେ ।

ମାଦଳା ପାଞ୍ଜିରୁ ଜଣାଯାଏ, ଯଯାତି କେଶରୀ ସୋନପୁରରୁ ତିନି ଠାକୁରଙ୍କୁ ମହାନଦୀର ଜଳପଥରେ ନୌକାରେ ବସାଇ ପୁରୀ ପର୍ଯ୍ୟନ୍ତ ଘେନି ଆସିଥିଲେ । ଠାକୁରମାନଙ୍କୁ ନିଆଯାଇଥିବା ଡଙ୍ଗାକୁ କୋଶଳୀ ଡଙ୍ଗା ବୋଲି ସେ ଅଞ୍ଚଳର ଲୋକମାନେ କୁହନ୍ତି । ଦେବସ୍ନାନ ପୂର୍ଣ୍ଣିମା ଦିନ କୋଶଳୀ ଡଙ୍ଗାରେ ମହାପ୍ରସାଦକୁ ଜଳରେ ରଖି ତାହାକୁ ବୈକୁଣ୍ଠ ତୋରାଣୀ ଭାବେ ଭକ୍ତମାନେ ପାନ କରନ୍ତି ଓ ଆନନ୍ଦରେ ଗାଇ ଉଠିଥାନ୍ତି -

କୋଶଳୀ ଡଙ୍ଗାରେ ବିଜେ ବଢ଼ିଲା
କୋଟ ସମଲାଇ ତୀରଥ ହେଲା ।
ଡଙ୍ଗା ତୋରାଣୀରେ ମଇତ ଫଳ
ବୈକୁଣ୍ଠକୁ ମତି ମୁକତି ଜଳ ।

ସେ ଶ୍ରୀପୁରୁଷୋତ୍ତମ ଶଙ୍ଖନାଭି ମଣ୍ଡଳରେ ୩୮ ହାତ ଉଚ୍ଚତା ବିଶିଷ୍ଟ ଏକ ମନ୍ଦିର ନିର୍ମାଣ କରାଇ ଠାକୁରମାନଙ୍କର ଯଥାବିଧି ପୂଜା ଉପାସନା କରାଇବାର ବ୍ୟବସ୍ଥା କଲେ । ଏହି ରାଜାଙ୍କ ସମୟରୁ ହିଁ ଠାକୁରମାନଙ୍କର ନବକଳେବର ଧାରଣ କରିବା ପ୍ରଥା- ପ୍ରଚଳିତ ହୋଇ ଆସୁଅଛି । ସେ ଦିନ କୋଟ ସମଲାଇର ଘୋର ଜଙ୍ଗଲ ଆଜି ଆଉ ନାହିଁ । ଛଳିଆ ପାହାଡ଼ କ୍ରମେ ଲଣ୍ଡା ହୋଇ ଆସିଲାଣି । ଉକ୍ତ ପାହାଡ଼ର ପାଦଦେଶ ପର୍ଯ୍ୟନ୍ତ ରାସ୍ତା ତିଆରି ହୋଇସାରିଲାଣି । ପାହାଡ଼ ଉପରକୁ ଉଠିବାକୁ ପାହାଚ ମଧ୍ୟ ତିଆରି ହେଉଛି । ଅନେକ ସମୟରେ ବିଭିନ୍ନ ସ୍ଥାନରୁ ଭକ୍ତବୃନ୍ଦ, ଗବେଷକ, ଐତିହାସିକ ଓ ଜଗନ୍ନାଥ ସଂସ୍କୃତି ଉପରେ ଅନୁସନ୍ଧାନ କରୁଥିବା ବ୍ୟକ୍ତିମାନେ ଏଠାକୁ ଆସି ଏ ଅଞ୍ଚଳ ବୁଲି ଯାଇଛନ୍ତି । ଏବେମଧ୍ୟ ଛଳିଆ ପାହାଡ଼ ଉପରେ ଥିବା ଦାରୁକୋଣ ଗୁମ୍ଫାରୁ ସମୟ ସମୟରେ ଶଙ୍ଖଧ୍ୱନୀ ଶୁଣା ଯାଇଥିବାର ଲୋକମାନେ କୁହନ୍ତି । ବଡ଼ ବିଚିତ୍ର ସେ ରହସ୍ୟମୟ କଳାଠାକୁର ଓ ପବିତ୍ରମୟ ଏଇ ଛଳିଆ ପାହାଡ଼ ଓ ତା'ର ଇତିହାସ ।

ଏମ୍.ଆଇ.ଜି.-୧୧୩
ମୈତ୍ରୀ ବିହାର, ଚନ୍ଦ୍ରଶେଖରପୁର, ଭୁବନେଶ୍ୱର



# ଶ୍ରୀଜଗନ୍ନାଥ ଓ ଉତ୍କଳୀୟ ବୈଷ୍ଣବଧର୍ମ

ସୁରେନ୍ଦ୍ର ମହାନ୍ତି

ଅନନ୍ତ ବ୍ରହ୍ମାଣ୍ଡର ସୃଷ୍ଟି ଓ ଏହାର ସ୍ଥିତି ସ୍ଥାପକତା ଅମନ ସ୍ଥିତି ଅର୍ଥାତ୍ ଚିନ୍ମୟ ସ୍ଥିତିରେ ସନ୍ଦର୍ଶନ ଓ ସ୍ୱାନୁଭବ କରି ଏହାର ନିର୍ମାତା ଓ ନିର୍ମାଣ ତତ୍ତ୍ୱକୁ ସୂକ୍ଷ୍ମ କାରଣାବସ୍ଥାରେ ଅବଲୋକନ କରି ଓ ବ୍ରହ୍ମାଣ୍ଡର ସ୍ୱରୂପକୁ ପିଣ୍ଡ ମଧ୍ୟରେ ଅଭିଜ୍ଞାତ ହୋଇ ତଥା ବ୍ରହ୍ମାଣ୍ଡର ରଚୟିତା ବ୍ରହ୍ମାଣ୍ଡ ପୁରୁଷଙ୍କୁ ତାଙ୍କ ସୃଷ୍ଟ ପିଣ୍ଡ ମଧ୍ୟରେ ଦର୍ଶନ କରିବାର ଯୌଗିକ କଳା ଯେଉଁ ସାଧନ ତତ୍ତ୍ୱ ଉଦ୍‌ଘୋଷ କରେ, ତାହାର ନାମକରଣ ଓ ପରିଚୟ ହେଉଛି ଉତ୍କଳୀୟ ଧର୍ମ ।

ପ୍ରତ୍ୟେକ ସାମ୍ପ୍ରଦାୟିକ ଧର୍ମର ଲକ୍ଷ୍ୟ ଅଟେ ପରମାର୍ଥ ପ୍ରାପ୍ତି ବା ମୁକ୍ତି । ଏହିସବୁ ସାମ୍ପ୍ରଦାୟିକ ଧର୍ମର ପ୍ରବକ୍ତାମାନେ ପରମାର୍ଥ ପ୍ରାପ୍ତି ନିମନ୍ତେ ଯେଉଁସବୁ ଧର୍ମୋପାସନା ପଦ୍ଧତିର ପ୍ରବର୍ତ୍ତନ କରିଛନ୍ତି, ସେଗୁଡ଼ିକ ମୁଖ୍ୟତଃ ବହିରଙ୍ଗ ସାଧନ ସର୍ବସ୍ୱ । ଏହି ଧର୍ମମାନଙ୍କରେ ଭଗବତ ଆରାଧନା ପାଇଁ ପୂଜା ପ୍ରାର୍ଥନାଦି ପଦ୍ଧତିର ପ୍ରଚଳନ ସଂଗେସଂଗେ ଅନ୍ତରଙ୍ଗ ଭାବେ ଧ୍ୟାନ, ଧାରଣାଦି ଯୋଗ ସାଧନ କରାଯିବା ପାଇଁ ଧାର୍ମିକ ପଦ୍ଧତି ରହିଥିଲେ ମଧ୍ୟ ଏହାସବୁ ସମୟୋପଯୋଗୀ ସାଧନ ପର୍ଯ୍ୟାୟଭୁକ୍ତ ଅଟନ୍ତି, କିନ୍ତୁ କର୍ମାଭିମୁଖୀ ସର୍ବକାଳୀନ ଓ ସାର୍ବଜନୀନ ଉପାସନା ପର୍ଯ୍ୟାୟଭୁକ୍ତ ନୁହନ୍ତି । ଅଭ୍ୟାସଗତ ବହିରଙ୍ଗ ସାଧନ ସହ ପ୍ରମୁଖତଃ ଅନ୍ତରଙ୍ଗ ସାଧନ ପ୍ରକ୍ରିୟା ଅବଲମ୍ବନ କରି ସର୍ବକାଳୀନ ଓ ସାର୍ବଜନୀନ ନିର୍ବିବାଦୀୟ ଉପାସନା ରୀତି କେବଳ ଉତ୍କଳୀୟ ବୈଷ୍ଣବ ଧର୍ମତତ୍ତ୍ୱରେ ହିଁ ନିହିତ ଏବଂ ଏଥିନିମନ୍ତେ ଏହା ଅଣସାମ୍ପ୍ରଦାୟିକ ଓ ସନାତନଧର୍ମ ଭାବେ ପ୍ରସିଦ୍ଧ ଅଟେ ।

ଉତ୍କଳୀୟ ବୈଷ୍ଣବ ଧର୍ମର ଇତିହାସ ନିର୍ଣ୍ଣୟ କରିବାକୁ ହେଲେ ଉତ୍କଳର ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥଙ୍କର ଅଧିଷ୍ଠାନ ପର୍ବର ଅନ୍ୱେଷଣ ଆବଶ୍ୟକ । କେବେ ଓ କେଉଁପରି ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରରେ ଅଧିଷ୍ଠିତ ହେଲେ, ଏହାର ଐତିହାସିକ ନିର୍ଣ୍ଣୟ ତଥା ବିଚିତ୍ରବର୍ଣ୍ଣା ବିଗ୍ରହ ରହସ୍ୟ ସହ ଉତ୍କଳୀୟ ବୈଷ୍ଣବଧର୍ମର ଜନ୍ମନୀଡ଼ ସମ୍ପର୍କ ରହିଛି । ଏଣୁ ଉତ୍କଳୀୟ ବୈଷ୍ଣବ ଧର୍ମର ତତ୍ତ୍ୱାଲୋଚନା ତଥା ଏହି ଧର୍ମର ପ୍ରବକ୍ତା ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସଙ୍କ ଦାର୍ଶନିକ ଅବଦାନ ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥଙ୍କ ଅଧିଷ୍ଠାନ ଇତିହାସର ସମ୍ୟକ୍ ପର୍ଯ୍ୟାଲୋଚନା ଆବଶ୍ୟକ ମନେହୁଏ ।



ଶ୍ରୀଜଗନ୍ନାଥଙ୍କ ଅଧିଷ୍ଠାନ ଇତିହାସ ଏବେ ମଧ୍ୟ ରହସ୍ୟାବୃତ୍ତ । ଓଡ଼ିଶାର ଇତିହାସ ଖ୍ରୀ:ପୂ: ୩୦୦ ବର୍ଷର ବୋଲି କୁହାଯାଉଥିଲାବେଳେ ତାହା ମଧ୍ୟ ଅନ୍ଧକାରାଚ୍ଛନ୍ନ । ଏହି ପରିପ୍ରେକ୍ଷୀରେ ଐତିହାସିକ ତଥ୍ୟ ସଠିକ୍ ଭାବେ ନିରୂପଣ କରିବା ସମ୍ଭବପର ନୁହେଁ । ଅଧିକନ୍ତୁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଯେଉଁସବୁ ପୁରାଣମାନ ରଚିତ ହୋଇଛି, ସେମାନଙ୍କ ବର୍ଣ୍ଣନା ସହ ବହୁକ୍ଷେତ୍ରରେ ଐତିହାସିକ ତଥ୍ୟର ମେଳ ରହୁନାହିଁ । ଏହି ସଂଶୟାଚ୍ଛନ୍ନ ପୃଷ୍ଠଭୂମିରେ ତଥାପି ଐତିହାସିକ ଓ ଗବେଷକମାନେ ଇତିହାସର ତଥ୍ୟ ନିର୍ଣ୍ଣୟ କରିବା ପାଇଁ ଚେଷ୍ଟିତ । ଏହି ପ୍ରସଙ୍ଗରେ ପ୍ରବୀଣ ଗବେଷକ ଡଃ ସତ୍ୟନାରାୟଣ ରାଜଗୁରୁବା ଐତିହାସିକ ମତ ଅଧିକ ପ୍ରାମାଣିକ ଓ ବିଶ୍ୱସନୀୟ ମନେହୁଏ । ଡଃ ରାଜଗୁରୁଙ୍କ ତଥ୍ୟାନୁଯାୟୀ ମହୋଦଧି ତଟରେ ପୁରୁଷମଣ୍ଡପ ନାମକ ଏକ ବେଦିକା ଥିଲା ଓ ଏହି ସ୍ଥାନର ନାମ ଥିଲା ପଞ୍ଚଯଜ୍ଞ ତପୋବନ । ଏଠାରେ ମୁନିଋଷିମାନେ ବାସ କରୁଥିଲେ । ମହାଭାରତ ସମୟରେ ଅଜ୍ଞାତ ବନବାସରେ ପାଣ୍ଡବମାନେ ଦେଶ ଭ୍ରମଣ କରୁଥିବା ସମୟରେ ଲୋମଶମୁନିଙ୍କ ସହ ସେମାନଙ୍କର ସାକ୍ଷାତ ହୋଇଥିଲା । ଲୋମଶମୁନି ପାଣ୍ଡବମାନଙ୍କୁ ବିଭିନ୍ନ ଧର୍ମସ୍ଥାନମାନଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବା ସମୟରେ କଳିଙ୍ଗସ୍ଥ ଦ୍ୱୈତବନ କଥା କହିଥିଲେ ଏବଂ ସେଠାରେ ଏକ ଶକ୍ତିମାନ ବେଦିକା ଥିବାକଥା ଉଲ୍ଲେଖ କରିଥିଲେ । ଏହି ବେଦିକାରେ ଆରୋହଣ କରି ଶକ୍ତି ସଞ୍ଚୟ କରିବା ପାଇଁ ପାଣ୍ଡବମାନଙ୍କୁ ଲୋମଶମୁନି ଉପଦେଶ ପ୍ରଦାନ କରିଥିଲେ ଏବଂ ଏହାର ସୂଚନା ପ୍ରଦାନ କରି





କହିଥିଲେ ଯେ ବୈତରଣୀର କିଛି ଦୂରରେ ସିନ୍ଧୁତଟରେ ଏହି ବେଦିକା ଆରୋହଣ ଅବସ୍ଥିତ । ପାଣ୍ଡବମାନେ ଲୋମଶମୁନିଙ୍କ ଉପଦେଶାନୁଯାୟୀ ସିନ୍ଧୁତଟସ୍ଥ ଏହି ବେଦିକା ଆରୋହଣ କରି ପ୍ରସନ୍ନ ହୋଇଥିଲେ ଓ ସେଠାରେ କିଛି କାଳ ଅତିବାହିତ କରିଥିଲେ ।

ପାଣ୍ଡବମାନେ ଯେଉଁ ବେଦିକା ଆରୋହଣ କଲେ, ସେହି ବେଦିକା ଉପରେ ପୁରୁଷୋତ୍ତମ ଅଧିଷ୍ଠିତ ହୋଇଥିବା କେତେକ ପ୍ରାମାଣିକ ଅଭିଲେଖ ଓ ଶିଳାଲେଖରୁ ପ୍ରତିପାଦିତ ହୋଇଛି । ତଦନୁଯାୟୀ ଏହି ବେଦିକାର ନାମ କାଳକ୍ରମେ ପୁରୁଷମଣ୍ଡପ ହୋଇଥିଲା ଓ ଏତେବେଳକୁ ଏଠାରେ ବ୍ରାହ୍ମଣମାନେ ବାସ କରି ସିନ୍ଧୁତଟବର୍ତ୍ତୀ ପୁରୁଷୋତ୍ତମଙ୍କୁ ଏହି ମଣ୍ଡପ ଉପରେ ଆରାଧନା କରୁଥିଲେ । ଏହି ବ୍ରାହ୍ମଣମାନେ ଶିବ, ବୁଦ୍ଧ ଓ ବିଷ୍ଣୁଙ୍କ ଉପାସନା କରୁଥିବା ଓ ପୁରୁଷସୂକ୍ତ ପାଠ ଏଠାରେ ହେଉଥିବା ଉପରୋକ୍ତ ଗବେଷଣା ସୂତ୍ରରୁ ଅନୁମାନ କରାଯାଏ । ସମୟ ସ୍ରୋତରେ ପ୍ରାୟ ଖ୍ରୀ: ୪ର୍ଥ ଶତାବ୍ଦୀ ବେଳକୁ ଏହି ପୁରୁଷମଣ୍ଡପ ଗ୍ରାମର ନାମ ହୋଇଥିଲା ପୁରୁଷପୁର । ପୁରୁଷପୁର ନାମଟି କାଳର ଆବର୍ତ୍ତନରେ ପରିଶେଷରେ ପୁରଷ୍ତମ ବା ପୁରୀରେ ପରିଣତ ହୋଇଥିବା ଏହି ତଥ୍ୟରୁ ପରିଜ୍ଞାତ ହୁଏ ।

ସିନ୍ଧୁ ତଟସ୍ଥ ପୁରୁଷମଣ୍ଡପ ଉପରେ ସେତେବେଳେ ଉପାସିତ ହେଉଥିବା 'ପୁରୁଷୋତ୍ତମ' ପାଷାଣ ମୂର୍ତ୍ତି ଥିଲେ କି ଦାରୁବିଗ୍ରହ ସେ ବିଷୟରେ କୌଣସି ସ୍ପଷ୍ଟ ସୂଚନା ମିଳେ ନାହିଁ । ତେବେ ଡଃ ସତ୍ୟନାରାୟଣ ରାଜଗୁରୁ ମହୋଦୟଙ୍କ ଐତିହାସିକ ତଥ୍ୟ ଅନୁଯାୟୀ ପୁରୁଷୋତ୍ତମ ମୂର୍ତ୍ତି ଖ୍ରୀଷ୍ଟାବ୍ଦ ୯ମ ପର୍ଯ୍ୟନ୍ତ ଏହି ସିନ୍ଧୁ ତୀରବର୍ତ୍ତୀ ପୁରୁଷମଣ୍ଡପ ଉପରେ ଉପାସିତ ହେଉଥିଲେ, ଯାହା ତମାଳତରୁ ବେଷ୍ଟିତ ଥିଲା । ସମୁଦ୍ରର ପ୍ରାଦୁର୍ଭାବ ହେତୁ ଅଥବା ମଣ୍ଡପଟିର ଜୀର୍ଣ୍ଣତା କାରଣରୁ ନବମ ଶତାବ୍ଦୀ ବେଳକୁ ସୋମବଂଶୀୟ ମହାରାଜା ଯଯାତିକେଶରୀ ସ୍ୱଳ୍ପ ଦୂରରେ ଅନ୍ୟ ଏକ ମନ୍ଦିର ନିର୍ମାଣ କରି ପୁରୁଷୋତ୍ତମଙ୍କୁ ପାଷାଣ ନିର୍ମିତ ନୀଳମାଧବ ରୂପରେ ବିଗ୍ରହାନ୍ୱିତ କରି ଏହି ନୂତନ ମନ୍ଦିରରେ ପ୍ରତିଷ୍ଠା କଲେ । ଏହି ମନ୍ଦିରଟି ବର୍ତ୍ତମାନ ମୁକ୍ତିମଣ୍ଡପ ପାର୍ଶ୍ୱବର୍ତ୍ତୀ ନୃସିଂହ ମନ୍ଦିର ନାମରେ ପରିଚିତ ହେଉଛି ।

ଉପରୋକ୍ତ ନୃସିଂହ ମନ୍ଦିରରେ କମଳାକ୍ଷ ଦେବ ନାମରେ ପୁରୁଷୋତ୍ତମ (ନୀଳମାଧବ) ଉପାସିତ ହୋଇ ଆସୁଥିବାବେଳେ ପରବର୍ତ୍ତୀ ସମୟରେ ସୋମବଂଶୀ ରାଜା କର୍ଣ୍ଣକେଶରୀଙ୍କୁ ଯୁଦ୍ଧରେ ପରାସ୍ତ କରି ଗଙ୍ଗବଂଶୀୟ ମହାରାଜା ଅନଙ୍ଗ ବର୍ମ ଚୋଡ଼ଗଙ୍ଗ ଦେବ ଉତ୍କଳ ଅଧିକାର କଲେ । ସେ ଶିବଙ୍କ ଉପାସକ ଭାବେ ପ୍ରଥମେ ଶୈବ ଥିଲେ ମଧ୍ୟ କାଳକ୍ରମେ ଉତ୍କଳର ବୈଷ୍ଣବୀୟ ଚେତନା ସଂସ୍ପର୍ଶରେ ଆସି ବୈଷ୍ଣବ ପ୍ରେମୀ ହୋଇଥିଲେ । ତାଙ୍କର ଦୃଷ୍ଟି ପୁରୁଷୋତ୍ତମ କ୍ଷେତ୍ରର ପୁରୁଷୋତ୍ତମ କ୍ଷେତ୍ରର ପୁରୁଷୋତ୍ତମଙ୍କ ପ୍ରତି ଆକୃଷ୍ଟ ହୋଇଥିଲା ଓ ସେ ପୂର୍ବ ମନ୍ଦିରରେ ତାଙ୍କ ଆରାଧିତ ଶିବ ଓ ପାର୍ବତୀଙ୍କୁ ବଳଭଦ୍ର ଓ ସୁଭଦ୍ରା ନାମରେ ନାମିତ କରି ପୁରୁଷୋତ୍ତମଙ୍କ ସହ ସଂଯୁକ୍ତ କଲେ । ଏହି କ୍ଷୁଦ୍ରକାୟ ମନ୍ଦିରରେ ତ୍ରିଦେବଙ୍କ ଉପାସନା ସଂକୀର୍ଣ୍ଣ ହେଉଥିବା ଦେଖି ଏହାର ବିକଳ୍ପ ସ୍ୱରୂପ ସେ ଭଙ୍ଗା ଶ୍ରୀମନ୍ଦିର ନିର୍ମାଣ କରିବାର ସଂକଳ୍ପ କରି ଏବକାର ଶ୍ରୀମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ । ତାଙ୍କ ରାଜତ୍ୱ ଅବଧିରେ ଏହି ମନ୍ଦିର ସଂପୂର୍ଣ୍ଣ ହୋଇନପାରି ପରବର୍ତ୍ତୀ ସମୟରେ ତାଙ୍କର ପ୍ରପୌତ୍ର ଅନଙ୍ଗଭୀମ ଦେବ ତୃତୀୟ ଏହି ମନ୍ଦିର ସମ୍ପୂର୍ଣ୍ଣ କରି ପ୍ରୋକ୍ତ ତ୍ରିମୂର୍ତ୍ତିଙ୍କୁ ଶ୍ରୀମନ୍ଦିରରେ ଅଧିଷ୍ଠିତ କରାଇଥିଲେ ।

ଏତେବେଳ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଶ୍ରୀପୁରୁଷୋତ୍ତମ ହିଁ ପାଷାଣ ବିଗ୍ରହରେ ଉପାସିତ ହେଉଥିଲେ ଓ ବିଭିନ୍ନ ନରପତିମାନେ ପୁରୁଷୋତ୍ତମଙ୍କ ପୂଜା ଉପାସନା ନିମନ୍ତେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଯେତେବେଳେ ଧନଧାନ୍ୟ ମଣ୍ଡିତ ପୁରୁଷୋତ୍ତମଙ୍କ ମନ୍ଦିର ଉପରେ ବିଧର୍ମୀ ଓ ଧନ ପିପାସୁ ମୋଗଲ ଶାସକମାନେ କ୍ରମାଗତ ଆକ୍ରମଣ ଜାରି ରଖିଲେ, ସେତେବେଳେ ତତ୍କାଳୀନ ମହାରାଜା ଭାନୁଦେବ ଦ୍ୱିତୀୟଙ୍କ ସମୟରେ ପାଷାଣ ବିଗ୍ରହଙ୍କ ସ୍ଥାନରେ ବିକଳ୍ପ ବିଗ୍ରହ ପ୍ରତିଷ୍ଠାର ଚିନ୍ତା ଉଦ୍ରେକ ହୋଇଥିଲା, ଯେହେତୁ ଶ୍ରୀମନ୍ଦିର ଲୁଣ୍ଠନ ପରିପ୍ରେକ୍ଷୀରେ ମୋଗଲମାନେ ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହକୁ ମଧ୍ୟ ଖଣ୍ଡ କିମ୍ବା ଧ୍ୱଂସ କରିବାକୁ ପ୍ରୟାସୀ ହୋଇଥିଲେ । ଅଧିକନ୍ତୁ, ମୋଗଲମାନଙ୍କ ଆକ୍ରମଣ ସମୟରେ ପାଷାଣ ବିଗ୍ରହୀ ପୁରୁଷୋତ୍ତମଙ୍କୁ ଅନ୍ୟତ୍ର ସ୍ଥାନାନ୍ତର କରିବା ସହଜସାଧ୍ୟ ତଥା ଶାସ୍ତ୍ରାନୁମୋଦିତ ନଥିବାରୁ ଏଥିର ବିକଳ୍ପ ଚିନ୍ତା ଓ ବ୍ୟବସ୍ଥା ଅପରିହାର୍ଯ୍ୟ ହୋଇପଡ଼ିଥିଲା । ୧୩୦୮ ଖ୍ରୀ:ରେ ଭାନୁଦେବ ଦ୍ୱିତୀୟ ପଣ୍ଡିତମାନଙ୍କ ସହ ବିଚାର ବିମର୍ଷ କରି ଶ୍ରୀମନ୍ଦିରରେ ଦାରୁବିଗ୍ରହରେ ପ୍ରତିଷ୍ଠା କଲେ ପୁରୁଷୋତ୍ତମ ତ୍ରୟୀଙ୍କୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ନାମରେ, ମୋଗଲ ଗୋଳରୁ ଶ୍ରୀପୁରୁଷୋତ୍ତମଙ୍କ ସୁରକ୍ଷା ନିମନ୍ତେ ।

ଏହି ଐତିହାସିକ ତଥ୍ୟ ସହ ପୌରାଣିକ ବର୍ଣ୍ଣନାର କୌଣସି ସାମଞ୍ଜସ୍ୟ ପରିଦୃଷ୍ଟ ହୁଏ ନାହିଁ । କିନ୍ତୁ ପୌରାଣିକ ମତ ଅନୁଯାୟୀ ପୁରୁଷୋତ୍ତମ ଯେ ଦାରୁ ରୂପେ ଅବତୀର୍ଣ୍ଣ ହେଲେ, ଏହା ଏକ ଅଲିଖିତ କିମ୍ୱଦନ୍ତୀ ବୋଲି ବିଶ୍ୱାସ କରାଯାଇପାରେ । ତେବେ ବିଶ୍ୱାବସୁ ଶବର ଦ୍ୱାରା ପ୍ରଥମେ ନୀଳମାଧବ ପୂଜିତ ହେଉଥିବା ଓ ପରେ ସେ ଦାରୁବିଗ୍ରହାନ୍ୱିତ ହେବା ବର୍ଣ୍ଣନା କେବଳ ଦୈବୀ ଚମତ୍କାରିତା ପ୍ରତିଷ୍ଠା ନିମନ୍ତେ ଅଭିପ୍ରେତ ବୋଲି କୁହାଯାଇପାରେ । ବାସ୍ତବରେ ଆର୍ଯ୍ୟଚିନ୍ତା ଓ ଚେତନା ପ୍ରସୂତ ଅମୂର୍ତ୍ତି ଉପାସନାକୁ ଗୁରୁତ୍ୱ ପ୍ରଦାନ କରିବା ପାଇଁ ପୁରୁଷୋତ୍ତମ ନୀଳମାଧବ ରହସ୍ୟଜନକ ଭାବରେ ଦାରୁମୂର୍ତ୍ତିରେ ରୂପାୟିତ ହେଲେ ବୋଲି ଏକ ଧାର୍ମିକ କିମ୍ୱଦନ୍ତୀ ସୃଷ୍ଟି କରାଯାଇଥିବା ଅଧିକ ଯୌକ୍ତିକ ମନେ ହୁଏ ।

ବୈଦିକ ଆର୍ଯ୍ୟ ଋଷିମାନେ ବେଦ ପ୍ରଣୟନର କର୍ତ୍ତା ଥିଲେ ଏବଂ ମୂର୍ତ୍ତି ପୂଜାର ପରିପନ୍ଥୀ ଥିଲେ । ଆର୍ଯ୍ୟମାନଙ୍କ ଆଗମନ ଓ ବେଦ ରଚନା ପୂର୍ବରୁ ଭାରତ ଭୂଖଣ୍ଡରେ ଯେଉଁ ଉପାସନା ରୀତି ପ୍ରଚଳିତ ଥିଲା ତାହା ଥିଲା ଶୂନ୍ୟ ଦେବତାଙ୍କ ପ୍ରତୀକାତ୍ମକ ଉପାସନା ।





ଅର୍ଥାତ୍ ଆର୍ଯ୍ୟୋତ୍ତର ଅଣଆର୍ଯ୍ୟମାନେ (ଏମାନଙ୍କୁ ଅନାର୍ଯ୍ୟ କୁହାଯାଇଛି) ଶୂନ୍ୟ ପୁରୁଷଙ୍କଠାରୁ ସମସ୍ତ ବସ୍ତୁ ସୃଷ୍ଟି ବୋଲି ଜାଣି ସେହି ଅଦୃଶ୍ୟ ଶୂନ୍ୟ ଦେବତାଙ୍କୁ ବୃକ୍ଷର ପ୍ରତୀକ ମଧ୍ୟରେ ଉପାସନା କରୁଥିଲେ । ବ୍ରହ୍ମାଣ୍ଡ ଏକ ବିଶାଳବୃକ୍ଷ ଏବଂ ଏହା ଶୂନ୍ୟ ପୁରୁଷଙ୍କ ଦ୍ୱାରା ବିସ୍ତାରିତ ହୋଇଛି - ଏହି ଜ୍ଞାନରେ ବୃକ୍ଷର ପ୍ରତୀକାତ୍ମକ ଉପାସନା ଥିଲା ବ୍ରହ୍ମାଣ୍ଡନାଥ ଶୂନ୍ୟ ପୁରୁଷଙ୍କ ଉପାସନା । ସମାନ୍ତରାଳ ଭାବରେ ସେତେବେଳେ ଅଣଆର୍ଯ୍ୟଙ୍କ ବୃକ୍ଷ ଉପାସନା ସହ ଆର୍ଯ୍ୟମାନଙ୍କ ବୈଦିକ ପ୍ରାର୍ଥନା, ଯଜ୍ଞ ଉପାସନା ପଦ୍ଧତି ମଧ୍ୟ ପ୍ରଚଳିତ ରହିଥିଲା । ଅଣଆର୍ଯ୍ୟମାନଙ୍କ ବୃକ୍ଷପୂଜା ସଗୁଣ ଉପାସନା ହୋଇଥିବାରୁ ଏହାର ବିରୋଧ କରି ସେତେବେଳେ ଆର୍ଯ୍ୟଋଷିମାନେ ତୀର୍ଯ୍ୟକ ଦୃଷ୍ଟିରେ ଏହାର ନିନ୍ଦା ସୂଚକ ମନ୍ତବ୍ୟ ଉଲ୍ଲେଖ କରିଥିଲେ ଅଲକ୍ଷ୍ମୀ ସୂକ୍ତରେ - 'ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋପାରେ ଅପୁରୁଷମ୍, ତେନ ଲଭସୋ ଦୁର୍ହଣୋ, ଯାହି ଗଚ୍ଛ ପରସ୍ତରମ୍', ଅର୍ଥାତ୍ ସିନ୍ଧୁତଟରେ ଯେଉଁ ଦାରୁ ଭାସୁଛି, ତାହା ପୁରୁଷ ନୁହେଁ । ପୁରୁଷ ଅର୍ଥାତ୍ ଦେବତା ନ ହୋଇଥିବାରୁ ଏହା ଅପାଂକ୍ତେୟ । ଅଲକ୍ଷ୍ମୀ ଏହା ଉପରେ ବସି ପଳାୟନ କରୁ । ଏହାର ମର୍ମ ହେଲା, ଯେଉଁ ଦାରୁକୁ ସେତେବେଳେ ପୂଜା କରାଯାଉଥିଲା । ତାହା ଆର୍ଯ୍ୟ ସମର୍ଥିତ ଓ ବେଦ ସମ୍ମତ ନୁହେଁ, ତେଣୁ ଏହା ପରିହାର୍ଯ୍ୟ । ଆର୍ଯ୍ୟମତର ପ୍ରାଧାନ୍ୟ ପ୍ରତିଷ୍ଠା ପାଇଁ ଅଣଆର୍ଯ୍ୟଙ୍କ ବିଜ୍ଞାନଗର୍ଭା ପ୍ରତୀକାତ୍ମକ ଦାରୁପୂଜାକୁ ଗୌଣ ଓ ତିରସ୍କାର କରିବା ଉଦ୍ଦେଶ୍ୟରେ ନିନ୍ଦାସୂଚକ ଅଲକ୍ଷ୍ମୀ ସୂକ୍ତଟି ହେଉଛି ଆର୍ଯ୍ୟମାନଙ୍କର ବୈଦିକ ପ୍ରତିବାଦର ସ୍ୱର । ଏହାକୁ କିନ୍ତୁ ଆର୍ଯ୍ୟଗୋଷ୍ଠୀ ପରବର୍ତ୍ତୀ ସମୟରେ ସମର୍ଥନ କରି ଦାରୁ ଉପାସନାକୁ ଆପଣା ଚିନ୍ତା ଓ ଚେତନାରେ ଆପଣେଇବାକୁ ଅର୍ଥାନ୍ତର ସୃଷ୍ଟି କରିଥିଲେ, ଯାହା ଫଳରେ ଆଜି ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ନୀତି ଓ ଉପଚାର ମାଧ୍ୟମରେ ପୂଜା କରାଯାଉଛି ଆର୍ଯ୍ୟମାନଙ୍କ ଦ୍ୱାରା, ଆର୍ଯ୍ୟ ପ୍ରଯୋଜିତ ଉପାସନା ପଦ୍ଧତି ଦ୍ୱାରା ।

ଅଣଆର୍ଯ୍ୟମାନଙ୍କ ଜ୍ଞାନଗର୍ଭା ଚିନ୍ତା ପ୍ରସୂତ ଦାରୁ ଉପାସନା ବିଶେଷ ଭାବେ ସେତେବେଳେ ଉତ୍କଳ ଭୂଖଣ୍ଡରେ ପ୍ରଚଳିତ ଥିଲା, ଯେତେବେଳେ ପୁରୁଷୋତ୍ତମ ଉପାସନା ଆର୍ଯ୍ୟମାନେ ଅନୁଷ୍ଠାନ କରୁଥିଲେ ବେଦମନ୍ତ୍ରର ଉଚ୍ଚାରଣ ଓ ଯାଗଯଜ୍ଞ ମାଧ୍ୟମରେ । କିନ୍ତୁ ଦାରୁ ଉପାସନା ମୂଳରେ ଯେଉଁ ବ୍ରହ୍ମାଣ୍ଡ ପରିକଳ୍ପନା ନିହିତ ଓ ନିହିତ ମଧ୍ୟ ଶୂନ୍ୟପୁରୁଷଙ୍କ ପ୍ରତୀକାତ୍ମକ ବର୍ଣ୍ଣନା, ସେହି ଜ୍ଞାନତତ୍ତ୍ୱ ଆର୍ଯ୍ୟମାନଙ୍କ ଚିତ୍ତରେ କାଳକ୍ରମେ ମନ୍ଥନ ସୃଷ୍ଟି କରିଥିଲା । ଅଣଆର୍ଯ୍ୟଙ୍କ ବ୍ରହ୍ମାଣ୍ଡ ଚେତନା ସମ୍ବଳିତ ପ୍ରତୀକାତ୍ମକ ପୂଜାକୁ ସମୟର ବିବର୍ତ୍ତନରେ ଆର୍ଯ୍ୟମାନେ ସ୍ୱୀକାର କରି ତେଣୁ ପ୍ରଥମେ ପୁରୁଷୋତ୍ତମଙ୍କୁ ପାଷାଣ ବିଗ୍ରହରେ ପ୍ରତିଷ୍ଠା କରି ପରେ ଆପଦ ମୋଚନ ପାଇଁ ଦାରୁ ବିଗ୍ରହରେ ରୂପାୟିତ କରିଥିଲେ । ସଂସାର ଏକ ବୃକ୍ଷ ଏବଂ ବୃକ୍ଷର ବ୍ୟାପ୍ତି ପରି ଏହା ଶୂନ୍ୟ ପୁରୁଷଙ୍କଠାରୁ ବ୍ୟାପ୍ତ ହୋଇଥିବା ଚିନ୍ମୟ ଧ୍ୟାନ ଓ ଅଣଆର୍ଯ୍ୟଙ୍କ ଏହି ଧର୍ମଧାରଣା ଆର୍ଯ୍ୟବର୍ଗଙ୍କ ମତକୁ ପୂର୍ଣ୍ଣତଃ ପ୍ରଭାବିତ କରିଥିଲା । ଅଣଆର୍ଯ୍ୟମାନଙ୍କ ଦାରୁପୂଜାର ଦାର୍ଶନିକ ତତ୍ତ୍ୱ ଏହି କାରଣରୁ ଭାରତର ଅନ୍ୟ ଅଞ୍ଚଳମାନଙ୍କରେ ଚିନ୍ମୟ ଓ ମନନ ଯୋଗ୍ୟ ହୋଇଥିଲା ଏବଂ ପରବର୍ତ୍ତୀ ସମୟରେ ଆର୍ଯ୍ୟ ସମାଜ ଅଣଆର୍ଯ୍ୟଙ୍କ ଦେବତାଙ୍କୁ ପ୍ରାଧାନ୍ୟ ଦେଇ ତାଙ୍କୁ ଆତ୍ମସାତ କରିବାର ସଫଳ ପ୍ରୟାସ କରିଥିଲେ ।

ପୂର୍ବେ କୁହାଯାଇଛି, ଅଣଆର୍ଯ୍ୟମାନେ ଯେଉଁ ଦାରୁପୂଜା କରୁଥିଲେ, ତାହା ଥିଲା ଶୂନ୍ୟ ପୁରୁଷଙ୍କର ସାଙ୍କେତ ରୂପ । ଏହିଠାରେ ଓ ଏତିକିବେଳେ ଉତ୍କଳୀୟ ବୈଷ୍ଣବ ଧର୍ମର ଗୂଢ଼ତତ୍ତ୍ୱ ଅଙ୍କୁରିତ ହୋଇଥିଲା ଏହି ଦାରୁ ଉପାସନାର ପ୍ରଚଳିତ ଧାରା ମଧ୍ୟରେ । ଦାରୁରୂପୀ ଶୂନ୍ୟପୁରୁଷ ସବୁ ସୃଷ୍ଟ ବସ୍ତୁମାନଙ୍କର ଜୀବନ ଓ ବିକାଶର ହେତୁ ହୋଇଥିବାରୁ ମାନବ ଶରୀର ମଧ୍ୟରେ ଯେ ସେ ବିରାଜମାନ କରିଛନ୍ତି । ଏହି ବିଶ୍ୱାସ ଓ ପ୍ରତ୍ୟୟ ପ୍ରତିଷ୍ଠିତ ହୋଇ ଏହାକୁ ସ୍ୱାନୁଭବ କରିବାର ତୀବ୍ର ଜିଜ୍ଞାସା ଉଦ୍‌ଭବ ହୋଇଥିଲା ଉତ୍କଳୀୟ ଅଣଆର୍ଯ୍ୟମାନଙ୍କ ଚିନ୍ତା ଓ ଚେତନାରେ । ଏତିକିବେଳେ ନାଗ ଗୋଷ୍ଠୀଙ୍କ ତନ୍ତ୍ରୋକ୍ତ ଯୋଗ ସାଧନ ପ୍ରକ୍ରିୟା ତଥା ନାଥ ସମ୍ପ୍ରଦାୟର ପିଣ୍ଡିକ ସାଧନ ପଦ୍ଧତି ଜିଜ୍ଞାସୁ ଉତ୍କଳୀୟ ଅଣଆର୍ଯ୍ୟମାନଙ୍କୁ ପ୍ରଭାବିତ କରିଥିଲା । ଏହି ଯୋଗ ସାଧନ ଦ୍ୱାରା ସେମାନେ ଅନୁଭବ କରିଥିଲେ ଶୂନ୍ୟ ପୁରୁଷଙ୍କ ସୃଷ୍ଟି ବିଳାସର ଶୈଳୀକୁ ପ୍ରକୃତି ଓ ପୁରୁଷ ତତ୍ତ୍ୱ ମାଧ୍ୟମରେ ଏହି ପିଣ୍ଡି ମଧ୍ୟରେ । ଉତ୍କଳୀୟ ଅଣଆର୍ଯ୍ୟଙ୍କ ପିଣ୍ଡ ସାଧନତତ୍ତ୍ୱ ନାଥ ଧର୍ମଠାରୁ ସ୍ୱତନ୍ତ୍ର ଓ ସମ୍ପୂର୍ଣ୍ଣ ହୋଇଥିଲା । ନାଥ ଧର୍ମରେ ପିଣ୍ଡିକ ଯୋଗ ସାଧନ ଦ୍ୱାରା ସାଧକ ଜ୍ୟୋତି ଦର୍ଶନ ପର୍ଯ୍ୟନ୍ତ ଅଗ୍ରସର ହୋଇପାରିଥିବା ବେଳେ ଉତ୍କଳୀୟ ପିଣ୍ଡ ସାଧନ ମାର୍ଗରେ ସାଧକ ଜ୍ୟୋତିଷ୍ମାନ ପୁରୁଷଙ୍କୁ ସାକ୍ଷାତ ଦର୍ଶନର ଶ୍ରେଷ୍ଠ ସମ୍ପୂର୍ଣ୍ଣତା ଲାଭ କରିଥିଲେ । ଏହି ସାଧନଶୈଳୀ ପିଣ୍ଡ ସାଧନର ରୂପ ପରିଗ୍ରହ କରି ବୈଦିକ ବିଚାର ତଥା ସମକାଳୀନ ଅନ୍ୟ ସାଧନ ପ୍ରକ୍ରିୟାଘରୁ ସ୍ୱତନ୍ତ୍ର ରହି ଉତ୍କଳୀୟ ବୈଷ୍ଣବ ଧର୍ମର ଶୁଭ ଅଙ୍କୁରୋଦଗମ କରିଥିଲା । ପରବର୍ତ୍ତୀ ସମୟରେ ଦ୍ୱାଦଶ ଶତାବ୍ଦୀରେ ପ୍ରସିଦ୍ଧ ଭକ୍ତକବି ଜୟଦେବ ତାଙ୍କ ରଚିତ ଗୀତଗୋବିନ୍ଦରେ ରାଧାକୃଷ୍ଣଙ୍କର ଯେଉଁ ପ୍ରଣୟ ମାହାତ୍ମ୍ୟର ଅବତାରଣା କରିଥିଲେ, ତାହା ଥିଲା ଉତ୍କଳୀୟ ବୈଷ୍ଣବ ଧର୍ମର ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଅନ୍ତର୍ଗତ ଜୀବ ପରମଙ୍କ ଶୃଙ୍ଗାର ରସ ଅର୍ଥାତ୍ ସୃଷ୍ଟି ରହସ୍ୟ । ଏହି ପିଣ୍ଡ ସାଧନ ଉତ୍କଳୀୟ ବୈଷ୍ଣବ ସାଧକମାନଙ୍କ ଦ୍ୱାରା ପ୍ରବହମାନ ରୀତିରେ ପାଳିତ ହୋଇ ଆସୁଥିଲାବେଳେ ସତ୍ୟ ସିଦ୍ଧାନ୍ତ ଭାବେ ପ୍ରକୀର୍ତ୍ତିତ ଓ ପ୍ରଚାରିତ ହେଲା ଲୋକାଳୟରେ ଉତ୍କଳୀୟ ପଞ୍ଚସଖାଙ୍କ ଦ୍ୱାରା ଅଧିଷ୍ଠିତ ରାଷ୍ଟ୍ର ଦେବତା ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି । ରାଜାନୁଗ୍ରହ ଅଭାବରୁ ସେତେବେଳେ ଉତ୍କଳୀୟ ବୈଷ୍ଣବ ଧର୍ମଧାରା କ୍ଷୀଣସ୍ରୋତା ହୋଇପଡ଼ି ଦୀର୍ଘଦିନ ଧରି ପରାକୃତ ଅବସ୍ଥାରେ ରହିବା ପରେ ଶ୍ରୀଜଗନ୍ନାଥଙ୍କ ସାକ୍ଷାତ ଗୁରୁ ଅବତାର ଠାକୁର ଶ୍ରୀଶ୍ରୀ ଅଭିରାମ ପରମହଂସ ଆବିର୍ଭୂତ ହୋଇ ଉତ୍କଳୀୟ ବୈଷ୍ଣବ ଧର୍ମର ଦାର୍ଶନିକ ବିଭବକୁ ସିଦ୍ଧାନ୍ତ ଦର୍ପଣ

ରୂପେ ପ୍ରତିଷ୍ଠା କରି ଏହାକୁ ସତ୍ୟ ସନାତନ ଧର୍ମ ରୂପେ ପ୍ରଦର୍ଶିତ ଓ ନିଦର୍ଶିତ କରିଥିଲେ, ଏଥିରେ ମହାର୍ଘ୍ୟ ସମର୍ପଣ ଯୋଗର ସମ୍ପୁଟ କରି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଅଣଆର୍ଯ୍ୟମାନଙ୍କର ଶୂନ୍ୟପୁରୁଷଙ୍କ ଯୌଗିକ ଉପାସନା ପଦ୍ଧତିରେ ସମକାଳୀନ ନାଗ ସମ୍ପ୍ରଦାୟର ତନ୍ତ୍ରମତ ଗୃହୀତ ହୋଇଥିଲା । ତନ୍ତ୍ର ସାଧନରେ ଶିବ ଓ ଶିବା ବା ଭୈରବ ଓ ଭୈରବୀଙ୍କ ଉପାସନା ପ୍ରଚଳିତ ଥିବାରୁ ଶୂନ୍ୟ ପୁରୁଷ ଉପାସନା ପ୍ରକ୍ରିୟାରେ ଉତ୍କଳୀୟ ଅଣଆର୍ଯ୍ୟମାନଙ୍କ ସାଧନ ଶୈଳୀରେ ଶୂନ୍ୟପୁରୁଷ ଭୈରବ ହୋଇଥିଲେ ଶ୍ରୀକୃଷ୍ଣ ଓ ଭୈରବୀ ହୋଇଥିଲେ ଶ୍ରୀରାଧା । ଏହି ଉପାସନା ପଦ୍ଧତିକୁ ଅନ୍ତରଙ୍ଗ ସାଧନରେ ଅନୁଷ୍ଠାନ କରି ଦାରୁପୁରୁଷ ଶ୍ରୀକୃଷ୍ଣ ଓ ତଦୀୟ ଶକ୍ତି ରୂପିଣୀ ଶ୍ରୀରାଧାଙ୍କୁ ପିଣ୍ଡ ମଧ୍ୟରେ ଯୌଗିକ ପ୍ରକ୍ରିୟାରେ ଏକକ ଉପାସନା କରି ଯେଉଁ ଧର୍ମ ପ୍ରତିଷ୍ଠିତ ହେଲା, ତାହା ହିଁ ହେଉଛି ଉତ୍କଳୀୟ ବୈଷ୍ଣବ ଧର୍ମ ।

ପଞ୍ଚସଖାଙ୍କ ବହୁପୂର୍ବରୁ ଉତ୍କଳୀୟ ବୈଷ୍ଣବଧର୍ମ ସାଧନ ପ୍ରକ୍ରିୟାର ଭୂମିକା ଗ୍ରହଣ କରିସାରିଥିଲା । ସର୍ବପ୍ରଥମେ ସୂଚନାତ୍ମକ ଭାବେ କବି ଜୟଦେବ ତାଙ୍କ କୃତ ଗୀତଗୋବିନ୍ଦରେ ଏହାର ଉଲ୍ଲେଖ କରିଥିଲେ । ଜୟଦେବଙ୍କ ରଚିତ ଦଶାବତାର ସ୍ତୋତ୍ରରେ ମାତୃଗର୍ଭସ୍ଥ ଜୀବର ଦଶପ୍ରକାର ଆକୃତି ହିଁ ଏହାର ତାତ୍ତ୍ୱିକ ପ୍ରମାଣ ଅଟେ । ଗୃହସ୍ଥ ସାଧନ ରୂପେ ଉତ୍କଳୀୟ ବୈଷ୍ଣବ ଧର୍ମର ପ୍ରବାହ ଆର୍ଯ୍ୟୋତ୍ତର ଉତ୍କଳୀୟ ସାଧକମାନଙ୍କ ମଧ୍ୟରେ ପ୍ରଚଳିତ ରହିଥିଲା ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ । ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ବୈଷ୍ଣବ ଧର୍ମର ପଞ୍ଚସଖା ପ୍ରଥମେ ଏହି ଧର୍ମର ଉଦ୍‌ଘୋଷଣା କଲେ ପ୍ରଚାର ଓ ପ୍ରକାଶନ ମାଧ୍ୟମରେ ଏବଂ ସେତିକିବେଳେ ଲୋକାଳୟରେ ଏହି ଧର୍ମର ତାତ୍ପର୍ଯ୍ୟ ଓ ଦାର୍ଶନିକ ତତ୍ତ୍ୱ ଜନମାନସକୁ ଧର୍ମାଲୋକରେ ଉଦ୍‌ଭାସିତ କରିଥିଲା ।

ପୂର୍ବେ ଶ୍ରୀପୁରୁଷୋତ୍ତମ ପାଷାଣ ବିଗ୍ରହରୁ ଦାରୁବିଗ୍ରହ ପରିଗ୍ରହ ଭାନୁଦେବ ଦ୍ୱିତୀୟଙ୍କ ସମୟରେ କରିଥିବା ବିଷୟ ବର୍ଣ୍ଣିତ ହୋଇଛି । ମୋଗଲ ଗୋଳ ହେବାରୁ ପାଷାଣମୂର୍ତ୍ତିଙ୍କୁ ଅନ୍ୟତ୍ର ସ୍ଥାନାନ୍ତର କରିବା କଷ୍ଟସାଧ୍ୟ ବ୍ୟାପାର ଥିବାରୁ ଏବଂ ସ୍ଥାନାନ୍ତର କ୍ଷେତ୍ରରେ ଏହା ଶାସ୍ତ୍ରୀୟ ନିୟମ ଅନୁଯାୟୀ ଅବଧି ହୋଇଥିବାରୁ ସେତେବେଳେ ରାଜା ଏହାର ବିକଳ୍ପ ବ୍ୟବସ୍ଥା କଥା ଚିନ୍ତା କରିଥିଲେ । ଏତେବେଳକୁ ସମାନ୍ତରାଳ ଭାବେ ଦାରୁପୂଜା ଅଣଆର୍ଯ୍ୟ ଗୋଷ୍ଠୀ ଅବ୍ୟାହତ ରଖିଥିବା ପରିପ୍ରେକ୍ଷୀରେ ଏହି ଦାରୁରେ ଶ୍ରୀପୁରୁଷୋତ୍ତମ ବିଗ୍ରହାନ୍ୱିତ ହେବା ବିଷୟ ରାଜା ତଥା ଅନ୍ୟ ଆର୍ଯ୍ୟ ପୂଜକମାନଙ୍କ ଚିନ୍ତାରେ ପ୍ରବେଶ କରିଥିଲା । ଆର୍ଯ୍ୟ ଗୋଷ୍ଠୀ ତଥା ରାଜା ଅଣଆର୍ଯ୍ୟମାନଙ୍କ ଅନ୍ତରଙ୍ଗ ସାଧନର ମହତ୍ତ୍ୱ ତଥା ଦାରୁ ଉପାସନାର ତାତ୍ତ୍ୱିକ ପରିଭାଷାକୁ ହୃଦୟଙ୍ଗମ କରି ପୁରୁଷୋତ୍ତମଙ୍କ ପାଷାଣ ରୂପକୁ ଦାରୁ ବିଗ୍ରହରେ ରୂପାୟିତ କରିବା ପ୍ରସଙ୍ଗରେ ସେହି ଅଣଆର୍ଯ୍ୟ ଉପାସକମାନଙ୍କ ସହଯୋଗ ଓ ପରାମର୍ଶ ସେତେବେଳେ ଲୋଡ଼ିଥିଲେ ଏବଂ ଏହି ସମୟରେ ଉଭୟ ଗୋଷ୍ଠୀଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଓ ସୌଭାଗ୍ୟ ପ୍ରତିଷ୍ଠିତ ହୋଇଥିଲା । ବିକଳ୍ପ ବିଗ୍ରହ ନିର୍ମାଣ ପ୍ରସଙ୍ଗରେ ଦାରୁ ବିଗ୍ରହରେ ପୁରୁଷୋତ୍ତମଙ୍କୁ ରୂପାୟିତ କରି ଶ୍ରୀଜଗନ୍ନାଥ ନାମରେ ନାମିତ କରିବା ଓ ତାଙ୍କର ବିଗ୍ରହ ଶୈଳୀରେ ଉତ୍କଳୀୟ ବୈଷ୍ଣବ ଧର୍ମର ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଆଧାରିତ ପରମାତ୍ମା ସଂକେତକୁ ଉତ୍କୀର୍ଣ୍ଣ କରିବାର କଳା କୌଶଳ ଉତ୍କଳୀୟ ବୈଷ୍ଣବ ଶିଳ୍ପୀମାନେ ହିଁ ପ୍ରଥମେ ସମ୍ପାଦନ କରିଥିଲେ । ଏଣୁ ଶ୍ରୀଜଗନ୍ନାଥ ବିଗ୍ରହର ବିଚିତ୍ର ନିର୍ମାଣ ଶୈଳୀ ଅଣଆର୍ଯ୍ୟଙ୍କ ଅକୁଶଳ ଚିନ୍ତାର ପରିପ୍ରକାଶ ନୁହେଁ, ମର୍ମତଃ ତାହା ବ୍ରହ୍ମାଣ୍ଡପତିଙ୍କ ସୃଷ୍ଟି ରଚନାର ଯାନ୍ତ୍ରିକ ବ୍ୟଞ୍ଜନା ତଥା ଉତ୍କଳୀୟ ବୈଷ୍ଣବ ଧର୍ମର ଦାର୍ଶନିକ ଚିନ୍ତାଧାରା ।

ଉତ୍କଳୀୟ ପଞ୍ଚସଖା ଶ୍ରୀଜଗନ୍ନାଥଙ୍କୁ ବ୍ରହ୍ମ ଏକାକ୍ଷର ଭାବେ ନିରୂପଣ କରି ଅନ୍ତରଙ୍ଗ ଭକ୍ତିରେ ଉପାସନା କରୁଥିଲେ । ବେଦର ବୈଦିକ ଉପାସନାଠାରୁ ସ୍ୱତନ୍ତ୍ର ରହି ଏବଂ ସମକାଳୀନ ଗୌଡ଼ୀୟ ବୈଷ୍ଣବ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥିଲେ ପିଣ୍ଡିକ ଉପାସନା ମାଧ୍ୟମରେ ଶକ୍ତିବେଷ୍ଟିତ ଶକ୍ତିମାନ ରୂପରେ । ଅର୍ଥାତ୍ ପରମପୁରୁଷ ଶ୍ରୀକୃଷ୍ଣ ଓ ତାଙ୍କ ହ୍ଲାଦିନୀଶକ୍ତି ଶ୍ରୀରାଧାଙ୍କ ମିଳିତ ତନୁର ବର୍ଣ୍ଣବିଭା ଓ ନିର୍ମାଣ ଚାତୁରୀର ଏକକ ବିଗ୍ରହ ହେଉଛନ୍ତି ଶ୍ରୀଜଗନ୍ନାଥ - ଏହି ତତ୍ତ୍ୱକୁ ଉତ୍କଳୀୟ ବୈଷ୍ଣବ ସଖାମାନେ ସାକ୍ଷାତ ଅନୁଭବ କରି ଓ ସାଧନ ଦ୍ୱାରା ଉପଲବ୍ଧି କରି ଏହାର ପ୍ରଚାର ଆରମ୍ଭ କରିଥିଲେ ଏବଂ ପ୍ରାମାଣିକ ସ୍ୱାକ୍ଷର ଅଙ୍କନ କରି ବହୁଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ଶ୍ରୀଜଗନ୍ନାଥ ଯେ ଶୂନ୍ୟପୁରୁଷଙ୍କର ତାତ୍ତ୍ୱିକ ବ୍ୟଞ୍ଜନା ଅର୍ଥାତ୍ ଦୃଶ୍ୟମାନ ଓ ଅନୁଭବ୍ୟ ପରମାତ୍ମାଙ୍କ ସଂକେତ ରୂପ, ଏହା ହିଁ ମୁଖ୍ୟତଃ ବର୍ଣ୍ଣିତ ହୋଇଛି ଉତ୍କଳୀୟ ବୈଷ୍ଣବ ପଞ୍ଚସଖାମାନଙ୍କ ରଚନାବଳୀରେ ।

ତେବେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ କିପରି ଚିନ୍ମୟ ସ୍ଥିତିର ସ୍ଥୂଳାବତରଣ ଭାବେ ନିର୍ମିତ ହୋଇଛି ଅର୍ଥାତ୍ ଚିନ୍ମୟ ସ୍ଥିତିରୁ କିପରି ବ୍ରହ୍ମପୁରୁଷ ସଗୁଣ ସାକାର ବ୍ରହ୍ମାଣ୍ଡ ରଚନା କରନ୍ତି, ଏହାର ଆଧ୍ୟାତ୍ମ ତତ୍ତ୍ୱ ସୂଚନାତ୍ମକ ଭାବେ ପଞ୍ଚସଖାଙ୍କ ସାହିତ୍ୟରେ ପ୍ରକାଶିତ ହୋଇଛି । କିନ୍ତୁ ଉତ୍କଳୀୟ ବୈଷ୍ଣବ ଧର୍ମର ସନାତନ ତତ୍ତ୍ୱ ବିଭବକୁ ମାନବସମାଜ ମଧ୍ୟରେ ବିତରଣ କରିବା ପାଇଁ ପରିଶେଷରେ ସ୍ୱୟଂ ଶ୍ରୀଜଗନ୍ନାଥ ଗୁରୁସଭା ପରିଗ୍ରହ କରି ପିଣ୍ଡ ବ୍ରହ୍ମାଣ୍ଡ ବା ଜୀବ ପରମ ତତ୍ତ୍ୱର ପ୍ରାମାଣିକ ପ୍ରଚାର କରିଥିଲେ ଲୋକାଳୟରେ ଏବଂ ଏହି ଅବସରରେ ଶ୍ରୀଜଗନ୍ନାଥ ଯେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ଯାନ୍ତ୍ରିକ ବ୍ୟଞ୍ଜନା, ଏହାର ପ୍ରତ୍ୟକ୍ଷ ନିଦର୍ଶନ ପ୍ରଦାନ କରିଥିଲେ ତାଙ୍କ ରଚିତ ବହୁ ରଚନାମାନଙ୍କରେ । ଶ୍ରୀଜଗନ୍ନାଥଙ୍କ ଗୁରୁ ଅବତାର ଓ ଉତ୍କଳୀୟ ବୈଷ୍ଣବ ଧର୍ମର ସେହି ପ୍ରମାଣପୁରୁଷ ହେଉଛନ୍ତି ଜଗତଗୁରୁ ଠାକୁର ଶ୍ରୀଶ୍ରୀ ଅଭିରାମ ପରମହଂସ ।

ଶ୍ରୀଜଗନ୍ନାଥଙ୍କ ଗୁରୁ ଅବତାର ପରିଗ୍ରହ କରି ଠାକୁର ଶ୍ରୀଶ୍ରୀ ଅଭିରାମ ପରମହଂସ ଉତ୍କଳୀୟ ବୈଷ୍ଣବ ଧର୍ମର ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱକୁ ସମଗ୍ର ମାନବ ସମାଜ ମଧ୍ୟରେ ଉନ୍ମୁକ୍ତ ଓ ବିତରଣ କରିବା ସଂଗେସଂଗେ ଉତ୍କଳୀୟ ବୈଷ୍ଣବ ଧର୍ମର ତତ୍ତ୍ୱ ଯେ ସାକାର ରୂପ





ପରିଗ୍ରହ କରିଛି ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ, ଏହାର ପ୍ରାମାଣିକ ତତ୍ତ୍ୱ ମଧ୍ୟ ପ୍ରକାଶ କରିଛନ୍ତି ମାନବ ସମାଜର ଅବବୋଧ ପାଇଁ । ଚିନ୍ମୟ ସ୍ଥିତିରେ ବିନ୍ଦୁ ବା ପିଣ୍ଡରୁ, କିପରି ବ୍ରହ୍ମାଣ୍ଡ ସୃଷ୍ଟି ହୋଇ କାଳର ବିବର୍ତ୍ତନରେ ସାକାର ରୂପ ଧାରଣ କରେ, ତାହାର ଯାନ୍ତ୍ରିକ ପ୍ରତୀକ ଅଙ୍କିତ ହୋଇଛି ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ଅତି ମାର୍ମିକ ଢଙ୍ଗରେ । ଏହାର ତତ୍ତ୍ୱକୁ ପ୍ରତିପାଦନ କରି କୁହାଯାଇଛି ଯେ ପ୍ରଥମେ ଶୂନ୍ୟପୁରୁଷ ବ୍ରହ୍ମ ହିଁ ଥିଲେ ଏବଂ ଶୂନ୍ୟ ଶୂନ୍ୟ ମହାଶୂନ୍ୟ ହିଁ ଥିଲେ ଅନନ୍ତ ଅଖଣ୍ଡ ଭାବେ ପରିବ୍ୟାପ୍ତ ହୋଇ । ଏହି ନିର୍ଗୁଣ ବ୍ରହ୍ମ ହେଉଛନ୍ତି ଅଣାକାର । ଅଣାକାର ବ୍ରହ୍ମ ନିର୍ଗୁଣ ଥିଲେ ଅର୍ଥାତ୍ ଗୁଣାତୀତ ଥିଲେ । ଗୁଣ ସମୂହ ଓ ବ୍ରହ୍ମାଣ୍ଡ ବିଳାସ ତାଙ୍କ ମଧ୍ୟରେ ସୁପ୍ତ ହୋଇ ରହିଥିଲା, ଯେପରି କ୍ଷୁଦ୍ର ବୀଜ ମଧ୍ୟରେ ବିଶାଳକାୟ ବୃକ୍ଷର ଜୀବନିକା ସୁପ୍ତ ହୋଇ ରହିଥାଏ । ଗୁଣାତୀତ ବ୍ରହ୍ମ ସୃଷ୍ଟି କରିବା ବାଞ୍ଛା କରିବାରୁ ତାଙ୍କରି ଇଚ୍ଛାରୁ ସୃଷ୍ଟି ହେଲା ବ୍ରହ୍ମାଣ୍ଡର ଆଦ୍ୟ ଉପାଦାନ ବିନ୍ଦୁ । ଏହି ବିନ୍ଦୁ ପ୍ରଥମେ ନିରାକାର ଥାଇ କାଳପ୍ରଭାବରେ ଏହା ସଂପ୍ରସାରିତ ହୋଇ 'ଅ'କାର ଆକୃତି ଗ୍ରହଣ କଲା । ଅର୍ଥାତ୍ ବିନ୍ଦୁ ସହ ପ୍ରକୃତି ସଂଯୁକ୍ତ ହେବାରୁ ମିଳିତ ରୂପର ଆକୃତି ହେଲା 'ଅ' କାର । ବିନ୍ଦୁ ଓ ପ୍ରକୃତି ଏକତ୍ର ହୋଇ ସୃଷ୍ଟିକ୍ରିୟା ସମ୍ପାଦନ ନିମନ୍ତେ ବ୍ରହ୍ମପୁରୁଷ ପ୍ରେମର ସଂଯୋଜନା କଲେ ଅର୍ଥାତ୍ ବିନ୍ଦୁ ଓ 'ଅ'କାର ସହ ସଂଯୁକ୍ତ ହେଲା ପ୍ରେମଦଣ୍ଡ । ବିନ୍ଦୁ+ଅ'କାର+ପ୍ରେମଦଣ୍ଡ ଏକକ ଭାବେ ଉଭା ହେଲେ 'ଅ'କାର ରୂପ ପରିଗ୍ରହ କରି । ଅଣାକ୍ଷର ଶୂନ୍ୟ ପୁରୁଷ ସ୍ୱୟଂକ୍ରିୟ ଭାବେ 'ଅ' ଅର୍ଥାତ୍ ଅକ୍ଷର ହେଲେ । ଏହି 'ଅ' ହିଁ ମୂଳପିଣ୍ଡ ଅଟେ । ଚିନ୍ମୟ ସ୍ଥିତିରେ ଯେଉଁ 'ଅ' କାରରେ ଅକ୍ଷର ପୁରୁଷ ରୂପାୟିତ ହେଲେ, ଏହା ହେଲା ବ୍ରହ୍ମାଣ୍ଡର କାରଣ ରୂପ । କାଳ ପ୍ରଭାବରେ 'ଅ'କାର (ବିନ୍ଦୁ + ପ୍ରକୃତି ବା ଆଦିଶକ୍ତି)ରୁ ପ୍ରଥମେ ଆକାଶ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ ଓ ଜଳରୁ ପୃଥିବୀ ପ୍ରଭୃତି ଭୂତମାନେ ସୃଷ୍ଟି ହେଲେ । ଏହି ପଞ୍ଚଭୂତ ପ୍ରଥମେ ଅପଞ୍ଚୀକୃତ ଥିଲେ ଏବଂ ବ୍ରହ୍ମପୁରୁଷଙ୍କ ସୃଷ୍ଟି ପ୍ରକ୍ରିୟାରେ ଏମାନେ ପଞ୍ଚୀକୃତ ହୋଇ ସ୍ଥୂଳ ଭାବରେ ବ୍ରହ୍ମାଣ୍ଡ ସୃଷ୍ଟି ହେଲା । ଜୀବ ସୃଷ୍ଟି କରିବା ନିମନ୍ତେ ପରମପୁରୁଷ ଲୀଳାଇଚ୍ଛା କରି ପଞ୍ଚଭୂତ ସଂଯୋଗରେ ବିଭିନ୍ନ ଘଟ ନିର୍ମାଣ କଲେ ଓ ସ୍ୱୀୟ ଚୈତନ୍ୟାଂଶକୁ ବିଭିନ୍ନ ଘଟ ମଧ୍ୟରେ ଜୀବାତ୍ମା ରୂପେ ସ୍ଥାପନ କରି ସ୍ୱୟଂ ଅଖଣ୍ଡ ଚୈତନ୍ୟ ଭାବେ ଘଟମାନଙ୍କରେ ଜୀବନ ସ୍ୱରୂପ ବିଦ୍ୟମାନ ରହିଲେ । ପରମ ପୁରୁଷଙ୍କ ବାଞ୍ଛାରୁ ଏହି ସୃଷ୍ଟି ବିଳାସ ସୃଷ୍ଟି ହେଲା ଏବଂ ଜୀବଜଗତ ଓ ଜୀବ ସୃଷ୍ଟି କରି ଏଥିରେ ଲୀଳାବିଳାସ କରିବା ପାଇଁ ବ୍ରହ୍ମାଣ୍ଡ ମଧ୍ୟରେ ପରିବ୍ୟାପ୍ତ ହୋଇ ରହିଲେ ସେହି ସୃଷ୍ଟିକର୍ତ୍ତା ପରମ ପୁରୁଷ ।

ଶ୍ରୀଜଗନ୍ନାଥଙ୍କ ବିଗ୍ରହ ନିର୍ମାଣ କଲା ଉତ୍କଳୀୟ ବୈଷ୍ଣବ ଧର୍ମର ତାତ୍ତ୍ୱିକ ବ୍ୟଞ୍ଜନାକୁ ଉତ୍କୀର୍ଣ୍ଣ କରି ନିର୍ମିତ ହୋଇଛି ଏବଂ ବିନ୍ଦୁ ଓ ଆଦିଶକ୍ତି (ପ୍ରକୃତି)ଙ୍କ ମିଥୁନ ରୂପ 'ଅ'କାର ହିଁ ଶ୍ରୀଜଗନ୍ନାଥ ଅଟନ୍ତି । ଗୁଣାତୀତ ପରମପୁରୁଷ ଗୁଣାତ୍ମକ ହୋଇ ବ୍ରହ୍ମାଣ୍ଡ ରଚନା ନିମନ୍ତେ ଯେଉଁ ରୂପାକୃତିରେ ଚିନ୍ମୟ ସ୍ଥିତିରେ ଶୋଭିତ ହୁଅନ୍ତି, ସେହି ରୂପର ସନ୍ଧାନ ପାଇଥିଲେ ଉତ୍କଳୀୟ ବୈଷ୍ଣବ ସାଧକ ଏବଂ ତାଙ୍କରି ତାତ୍ତ୍ୱିକ ଦିଗ୍‌ଦର୍ଶନରେ ନିର୍ମିତ ହୋଇଛି ପିଣ୍ଡ ବ୍ରହ୍ମାଣ୍ଡ ବିଜ୍ଞାନର ଯାନ୍ତ୍ରିକ ନିଦର୍ଶନ - ଶ୍ରୀଜଗନ୍ନାଥଙ୍କ ବିଗ୍ରହ । ପ୍ରାଚୀନ କାଳରୁ ଶୂନ୍ୟପୁରୁଷଙ୍କ କଳ୍ପନା କରି ଯେଉଁ ବୃକ୍ଷ ସଂସାର ବୃକ୍ଷର ପ୍ରତୀକଭାବେ ଉପାସିତ ହୋଇ ଆସୁଥିଲେ, ସେହି ଶୂନ୍ୟ ପୁରୁଷ ଚିନ୍ମୟ ବିଜ୍ଞାନରେ ସନ୍ଦର୍ଶିତ ଓ ସ୍ୱାନୁଭୂତ ହୋଇ ରୂପାୟିତ ହେଲେ ଦାରୁ ଉପାଦାନରେ ଓ ପିଣ୍ଡ ବ୍ରହ୍ମାଣ୍ଡ ସୃଷ୍ଟି ଶୈଳୀରେ । ଏହା ହେଉଛି ଉତ୍କଳୀୟ ବୈଷ୍ଣବ ଧର୍ମର ଚିନ୍ମୟ ବିଜ୍ଞାନର ଅଭିବ୍ୟକ୍ତି ଓ ସନାତନ ଧର୍ମତତ୍ତ୍ୱର ଅନନ୍ୟ ପ୍ରତିରୂପ । ଏହି ଚିନ୍ମୟ ବିଜ୍ଞାନକୁ ବଜ୍ର ନିର୍ଘୋଷ କଣ୍ଠରେ ପରିଶେଷରେ ଉଦ୍‌ଘୋଷ କରିଛନ୍ତି ଶ୍ରୀଜଗନ୍ନାଥଙ୍କ ଗୁରୁଅବତାର ଠାକୁର ଶ୍ରୀଶ୍ରୀ ଅଭିରାମ ପରମହଂସ, ଜଗତଜନଙ୍କର ଅବବୋଧ ଓ ଦିଗ୍‌ଦର୍ଶନ ପାଇଁ -

| | |
|---|---|
| ଯେ ଷୋଳକଳା ଜଗନ୍ନାଥ- | ନାମଟି ତାହାର ଅବ୍ୟକ୍ତ |
| ଅଦୃଷ୍ଟି ଅଶ୍ରୁତି ଅଲକ୍ଷ୍ୟ | ଅଚିନ୍ତ୍ୟ ଅରୂପ ପ୍ରତ୍ୟକ୍ଷ |
| ଷୋଳକଳାରେ ପରିପୂର୍ଣ୍ଣ | ଅଦ୍ୟୋତି ଅନାମ ଅବର୍ଣ୍ଣ |
| ଇଚ୍ଛା ସୁଖେ ସେ ରହିଥାନ୍ତି | ପଞ୍ଚଭୂତାଦି କେ ନ ଥାନ୍ତି |
| ଅରୂପ ରୂପେ ଇଚ୍ଛା କଲେ | ଷୋଳରୁ କଳାଏ କାଢ଼ିଲେ |
| ସେ କଳାଗୋଟି ଯେଉଁପରି | ହେଲା ତୁ ମୁଠା ଦଣ୍ଡଧାରୀ |
| ଅବିନ୍ଦୁ ବିନ୍ଦୁଏ ଜନ୍ମିଲା | ସେ ବିନ୍ଦୁ ନିରାକାର ହେଲା |
| ବିନ୍ଦୁରୁ ଜନ୍ମିଲା 'ଅ'କାର | 'ଅ'କାର ଆଦିଶକ୍ତି ଧର |
| ବିନ୍ଦୁ 'ଅ'କାର ଦୁଇ ହେଲା | ତାଙ୍କର ପ୍ରେମ ନ ଚଳିଲା |
| ପ୍ରେମ ଗୋଟିଏ କଲେ ଜାତ | 'ଅ'କ୍ଷର ସ୍ୱରୂପେ ଶୋଭିତ |
| ତେଣୁ କହନ୍ତିଟି ଅକ୍ଷର, | 'ଅ'ରୁ ସର୍ବ କ୍ଷରାକ୍ଷର |
| ଛପନପଣ ଏହି ହେଲା | ଛପନୁ ପାଞ୍ଚ ଜନ୍ମ କଲା । |

'ଅ' ରୂପରେ ସ୍ୱୟଂ ପ୍ରକୃତି ପୁରୁଷ ମିଥୁନମୂର୍ତ୍ତି ହୋଇ ଶ୍ରୀଜଗନ୍ନାଥ ପଞ୍ଚଭୂତର ରଚନା କଲେ ଓ ଅନନ୍ତର ବ୍ରହ୍ମାଣ୍ଡ ରଚିତ ହେଲା । ଯେଉଁ ଚିନ୍ମୟ ପ୍ରକ୍ରିୟାରେ ଶୂନ୍ୟପୁରୁଷ ମୂଳପିଣ୍ଡ ହୋଇ ବ୍ରହ୍ମାଣ୍ଡ ସୃଷ୍ଟି କଲେ, ସେହି ପ୍ରକ୍ରିୟାରେ ବ୍ରହ୍ମାଣ୍ଡରେ ଜୀବଜଗତର ଆନୁକ୍ରମିକ ସର୍ଜନା ହୋଇଥାଏ । ପ୍ରତିଟି ଜୀବ ମଧ୍ୟରେ ସେହି ଶୂନ୍ୟପୁରୁଷ ଜୀବନତତ୍ତ୍ୱ ହୋଇ ଅବସ୍ଥାନ କରିଥାନ୍ତି ଓ ଜୀବ ପ୍ରାଣବନ୍ତ ହୋଇ କ୍ରିୟାଶୀଳ ହୋଇଥାଏ । ତାଙ୍କୁ ଲାଭ କରିବାକୁ ହେଲେ ତାଙ୍କ ରଚିତ ପିଣ୍ଡ ମଧ୍ୟରେ ପିଣ୍ଡଧାରୀ ମନୁଷ୍ୟ (ଜୀବ) ଏକ ବିଶେଷ ସାଧନ ଶୈଳୀରେ ତାଙ୍କୁ ଲାଭ କରିପାରେ । ଉତ୍କଳୀୟ ପଞ୍ଚସଖା ତଥା ଠାକୁର ଶ୍ରୀ ଅଭିରାମଙ୍କ କଥିତ ପଞ୍ଚଭୂତ ମଧ୍ୟରୁ ବାୟୁ ସାଧନ କୌଶଳରେ ହିଁ ଶୂନ୍ୟପୁରୁଷ





ପିଣ୍ଡ ମଧ୍ୟରେ ସାକାର ହୋଇ ଦର୍ଶନ ଦେଇଥାନ୍ତି । ଏହି ବାୟୁ ପ୍ରତିଟି ସାଂସାରିକ ଜୀବ ମଧ୍ୟରେ ପ୍ରାଣର ପ୍ରଧାନ ଉପାଦାନ ହୋଇଥିବାରୁ ସମଗ୍ର ମାନବ ତଥା ଜୀବ ସମାଜ ମଧ୍ୟରେ ଏହା ହେଉଛି ସତ୍ୟ ସନାତନ ଧର୍ମ ।

ସଂସାର ହେଉଛି ଏକ ଓଲଟବୃକ୍ଷ । ଅର୍ଥାତ୍ ଏହାର ମୂଳ ଉପରେ ଓ ପଲ୍ଲବିତ ଶାଖାରାଶି ତଳେ । ଜୀବର ଶରୀର ମଧ୍ୟ ସେହି ଓଲଟ ବୃକ୍ଷ ଅଟେ । ବୃକ୍ଷର ମୂଳବସ୍ତୁ ଜୀବର ମସ୍ତକ ମଧ୍ୟରେ ସହସ୍ରାର ଚକ୍ରରେ ପ୍ରକୃତ୍ୟାଲିଙ୍ଗିତ ଶ୍ରୀଜଗନ୍ନାଥ ବିଦ୍ୟମାନ ରହିଥାନ୍ତି । ତାଙ୍କ ବିଦ୍ୟମାନ୍ୟତାରୁ ଜୀବର ଜୀବନକ୍ରିୟା ସଞ୍ଚାଳିତ ହୋଇଥାଏ ।

ଏହି ଚିନ୍ମୟ ବିଜ୍ଞାନକୁ ସ୍ୱୟଂ ଅମନସ୍ଥିତିରେ ପ୍ରତ୍ୟକ୍ଷାନୁଭବ କରି ଶ୍ରୀଜଗନ୍ନାଥଙ୍କ ସ୍ୱରୂପକୁ ଉଦାତ୍ତର କଣ୍ଠରେ ଉଦଘୋଷଣା କରିଛନ୍ତି ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସ -

ବୃକ୍ଷଗୋଟି କେତେ ଶୋଭା ପାଉଅଛି ଭକତେ ଜାଣନ୍ତି ବୃକ୍ଷଗୁଣ<br>
ସେ ବୃକ୍ଷକୁ ଅବା କିମ୍ ଲକ୍ଷ୍ୟଦେବି ସେ ବୃକ୍ଷ ସାକ୍ଷାତେ ନାରାୟଣ ।<br>
ବିନ୍ଦୁ 'ଥ'କାର ଯୁଗଳ ହୋଇଛି ପ୍ରେମକୁ ମିଶାଇ ନୀଳାଚଳେ<br>
ଏ ସୂତ୍ର ଦେଖିଣ ଭକ୍ତଜନମାନେ ପ୍ରେମ ହୋଇଯାନ୍ତି ଭାବଭୋଳେ ।<br>
ତାକୁ ଯେ ଦେଖିଛି ଯାକୁ ନ ଦେଖିବ ବୁଝିଲେ ସେହି ଏହି ଅଭିନ୍ନ<br>
ସତ୍ୟନାରାୟଣ ଅନନ୍ତ ରାହାସ ବୃକ୍ଷମୂଳେ ହୁଏ ଘନଘନ ।

ବିନ୍ଦୁ ଓ ଥ କାର ଅର୍ଥାତ୍ (ଶକ୍ତିମନ) ପୁରୁଷ ଓ (ଶକ୍ତି) ପ୍ରକୃତି ନୀଳାଚଳରେ ଯୁଗଳ ହୋଇ ଅବସ୍ଥାନ କରିଛନ୍ତି । ଏହି ସନାତନ ସୂତ୍ର ଦ୍ୟୋତକ ଶ୍ରୀଜଗନ୍ନାଥଙ୍କୁ ତେଣୁ ଦର୍ଶନ ମାତ୍ରେ ସ୍ୱଭାବତଃ ପ୍ରେମଭାବ ଉତ୍ପନ୍ନ ହୋଇଥାଏ । ଚିନ୍ମୟ ସ୍ଥିତିକୁ ଯାଇ ଏହି ମହାଭାବକୁ ଯେ ନିଜେ ଦେଖିଛି, ତା'ର ଆଉ ଏହି ମୂର୍ତ୍ତିଙ୍କୁ ଦେଖି ସଂଶୟୀ ହେବାର କାରଣ ନାହିଁ । କାରଣ ଇଏ ଏବଂ ସିଏ ଅଭିନ୍ନ ।

ଉତ୍କଳୀୟ ବୈଷ୍ଣବ ଧର୍ମତତ୍ତ୍ୱର ପ୍ରତିଭୂ ଶ୍ରୀଜଗନ୍ନାଥଙ୍କ ସ୍ୱାନୁଭୂତ ତତ୍ତ୍ୱକୁ ପ୍ରକାଶ କରି ଭ୍ରମରେ ପଡ଼ି ଅନ୍ୱେଷଣ କରୁଥିବା ଜ୍ଞାନୀ ପଣ୍ଡିତମାନଙ୍କୁ ଆହ୍ୱାନ କରି ଠାକୁର ଶ୍ରୀ ଅଭିରାମ ତେଣୁ କହିଛନ୍ତି -

ଅନୁଭବୀ ବିନା ଯେତେକ କହିବ ଜାଣିବ ସବୁ ଅଟେ ଅଲଣା<br>
କାବ୍ୟ ପଢ଼ି କାବୁ କାବୁ ହେଉଥିବେ ପ୍ରକୃତ କଥାରେ ହେବେ ବଣା ।<br>
ଯେହି ଦେଖିଅଛି ତାହାକୁ ପ୍ରଚାର ସେ ବୃକ୍ଷକୁ ଚିହ୍ନାଇବେ ନେଇ<br>
ଯେହି ଦେଖିଅଛି ଶେଉଳଟି ସେହି ଅଦେଖାକୁଟି କେରାଣ୍ଡି କହି ।

ଯିଏ ଅନୁଭବୀ ଓ ଯିଏ ଏହି ଚିନ୍ମୟ ବିଜ୍ଞାନକୁ ସାକ୍ଷାତ୍ ଦେଖିଛି ସେହି କେବଳ ଏହାର ତତ୍ତ୍ୱ କହିପାରିବ । ଅନ୍ୟମାନେ ବିଦ୍ୱାନ ବୋଲାଇ ଅନ୍ୱେଷଣ କରୁଥିଲେ ମଧ୍ୟ ପ୍ରକୃତ ତତ୍ତ୍ୱରେ ବଣା ହେବେ ।

ଉତ୍କଳୀୟ ବୈଷ୍ଣବଧର୍ମର ପ୍ରମୂର୍ତ୍ତ ପରମପୁରୁଷ ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱ ବଖାଣିବା ଅବସରରେ ଠାକୁର ଶ୍ରୀ ଅଭିରାମ ସମଗ୍ର ମାନବ ସମାଜକୁ ବିଜ୍ଞପ୍ତି ଜଣାଇଛନ୍ତି ପ୍ରତ୍ୟକ୍ଷ ତତ୍ତ୍ୱାନୁଭବୀ ହେବାପାଇଁ -

'ମୂର୍ଖ ଲୋକଙ୍କ ଏ ନୁହେଁ ଜୀବିକା<br>
ପଣ୍ଡିତମାନେ ଶୁଣି ହେବେ ବୋକା<br>
ସାଧୁସନ୍ଥମାନଙ୍କ ଗଳାମାଳି<br>
ଛପନକୋଟି ଜୀବର ସଂଖାଳି<br>
ରୂପ ଅରୂପ ନୁହଇଁ ଯେ<br>
ନାମ ନାହିଁ ଯହିଁ ଅନାମ ଅଟଇ ମୁଖରେ କହି ନୁହଇଁ ଯେ ।'

ବିଭିନ୍ନ ଶାସ୍ତ୍ର ଅଥବା କିମ୍ବଦନ୍ତୀର ତର୍ଜମା କରି ଶ୍ରୀଜଗନ୍ନାଥଙ୍କ ସ୍ୱରୂପ ଜାଣିବା କେବଳ କୁହୁଡ଼ିରେ ପହଁରିବା ପରି ନିରର୍ଥକ । ଐତିହାସିକ ବିବରଣୀକୁ ଆଧାର କରି ଶ୍ରୀଜଗନ୍ନାଥଙ୍କ ରୂପ ଓ ସ୍ୱରୂପ ନିର୍ଣ୍ଣୟ କରିବା ସେହିପରି ଆନୁମାନିକ ଓ ସଂଶୟାତ୍ମକ । ଶକ୍ତିମାନ ପୁରୁଷ ତାଙ୍କର ତ୍ରିକାଳଦର୍ଶୀ ଦୃଷ୍ଟିରେ ହିଁ ଆଧ୍ୟାତ୍ମତତ୍ତ୍ୱର ପରିଭାଷାକୁ ବଖାଣିପାରିବେ । ଏଣୁ ଉତ୍କଳୀୟ ବୈଷ୍ଣବ ଧର୍ମର ପ୍ରମାଣ ପୁରୁଷ ଓ ମହାଶକ୍ତିଧର ଅବତାରୀ ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସ ଶ୍ରୀଜଗନ୍ନାଥଙ୍କ ଚିନ୍ମୟ ବିଜ୍ଞାନର ପ୍ରତ୍ୟକ୍ଷ ବିବରଣୀ ଉପସ୍ଥାପନ କରିଛନ୍ତି ତାଙ୍କ ବାଣୀରେ ଏବଂ ପ୍ରତିପାଦନ କରିଛନ୍ତି ଉତ୍କଳୀୟ ବୈଷ୍ଣବ ଧର୍ମର ଅଭିବ୍ୟକ୍ତି ।

ଉଲ୍ଲେଖଯୋଗ୍ୟ ଯେ ଠାକୁର ଶ୍ରୀ ଅଭିରାମ ତଦୀୟଗୁରୁ ଦେବୀ ପୂର୍ଣ୍ଣମାସୀଙ୍କ ଦ୍ୱାରା ପ୍ରେରିତ ହୋଇ ଚିନ୍ମୟ ବିଜ୍ଞାନରେ ସ୍ୱୟଂସିଦ୍ଧ ଓ ସର୍ବଜାଣ ହୋଇ ସେହି ଦେବୀଙ୍କ ଦ୍ୱାରା ପରମହଂସ ରୂପେ ପ୍ରତିଭାତ ହୋଇଥିଲେ ।

ଉତ୍କଳୀୟ ବୈଷ୍ଣବ ଧର୍ମର ସାଧନଧାରା ଜୀବ ପରମ ତତ୍ତ୍ୱ ଆଧାରିତ ଓ ପିଣ୍ଡ ସାଧନ ଭିତ୍ତିକ ହୋଇଥିଲାବେଳେ ଠାକୁର ଏହାକୁ ପୂର୍ଣ୍ଣାଙ୍ଗ ମଣ୍ଡିତ କରିଥିଲେ ଏଥିରେ ସମର୍ପଣ ଯୋଗ ମିଶ୍ରଣ କରି । ସାଧାରଣ ସାଧକମାନେ ପିଣ୍ଡ ଯୋଗର ସାଧନ ପ୍ରକ୍ରିୟାକୁ ସହଜରେ ଆୟତ୍ତ କରିବା କଷ୍ଟସାପେକ୍ଷ ମନେ କରି କୃପାଳୁ ଠାକୁର ଏହାକୁ ସାର୍ବଜନୀନ ଓ ସହଜସାଧ୍ୟ କରିବା ନିମନ୍ତେ ଏଥିରେ ସମର୍ପଣ ଯୋଗକୁ ସମ୍ପୁଟ କରି ଉତ୍କଳୀୟ ବୈଷ୍ଣବ ଧର୍ମ ଓ ସାଧନଶୈଳୀକୁ କର୍ମାଭିମୁଖୀ ତଥା ସନାତନ କରି ମୁକ୍ତିର ସିଂହଦ୍ୱାରକୁ ଉନ୍ମୋଚନ କରିଛନ୍ତି । ସମର୍ପଣ ଯୋଗ ସମ୍ପୁଟିତ ଉତ୍କଳୀୟ ବୈଷ୍ଣବ ଧର୍ମ ଠାକୁର ଶ୍ରୀ ଅଭିରାମଙ୍କ ଦ୍ୱାରା ନବ ସଂସ୍କରଣ ମଣ୍ଡିତ ହୋଇ ହୋଇଛି ବିଶ୍ୱଜନୀନ ଓ କର୍ମସଂସ୍କୃତିର ଅଭିନବ ଅଭିବ୍ୟକ୍ତି । ତାଙ୍କ ପ୍ରବର୍ତ୍ତିତ ସମର୍ପଣ ପଦ୍ଧତିରେ ପ୍ରତି କର୍ମ ଅନୁଷ୍ଠାନ କାଳରେ ପିଣ୍ଡବର୍ତ୍ତୀ ପରମପୁରୁଷଙ୍କୁ ଭକ୍ତି ନିବେଦିତ ଭାବରେ ସମର୍ପିତ ହୋଇଥାଏ । ଚେତା ରଖି ନିରନ୍ତର ଏହି ସମର୍ପଣ କ୍ରିୟାକୁ ସାଧନାଭୂତ କଲେ କର୍ମକାଳିମା ଦୂର ହୋଇ କର୍ମ ସଂସ୍କୃତ




ହୋଇଥାଏ ଏବଂ କର୍ମାଧିକାରୀ ମନୁଷ୍ୟ ଏହି ସାଧନ ଦ୍ୱାରା ଭଗବତକୃପା ଅବଶ୍ୟ ଲାଭ କରିଥାଏ । ସଂସାରରେ ସମ୍ଭୋଗର ସିଂହାସନ ଆରୋହଣ କରି ଉପଭୋଗ ମୋହରେ ମନୁଷ୍ୟ ଯେଉଁ କର୍ମ ନିଜପାଇଁ କରେ, ତାହାକୁ ପିଣ୍ଡ ସାଧନ ପ୍ରକ୍ରିୟାରେ ସମର୍ପଣ କଲେ ତାହା ଈଶ୍ୱରାର୍ପିତ ହୋଇ ମୁକ୍ତିର ମହାର୍ଘ ତୋରଣ ଉନ୍ମୁକ୍ତ ହୁଏ ଓ ମନୁଷ୍ୟର ଅହଂଭାବ ତିରୋହିତ ହୋଇଯାଇଥାଏ । ପୂର୍ବ ବର୍ଣ୍ଣିତ ଉତ୍କଳୀୟ ବୈଷ୍ଣବ ଧର୍ମର ସାଧନ ଧାରାରେ ସମର୍ପଣ ଯୋଗକୁ ସଂପୁଟ କରି ଠାକୁର ଏସବୁ ସତ୍ୟ ସନାତନ ଧର୍ମରେ ପରିଣତ କରିଛନ୍ତି ଓ ମାନବ ସମାଜ ପାଇଁ ନିର୍ମାଣିଛନ୍ତି ମୋକ୍ଷର ଅମୃତାୟନ । ଏହି ସମର୍ପଣ ଯୋଗ ପ୍ରକ୍ରିୟା ଏକ କର୍ମ ଉପାସନା ସାଧନ ତଥା ସଂସାରକ୍ଲିଷ୍ଟ ବ୍ୟସ୍ତ ମନୁଷ୍ୟ ସମାଜ ପାଇଁ ସର୍ବୋତ୍କୃଷ୍ଟ ସହଜ ପରମାର୍ଥ ସରଣୀ । ଏଣୁ ଏହାକୁ ସହଜ ସାଧନ ନାମରେ ମଧ୍ୟ ନାମିତ କରାଯାଉଛି । ଶ୍ରୀଜଗନ୍ନାଥ ହେଉଛନ୍ତି ସ୍ୱୟଂ ସନାତନ ଧର୍ମ, ତାଙ୍କର ଗୁରୁ ଅବତାର ଠାକୁର ଶ୍ରୀ ଅଭିରାମ ପରମହଂସ ହେଉଛନ୍ତି ଧର୍ମଗୁରୁ ଏବଂ ଉତ୍କଳୀୟ ବୈଷ୍ଣବଧର୍ମ ହେଉଛି ମାନବଧର୍ମର ଅମୃତ ପରିଭାଷା ।

ନୀଳଚକ୍ର ନଗର
ଅଠରନଳା, ପୋ- ଗୋପୀନାଥପୁର
ପୁରୀ-୨

# ଉତ୍କଳ ମାଟିର ଆରାଧ୍ୟ ଦେବତା

କାଞ୍ଚନ ମିଶ୍ର

ଉତ୍କଳ ମାଟିର ଆରାଧ୍ୟ ଦେବତା
ମହାପ୍ରଭୁ ଜଗନ୍ନାଥ
ଶ୍ରୀକ୍ଷେତ୍ର ଯାହାର ଶ୍ରେଷ୍ଠ ଧାମ ବୋଲି
ପୁରାଣରେ ଅଭିହିତ ।

ଦକ୍ଷିଣ ସାଗର ତୀରେ ଅବସ୍ଥିତ
ଶଙ୍ଖକ୍ଷେତ୍ର ନାମେ ପୁରୀ
ଶ୍ରୀକ୍ଷେତ୍ର ଧାମରେ ନିତ୍ୟ ବିରାଜିତ
ପ୍ରଭୁ ବୈକୁଣ୍ଠ ବିହାରୀ ।

ଅନଙ୍ଗ ଭୀମଙ୍କ ଅତୀତର କୀର୍ତ୍ତି
ମୂକ ସାକ୍ଷୀ ଶ୍ରୀମନ୍ଦିର
ଇନ୍ଦ୍ରଦ୍ୟୁମ୍ନ ରାଜା ଗଢ଼ି ତିନି ଦିଅଁ
ସ୍ଥାପନ କଲେ ସତ୍ୱର ।

ନୀଳଚକ୍ର ଦେଖି ବଡ଼ଦାଣ୍ଡ ଧୂଳି
ମସ୍ତକେ କରି ଲେପନ
ବାଇଶି ପାହାଚେ ମୁଣ୍ଡ ମାରି ଗଲେ
ଦେଖିବ ସ୍ୱର୍ଗ ସୋପାନ ।

ତୁମ ପାଇଁ ସଦା ମନ୍ଦିର ବେଢ଼ାରେ
ବାର ମାସେ ତେର ଯାତ
ଆନନ୍ଦ ବଜାର ମହାପ୍ରସାଦରେ
ତୋଷୁ ଅଛ ଭକ୍ତ ଚିତ୍ତ ।

ପତିତମାନଙ୍କୁ ଉଦ୍ଧାର ନିମିତ୍ତ
ଭକତର ଭଗବାନ
ରଥ ଯାତରାରେ ରଥାରୂଢ଼ ହୋଇ
ଦିଅ ତୁମେ ଦରଶନ ।

ଅନାଦି କାଳରୁ ମହୋଦଧି ତଟେ
ହୋଇଅଛ ପ୍ରଭୁ ଉଭା
ବଡ଼ଦେଉଳର ରତ୍ନ ସିଂହାସନେ
ବିରାଜୁଛି ତୁମ ଶୋଭା ।

ଶାନ୍ତି ମୈତ୍ରୀ ସାମ୍ୟ ପ୍ରଗତି ପ୍ରତୀକ
ମହାପ୍ରଭୁ ଜଗନ୍ନାଥ
ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟିକାରୀ କର୍ତ୍ତା
ତୁମ ପାଦେ ପ୍ରଣିପାତ ।

ୟୁନିଟ୍-୯
ଭୁବନେଶ୍ୱର-୨୨



# ଶ୍ରୀଜଗନ୍ନାଥ ସଂସ୍କୃତିରେ ପ୍ରକୃତି ତତ୍ତ୍ୱ

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି

## ଜଗନ୍ନାଥ ଓ ଭାରତ

ଓଡ଼ିଶା ତଥା ଭାରତବର୍ଷର ଲୋକମାନେ ସାଧାରଣତଃ ଧର୍ମ ବିଶ୍ୱାସୀ ଓ ଠାକୁର ତଥା ଠାକୁରାଣୀ ବିଶ୍ୱାସୀ । କିଛି ଲୋକ ବିଶ୍ୱାସ ନ କଲେ ମଧ୍ୟ ବିଶ୍ୱାସ କରୁଥିବା ଲୋକଙ୍କ ସଂଖ୍ୟା ବେଶ୍ ଅଧିକ । ବିଶେଷ କରି ଗ୍ରାମାଞ୍ଚଳର ଲୋକମାନଙ୍କ ବିଶ୍ୱାସ କହିଲେ ନସରେ । ସେଥିପାଇଁ ପ୍ରତ୍ୟେକ ଗାଁ, ସହର ଓ ରାଜ୍ୟଗୁଡ଼ିକରେ ମନ୍ଦିର ନିଶ୍ଚୟ ଦେଖାଯାଏ । ଏପରିକି ରାସ୍ତାକଡ଼ରେ ମଧ୍ୟ ଛୋଟିଆ ମନ୍ଦିର ବା ଦେଉଳ ଅଥବା ବର ବା ଅଶ୍ୱତ୍ଥ ଗଛ ପୂଜା ପାଉଥିବାର ଦେଖାଯାଏ । ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ଊଣା ଅଧିକେ ଏକାଧିକ ମନ୍ଦିର ଥିବାର ଜଣାଯାଏ । କେଉଁ ମନ୍ଦିରକୁ ବେଶୀ ଲୋକତ କେଉଁ ମନ୍ଦିରକୁ କେବଳ ସ୍ଥାନୀୟ ଲୋକ ଯାଇ ପୂଜା କରି ଆସିବାର ନଜରରେ ପଡ଼େ । ଭାରତବର୍ଷରେ ଯେତେଗୁଡ଼ିଏ ମନ୍ଦିର ରହିଛି ସେଥି ମଧ୍ୟରେ ପ୍ରସିଦ୍ଧିଲାଭ କରିଥିବା ମନ୍ଦିର ମଧ୍ୟରୁ କେତେଗୋଟି ହେଉଛି ଓଡ଼ିଶାର ଶ୍ରୀଜଗନ୍ନାଥ ମନ୍ଦିର, କୋଣାର୍କ ମନ୍ଦିର, ଲିଙ୍ଗରାଜ ମନ୍ଦିର, ମଦୁରାଇର ମିନାକ୍ଷୀ ମନ୍ଦିର, ତିରୁପତିର ତିରୁପତି ମନ୍ଦିର, ମୁମ୍ବାଇର ମହାଲକ୍ଷ୍ମୀ ମନ୍ଦିର, କଲିକତାର କାଳୀ ମନ୍ଦିର, ଦିଲ୍ଲୀର ବାହାଇ ମନ୍ଦିର ଓ ଜଗନ୍ନାଥ ମନ୍ଦିର, ଜୟପୁରର ବିର୍ଲା ମନ୍ଦିର ଇତ୍ୟାଦି । ଏହାଛଡ଼ା ପ୍ରତ୍ୟେକ ରାଜ୍ୟରେ ଆଉ କେତେକ ପ୍ରସିଦ୍ଧ ମନ୍ଦିର ମଧ୍ୟ ରହିଛି । ଭାରତବର୍ଷରେ ଏସବୁ ଯେତେ ମନ୍ଦିର ରହିଛି ସେଥି ମଧ୍ୟରେ ପ୍ରଧାନ ସ୍ଥାନ ଅଧିକାର କରିଛି ଓଡ଼ିଶାର ପୁରୀରେ ଅବସ୍ଥିତ ଶ୍ରୀଜଗନ୍ନାଥ ମନ୍ଦିର । ଶ୍ରୀକ୍ଷେତ୍ର ପୁରୀର ଏ ମନ୍ଦିର ପୃଥିବୀ ବିଖ୍ୟାତ । ଏ ଦେଉଳର ନାଁ 'ବଡ଼ଦେଉଳ', ରାସ୍ତାର ନାଁ 'ବଡ଼ଦାଣ୍ଡ' (Grand Road), ପୂଜକ ହେଲେ ବଡ଼ପଣ୍ଡା, ପୁରୀକୁ ଯିବାକୁ ପଡ଼େ 'ବଡ଼ଶଙ୍ଖ' ଏବଂ ପୂଜା ପାଆନ୍ତି 'ବଡ଼ ଠାକୁର' । ପୁରୀ ମନ୍ଦିର ପାଖରେ ରହୁଥିବା ରାଜା ହେଲେ ଗଜପତି ରାଜା ଯାହାଙ୍କର ମନ୍ଦିର ପାଇଁ ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । କେବଳ ସେତିକି ନୁହେଁ, ପୁରୀର ରଥଯାତ୍ରା ବିଶ୍ୱବିଖ୍ୟାତ ଏବଂ ଏ ରଥଗୁଡ଼ିକ ମଧ୍ୟ ବେଶ୍ ବଡ଼ ।


ଚିତ୍ରଶିଳ୍ପୀ : ଶ୍ରୀନିବାସ ପଣ୍ଡା

ଭାରତବର୍ଷରେ ଶ୍ରୀମନ୍ଦିରର ପରିଚୟ ଏପରି ଯେ ପୁରୀ, ଓଡ଼ିଶା ବା ସେହିପରି କିଛି ସ୍ଥାନର ନାଁ କହିଲେ ଅନେକ ବୁଝିପାରନ୍ତି ନାହିଁ । ଜଗନ୍ନାଥଙ୍କ ରାଜ୍ୟ କହିଲେ ଅନେକ ବୁଝିଯାଆନ୍ତି । ଏପରିକି ଆଜି ବି ଜଣେ ଓଡ଼ିଶା ବାହାରେ ପୁରୀ ଜଗନ୍ନାଥ ମନ୍ଦିରରୁ ଆସିଛି କହିଲେ ବାହାର ଲୋକେ ଶ୍ରଦ୍ଧା ଓ ଭକ୍ତି କରନ୍ତି । ଅନେକଙ୍କର ବିଶ୍ୱାସ ଯେ ପୁରୀରୁ ଆସିଥିବା ବ୍ୟକ୍ତି ବା ପୁରୀର ଲୋକମାନେ ହିଁ ହେଉଛନ୍ତି ଜଗନ୍ନାଥଙ୍କ ଲୋକ । ଦେଖିଲେ ବା ଜାଣିଲେ ମୁଣ୍ଡିଆ ମାରିପକାନ୍ତି । ଏଥିରୁ ସ୍ପଷ୍ଟ ଜଣାପଡ଼ିଯାଏ, ସତରେ ଜଗନ୍ନାଥଙ୍କ ମାହାତ୍ମ୍ୟ କେତେ ! ଜଗନ୍ନାଥ ବାହାରେ କେତେ ଭକ୍ତ ସୃଷ୍ଟି କରିଛନ୍ତି ! ଭାରତ ବାହାରର ଅନେକ ବିଦେଶୀ ଓ ବିଦେଶିନୀ ଭ୍ରମଣରେ ଆସି ମନ୍ଦିର ବିଷୟରେ ଆଲୋଚନା ଓ ପର୍ଯ୍ୟାଲୋଚନା ସହ ପର୍ଯ୍ୟବେକ୍ଷଣ କରିଥାଆନ୍ତି ବଡ଼ଦାଣ୍ଡରୁ ବଡ଼ ଦେଉଳକୁ । ବିସ୍ମିତ ହୋଇ ପଡ଼ନ୍ତି ଏତେ ବଡ଼ ମନ୍ଦିର, ଏତେ ବଡ଼ ପ୍ରାଚୀର ଓ ଏତେ ସଂଖ୍ୟକ ଲୋକଙ୍କ ସହ ଅନେକ ଭକ୍ତଙ୍କ ପୂଜା, ଆରାଧନା, ଭଜନ, କୀର୍ତ୍ତନ ଆଦିର ସମାରୋହକୁ ଅବଲୋକନ କରି ।





**ଜଗନ୍ନାଥ, ବିଶ୍ୱାସ ଓ ଅବିଶ୍ୱାସ**

ଠାକୁର ଠାକୁରାଣୀଙ୍କୁ ବା ଜଗନ୍ନାଥଙ୍କୁ ବିଶ୍ୱାସ କରିବା ମନ ମଧ୍ୟର କଥା । କଥାରେ ଅଛି ବିଶ୍ୱାସ ମୂଳେ ଭଗବାନ । ତେଣୁ ଅନେକ ଏ ସମ୍ପର୍କରେ ଯୁକ୍ତି ବାଢ଼ନ୍ତି ଯେ ଭଗବାନ ବା ଠାକୁର ବା ଜଗନ୍ନାଥ ନାହାନ୍ତି । ଏ ଯୁକ୍ତିକୁ ଯୁକ୍ତି ମାଧ୍ୟମରେ ପ୍ରମାଣ କରିବା କଷ୍ଟ । କିନ୍ତୁ କଥା ହେଉଛି ଠାକୁରଙ୍କ ନାମରେ କେତେଗୁଡ଼ିଏ କଥା ସୁବିଧା ଓ ଠିକ୍ ଭାବରେ ସମାହିତ ହେବାର ଦେଖାଯାଏ । ତାହାର କେତେଗୁଡ଼ିଏ ଛୋଟ ଛୋଟ ଉଦାହରଣ ଦିଆଯାଇପାରେ ।

୧. ବିଶ୍ୱାସରେ ଲୋକମାନେ ଭୁଲ କାର୍ଯ୍ୟ କରନ୍ତି ନାହିଁ । ଭୁଲ କାର୍ଯ୍ୟ କଲେ ଭବିଷ୍ୟତରେ ଫଳ ଖରାପ ହେବ ଅଥବା ଦଣ୍ଡ ମିଳିବ ଅଥବା ଶରୀର ଖରାପ ହେବ ବୋଲି ଲୋକମାନଙ୍କ ବିଶ୍ୱାସ ।

୨. ଠାକୁର ବା ଜଗନ୍ନାଥଙ୍କୁ ବିଶ୍ୱାସ କରି କାର୍ଯ୍ୟ କଲେ କାର୍ଯ୍ୟଗୁଡ଼ିକ ଭଲରେ ଭଲରେ ସମ୍ପାଦିତ ହେବ ବୋଲି ଧାରଣା ।

୩. ବିବାହ ଓ ବ୍ରତୋପନୟନ ପରି ମାଙ୍ଗଳିକ କାର୍ଯ୍ୟରେ ନିମନ୍ତ୍ରଣ ପତ୍ର ଆଦି ପ୍ରସ୍ତୁତ କରାଯାଇ ପ୍ରଥମେ ଜଗନ୍ନାଥଙ୍କ ପାଖକୁ ଯାଇ ତାଙ୍କୁ ନିମନ୍ତ୍ରଣ କରିବା ପରେ ଜନସାଧାରଣ ତଥା ବନ୍ଧୁବର୍ଗଙ୍କୁ ବଣ୍ଟାଯିବାର ପ୍ରଥା ବା ବିଧି ଆଜି ବି ରହିଛି । ବିଶ୍ୱାସ ଯେ ବଡ଼ଠାକୁର ଜଗନ୍ନାଥଙ୍କୁ ନିମନ୍ତ୍ରଣ କରିବା ପରେ ଅନ୍ୟମାନଙ୍କୁ ନିମନ୍ତ୍ରଣ କଲେ କର୍ମଗୁଡ଼ିକ ଭଲରେ ଭଲରେ ସମାହିତ ହୋଇଯିବ ବୋଲି ।

୪. କିଛି ସମୟ ମନ୍ଦିର ମଧ୍ୟରେ ବସିଲେ ମନରେ ଏକାଗ୍ର ମନୋଭାବ ସୃଷ୍ଟି ହେବା ସହ ମନ ମଧ୍ୟସ୍ଥ ଦୁଃଖ, ଦୁଃଶ୍ଚିନ୍ତା, କଷ୍ଟ ତଥା ମାନସିକ ଚାପ ସହ ମାନସିକ ଯନ୍ତ୍ରଣା ଦୂର ହୋଇଯାଇଥାଏ । ଏସବୁ ପାଇଁ ଅନେକ ଶ୍ରୀମନ୍ଦିର ମଧ୍ୟରେ ପତାକା ବାନ୍ଧନ୍ତି, ମାର୍ବଲ ପକାନ୍ତି ଓ ଲକ୍ଷେ ବଳିତା ବା ସଳିତା ଜାଳନ୍ତି ।

୫. ମନ ମଧ୍ୟରେ କିଛି ପାଞ୍ଚୁଥିଲେ ବା ଭାବିଥିଲେ ତାହା ପୂରଣ ହେବାପରେ ଅନେକ ଭୋଗରାଗ କରିବା ସହ ଜପ ତପ ଓ ଭଜନ କୀର୍ତ୍ତନରେ ମଜ୍ଜି ଯାଆନ୍ତି ।

୬. ଶରୀରରେ ଅସାଧ୍ୟ ରୋଗ ଥାଇ ଭଲ ହୋଇଗଲେ କେତେକ ଶ୍ରୀମନ୍ଦିରକୁ ଖାଲି ପାଦରେ ମୁଣ୍ଡିଆ ମାରି ମାରି ତାଙ୍କ ଜନ୍ମ ସ୍ଥାନରୁ ଆସି ଥାଆନ୍ତି । ଆଉ କେତେକ ବାଇଶି ପାହାଚରେ ଗଡ଼ି ଗଡ଼ି ଯାଆନ୍ତି । ଏପରିକି କେତେକ ପିତାମାତା ପିଲାମାନଙ୍କୁ ତାଙ୍କର ଶ୍ରୀମନ୍ଦିରର ପ୍ରବେଶ ଦ୍ୱାରରୁ ଆରମ୍ଭ ହୋଇ ଉପର ପର୍ଯ୍ୟନ୍ତ ଯାଇଥିବା ବାଇଶି ପାହାଚ ଉପରୁ ଗଡ଼ାଇ ଗଡ଼ାଇ ତଳ ପର୍ଯ୍ୟନ୍ତ ଆଣିଥାଆନ୍ତି ।

୭. କେତେକ ଧର୍ମାବଲମ୍ବୀ ଓ ଅନ୍ୟକେତେକ ସାଧାରଣ ଲୋକ ଚାଲି ଚାଲି ଭଜନ କୀର୍ତ୍ତନ କରି ନିଜ ଗାଁଠାରୁ ଜଗନ୍ନାଥ ମନ୍ଦିର ପର୍ଯ୍ୟନ୍ତ ଯାଇଥାଆନ୍ତି । ବିଶ୍ୱାସ ଯେ, ଏପରି କଲେ ଜୀବନରେ ମୋକ୍ଷ ଘଟିବ । ପାପ ଖଣ୍ଡନ ହେବ । ମନରେ ଶାନ୍ତି ଆସିବ ।

ତେବେ ଏସବୁ ବିଶ୍ୱାସର କଥା । ବିଶ୍ୱାସ କରି ମଣିଷ ଶାନ୍ତି ପାଇଲେ କ୍ଷତି କଅଣ ? ପୂଜା କରି, ଭକ୍ତି କରି, ଭଜନ କୀର୍ତ୍ତନ କରି ଏବଂ ଶ୍ରୀମନ୍ଦିରରେ କିଛି ସମୟ ଅତିବାହିତ କରି ଆତ୍ମତୃପ୍ତି ଲାଭ କରିବା ପାଇଁ ଅନେକ ଲୋକ ଦୂରଦୂରାନ୍ତରୁ ଆସି ଏ ମନ୍ଦିରରେ ରୁଣ୍ଡ ହେବାର ଦେଖାଯାଏ । ଏଠାରେ ବସି ମହାପ୍ରସାଦ ଖାଇ ଖୁସି ହେବାର ଦେଖାଯାଏ । ଏଠାକୁ ଆସି ଅଭୁଲା ସ୍ମୃତିକୁ ଧରି ଫେରିଯାଆନ୍ତି ତାଙ୍କ ନିଜ ନିଜ ସ୍ଥାନକୁ । ସବୁବେଳେ ମନ ମଧ୍ୟରେ ରହିବା ପାଇଁ ଲୋକମାନେ ମନ୍ଦିରରୁ ଫେରିବାବେଳେ ନେଇଥାଆନ୍ତି ନିର୍ମାଲ୍ୟ ।

**ଜଗନ୍ନାଥ ଓ ପ୍ରକୃତି**

ଜଗନ୍ନାଥ ମନ୍ଦିର ଅନେକ ବର୍ଷରୁ ନିର୍ମିତ ହୋଇଥିଲେ ହେଁ ଜଗନ୍ନାଥଙ୍କ ସଂସ୍କୃତି ପ୍ରକୃତି ସହ ଓତଃପ୍ରୋତ ଭାବରେ ଜଡ଼ିତ । ତାଙ୍କର ସମସ୍ତ କାର୍ଯ୍ୟକଳାପଗୁଡ଼ିକ ଠିକ୍ ପୁରାତନ ମଣିଷର କାର୍ଯ୍ୟକଳାପ ସହ ସମାନ, ମାତ୍ର ଆଧୁନିକ ମଣିଷର କାର୍ଯ୍ୟକଳାପ ପରି ନୁହେଁ । ପ୍ରତ୍ୟେକ କାର୍ଯ୍ୟରେ ଲାଗୁଥିବା, ବ୍ୟବହୃତ ହେଉଥିବା ବା ପୂଜାପାର୍ବଣ ନିମିତ୍ତ ଆବଶ୍ୟକ ହେଉଥିବା ପଦାର୍ଥଗୁଡ଼ିକ ହିଁ ପ୍ରାକୃତିକ ପଦାର୍ଥ । ଏଗୁଡ଼ିକରେ କୃତ୍ରିମତା ଆଦୌ ନଥାଏ । ଅର୍ଥାତ୍ କୌଣସି କୃତ୍ରିମ ଜିନିଷ ବା ସାଂଶ୍ଳେଷିକ ଜିନିଷ ବା ବୈଦେଶିକ ଜିନିଷ ଜଗନ୍ନାଥଙ୍କ କାର୍ଯ୍ୟରେ ବିନିଯୋଗ କରାଯାଇ ନଥାଏ । ସେଥିରୁ କେତୋଟିର ଉଦାହରଣ ନିମ୍ନରେ ପ୍ରଦତ୍ତ ।

୧. ସକାଳେ ଦାନ୍ତ ସଫା କରିବାରେ ବୃକ୍ଷର କାଠି ସହ ଚନ୍ଦନ ବ୍ୟବହୃତ ହୋଇଥାଏ ।

୨. ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସହ ସୁଦର୍ଶନଙ୍କ ଶରୀର ପ୍ରସ୍ତୁତ କରାଯାଇଥାଏ ନିମ ଗଛର କାଠରେ ବା ଗଣ୍ଡିରେ ଯାହାକୁ କୁହାଯାଏ ଦାରୁ ।

୩. ନିମ ଦାରୁରେ ମୂର୍ତ୍ତି ପ୍ରସ୍ତୁତ ପରେ ତାହା ପ୍ରକୃତିରୁ ମିଳୁଥିବା ରଙ୍ଗରେ ରଙ୍ଗ କରାଯାଇଥାଏ । ଏସବୁ ମୁଖ୍ୟତଃ ଉଦ୍ଭିଦଜ ପଦାର୍ଥ । ଉଦାହରଣ ସ୍ୱରୂପ କଇଥ ଅଠା, ହିଙ୍ଗୋଳ ମଞ୍ଜି, ହରିତୋଳ ମଞ୍ଜି ଇତ୍ୟାଦି ।

୪. ରଥଯାତ୍ରାରେ ପହଣ୍ଡି ବିଜେ ସମୟରେ ମୁଣ୍ଡରେ ଲଗାଇ ଆସୁଥିବା ଟାହିଆରେ ବିଭିନ୍ନ ପ୍ରକାର ଫୁଲ, ଦୁବ ଓ ସୋଲ ଆଦି ଲାଗିଥାଏ । ଏସବୁଗୁଡ଼ିକ ଖଚିତ ହୋଇଥାଏ ବାଉଁଶ ଓ ବାଉଁଶ ପାତିଆରେ ।

୫. ବାରମାସରେ ତେର ପର୍ବରେ ଜଗନ୍ନାଥଙ୍କ ପାଖରେ ଭୋଗ କରାଯାଇଥାଏ ବିଭିନ୍ନ ପ୍ରକାରର ଖାଦ୍ୟ । ବରା, କାକରା, ଅନ୍ନ, ମହୁର, ବେସର, ଖଟା, ଡାଲମା, ଡାଲି, ମୂଳା, ରାଇତା, ପୋଟଳ ରସା, ଶାଗ, ମାଠପୁଳି, ପୁରୀ ଓ ଲଡୁ ଇତ୍ୟାଦି । ଅନ୍ନ ଓ ବ୍ୟଞ୍ଜନଗୁଡ଼ିକ

ସବୁ ସିଝା ହୋଇ ପ୍ରସ୍ତୁତ ହୋଇଥାଏ । ଏସବୁରେ କେବଳ ଆମ ଦେଶର ଫଳମୂଳ, ବ୍ୟବହାର ହୋଇଥାଏ । ବିଲାତି ଆଳୁ ଓ ବିଲାତି ବାଇଗଣ ଆଦି ବୈଦେଶିକ ପରିବା ଯୋଗୁଁ ଖାଦ୍ୟରେ ଏସବୁ ବ୍ୟବହୃତ ହୋଇନଥାଏ । ସତରେ ଏସବୁରୁ ଜଣାଯାଏ ଯେ, ଆମ ସ୍ଥାନରେ ଜନ୍ମୁଥିବା ଖାଦ୍ୟ କାହିଁକି ଆମ୍ଭେ ନଖାଇ ବାହାର ଖାଦ୍ୟ ଖାଇବା ?

୬. ରଥ ନିର୍ମାଣ ସମୟରେ ବ୍ୟବହୃତ ରଥର ସମସ୍ତ ଜିନିଷ ପ୍ରାକୃତିକ ଜିନିଷ । ରଥକାଠ, ରଥର କନା, ଚକରେ ଲୁହା, ରଥ ଦଉଡ଼ି, ରଥର ରଂଗ ଆଦି ସବୁ ଆମ ପାରିପାର୍ଶ୍ୱର ବା ପ୍ରକୃତି ମଧ୍ୟସ୍ଥ ଜିନିଷରୁ ପ୍ରସ୍ତୁତ । କୌଣସି ସାଂଶ୍ଲେଷିକ ପଦାର୍ଥ ଏଗୁଡ଼ିକରେ ବା ଜଗନ୍ନାଥଙ୍କ କାର୍ଯ୍ୟରେ ଲାଗି ନଥାଏ ।

୭. ଜଗନ୍ନାଥ ମନ୍ଦିରରେ ଆମିଷ ଦ୍ରବ୍ୟ ପଶି ନଥାଏ । ଏହା ସମ୍ପୂର୍ଣ୍ଣ ରୂପେ ବାରଣ କରାଯାଇଥାଏ । ସମସ୍ତ ଉଦ୍ଭିଦଜ ପଦାର୍ଥ ଜଗନ୍ନାଥଙ୍କ କାର୍ଯ୍ୟରେ ଲଗାଯାଇଥାଏ । ତୁଳସୀ, ଦୟଣା, ଫୁଲ, କର୍ପୂର, ଚନ୍ଦନ, ଗୁଆଘିଅ ଆଦି ପୂଜା କାର୍ଯ୍ୟରେ ବ୍ୟବହୃତ ହୋଇଥାଏ ।

୮. ପୂଜା କାର୍ଯ୍ୟରେ ମାଟିପାତ୍ର ଓ ଧାତୁ ପାତ୍ର ଆଦି ଲାଗିଥାଏ । ସ୍ନାନ ସମୟରେ ପିତଳ ଗରାରେ ପାଣି, ଦୀପ ମାଟି ବା ପିତଳ, ତମ୍ବା, ଥାଳି, ଘଣ୍ଟ ଓ ଘଣ୍ଟା ଆଦି ଧାତୁର ଦ୍ରବ୍ୟ ବ୍ୟବହୃତ ହୋଇଥାଏ ।

୯. ବସ୍ତ୍ର ପରିଧାନ ବେଳେ କପାସୂତା ବସ୍ତ୍ର ବା ପାଟବସ୍ତ୍ର (ରେଶମ ବସ୍ତ୍ର) ବ୍ୟବହାର କରାଯାଇଥାଏ । ପଲିଷ୍ଟର, ଟେରିଲିନ୍, ଟେରିକଟନ୍ ଆଦି ସାଂଶ୍ଲେଷିକ ବସ୍ତ୍ର ଜଗନ୍ନାଥଙ୍କୁ ଅର୍ପଣ କରାଯାଇନଥାଏ ।

୧୦. ମନ୍ଦିର ମଧ୍ୟକୁ କୌଣସି ଜୀବଜନ୍ତୁଙ୍କ ଶରୀରରେ ନିର୍ମିତ ଜିନିଷର ପ୍ରବେଶକୁ ବାରଣ କରାଯାଇଥାଏ । ଉଦାହରଣ ସ୍ୱରୂପ ଚମଡ଼ା ବେଲ୍ଟ, ଛତା, ଜୋତା, ବ୍ୟାଗ, କ୍ୟାମେରା ଚମଡ଼ା ଖୋଳ ଆଦିର ପ୍ରବେଶ ବାରଣ କରାଯାଇଥାଏ ।

ଜଗନ୍ନାଥଙ୍କ ଜୀବନଶୈଳୀ ଠିକ୍ ମଣିଷର ଦୈନନ୍ଦିନ କାର୍ଯ୍ୟ ପରି ଆଉ ଏ କାର୍ଯ୍ୟରେ ଲାଗିଥାଏ ଆମ ପରିବେଶରେ ଜନ୍ମୁଥିବା ଗଛପତ୍ର, ଡାଳ, ଫୁଲ ଓ ଫଳ ତଥା ଚେର ଆଦି ଜିନିଷ । ଏପରିକି ଜ୍ୱର ହେଲେ ତାଙ୍କୁ ଦିଆଯାଇଥାଏ ପ୍ରାକୃତିକ ଚେରମୂଳି ଔଷଧ । ତେଣୁ ଏଥିରୁ ପ୍ରମାଣ ମିଳେ ଯେ ଆମ ପ୍ରକୃତି ଆମ ପାଇଁ ସମସ୍ତ ଜିନିଷ ରଖି ଦେଇଛି । ଆମେ ତାହାର ସୁବିନିଯୋଗ ଓ ସଦ୍‌ବ୍ୟବହାର କଲେ ତା'ର ଉପକାର ମିଳିବା ସହ ଦେହ ଓ ମନ ମଧ୍ୟ ଠିକ୍ ରହିବ । ଜଗନ୍ନାଥଙ୍କ ଜୀବନଶୈଳୀ ଖାଦ୍ୟପେୟ ଓ ପୋଷାକ ପତ୍ର ଆଦି ସବୁ କାର୍ଯ୍ୟରେ ପ୍ରକୃତି ଭଲଭାବରେ ଜଡ଼ିତ । ପ୍ରକୃତି ବିନା ଜଗନ୍ନାଥଙ୍କ ପୂଜାପାର୍ବଣ ତଥା ବିଭିନ୍ନ କର୍ମ ଅସମ୍ଭବ । ଏପରିକି ଖାଦ୍ୟ ପ୍ରସ୍ତୁତି ହିଁ କାଠଚୁଲା ଓ ମାଟିପାତ୍ର ଆଦିରେ । ମହାପ୍ରସାଦ ପ୍ରସ୍ତୁତି ମାଟି କୁଡ଼ୁଆରେ ଓ ବିକ୍ରି ତଥା ଖାଇବା ମଧ୍ୟ ମାଟି କୁଡ଼ୁଆରେ ।

**ଜଗନ୍ନାଥ ଓ ବିଜ୍ଞାନ**

ଜଗନ୍ନାଥଙ୍କ ପ୍ରସ୍ତୁତି ଓ ତାଙ୍କର ଜୀବନଶୈଳୀ ପ୍ରତ୍ୟେକଟି ବିଜ୍ଞାନବୋଧର ପରିଚୟ ପ୍ରଦାନ କରେ । ନିମ କାଠରେ ପ୍ରସ୍ତୁତ ହେଉଥିବାରୁ ଜଗନ୍ନାଥ ଦୀର୍ଘସ୍ଥାୟୀ । ମୂର୍ତ୍ତିର କୌଣସି କ୍ଷତି ହୋଇନଥାଏ । ଦୈନନ୍ଦିନ କାର୍ଯ୍ୟରେ ତାଙ୍କର ଲାଗିଥାଏ ପ୍ରାକୃତିକ ଜିନିଷ । ଖାଦ୍ୟ ପ୍ରସ୍ତୁତି ପାତ୍ର ଓ ଖାଦ୍ୟଗୁଡ଼ିକ ମଧ୍ୟ ପ୍ରାକୃତିକ । ମାଟିପାତ୍ର ଖାଦ୍ୟଗୁଡ଼ିକ ହିତକର । ସିଝାଖାଦ୍ୟଗୁଡ଼ିକ ଶରୀରୋପଯୋଗୀ, ରୋଗ ନିବାରକ ତଥା ସୁସ୍ଥ ଏବଂ ଦୀର୍ଘ ଜୀବନ ପାଇଁ ଆବଶ୍ୟକ । ଏସବୁରୁ ପ୍ରମାଣ ମିଳେ ଯେ, ଏଗୁଡ଼ିକ ସବୁ ବିଜ୍ଞାନ ସମ୍ମତ ।

ଆଜିର ମଣିଷ ପ୍ରକୃତିଠାରୁ ଦୂରେଇ ଯାଇ ପ୍ରକୃତିକୁ କରିଛି ଛିନ୍ନଭିନ୍ନ । ପ୍ରକୃତିର ଲୋପ ପାଇଯାଇଛି ଶୋଭା, ଆଭା ଓ ଶ୍ରୀ । ଫଳରେ ସମ୍ପଦର କ୍ଷୟ ଘଟିଛି । ତେଣୁ ମଣିଷ ବାଧ୍ୟ ହୋଇଛି କୃତ୍ରିମ ଜିନିଷ ଉପରେ ନିର୍ଭର କରିବା ପାଇଁ । ଆଧୁନିକ ଖାଦ୍ୟ ଓ ପୋଷାକ ହିଁ ଆଜି ମଣିଷକୁ ଗ୍ରାସ କରିଛି । ଆଧୁନିକତା ନାଁରେ ମଣିଷ ପାଲଟିଯାଇଛି ଅମଣିଷ, ରାକ୍ଷସ, ବର୍ବର ଓ ହିଂସ୍ର । ଉଦ୍ଭିଦଜ ପଦାର୍ଥ ବେଶୀ ଖାଇବା ପରିବର୍ତ୍ତେ ତାର ପ୍ରିୟ ହୋଇଛି ଆମିଷ । ଦେଖାଦେଉଛି ଅନେକ ପ୍ରକାର ରୋଗ ଓ ଶାରୀରିକ ସମସ୍ୟା । ଭୋଗୁଛି ଯେ ଶାରୀରିକ ଯନ୍ତ୍ରଣା । ସୁତରାଂ ଜଗନ୍ନାଥ ସଂସ୍କୃତିକୁ ଭଲଭାବରେ ଅନୁକରଣ ନକଲେ ତାହାର ଭବିଷ୍ୟତ ଓ ଆମ ସମସ୍ତଙ୍କ ଭବିଷ୍ୟତ ହୋଇଯିବ ଦୁର୍ବିସହ । ହୁଏତ ସମୟ ଆସିବ ଆମେ ସମସ୍ତେ ସାଂଶ୍ଲେଷିତ ସମାଜରେ ରହି ସାଂଶ୍ଲେଷିତ ଜୀବନଯାପନ କରି ଲୋପ ପାଇବା ହିଁ ସାର ହେବ ।

ଜାଣିଶୁଣି ଟିକିଏ ସାବଧାନ ହେବା ନାହିଁ କାହିଁକି ? ଜଗନ୍ନାଥଙ୍କ ଜୀବନଚର୍ଯ୍ୟାକୁ ଅନୁଧ୍ୟାନ, ଅନୁଶୀଳନ, ଅନୁସନ୍ଧାନ ଓ ଅଧ୍ୟୟନ କଲେ ଅସୁବିଧା କ'ଣ ? ଆମେ କ'ଣ ସମସ୍ତେ ଦୀର୍ଘାୟୁ ଓ ସୁସ୍ଥଶରୀର ଚାହୁଁନେ କି ? ଯଦି ହଁ, ଆସନ୍ତୁ ଆମେ ସମସ୍ତେ ଜଗତର ନାଥ ଜଗନ୍ନାଥଙ୍କୁ ଦେଖିବା, ଜାଣିବା, ବୁଝିବା ଓ ବଞ୍ଚିବା । ଏହା ହିଁ ବାସ୍ତବ ବିଜ୍ଞାନ ଓ ଜୀବନ ।

ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନୀ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର
ଭୁବନେଶ୍ୱର-୭୫୧୦୦୪





# ମଣିଷର ଦେବତା

ଡଃ ଚିତ୍ତ ରଞ୍ଜନ ଦାଶ

ଭାରତବର୍ଷର ଦ୍ୱାରକାରେ ଥିବା ଦ୍ୱାରିକାନାଥ, ବଦ୍ରିରେ ଥିବା ବଦ୍ରିନାଥ, ରାମେଶ୍ୱରରେ ଥିବା ରାମନାଥ ଓ ଶ୍ରୀକ୍ଷେତ୍ରରେ ଥିବା ଶ୍ରୀଜଗନ୍ନାଥ, ଏହି ଚାରିଧାମ ମଧ୍ୟରେ ଶ୍ରୀଜଗନ୍ନାଥ ଧାମ ସର୍ବଶ୍ରେଷ୍ଠ ପୀଠ । ଓଡ଼ିଶା ଜଗନ୍ନାଥ ଦେଶ ଭାବରେ ସୁପରିଚିତ । ସୁଦୂର ଅତୀତରୁ ଶ୍ରୀଜଗନ୍ନାଥ ହିଁ ଓଡ଼ିଆମାନଙ୍କର ଇଷ୍ଟ ଦେବତା । ଦ୍ରାବିଡ଼ ସଂସ୍କୃତିରୁ ଆରମ୍ଭ କରି ଆର୍ଯ୍ୟ ସଭ୍ୟତା, ବୌଦ୍ଧ ଧର୍ମ, ଜୈନ ଧର୍ମ, ବୈଷ୍ଣବ ଧର୍ମ, ଶୈବ ଧର୍ମ, ଶାକ୍ତ ଧର୍ମ ଓ ବ୍ରାହ୍ମଧର୍ମ ସମସ୍ତେ ଜଗନ୍ନାଥଙ୍କୁ ଗ୍ରହଣ କରିଛନ୍ତି ଏକାନ୍ତ ଆପଣାର ଭାବରେ । ତାଙ୍କୁ ହିଁ ଆଧାର କରି ଓଡ଼ିଶାର ସଭ୍ୟତା, ସଂସ୍କୃତି, ସାହିତ୍ୟ, କଳା, ସମାଜ ଓ ରାଜନୀତି କେନ୍ଦ୍ରୀଭୂତ । ଶ୍ରୀଜଗନ୍ନାଥ କେବଳ ଉତ୍କଳର ଆରାଧ୍ୟ ଦେବତା ନୁହନ୍ତି, ସେ ସମଗ୍ର ଜଗତର ନାଥ । ବିଶ୍ୱର କୋଣ ଅନୁକୋଣ ତାଙ୍କ ମହିମାରେ ମହିମାନ୍ୱିତ । ତାଙ୍କର ଶ୍ରେଷ୍ଠତ୍ୱ କାଳେ କାଳେ ଜନମାନସରେ ନିନାଦିତ । ସେଥିପାଇଁ ତ ସେ ହାତ ନଥାଇ ମଧ୍ୟ ଜାତୀୟତାର ଅଭୟ ବରଦ । ପାଦ ନଥାଇ ମଧ୍ୟ ସେ ସର୍ବଙ୍ଗ । ତାଙ୍କର ଦାଣ୍ଡ ବଡ଼ଦାଣ୍ଡ, ତାଙ୍କର ପଣ୍ଡା (ପୂଜକ) ବଡ଼ପଣ୍ଡା, ଦେଉଳ-ବଡ଼ଦେଉଳ, ପ୍ରସାଦ-ମହାପ୍ରସାଦ । ଏପରିକି ତାଙ୍କ ବଡ଼ଦାଣ୍ଡର ବାଲି ମଧ୍ୟ ଭକ୍ତ ଦୃଷ୍ଟିରେ ଶରଧାବାଲି, ସେଥିପାଇଁତ ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠତ୍ୱ ଉଦ୍‌ଘୋଷଣା କରିବାକୁ ଯାଇ କୁହାଯାଇଛି- 'ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମ' ।

କଥାରେ ଅଛି ଶ୍ରୀଜଗନ୍ନାଥଙ୍କୁ ନେଇ ଅନେକ ପର୍ବପର୍ବାଣି, ଅନେକ ଯାତ୍ରା ମହୋତ୍ସବ । ରଥଯାତ୍ରା କିନ୍ତୁ ଜଗତ ବିଖ୍ୟାତ । କେଉଁ ଅତୀତରୁ ରଥଯାତ୍ରାର ପ୍ରଚଳନ ହୋଇଛି ପୃଥିବୀର ବିଭିନ୍ନ ଦେଶରେ, ବିଭିନ୍ନ ସମାଜରେ, ବିଭିନ୍ନ ଧର୍ମରେ । କିନ୍ତୁ ଜଗନ୍ନାଥ ଧାମର ରଥଯାତ୍ରା ଉତ୍ସବ ଅତି ପୁରାତନ । ନାରଦ ପୁରାଣ, ସ୍କନ୍ଦ ପୁରାଣ, ପଦ୍ମପୁରାଣ ପ୍ରଭୃତିରୁ ଜଣାଯାଏ, ଯେତେବେଳେ ଜଗନ୍ନାଥ ଧର୍ମର ପ୍ରଥମ ପ୍ରବର୍ତ୍ତକ ମହାରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀକ୍ଷେତ୍ରକୁ ଆସିଲେ ସେତେବେଳେ ସେ ଶବର ପୂଜିତ ମାଧବ ବିଗ୍ରହଙ୍କ ଦେଖାପାଇଲେ ନାହିଁ ଏବଂ ନୈରାଶ୍ୟ ମଧ୍ୟରେ ଗତି କରୁଥିବା ଅବସ୍ଥାରେ ଦେବର୍ଷି ନାରଦଙ୍କ ସ୍ୱପ୍ନାଦେଶ ହେଲା । ତେଣୁ ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମ କ୍ଷେତ୍ରରେ ସର୍ବପ୍ରଥମ ଆଧାତ୍ମିକ କର୍ମ ଏବଂ କର୍ମଠାରୁ ହିଁ ରଥଯାତ୍ରା ବା ଘୋଷଯାତ୍ରାର ଆରମ୍ଭ କରିଥିଲା । ଫଳରେ ସମାଜରେ ଧୀରେ ଧୀରେ ମାନବ ମନରେ ଧର୍ମ ପ୍ରତି ଅନୁଗ୍ରହ ଭାବ ଦେଖାଦେଲା ଏବଂ ଜଗନ୍ନାଥ ହିଁ ହୋଇଗଲେ ସବୁରି ମନର ଆରାଧ୍ୟ ଦେବତା । ପ୍ରତିଟି ମାଙ୍ଗଳିକ କାର୍ଯ୍ୟରେ ସେ ହିଁ ସାଜିଲେ ପ୍ରଥମ ନିମନ୍ତ୍ରିତ ଅତିଥି । ଏଥିରୁ ଜଣାପଡ଼େ, ମାନବବାଦର ପ୍ରତିଟି ଧାରା ସହିତ ଜଗନ୍ନାଥ ସଂସ୍କୃତି ଓତଃପ୍ରୋତ ଭାବରେ ଜଡ଼ିତ । ତେବେ ଭାରତରେ ବିଭିନ୍ନ ସ୍ଥାନରେ ରଥଯାତ୍ରା ଆୟୋଜିତ ହେଉଥିଲେ ମଧ୍ୟ ଶ୍ରୀକ୍ଷେତ୍ରରେ ରଥାରୂଢ଼ ଜଗନ୍ନାଥଙ୍କୁ ଦର୍ଶନ କରିବା ଲାଗି ଭିନ୍ନ ଧର୍ମ, ଭିନ୍ନ ଦେଶ, ଭିନ୍ନ ସମାଜର ନାରୀ ପୁରୁଷଙ୍କ ମନରେ ଅସୀମ ଆଗ୍ରହ, ଜନସମାଗମ ଦୃଷ୍ଟିରୁ ପୃଥିବୀର ଅନ୍ୟ କେଉଁଠାରେ ଏତେ ବଡ଼ଯାତ୍ରା ବିରଳ କହିଲେ ଚଳେ ।

ଆଷାଢ଼ ମାସ, ଶୁକ୍ଳପକ୍ଷ, ଦ୍ୱିତୀୟା ତିଥିରେ ପବିତ୍ର ଶ୍ରୀଗୁଣ୍ଡିଚା । ଉତ୍କଳୀୟ ଧର୍ମ, ସଂସ୍କୃତି, ପରମ୍ପରାର ମୂଳାଧାର, ପ୍ରାଣପିଣ୍ଡ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା । ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ସବୁଯାତ୍ରାମାନଙ୍କ ମଧ୍ୟରେ ଘୋଷଯାତ୍ରା ଶ୍ରେଷ୍ଠ ସ୍ଥାନ ଅଧିକାର କରିଛି । ବ୍ରହ୍ମପୁରାଣରେ ଲିଖିତ ଅଛି -

'ଗୁଣ୍ଡିଚା ମଣ୍ଡପେ ଯାନ୍ତଂ ଯେ
ପଶ୍ୟନ୍ତି ରଥେ ସ୍ଥିତଂ
ବଳଂ କୃଷ୍ଣଂ ସୁଭଦ୍ରାଂ ଚ
ତେ ଯାନ୍ତି ଭୁବନଂ ହରେ ।।'

ଅର୍ଥାତ୍, ଏହି ଗୁଣ୍ଡିଚା ମଣ୍ଡପକୁ ରଥରେ ଆସୁଥିବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ଯେଉଁମାନେ ଦର୍ଶନ କରନ୍ତି, ସେମାନେ ବିଷ୍ଣୁଲୋକ ପ୍ରାପ୍ତ ହୁଅନ୍ତି ।

ସ୍ୱର୍ଣ୍ଣମୟୀ ଉତ୍କଳର ପବିତ୍ର ପୀଠ ନୀଳାଚଳ ଧାମରେ ଏହି ଦିନଟିରେ ପୁରୁଷୋତ୍ତମଙ୍କର ପବିତ୍ର ମହୋତ୍ସବର ବିପୁଳ ଆୟୋଜନ





ହୋଇଥାଏ । ଶ୍ରୀକ୍ଷେତ୍ରର ଚଳନ୍ତି ଦେବତା ଚକାଡ଼ୋଳାଙ୍କର ଏହା ସର୍ବଜନପ୍ରିୟ ଯାତ୍ରା । ପନ୍ଦର ଦିନ କାଳ ଅଣସର ଘରେ ରହି, ଜ୍ୱର ରୋଗ ଭୋଗି ଭୋଗି ପଥି ପାଞ୍ଚଣ ଖାଇ, ଆତ୍ମୀୟ ସ୍ୱଜନମାନଙ୍କ ଗହଣରେ ସେବା ପରିଚର୍ଯ୍ୟା ପାଇ ଆରୋଗ୍ୟ ହୁଅନ୍ତି ପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା । ରୋଗଶଯ୍ୟାରୁ ଉଠି ନବଯୌବନ ଲାଭ କରନ୍ତି । ବରଷା କାଳ । ଆଷାଢ଼ର ମେଘ ମହ୍ଲାର ପ୍ରତିଟି ଜନମାନସକୁ ଆହ୍ଲାଦିତ କରାଏ । ଭାଇଭଉଣୀ ପରମ ଆହ୍ଲାଦରେ ରଥ ଚଢ଼ି ଯାତ୍ରା କରନ୍ତି ଗୁଣ୍ଡିଚା ଘରକୁ । ପ୍ରତ୍ୟେକେ ଏକାକାର ହୋଇଯାଆନ୍ତି । ସବୁ ଅହଙ୍କାର, ଅଭିମାନ ବିହୀନ ହୋଇଯାଏ ପ୍ରେମର ଉତ୍ତାଳ ତରଙ୍ଗରେ । ବଡ଼ଦାଣ୍ଡ ଆପେ ଆପେ ହସିଉଠେ । ଆଚାଣ୍ଡାଳ ବ୍ରାହ୍ମଣ ସେହି କରୁଣାର ଛତ୍ରଛାୟା ତଳେ ପ୍ରେମରେ କୋଳାକୋଳି ହୁଅନ୍ତି । ଉଚ୍ଚନୀଚ ଭେଦଭାବ ଭୁଲି ମହାନ୍ ମାନବିକତା ବୋଧରେ ସମସ୍ତଙ୍କର କେବଳ ଗୋଟିଏ ପରିଚୟ-ଭକ୍ତଜନ । ଧନୀ-ଦରିଦ୍ର, ଛୁଆଁ-ଅଛୁଆଁ, ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିଆନ, ଉଚ୍ଚନୀଚ ସମସ୍ତେ ସମାନ । ସମସ୍ତେ ବିଶ୍ୱ ଭ୍ରାତୃତ୍ୱରେ ଉଦ୍‌ବୁଦ୍ଧ । ଧଳା, କଳା, ପୀତ-ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ତିନିବର୍ଣ୍ଣ ଲୋକଙ୍କର ପ୍ରତୀକ । ସେ ପ୍ରକୃତି ସେ ପୁରୁଷ । ସବୁରି ପ୍ରିୟତମ ଦେବତା ସେ । ସେ ସମଗ୍ର ମଣିଷ ଜାତି ଭିତରେ ନିଜକୁ ହଜାଇ ଦିଅନ୍ତି ।

ବାଟରେ ପଡ଼େ ମାଉସୀ ମା' ଘର । କାଳେ ମାଉସୀ କ'ଣ ଭାବିବେ, ଅଭିମାନ କରିବେ ସେଥିପାଇଁ ଦଣ୍ଡେ ଅଟକି ଦେଖା କରିଯାଆନ୍ତି ଭାଇଭଉଣୀ, ମାଉସୀ ମା'ର ପୋଡ଼ପିଠାକୁ ଛାଡ଼ି କ'ଣ ସେ ଫେରି ଯାଇପାରିବେ ! ମମତାରେ ବାଢ଼ି ଦିଅନ୍ତି ମାଉସୀ ମା' । ଜଗନ୍ନାଥଙ୍କର ସେଥିରେ ଭାରି ଶରଧା । ରଥଚକ ଗଡ଼ିଚାଲେ । କୋଟି ଜନତାର ହୃଦୟ କନ୍ଦରରେ ନିନାଦିତ ହୋଇଉଠେ - ତ୍ୟାଗର ମହାନତା, ଭକ୍ତିର ମହିମା । ଏଥିରୁ ପ୍ରାଣପ୍ରିୟ ଦେବତାଙ୍କର ମହାଭାବର ପ୍ରମାଣ ମିଳେ । ଅସ୍ପୃଶ୍ୟ, ଦଳିତ, ଧନୀ, ନିର୍ଦ୍ଧନ, ଜାତି, ଅଜାତି ନିର୍ବିଶେଷରେ ସେ ସମସ୍ତଙ୍କର ଭଗବାନ । ଚତୁର୍ଦ୍ଦିଗରେ ଭକ୍ତର ଜୟ ଜୟକାର । ଭକ୍ତ ଓ ଭଗବାନଙ୍କର ଏ ବନ୍ଧନ ଭାବର ବନ୍ଧନ । ଯେଉଁ ଭାବ ବନ୍ଧନରେ ଅଚ୍ଛେଦ୍ୟ ପାଟ ଦଉଡ଼ିରେ ଚିରକାଳ ଭକ୍ତ ଭଗବାନଙ୍କୁ ବାନ୍ଧି ରଖିପାରେ । ଭକ୍ତ ମାନସ ସ୍ଥିର ନିବଦ୍ଧ ହୋଇଯାଏ ଚକାଆଖିର କଳା କଳା ଆଖି ଦୁଇଟିରେ । ଯେଉଁ ଆଖି ଦୀନଦଳିତ, ଧନୀ ଦରିଦ୍ର, ଉଚ୍ଚନୀଚକୁ ସମଭାବରେ ଦେଖିଥାଏ, ତା' ଦୃଷ୍ଟିରେ ସବୁ ସମାନ, ସମସ୍ତେ ଏକ ।

ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସଭିଏଁ ଆପଣାର ଦେବତାକୁ ଦେଖିବା ପାଇଁ ରୁଣ୍ଡ ହୁଅନ୍ତି ପବିତ୍ର ବଡ଼ଦାଣ୍ଡରେ । ଟିକିଏ ଦର୍ଶନ ଓ ସାନିଧ୍ୟ ପାଇଁ । ଆଚାଣ୍ଡାଳ ବ୍ରାହ୍ମଣ ମହାପ୍ରସାଦ ସେବନ କରି ଧନ୍ୟ ହୁଏ । କୈବଲ୍ୟ ଲାଭ କରି ପବିତ୍ର ହୁଏ । ମୁକ୍ତ କଣ୍ଠରେ ଘୋଷଣା କରେ - ଜଗନ୍ନାଥଙ୍କର ଧର୍ମ ସଂସ୍କୃତି, ଦର୍ଶନ, ପରମ୍ପରା ସବୁ ମଣିଷର । ସେଥିପାଇଁ ଜଗନ୍ନାଥ ଚେତନା ଭିତରେ ରହିଛି ବିଶ୍ୱୈକପ୍ରାଣତା, ବିଶ୍ୱଭ୍ରାତୃତ୍ୱ, ସଂହତି, ସଂପ୍ରୀତି, ସହାବସ୍ଥାନ ସଦ୍‌ଭାବନା । ତେଣୁ ବୌଦ୍ଧ କହେ ବୁଦ୍ଧ, ଜୈନ କହେ ଜୀନ, ଶାକ୍ତ କହେ ଶକ୍ତି । ଗାଣପତ୍ୟ କହେ ଗଣପତି, ଶୈବ କହେ ଶିବ, ବୈଷ୍ଣବ କହେ ବିଷ୍ଣୁ, କିଏ କହେ ଅନାଦି, କିଏ କହେ ଅନନ୍ତ - କିନ୍ତୁ ସେ ଜଗତର ନାଥ ଜଗନ୍ନାଥ । ସେ ଜଗତର, ଅନନ୍ତ କୋଟି ବ୍ରହ୍ମାଣ୍ଡର । ଜଗନ୍ନାଥ ଧର୍ମ କହେ - ପୁରୁଷ ସହିତ ଜଗତର ଅଭେଦ୍ୟ ପରିକଳ୍ପନା ହିଁ ଜଗନ୍ନାଥ ଚେତନା । ପୁରୁଷ ଓ ଜଗତ ଏକୀଭୂତ ହୋଇ ପୁରୁଷୋତ୍ତମରେ ରୂପାନ୍ତରିତ ହୋଇଥାଏ । ତେଣୁ ପୁରୁଷୋତ୍ତମର ଉପାସନା ହେଉଛି ଜଗତର ଉପାସନା । ମଣିଷର ଉପାସନା । ନିଜର ବ୍ୟକ୍ତିଗତ ସୁଖଦୁଃଖ, ହାନିଲାଭ, ଭୋଗ ପ୍ରାଚୁର୍ଯ୍ୟ ସ୍ୱାର୍ଥ ଭିତରୁ ମୁକ୍ତ ହୋଇ ଅପରର ସୁଖଦୁଃଖରେ ଅଂଶୀଦାର ହେବା ହିଁ ଜଗନ୍ନାଥ ଧର୍ମର ମହାନ ଲକ୍ଷ୍ୟ ।

ମହାରାଜା ଦିବ୍ୟସିଂହ ଦେବ ଜଗନ୍ନାଥଙ୍କର ଚଳନ୍ତି ବିଗ୍ରହ, ଓଡ଼ିଆ ଜାତିର ମଉଡ଼ମଣି ଭାବରେ ପରିଚିତ ଠାକୁର ରାଜା ସେବକ ଭୂମିକାରେ ଅବତୀର୍ଣ୍ଣ । ମହାରାଜା ହାତରେ ସମାର୍ଜନୀ ଧରି ଆଗେଇ ଆସନ୍ତି ରଥ ଉପରକୁ ଛେରା ପହଁରା କରିବାକୁ । ବିଶ୍ୱବାସୀ ଚକିତ ନୟନରେ ଚାହିଁ ରହିଥାନ୍ତି ଅପୂର୍ବ ଦୃଶ୍ୟକୁ ଅବଲୋକନ କରିବାକୁ । ସେବାର ମହିମା ପ୍ରତିଷ୍ଠା କରିବା ପାଇଁ ଛେରାପହଁରାକୁ ପରମ ଗୌରବ ରୂପରେ ସେ ଗ୍ରହଣ କରିଥାଆନ୍ତି । ଜଗନ୍ନାଥ ସଂସ୍କୃତି ଏହା ହିଁ ଶିକ୍ଷାଦିଏ ଯେ ରାଜା ହେଉକି ରଙ୍କ ହେଉ, ସମସ୍ତେ ମଣିଷର ସେବକ । ମଣିଷର ସେବା ପାଇଁ ସୂର୍ଯ୍ୟ ଠିକ୍ ସମୟରେ ଉଦୟ ହୁଅନ୍ତି, ଅସ୍ତ ଯାଆନ୍ତି । ବର୍ଷା ଠିକ୍ ସମୟରେ ଜଳଦାନ କରେ । ବାୟୁ ନିରବଚ୍ଛିନ୍ନ ଭାବରେ ପ୍ରବାହିତ ହୁଏ । ପ୍ରକୃତି ନିତ୍ୟ ନୂତନ ରୂପରେ ଶସ୍ୟଶ୍ୟାମଳା ହୁଏ । କାହିଁ କେବେତ ସୂର୍ଯ୍ୟ କହନ୍ତି ନାହିଁ - ଆଜି ଭାରି ଅଳସ ଲାଗୁଛି, ଆଉ ଦି'ଘଣ୍ଟା ଡେରିରେ ଉଦୟ ହେବା କିମ୍ବା ଏ ଲୋକଟି ପାପୀ, ତା' ପାଇଁ ମୁଁ ଆଲୋକ ପ୍ରଦାନ କରିବି ନାହିଁ । ଠିକ୍ ସମୟରେ ସବୁରି ପାଇଁ ସେ ଉଦିତ ହୁଅନ୍ତି । ଏ ସୃଷ୍ଟିର ସର୍ବଶକ୍ତିମାନ ସୂର୍ଯ୍ୟ ଦେବତା ଓ ଜଗନ୍ନାଥଙ୍କର ଚଳନ୍ତି ବିଗ୍ରହ ଗଜପତି ଅନ୍ୟମାନଙ୍କୁ ନିରଳସ ସେବକ ଭାବରେ ନିଜକୁ ପ୍ରତିଷ୍ଠା କରିପାରନ୍ତି । ତେଣୁ ଯେକୌଣସି ବ୍ୟକ୍ତି ପାଇଁ ସେବା ପରମ କର୍ତ୍ତବ୍ୟ, ସେବା ହିଁ ପରମ ଧର୍ମ । ସେବାପ୍ରତି ଘୃଣା ମନୋଭାବ ଦେଖାଉଥିବା ବ୍ୟକ୍ତିମାନଙ୍କ ପ୍ରତି ଏହା ଏକ ନୀରବ ଆହ୍ୱାନ । ଏଥିରୁ ମନେହୁଏ ଜଗନ୍ନାଥ ଧର୍ମ ମାନବ ମନରେ ସେବାଧର୍ମକୁ ଶ୍ରେଷ୍ଠ ଆସନ ଦେଇପାରିଛି ।

ସର୍ବଧର୍ମ ସମନ୍ୱୟର ଏହି ନବଦିନ ଯାତ୍ରା ଶେଷକରି ପୁଣି ଶ୍ରୀମନ୍ଦିରକୁ ବାହୁଡ଼ି ଆସନ୍ତି ପ୍ରଭୁ । ବାହୁଡ଼ା ଦିନ ଘର ବାହୁଡ଼ା ହୁଅନ୍ତି ପ୍ରଭୁ ଜଗନ୍ନାଥ । ଏକାଦଶୀ ବ୍ରତ, ସୁନାବେଶ ପରେ ଶ୍ରୀମନ୍ଦିରକୁ ବିଜେ ହେବାକୁ ପ୍ରୟାସ କରନ୍ତି । ମା' ଲକ୍ଷ୍ମୀ ଠାକୁରାଣୀ ଅଭିମାନରେ ରୋଷ ଜର୍ଜର ହୋଇ ସିଂହ ଦରଜା କିଳି ଦିଅନ୍ତି । ଭଉଣୀକୁ ସାଙ୍ଗରେ ନେଲେ । ସେ ତାଙ୍କର କିଏ କି ? ଜଗତଜନନୀ ମା' ଲକ୍ଷ୍ମୀ ଠାକୁରାଣୀ ପାଲଟି





ଯାଆନ୍ତି ସାଧାରଣ ଅଭିମାନିନୀ ନାରୀଟିଏ, ମାନଭଞ୍ଜନ କରିବାକୁ କମ୍ କଷ୍ଟ ହୋଇନି ଶ୍ରୀଜଗନ୍ନାଥଙ୍କୁ । ମାନବିକ ଆବେଦନର ଏହା ଆବେଗମୟ ରୂପ । ଜଗନ୍ନାଥ ଚେତନାର ଏହି ମାନବିକତା ସାରାବିଶ୍ୱରେ ଅଦ୍ୱିତୀୟ ।

ବାସ୍ତବରେ ମାନବବାଦର ସାମ୍ୟ, ମୈତ୍ରୀ, ଧାରାକୁ କୋଳେଇ ନେଇଛି ଜଗନ୍ନାଥ ଧର୍ମ । ମଣିଷର ଦେବତା ଜଗନ୍ନାଥ ଆପଣେଇ ନେଇଛନ୍ତି ତା'ର ପ୍ରିୟ ମଣିଷ ଭକ୍ତ ସାଲବେଗ, ଦାସିଆ ବାଉରୀ, ବନ୍ଧୁ ମହାନ୍ତି, ମଉ-ବଳରାମ ପ୍ରଭୃତି ଭକ୍ତମାନଙ୍କୁ । ତାଙ୍କ ଦୃଷ୍ଟିରେ ସମସ୍ତେ ସମାନ । ବାରବର୍ଷରେ ଥରେ ନିଜେ ମୃତ୍ୟୁବରଣ କରି, ନବକଳେବର ଧାରଣ କରନ୍ତି । ମୃତ୍ୟୁକୁ ଭୟ କରୁଥିବା ମଣିଷକୁ ସେ ଅଭୟ ପ୍ରଦାନ କରନ୍ତି । ଜୀର୍ଣ୍ଣାନି ଦାସାଂସି ଯଥା ନିହାୟ ... । ଆତ୍ମାର ଯେ ପଟାନ୍ତର ହୁଏ ଏହି ସତ୍ୟ ପ୍ରତିପାଦନ କରନ୍ତି । ସାହସ, ଶକ୍ତି, ସାମ୍ୟ, ମୈତ୍ରୀ ଇତ୍ୟାଦିର ବାନା ଉଡ଼ାଇ କାର୍ଯ୍ୟ କରିବାର ପ୍ରେରଣା ଜଗନ୍ନାଥ ଧର୍ମର ମୂଳତତ୍ତ୍ୱ । ଅନ୍ତରେ, ବାହାରେ ସର୍ବତ୍ର ଦେବତାଙ୍କ ଅଧିଷ୍ଠାନ । ଦେବତାଙ୍କ ସହାୟ ବିନା ମନୁଷ୍ୟର ଜୀବନଧାରଣ ଅସମ୍ଭବ । ସାରା ପୃଥିବୀରେ ଏପରି କୌଣସି ଧର୍ମ ନାହିଁକି ଦେବତା ନାହାନ୍ତି, ଯିଏ ନିଜେ ମଣିଷ ପରି ଆଚରଣ କରି ମାନବ ଜାତିକୁ ଶିକ୍ଷା ଦେଇଥାଆନ୍ତି । କଥା ଅଛି - 'ଯାହାର ମନ ଯେଡ଼େ ତା'ର ପ୍ରଭୁ ସେଡ଼େ' - ସେ ହିସାବରେ ଠାକୁର ସୃଷ୍ଟିକର୍ତ୍ତା ଧ୍ୱଂସକର୍ତ୍ତା, ମନୁଷ୍ୟର ଚିନ୍ତାରୁ ତାଙ୍କର ଉତ୍ପତ୍ତି, ମନୁଷ୍ୟ ବିବର୍ତ୍ତିତ ଭାବଧାରାରେ ତାଙ୍କର ବିକାଶ ଓ ବିନାଶ । ତେଣୁ ମଣିଷର ଦେବତା ଭାବରେ ଶ୍ରୀଜଗନ୍ନାଥ ସମଗ୍ର ବିଶ୍ୱବାସୀଙ୍କ ପାଇଁ ଓଡ଼ିଶାର ସର୍ବଶ୍ରେଷ୍ଠ ଅବଦାନ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ରଘୁନାଥ ସମବାୟ ମହାବିଦ୍ୟାଳୟ
ଓଡ଼ଗାଁ, ନୟାଗଡ଼

# ତତ୍ତ୍ୱ ପୂତ ମୂର୍ତ୍ତି ଜଗନ୍ନାଥ

କୁମାର କବି ଅରକ୍ଷିତ ପ୍ରଧାନ

ପ୍ରଚଳିତ ଆଷାଢ଼ର ବିଚଳିତ ବିଜୁଳି ମାଳାରେ ।
ଆକାଶରେ ଆଚ୍ଛାଦିତ ମେଘଦ୍ୟୁତି କଜ୍ଜଳ କଳାରେ ॥
ବର୍ଷାର ଶୀତଳ ସ୍ପର୍ଶ ବନାନୀର ବିମଳ କାନ୍ତିରେ ।
ମାଳତୀ ମଲ୍ଲୀ କଦମ୍ବ କୁସୁମର ସୁଷମ ଶାନ୍ତିରେ ॥
ସାଗର ସରିତସର ସରସୀର କଳ କଲ୍ଲୋଳରେ ।
କେଦାର କାନ୍ତାର ବନ ପର୍ବତର ଶୋଭା ଶ୍ୟାମଳରେ ॥
ଶରତ ହେମନ୍ତ ଶୀତ ଋତୁରାଜ ଗ୍ରୀଷ୍ମ ପ୍ରକୃତିରେ ।
ତପନ ଚନ୍ଦ୍ର ତାରକା ଗ୍ରହପୁଞ୍ଜ ନିର୍ମଳ ଜ୍ୟୋତିରେ ॥
ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ଆଦି ପଞ୍ଚ ତନ୍ମାତ୍ରାରେ ।
ପଞ୍ଚଭୂତ ସମାଶ୍ରିତ ସମସ୍ତଙ୍କ ଜୀବନଯାତ୍ରାରେ ॥
ପ୍ରାଣ ଅପାନ ସମାନ ଦ୍ୟାନବ୍ୟାନ ପବନ ଗତିରେ ।
ସୃଷ୍ଟି ପାଳନ ସଂହାର ସଂଚାଳିତ ସଂସାର ନୀତିରେ ॥
ମାସ ବର୍ଷ ଦିନ ଦଣ୍ଡ କଳା କାଷ୍ଠାମୁହୂର୍ତ୍ତ ସ୍ରୋତରେ ।
କାଳଚକ୍ର ଆବର୍ତ୍ତନ ଅଫୁରନ୍ତ ଅନନ୍ତ ସୂତ୍ରରେ ॥
ତିଳେ ତୈଳ ଫୁଲେ ଗନ୍ଧ ଗୋପନରେ ରହିଥିଲା ପରି ।
ତୁମେ ନାଥ ଜଗନ୍ନାଥ ପ୍ରତିଟିରେ ରହିଅଛ ପୂରୀ ॥
ସ୍ଥୂଳ ସୂକ୍ଷ୍ମ ପରମାଣୁ ଅଣୁ ତତ୍ତ୍ୱ ଆଧାର ଆପଣ ।
ସକଳ କଳାକୃତିର କଳ୍ପତରୁ ସତ୍ୟ ସନାତନ ॥
ସୁଖ ଦୁଃଖ ଭଲମନ୍ଦ ହସ କାନ୍ଦ ଶୁଭାଶୁଭ ଫଳ ।
ଦାତା ତୁମେ ମାତା ତୁମେ ପିତା ତୁମେ ସବୁତୁମ ଖେଳ ॥
ଅସାର ଅନିତ୍ୟ ମିଥ୍ୟା ଏ ଜଗତ ବ୍ୟଥାର ସମୁଦ୍ର ।
ଅପାର ସଂପଦ ପାଇ ଚେତନାରେ ସମସ୍ତେ ଦରିଦ୍ର ॥
ମାୟା ମୋହ ଅନ୍ଧକାର ବିକାରରେ ଆଖି ଥାଇ ଅନ୍ଧ ।
ଭାଙ୍ଗି ପାରୁ ନାହିଁ ତେଣୁ କାମନାର ସୁବିଶାଳ ବନ୍ଧ ॥
ପରମ ପ୍ରେମମୟହେ ବ୍ରହ୍ମଦାରୁ କୃପା ଅକୂପାର ।
ନନ୍ଦିଘୋଷେ ଯାତ୍ରା କରି ଶାନ୍ତି କର ବିଶ୍ୱ ଚରାଚର ॥

ବିନୋଦ ବିହାର, ଖଣ୍ଡୁଆଳପୁର
ବ୍ରହ୍ମଗିରି, ପୁରୀ





# ମୂକଂ କରୋତି ବାଚାଳମ୍
## (ମାଦଳାପାଞ୍ଜି ସମ୍ବଳିତ)

ଡଃ ଭାଗ୍ୟଲିପି ମଲ୍ଲ

**ଶ୍ରୀ**ମଦ୍ ଭଗବଦ୍ ଗୀତାରେ ଉଲ୍ଲେଖ ଅଛି-

ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିମ୍ ।
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦମାଧବମ୍ ॥

ଅର୍ଥାତ୍- ଭଗବାନଙ୍କ କରୁଣା ଥିଲେ ପଙ୍ଗୁଟିଏ ପର୍ବତ ଲଙ୍ଘିପାରେ ଏବଂ ମୂକଟିଏ ପ୍ରଗଳଭ ହୋଇପାରେ । ଏହି ପରିପ୍ରେକ୍ଷୀରେ ମାଦଳାପାଞ୍ଜିରେ ଏହିପରି ଏକ ସୁନ୍ଦର ବର୍ଣ୍ଣନା ଦେଖିବାକୁ ମିଳେ, ଯାହା ଭଗବଦ୍ ଗୀତାରେ ଉଲ୍ଲେଖ ଥିବା ପରଂବ୍ରହ୍ମ ଭଗବାନଙ୍କର କରୁଣାର ଜ୍ୱଳନ୍ତ ଉଦାହରଣଟିଏ ।

ଓଡିଶାର ଇତିହାସ କହିଲେ, ଓଡିଶାର ସଂସ୍କୃତି କହିଲେ ଶ୍ରୀଜଗନ୍ନାଥଙ୍କର ଇତିହାସକୁ ବୁଝାଏ । ଶ୍ରୀଜଗନ୍ନାଥ ସଂସ୍କୃତି ହେଉଛି ଓଡିଶାର ସଂସ୍କୃତି । ତେଣୁ ଓଡିଶାକୁ ଶାସନ କରିଆସିଥିବା ରାଜାମାନଙ୍କର ଶ୍ରୀଜଗନ୍ନାଥ ମନ୍ଦିର ଓ ଶ୍ରୀଜଗନ୍ନାଥଙ୍କ ସହିତ ସଂପର୍କ ଅଙ୍ଗାଙ୍ଗୀଭାବେ ଜଡିତ । ଏସବୁର ଐତିହାସିକ ପ୍ରମାଣ ମାଦଳାପାଞ୍ଜିରୁ ହିଁ ମିଳିଥାଏ । ଏହି ମାଦଳାପାଞ୍ଜିଗୁଡିକରୁ ଉତ୍କଳର ରାଜବଂଶାବଳୀ, ସେମାନଙ୍କର ସମୟସୀମା, କୀର୍ତ୍ତି ଅପକୀର୍ତ୍ତି ଓ ସର୍ବୋପରି ଶ୍ରୀମନ୍ଦିର ନିର୍ମାଣଠାରୁ ଆରମ୍ଭକରି ଶ୍ରୀଜୀଉମାନଙ୍କର ରତ୍ନବେଦୀ ଆରୋହଣ ଓ ପୂଜାପଦ୍ଧତି ପର୍ଯ୍ୟନ୍ତ ସମସ୍ତ ପ୍ରକାର ଐତିହାସିକ ତଥ୍ୟ ଆମର ଦୃଷ୍ଟି ଗୋଚର ହୋଇଥାଏ । ଓଡିଶା ଇତିହାସରେ ଶ୍ରୀଜଗନ୍ନାଥଙ୍କର ପୁନରୁଦ୍ଧାର ଓ ପୁନଃସଂସ୍ଥାପନ ନେଇ ବହୁ ଐତିହାସିକଙ୍କର ତଥ୍ୟଭିତ୍ତିକ ତଥ୍ୟମାନ ଦୃଷ୍ଟିଗୋଚର ହୋଇଥାଏ । ଏସଂପର୍କରେ ଡକ୍ଟର ନବୀନ କୁମାର ସାହୁ 'A History of Orissa'ରେ ଲେଖିଛନ୍ତି-

ଜଗନ୍ନାଥଙ୍କ ପ୍ରତିମୂର୍ତ୍ତିର ପୁନରୁଦ୍ଧାର ଓ ଜଗନ୍ନାଥ ପୂଜାର ପୁନଃପ୍ରଚଳନ ହିଁ ଯଯାତି ଦ୍ୱିତୀୟଙ୍କ ଶାସନ କାଳର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଘଟଣା । କେତେକ ଶୁଭ ଶକୁନ ଓ ଦୈବୀ ନିର୍ଦ୍ଦେଶରେ ପରିଚାଳିତ ହୋଇ ସେ ମନ୍ଦିର ଓ ମୂର୍ତ୍ତି ବିଷୟରେ ଅନୁସଂଧାନ ପାଇଁ ପୁରୁଷୋତ୍ତମ କ୍ଷେତ୍ରକୁ ଯାତ୍ରା କଲେ । ରକ୍ତବାହୁର ଆକ୍ରମଣ ବେଳେ ପ୍ରାୟ ଦେଢ ଶହ ବର୍ଷ ପୂର୍ବେ ଶ୍ରୀଜୀଉ (ଜଗନ୍ନାଥ)ଙ୍କୁ ସୋନପୁରର ଗୋପାଳୀ



ନାମକ ଗ୍ରାମକୁ ନିଆଯାଇଥିବା କାହାଣୀ ସେଇଠି ବ୍ରାହ୍ମଣମାନଙ୍କ ମୁହଁରୁ ଶୁଣିଲେ । ସେମାନେ କହିଲେ ସେଇ ଦିନଠୁ ଜଗନ୍ନାଥଙ୍କୁ ଆଉ କେହି ଦେଖିନାହାଁନ୍ତି । ରାଜା ଏ ସମ୍ବାଦ ପାଇ ସୋନପୁରର ଜଂଗଲ ଅଭିମୁଖେ ଯାତ୍ରା କଲେ । ଆଉ ସେଇଠି ଦୈବୀ ବଶରୁ ଖୋଜାଖୋଜି କରି ଦେଖିଲେ ଶ୍ରୀଜୀଉଙ୍କୁ ପାତାଳୀ କରାଯାଇଛି । ଏକ ବିରାଟ ବଟବୃକ୍ଷ ସେ ପୁଣ୍ୟ ସ୍ଥାନଟିକୁ ଆଚ୍ଛାଦିତ କରିଛି । ଗଛ ହାଣି, ମାଟି ଖୋଳି ଦେଖିଲେ ଏକ ପଥର ବାକ୍ସ ଭିତରେ ଜୀଉ ବା ଜୀଉମାନେ ଅଛନ୍ତି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ (ପୃ:୨୩୨) ।

ଏହି ରକ୍ତବାହୁ କିଏ? ଇତିହାସରେ ସେ କଳାପାହାଡ ଯେ କି ଜଗନ୍ନାଥଙ୍କୁ ଖୋଜି ଖୋଜି ସମ୍ବଲପୁର ପର୍ଯ୍ୟନ୍ତ ଚାଲି ଆସିଥିଲା ଆଉ ଏଇଠି ଏକ ଭଂଗା ସମାଧି ଭିତରେ ଶେଷଥର ପାଇଁ ଶୋଇଯାଇଥିଲା ବୋଲି 'ସମ୍ବଲପୁର ଇତିହାସ'ରେ ଶିବ ପ୍ରସାଦ ଦାଶ ଲେଖିଛନ୍ତି । ଗ୍ରାମ ସନ୍ନିକଟ ତ୍ରିକୂଟ ପର୍ବତ ଗୁମ୍ଫା ଭିତରୁ ଜଗନ୍ନାଥଙ୍କୁ ଉଦ୍ଧାର କରିଥିଲେ । ଐତିହାସିକ ପୂର୍ଣ୍ଣଚନ୍ଦ୍ର ରଥ 'କୋଶଳ ଇତିହାସ' କଥାରେ ଏ ଘଟଣା ଉଲ୍ଲେଖ କରିଛନ୍ତି:

ତ୍ରିକୂଟ ପର୍ବତର ଏକ ଗୁମ୍ଫାରେ ଜୀଉଙ୍କୁ ଲୁଚାଯାଇଥିଲା । ଗୁମ୍ଫା ମୁହଁରେ ଏକ ମହାଲିଙ୍ଗ ବୃକ୍ଷ ପୋତା ଯାଇଥିଲା । ଦଇତାମାନେ ପାଟଣୀଗଡ ନିକଟସ୍ଥ ବିରିବନ୍ଧରେ ଓ ପତିମାନେ ଖଡିଆଲ୍‌ରେ ରହିଲେ । ଦୁଇଶହ ବର୍ଷ ପରେ ଯଯାତି ସେ ମୂର୍ତ୍ତିମାନଙ୍କୁ ପୁନରୁଦ୍ଧାର କଲେ ଓ ତାଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କଲେ । ତେଣୁ ଲୋକେ ତାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କହିଲେ (ପୃ.୩୧୬) ।

ପ୍ରାଚୀନ ତଥା ମଧ୍ୟଯୁଗୀୟ ଓଡିଶା ଓ ଶ୍ରୀଜଗନ୍ନାଥଙ୍କ ଇତିହାସ ସଂପର୍କରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ତାଙ୍କର ପ୍ରକାଶିତ





ମାଦଳାପାଞ୍ଜିରେ ଉଲ୍ଲେଖ କରିଛନ୍ତି । ମାତ୍ର 'ଓଡ୍ରଦେଶ ରାଜବଂଶାବଳୀ' ଶୀର୍ଷକ ପୁସ୍ତକ ଯାହାକି ଡଃ କାହ୍ନୁଚରଣ ମିଶ୍ରଙ୍କର ମୁଖ୍ୟ ସଂପାଦନା ଓ ଡଃ ଭଗବାନ ପଣ୍ଡାଙ୍କ ସଂପାଦନାରେ ସଂପାଦିତ ହୋଇଛି, ତାହାକୁ ଭିତ୍ତିକରି ଉପସ୍ଥାପିତ ପ୍ରବନ୍ଧଟି ପ୍ରସ୍ତୁତ ହୋଇଛି ।

ସମୟସ୍ରୋତରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ବହୁ ଉତ୍‌ଥାନ ପତନ ଦେଇ ଗତି କରିଛି । ଏପରିକି ଯବନମାନଙ୍କର ଅଧୀନ ହୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପ୍ରାୟ ନଷ୍ଟଭ୍ରଷ୍ଟ ହୋଇଯାଇଥିଲା । ଯବନମାନଙ୍କ ରାଜ୍ୟଭୋଗକାଳ ଆନୁମାନିକ ଶତବର୍ଷ ଅର୍ଥାତ୍ ୧୪୬ ବର୍ଷ । ମୋଟ ଶକାବ୍ଦ ଗତ ହେଲା ରସାଙ୍କ ବହ୍ନି ପରିମିତ ୩୯୬ ବର୍ଷ । ସୁବର୍ଣ୍ଣପୁର ଗ୍ରାମସ୍ଥ ଗୋପାଳି ଗ୍ରାମରେ ଶ୍ରୀମୂର୍ତ୍ତିଙ୍କର ଅବସ୍ଥିତି ହେଲା ପାଖାପାଖି ୧୯୨ ବର୍ଷ । ଏହାପରେ କେଶରୀ ବଂଶୀୟ ରାଜା ଯଯାତିକେଶରୀ ରାଜ୍ୟଭୋଗ କଲେ ।

ମାଦଳାପାଞ୍ଜି ଅନୁସାରେ, 'ଏଠାରେ କେଶରୀ ପାଟରାଜା ହୋଇଥିଲେ । ପ୍ରଥମ ପାଟ ଯଯାତି କେଶରୀ ହେଲେ । ଏ ରାଜା ବଡ ସୂରବନ୍ତ ମହାଦାନୀ ଓ ମହାରାଜାଙ୍କ ଅ୧୧ଙ୍କେ ସନ୍ନ୍ୟାସୀ ବ୍ରହ୍ମଚାରୀ ବ୍ରାହ୍ମଣମାନଙ୍କୁ ପଚାରିଲେ ଓଡିଶା ରାଜାର ପ୍ରଭୁ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁ ସେ କାହିଁଛନ୍ତି? ସେମାନେ କହିଲେ ମୁଗଲ ଗୋଳ ହୋଇଲାକୁ ସୋମୋଦ୍ର ମାତି ଅଇଲାକୁ ଅପାର ଦିନ ହୋଇଲା । ଶ୍ରୀ ପର୍ମେସରଙ୍କୁ ପାତାଳୀ କରି ସୁନୁପୁର ଆଡେ କେଉଁଠାରେ ବିଜେ କରାଇଲେ ଗାଁତବ ନାହିଁ । ଏହା ଶୁଣି ମହାରାଜା ସୁନୁପୁର ଗଲେ । ସେଠାରେ ଖଣ୍ଡାଇଙ୍କୁ ପଚାରିଲେ । ସେମାନେ କହିଲେ ଆମ୍ଭେ ଗାଁତବ ନୋହୁଁ । ଆମ୍ଭ ବାପ ଅଜା କହନ୍ତି ଦିଅବର ଏହି । ଏଥିତଳେ ଦିଁଅଙ୍କୁ ପୋତିଥିଲେ । ଏହା ଶୁଣି ରାଜା କଟୁରିଆ ବ୍ରାହ୍ମଣଙ୍କୁ ଆଣି ସେ ଗଛ କଟାଇ ଖୋଳାଇଲେ । ପର୍ମେସରଙ୍କୁ ବାହାର କଲେ । ସେ ଦିନ ଶ୍ରୀମୂର୍ତ୍ତିମାନ ମାଟି ଖାଇ ଛିନ୍ନଭିନ୍ନ ହୋଇଛନ୍ତି । ଦେଅମାନଙ୍କୁ ଲୁଗା ଗୁଡିଆଇ ମୁଣାରେ ପୂରୋଇ ମୁଦାଇଲେ । ଏ ଉତ୍ତାରୁ ଦଇତାପତିଙ୍କୁ ଲୋଡାଇଲେ । ଦଇତାମାନେ ବିରିବନ୍ଧରେ ଥିଲେ । ପତିମାନେ ରତନପୁର ସୀମାରେ ଥିଲେ । ଏମାନଙ୍କ ଅଣାଇ ବିଧିପତ୍ର ପ୍ରମାଣେ ଦାରୁଛେଦନ କରାଇ ପର୍ମେସରଙ୍କୁ ସୁମୂର୍ତ୍ତି କରାଇଲେ । ଏ ଘଟଣାବେଳେ ରାଜା ଅଧିକ ସେବକ ତାଟି ଭିତର କଲେ । ଗଛକଟା କଟୁରିଆ ବ୍ରାହ୍ମଣ ପାଞ୍ଚ ସେବା ଏହାଙ୍କ ଗୋତ୍ର ବଛସ । ଜଃଣଙ୍କୁ ଜ୧୦ଣ । ପତିମାନଙ୍କର ଏଗାରହ ଜଣକୁ ଛଅଜଣ । ଦଇତାମାନଙ୍କର ଉଲୁକ ଗୋତ୍ର । ୮ ଜଣକୁ ୮ ଜଣ ପରିଛା ଗାଏ ଚବିଶ ଜଣ । ଶ୍ରୀପୁରୁଷୋତ୍ତମ ଶଙ୍ଖନାଭି ମଣ୍ଡଳେ ୩୮ ହାତ କରେ ପଟୋଳ ଗୋଟାଏ ତୋଳି ପ୍ରତିସା କରି ପରମେସରଙ୍କୁ ବିଜେ କରାଇଲେ । ଏ ମହାରାଜଙ୍କ ଅ୧୩ଙ୍କେ କକଡା ୨୫ ଦିନେ ସିଂଘାସନେ ବିଜେ କରାଇଲେ । ଏହି ଅନୁକୂଳେ ଭୁବନେସର ଦେଉଳକୁ ସୁଭ ଦେଲେ । ଏହି ରାଜା ଭୋଗ କଲେ ୫୭ ବରସ ।'

ଯାଜପୁର କ୍ଷେତ୍ରରେ ଯଯାତି କେଶରୀ ରାଜ୍ୟ ଲାଭ କରିଥିଲେ । ସେ ପ୍ରଥମ ଅବସ୍ଥାରେ ରାଜକାର୍ଯ୍ୟ ଛାଡି ଯଜ୍ଞାଦି କାର୍ଯ୍ୟରେ ମନୋନିବେଶ କରିଥିଲେ । ରାଜାଙ୍କର ଏହିପରି ଭାବଦେଖି ବ୍ରାହ୍ମଣମାନେ ସନ୍ତୁଷ୍ଟ ହୋଇଥିଲେ ଏବେ ରାଜାଙ୍କୁ କହିଥିଲେ- ଛାମୁ! ବହୁକାଳର ବ୍ୟବଧାନ ପରେ ପୁରୁଷୋତ୍ତମ କ୍ଷେତ୍ରରେ ଦକ୍ଷିଣ ମହୋଦଧିରେ ଗୋବିନ୍ଦ ଦ୍ୱାଦଶୀ ନାମକ ସ୍ନାନଯୋଗ ଉପସ୍ଥିତ ହେଉଅଛି । ତାହା ଶୁଣି ରାଜା ବ୍ରାହ୍ମଣମାନଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଲେ । ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀରେ ପଡିଥିବା ଗୋବିନ୍ଦଦ୍ୱାଦଶୀ ଯୋଗରେ ସମୁଦ୍ର ନିକଟରେ ରାଜା ବହୁତ ଦାନପୁଣ୍ୟ କରିଥିଲେ । ତାହାପରେ କ୍ଷେତ୍ରର ଅବସ୍ଥା ଅତି ଖରାପ ହୋଇଥିବା ଓ ମନ୍ଦିର ଭାଙ୍ଗିଯାଇଥିବା ଦେଖି ଏ ସଂପର୍କରେ ସନ୍ନ୍ୟାସୀ ଓ ବ୍ରାହ୍ମଣମାନଙ୍କୁ ପଚାରି ବୁଝିଥିଲେ । ଭଙ୍ଗା ମନ୍ଦିର ପୁଣି ଶୂନ୍ୟ ହୋଇପଡିଛି । ଭଗବାନଙ୍କର ଶ୍ରୀମୂର୍ତ୍ତି କେଉଁଠାରେ ଅଛି ବୋଲି ରାଜା ସେମାନଙ୍କୁ ପଚାରିଥିଲେ । ଯେତେବେଳେ ରକ୍ତବାହୁ ଆସିଥିଲା ସେହି ଦିନଠାରୁ ଏଠାରୁ ନେଇ ସୁବର୍ଣ୍ଣପୁର ରାଜ୍ୟ ମଧ୍ୟରେ କେଉଁଠି ରଖିଯାଇଛନ୍ତି ବୋଲି ପରଂପରାକ୍ରମେ ଶୁଣାଯାଏ ସେମାନେ ଉତ୍ତର ଦେଇଥିଲେ । ରାଜା ଏହା ଶୁଣି ସେଠାକୁ ଯାଇ ସେଠାକାର ଲୋକଙ୍କୁ ଡାକି ଜଗନ୍ନାଥ ମୂର୍ତ୍ତି କେଉଁଠାରେ ଅଛନ୍ତି ଶୁଣିଛ କି ବୋଲି ପଚାରିଥିଲେ । ସେମାନଙ୍କଠାରୁ ନାସ୍ତିବାଚକ ଶୁଣି ରାଜା ପୁଣି ଖଣ୍ଡାଧିପତିଙ୍କୁ ଶ୍ରୀଜଗନ୍ନାଥଙ୍କ ପ୍ରତିମା ସଂପର୍କରେ ଜିଜ୍ଞାସା କରିଥିଲେ । ମାତ୍ର ସବୁଠାରୁ ନିରାଶ ହୋଇ ରାଜା ଶ୍ରୀମୂର୍ତ୍ତି ଦର୍ଶନ ନପାଇବାରୁ ଦୁଃଖରେ ଉପବାସ କରି ଶୋଇ ରହିଲେ ।

ସେହି ରାତିରେ ରାଜାଙ୍କୁ ସ୍ୱପ୍ନାଦେଶ ହେଲା । ସ୍ୱପ୍ନାଦେଶ ଅନୁସାରେ ରାଜା ସେଠାରେ ଥିବା ଆରଣ୍ୟକ ବ୍ରାହ୍ମଣମାନଙ୍କୁ ଡକାଇ ଶ୍ରୀଜଗନ୍ନାଥ ମୂର୍ତ୍ତି ଯେଉଁ ବରଗଛ ମୂଳରେ ରହିଥିଲା, ସେହି ଗଛକୁ କଟାଇ ଖୋଳାଇ ଥିଲେ । ତାହାପରେ ରାଜା ସୁଧାଲିପ୍ତ ଗୃହ ମଧ୍ୟରେ ଭଗବାନଙ୍କର ଶ୍ରୀମୂର୍ତ୍ତି ଚତୁଷ୍ଟୟକୁ ଦେଖି ଆନନ୍ଦିତ ହୋଇଥିଲେ । ସେହି ପ୍ରତିମାମାନଙ୍କୁ ସେଠାରୁ ଆଣିବା ପାଇଁ ରାଜା ସେବକମାନଙ୍କର ଅନ୍ୱେଷଣ କରିବାକୁ ଲାଗିଲେ । କୌଣସି ସେବକ ନମିଳିବାରୁ ରାଜା ପୁନର୍ବାର ଭଗବାନଙ୍କ ଉଦ୍ଦେଶ୍ୟରେ ରାତିରେ ନିଦ୍ରା ଗଲେ । ପୁନର୍ବାର ରାଜାଙ୍କୁ ସ୍ୱପ୍ନାଦେଶ ହେଲା ଏବଂ ଏହି ସ୍ୱପ୍ନାଦେଶ ଅନୁଯାୟୀ ରାଜା ଏକ ଗୋରକ୍ଷକ ବାଳକକୁ ସେବକ ଭାବେ ନିଯୋଗ କରାଇଲେ । ଏହାପରେ ଅତି ଜୀର୍ଣ୍ଣ ଶ୍ରୀଭଗବାନଙ୍କ ବିଗ୍ରହ ଚତୁଷ୍ଟୟକୁ ପାଟ ଲୁଗାରେ ଗୁଡାଇ ବିଦ୍ୟାପତିବଂଶୀୟ ବିଶ୍ୱାବସୁ କୁଳଜାତ ସେଠାକାର ଆରଣ୍ୟକ ୧୧ ଜଣ ବ୍ରାହ୍ମଣମାନଙ୍କ ସହିତ ସୁଆରୀ ସାହାଯ୍ୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଆଣିଥିଲେ । ଶ୍ରୀକ୍ଷେତ୍ରରେ ଥିବା ସନ୍ନ୍ୟାସୀ ଓ ବ୍ରାହ୍ମଣମାନଙ୍କ ସହ ରାଜା ବିଗ୍ରହମାନଙ୍କର ପ୍ରତିଷ୍ଠା ସଂପର୍କରେ ଆଲୋଚନା କରିଥିଲେ । ଯଥାବିଧି ଅରଣ୍ୟ ମଧ୍ୟରୁ ଦାରୁ ଆଣି ଶ୍ରୀମୂର୍ତ୍ତି ନିର୍ମାଣ କରିଥିଲେ । ନିର୍ମାଣ ସମୟରେ ଶୀଘ୍ର କାର୍ଯ୍ୟ ସଂପାଦନା ପାଇଁ ଅଧିକ ସଂଖ୍ୟକ ସେବକ ନିଯୁକ୍ତ କରିଥିଲେ । ସେଠାରେ ବିଦ୍ୟାପତି ବିଶ୍ୱାବସୁବଂଶୀୟ ଛଅ ଜଣ, ବିଶ୍ୱକର୍ମାବଂଶୀୟ ଓ ଆରଣ୍ୟକ ବ୍ରାହ୍ମଣ ୫ ଜଣ ମିଶି




ଶ୍ରୀମୂର୍ତ୍ତି ନିର୍ମାଣ କରାଇଥିଲେ । କର୍ତ୍ତରିହସ୍ତ ଆରଣ୍ୟକ ବ୍ରାହ୍ମଣର ବୟସ ଗୋତ୍ର ବିଦ୍ୟାପତି ବଂଶଧରମାନେ, କୌଣ୍ଡିନ୍ୟସ ଗୋତ୍ରୀୟ ଶବର ବଂଶମାନେ ଓ ଦଇତା ଉପାଧିଧାରୀ କୌଶିକସ ଗୋତ୍ରୀୟ ଏମାନେ ସମସ୍ତେ ଉକ୍ତ ପ୍ରକାର ନିର୍ମିତ ହୋଇଥିବା ଚାରିମୂର୍ତ୍ତିଙ୍କୁ ଶଙ୍ଖନାଭି ମଧ୍ୟବର୍ତ୍ତୀ ବଟମୂଳରେ ପଞ୍ଚଶିର ନାମକ ବନ୍ଧାରେ ନିର୍ମିତ ପ୍ରାସାଦରେ ସ୍ଥାପନ କରିଥିଲେ । ରାଜା ସେଠାର ସନ୍ନ୍ୟାସୀ ଓ ବ୍ରାହ୍ମଣ ପ୍ରଭୃତିଙ୍କୁ ସତ୍କାର ପୂର୍ବକ କହିଲେ ଭଗବାନଙ୍କର ଶାସ୍ତ୍ରାନୁସାରେ ପୂଜା ଓ ଅନ୍ନାଦି ନୈବେଦ୍ୟ ନିବେଦନ କରନ୍ତୁ । ସେମାନେ କହିଲେ ଭଗବାନଙ୍କ ଆଜ୍ଞାରେ ହେବ । ତାହାପରେ ରାଜା ପ୍ରାର୍ଥନା କରି ବସ୍ତସଗୋତ୍ରୀ ସାତଜଣ ସେବକ ଓ ଆରଣ୍ୟ ବ୍ରାହ୍ମଣ ୬ଜଣ ଏକାଠି ହୋଇ ତ୍ରୟୋଦଶ ସେବକ ତାଙ୍କ ମଧ୍ୟରେ ପଣ୍ଡା ସଂଜ୍ଞକ ତିନିଜଣ, ଗରାବଡୁ ସଂଜ୍ଞକ ଜଣେ, ସୂପକାର-କୁଡୁଆବାହୀ, ପତ୍ରବଡୁ ସଂଜ୍ଞକ ଅନ୍ୟ ସେବକ, ବସ୍ତ୍ର ଅଳଙ୍କାର କୋଶ ରକ୍ଷକ ଜଣେ, ସୂପକାର ନାମକ ପାଚକ ୬, ଏହିପରି ମୋଟ ୧୩ ଜଣ ସେବକ । ସେହିଦିନ ରାଜା ବିଧିପୂର୍ବକ ଅନ୍ନାଦି ନୈବେଦ୍ୟ ପାକ କରାଇ ଭଗବାନଙ୍କୁ ନିବେଦନ କରାଇ ସେହି ମହାପ୍ରସାଦ ପ୍ରଭୃତିକୁ ସନ୍ନ୍ୟାସୀ ବ୍ରାହ୍ମଣମାନଙ୍କୁ ସେବା କରନ୍ତୁ ବୋଲି କହିଥିଲେ ।

ସେହିଦିନ ମହାପ୍ରସାଦାଦି ସ୍ୱୀକାର ନ କରି ସେମାନେ ଚାଲିଗଲେ । ସେଦିନ ରାଜା ଈଶ୍ୱରଙ୍କୁ ଜଣାଇ ନିରାହାରରେ ରାତି ଅତିବାହିତ କରିଥିଲେ । ରାତ୍ରିରେ ସ୍ୱପ୍ନାଦେଶ ହେଲା । 'ପରଦିନ ସେହିପରି ଅନ୍ନାଦି ନୈବେଦ୍ୟ ପ୍ରଭୃତି କରାଇ ବିନୟପୂର୍ବକ ସନ୍ନ୍ୟାସୀ ବ୍ରାହ୍ମଣମାନଙ୍କୁ କୁହ, ଆପଣମାନେ ଭୋଜନ କରନ୍ତୁ । ଯଦି ସେମାନେ ସମ୍ମତ ନ ହେବେ ତେବେ ମୁଁ (ଆଜ୍ଞା) ଆଦେଶ ଦେବି ।' ରାଜା ସ୍ୱପ୍ନାଦେଶ ଅନୁସାରେ ପରଦିନ ପୂର୍ବପରି ନୈବେଦ୍ୟ କରାଇ ସନ୍ନ୍ୟାସୀ ପ୍ରଭୃତିଙ୍କୁ ଡକାଇ ଏହା କହିଥିଲେ । ରାତିରେ ସ୍ୱପ୍ନାଦେଶ ହେଲା ମହାପ୍ରସାଦ ସେବନ କରନ୍ତୁ ବୋଲି । ସେମାନେ ସମସ୍ତେ କହିଲେ, ଯଦି ଆମ୍ଭମାନଙ୍କୁ ଆଜ୍ଞା ହେବ ବା ଆଜ୍ଞା ଦେବେ, ତାହାହେଲେ ଆମ୍ଭେମାନେ ଭୋଜନ କରିବୁ । ସତ୍ୟ ଯୁଗରେ ଇନ୍ଦ୍ରଜିମ୍ଭ ଦୁହିଁଙ୍କୁ ସାକ୍ଷାତ୍ ଶ୍ରୀମୁଖ ଆଜ୍ଞା ଦେଇ ଦ୍ୱାଦଶୀ ଯାତ୍ରା କରାଇଥିଲେ । ସେହିପରି ଆମ୍ଭମାନଙ୍କୁ ଯଜ୍ଞରେ ଯାହା ଦେବେ ତାହା ଆମ୍ଭେ ଭୋଜନ କରିବୁ । ଏହି ସମ୍ବାଦ ସମୟରେ ଜଣେ ମୂକ ବ୍ରାହ୍ମଣ ଭଗବାନଙ୍କୁ ଦର୍ଶନ କରିବା ପାଇଁ ଆସିଥିଲେ । ତାଙ୍କୁ ଦେଖି ସନ୍ନ୍ୟାସୀ ପ୍ରଭୃତି କହିଲେ, ରାଜା ଏହି ମୂକକୁ ମହାପ୍ରସାଦ ସେବନ କରାନ୍ତୁ ଯଦି ସେ କଥା କହିବ ତେବେ ଆମ୍ଭେମାନେ ସ୍ୱୀକାର କରିବୁ । ରାଜା ତାହା ମାନିଲେ, ସେମାନେ ରାଜା ଆଜ୍ଞାରେ ମୂକକୁ ଶ୍ରୀପ୍ରସାଦ ନିକଟରେ ବସାଇ ମାହାତ୍ମ୍ୟ ବର୍ଣ୍ଣନା କରନ୍ତୁ ବୋଲି କହିଥିଲେ । ତତ୍‌କ୍ଷଣାତ୍ ଶ୍ରୀଜଗନ୍ନାଥଙ୍କ ଅପାର କରୁଣାରୁ ଆଶ୍ଚର୍ଯ୍ୟଜନକ ଭାବରେ ସେହି ମୂକ ମୁଖରୁ ଶ୍ଲୋକଟିଏ ବାହାରି ଆସିଲା ।

ଅରେ ବିଦ୍ୱନ୍ନନ୍ୟାନନଧିଗତବେଦାର୍ଥନିଗମାନ୍
ମୟାଭୁକ୍ତେ[illegible]ଧ୍ୟନ୍ନେ ମମପରିଜନୈଶ୍ଚଦ୍ମମନୁଜୈଃ ।
ସୁସ୍ନିଗ୍‌ଧେନେତସ୍ମିନ୍‌ଭବତୁ ଭବତାଂ ନ ବହୁଗୁଣା
ନ ଗଙ୍ଗାମ୍ଭଃ ପେୟଂ ଶବତନୁଗଳତ୍‌ତନ୍ତ୍ୱବ୍ୟକଳିଳମ୍ ।।

ହେ ପଣ୍ଡିତପ୍ମନ୍ୟଗଣ ବେଦାର୍ଥ ନଜାଣି ଅଯଥା ଆତ୍ମାଭିମାନ ପ୍ରକାଶ କରନ୍ତୁ ନାହିଁ । ଶବର ଗଳିତ ଦେହରୁ ଖସି ପଡୁଥିବା ପଚାମାଂସ ଦ୍ୱାରା ଆବିଳ ଗଙ୍ଗାଜଳ ଯେପରି ପବିତ୍ର ମଦ୍‌ଭୁକ୍ତ ଅନ୍ନ ସେହିପରି ପବିତ୍ର । ଏ ବିଷୟରେ ସନ୍ଦେହ କରିବା ଅନୁଚିତ ।

ଶ୍ଲୋକଟି ସମ୍ପୂର୍ଣ୍ଣ ହେବା ମାତ୍ରେ ମୂକଟି ପୂର୍ବପରି ଠିଆ ହୋଇ ରହିଲା । ସ୍ତବ୍‌ଧ ହୋଇଗଲା ସମଗ୍ର ବାୟୁମଣ୍ଡଳ, ଆଶ୍ଚର୍ଯ୍ୟଚକିତ ହୋଇ ଉଠିଲେ ସମସ୍ତ ପଣ୍ଡିତମଣ୍ଡଳୀ । ହରିବୋଲ ଶବ୍ଦରେ ପ୍ରକମ୍ପିତ ହୋଇଉଠିଲା ସମଗ୍ର ପରିବେଶ । ଶ୍ରୀଜଗନ୍ନାଥଙ୍କର ଜୟଜୟକାର ଧ୍ୱନିରେ ଶ୍ରୀମନ୍ଦିର ପ୍ରତିଧ୍ୱନିତ ହୋଇଉଠିଲା ଓ ମହାଆନନ୍ଦରେ ସମଗ୍ର ପଣ୍ଡିତମଣ୍ଡଳୀ ମହାପ୍ରସାଦ ସେବନ କରି ନିଜର ଜନ୍ମକୁ କୃତାର୍ଥ ମଣିଲେ ।

ତାହା ପରେ ରାଜା ଅଠତିରିଶ ହାତ ଉଚ୍ଚରେ ମନ୍ଦିର ନିର୍ମାଣ କରି ତାକୁ ପ୍ରତିଷ୍ଠା କରି ତହିଁରେ ଶ୍ରୀମୂର୍ତ୍ତିଙ୍କୁ ସ୍ଥାପନ କଲେ । ଏହାପରେ ଶ୍ରୀବିମଳାଦେବୀଙ୍କର ମନ୍ଦିର ତିଆରିଲେ । ଅନନ୍ତର ଶ୍ରୀଭୁବନେଶ୍ୱର କ୍ଷେତ୍ରରେ ଶ୍ରୀଲିଙ୍ଗରାଜ ମନ୍ଦିର ପାଇଁ ଶୁଭ ଦେଲେ । ଏହାଙ୍କ ରାଜ୍ୟଭୋଗକାଳ ଦ୍ୱିପଞ୍ଚାଶତ୍ ବର୍ଷ ଅର୍ଥାତ୍ ୫୨ ବର୍ଷ । ମୋଟ ଶକାବ୍ଦ ଅଷ୍ଟଚତ୍ୱରିଂଶତ୍ ଚତୁଃଶତ ୪୪୮ ବର୍ଷ ଭୋଗ ହେଲା ।

ଶ୍ରୀଜଗନ୍ନାଥଙ୍କର ମହିମା ଓ କରୁଣା ଯୁଗଯୁଗ ଧରି ଉତ୍କଳୀୟ ଜନମାନସରେ ଏହିପରି ଉଦ୍‌ଭାଷିତ ହୋଇ ରହିଥିବ ।

**ଗ୍ରନ୍ଥସୂଚନା:**


୧. ମାଦଳାପାଞ୍ଜି - ଅ ୧୩ଙ୍କେ, କକଡା ଦି ୨୫ନେ, ଓଡିଶା ରାଜ୍ୟ ସଂଗ୍ରହାଳୟ ।

୨. ଓଡ୍ରଦେଶ ରାଜବଂଶାବଳୀ - ସଂପାଦନା, ଡଃ ଭଗବାନ ପଣ୍ଡା (Institute of Orissan Culture) ।

୩. A History of Orissa - Dr. Nabin Kumar Sahoo

୪. କୋଶଳ ଇତିହାସ - ପୂର୍ଣ୍ଣଚନ୍ଦ୍ର ରଥ

୫. ସମ୍ବଲପୁର ଇତିହାସ - ଶିବପ୍ରସାଦ ଦାଶ



କ୍ୟୁରେଟର୍ ଇନ୍‌ଚାର୍ଜ
ପୋଥି ବିଭାଗ
ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର-୧୪






# ଶ୍ରୀକ୍ଷେତ୍ର ଓ ମା' ବିମଳା

ଶ୍ରୀନିବାସ ଆଚାର୍ଯ୍ୟ

**ବ**ହୁ ପୁରାଣ ଯୁଗରୁ ପବିତ୍ର ଓଡ଼ିଶା ଭୂମିରେ ଶ୍ରୀପୁରୁଷୋତ୍ତମ ପୀଠ ବିଶ୍ୱବିଖ୍ୟାତ । ଏହି ପୀଠର କଳା, ସଂସ୍କୃତି ଓ ପରମ୍ପରା ହେଉଛି ଅସୀମ, ଅନନ୍ତ, ନିରାକାର, ଅଦୃଶ୍ୟ ଓ ଅସ୍ପର୍ଶ । ଏହି ପୀଠର ବଡ଼ଠାକୁର ଶ୍ରୀଜଗନ୍ନାଥଙ୍କର ମହିମା, ଗୁଣଗାରିମା ଓ କୈବଲ୍ୟ ବିତରଣ କରିପାରିଛି ସମଗ୍ର ବିଶ୍ୱବାସୀଙ୍କୁ । ଶତ ଶତ ଦେବା ଦେବୀ, ମଠ, ମନ୍ଦିର, ମଣ୍ଡପ ଓ ତୀର୍ଥସ୍ଥାନଗୁଡ଼ିକ ବିରାଜିତ ଏହି ପୀଠରେ, ଯାହାକି ଜଗନ୍ନାଥ ସଂସ୍କୃତିରେ ମିଶ୍ରଣ ହୋଇ ସୃଷ୍ଟି କରିପାରିଛି ଏକ ମହାନ୍ ଧର୍ମନଦୀ । ଶତ ଶତ ଦେବାଦେବୀ ହେଉଛନ୍ତି, ସେହି ଧର୍ମ ନଦୀର ଗୋଟିଏ ଗୋଟିଏ ଶାଖା ବା ଉପଶାଖା ସଦୃଶ । ସେହିସବୁ ଉପଶାଖାଗୁଡ଼ିକର ମୂଳ ଲକ୍ଷ୍ୟ ହେଉଛି ମହାସ୍ରୋତରେ ନିଜକୁ ହଜାଇ ଆନନ୍ଦ ପାଇବା ସଂଗେସଂଗେ ସମଗ୍ର ମାନବ ଜାତିକୁ ଦୟା ଓ କରୁଣା ବିତରଣ କରିବା । ସେହି ମହାସ୍ରୋତ ହେଉଛି ଜଗନ୍ନାଥ ଧର୍ମ ତଥା ସଂସ୍କୃତି । ସେହି ଦେବାଦେବୀମାନଙ୍କ ମଧ୍ୟରେ ମା' ଦେବୀ ବିମଳା ହେଉଛନ୍ତି ଅନ୍ୟତମ । ମା' ବିମଳାଙ୍କ ସହିତ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଅଛି ଅତି ନିବିଡ଼ ସମ୍ପର୍କ । ପରସ୍ପର ମଧ୍ୟରେ ଥିବା ସେହି ଅତୁଟ ସମ୍ପର୍କର ମହନୀୟତା ଓ ଗୁଣଗାରିମା ସୃଷ୍ଟି କରିପାରିଛି ସମଗ୍ର ବିଶ୍ୱବାସୀଙ୍କ ହୃଦୟରେ ଭକ୍ତି, ଶ୍ରଦ୍ଧା, ସ୍ନେହ, ସତ୍ୟ, ନ୍ୟାୟ ଓ ବିଶ୍ୱାସର ମହତ୍‌ବାଣୀ । ଯାହାକି ଆଜି ଓଡ଼ିଶା ଭିତରେ ସୀମାବଦ୍ଧ ନରହି ବ୍ୟାପି ଯାଇଛି ସମଗ୍ର ବିଶ୍ୱ ଦରବାରରେ । ସେଥିପାଇଁ ଆଜି ସମଗ୍ର ଓଡ଼ିଶାବାସୀ ଗର୍ବିତ ଓ ଗୌରବାନ୍ୱିତ ।

ଏହି ସଚରାଚର ବ୍ରହ୍ମାଣ୍ଡରେ ବହୁଧର୍ମର ଆବିର୍ଭାବ ହୋଇଥିଲେ ମଧ୍ୟ ସେଗୁଡ଼ିକର ପରମ୍ପରା ଓ ସଂସ୍କୃତି ପରସ୍ପର ପରିପନ୍ଥୀ । କେବଳ ଓଡ଼ିଶା ମାଟିରେ ବିରାଜିତ ପୁରୀ ଶ୍ରୀକ୍ଷେତ୍ରରେ ସର୍ବଧର୍ମର ସମନ୍ୱୟ ଅବଶ୍ୟମ୍ଭାବୀ । କାରଣ ଏହି ପୀଠର ଅଧିଷ୍ଠାତ୍ରୀ ଦେବୀ ମା' ବିମଳା । ଏହି ପୀଠରେ ଶୈବ୍ୟ, ଶାକ୍ତ, ଗାଣପତ୍ୟ, ସୌର, ବୈଷ୍ଣବ, ବୌଦ୍ଧ, ଜୈନ, ଅଲେଖ ଓ ଖ୍ରୀଷ୍ଟୀୟାନ ଇତ୍ୟାଦି ଧର୍ମର ସମନ୍ୱୟ ଘଟି ସୃଷ୍ଟି କରିପାରିଛି, ବିଶ୍ୱ ମାନବିକତା, ତଥା ଐକ୍ୟ, ଶାନ୍ତି, ମୈତ୍ରୀ ଓ ଭ୍ରାତୃପ୍ରୀତି । ଫଳରେ ଏହି ସ୍ଥାନ ହୋଇପାରିଛି ବିଶ୍ୱ ବନ୍ଦନୀୟ ଓ ମହାନ୍ ଆଧ୍ୟାତ୍ମିକ ପୀଠ । ଯଦିଓ ଏହି ପୀଠର ଶ୍ରେଷ୍ଠ ନାୟକ ତଥା ଅସରନ୍ତି ଆଶୀର୍ବାଦର ଭଣ୍ଡାର ରୂପେ ବିରାଜିତ ଶ୍ରୀପୁରୁଷୋତ୍ତମ କିନ୍ତୁ ପୃଥିବୀର ସର୍ବଶ୍ରେଷ୍ଠ ଆଦିମାତା ରୂପେ ମା' ବିମଳା ହେଉଛନ୍ତି ଅଧିଷ୍ଠାତ୍ରୀ ଦେବୀ ।

ଉତ୍କଳର ଶ୍ରୀକ୍ଷେତ୍ର ଏକ ମହାନ୍ ସର୍ବଧର୍ମପୀଠରେ ଉଭୟ ସ୍ତ୍ରୀ ଓ ପୁରୁଷଙ୍କୁ ସମାନ ସ୍ଥାନ ଦିଆଯାଇଛି । ଶାକ୍ତ ଉପାସନାର ପରମ୍ପରା ପାଳନର ବିଧିବିଧାନ ଖଞ୍ଜା ଯାଇଅଛି ଏହି ପୀଠରେ । ବହୁଳ ଦୃଷ୍ଟାନ୍ତ ମଧ୍ୟରୁ ଶ୍ରୀବଳଭଦ୍ରଙ୍କୁ-ବ୍ରହ୍ମା, କୃଷ୍ଣଙ୍କ-ଭଗିନୀ-ସୁଭଦ୍ରା, କୃଷ୍ଣ-ପ୍ରିୟା-ଶ୍ରୀରାଧା, ବିଷ୍ଣୁ ପ୍ରିୟା-ମହାଲକ୍ଷ୍ମୀ, ସୀତା ଓ ଯୋଗମାୟାଙ୍କୁ ବିମଳା ରୂପେ ଗ୍ରହଣ କରାଯାଇଥିବା ଶାସ୍ତ୍ରାନୁମୋଦିତ । ତେଣୁ ଯୋଗମାୟା ହେଉଛନ୍ତି ପରମ ବୈଷ୍ଣବୀ, ନାରାୟଣୀ । ଶ୍ରୀମନ୍ଦିରର ମା' ବିମଳା ହେଉଛନ୍ତି ଯୋଗମାୟା ଭୈରବୀ ଓ ଶ୍ରୀଜଗନ୍ନାଥ ଭୈରବ ନାମରେ ବିରାଜିତ । ତେଣୁ ଏହି ପୀଠକୁ ମା' ବିମଳା ପୀଠ କୁହାଯାଏ ।

ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କ ପୀଠରେ ଦେବୀ ସୁଭଦ୍ରାଙ୍କର ଚଳନ୍ତି ପ୍ରତିମା ରୂପେ କ୍ଷେତ୍ରେଶ୍ୱରୀ ମା' ବିମଳାଙ୍କ ପୂଜା ଆରାଧନା କରାଯାଇଥାଏ । ତେଣୁ ଶକ୍ତିମାନ ନାରାୟଣ ରୂପେ ଶ୍ରୀଜଗନ୍ନାଥଙ୍କୁ ଓ ଶକ୍ତି ରୂପିଣୀ ନାରାୟଣୀ ରୂପେ ମା' ଦେବୀ ବିମଳାଙ୍କୁ ପୂଜା କରାଯାଇଥାଏ । ଏହି କ୍ଷେତ୍ରର କ୍ଷେତ୍ରାଧିପତି ଶ୍ରୀଜଗନ୍ନାଥଙ୍କୁ ରାଜ ରାଜେଶ୍ୱର ଓ ମା' ବିମଳାଙ୍କୁ ରାଜରାଜେଶ୍ୱରୀ ବୋଲି କୁହାଯାଇଥାଏ ।

ନିଖିଳ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ପ୍ରଳୟର ମୂଳ ଉତ୍ସ ହେଉଛନ୍ତି ମାତୃରୂପୀ ଶକ୍ତି । ଶ୍ରୀକ୍ଷେତ୍ର ବାସିନୀ ମା' ବିମଳାଙ୍କର ଆବିର୍ଭାବ କେବେ ଓ କିପରି ହୋଇଅଛି, ତାହା ବିଭିନ୍ନ ଶାସ୍ତ୍ର ଓ ପୁରାଣରେ ଭିନ୍ନ ଭିନ୍ନ ମତପୋଷଣ ହୋଇଥିଲେ ମଧ୍ୟ ଏହା କିନ୍ତୁ ଚିରନ୍ତନୀ । ବିଷ୍ଣୁ ପୁରାଣରେ ବର୍ଣ୍ଣିତ ସମଗ୍ର ଭାରତବର୍ଷରେ ୫୧ଟି ଚଣ୍ଡୀପୀଠ ମଧ୍ୟରୁ

ଓଡ଼ିଶାରେ ଆଠଟି ଚଣ୍ଡୀ ପୀଠ ବିଦ୍ୟମାନ । ଏହାକୁ ଓଡ଼ିଶାର ଅଷ୍ଟଚଣ୍ଡୀ ନାମରେ ଅଭିହିତ କରାଯାଇଛି । ଏହି ପୀଠଗୁଡ଼ିକ ହେଲା - କାକଟପୁରର ମା' ମଙ୍ଗଳା, ଝଙ୍କଡ଼ର ମା' ଶାରଳା, ଯାଜପୁରର ମା' ବିରଜା, ତାଳଚେରର ମା' ହିଙ୍ଗୁଳା, ସମ୍ବଲପୁରର ମା' ସମଲେଇ, ବାଙ୍କୀର ମା' ଚର୍ଚ୍ଚିକା, ବାଣପୁରର ମା' ଭଗବତୀ ଓ ପୁରୀ ଶ୍ରୀକ୍ଷେତ୍ରର ମା' ବିମଳା । ଏହି ପୀଠମାନଙ୍କ ମଧ୍ୟରେ ମା' ବିମଳା ପୀଠର ମହିମା ଓ ଗୁଣଗାରିମା ସମଗ୍ର ଭାରତରେ ଶୀର୍ଷ ସ୍ଥାନ ମଣ୍ଡନ କରିବା ସଂଗେସଂଗେ ଏକ ଆଧ୍ୟାତ୍ମିକ ଯୁଗ ସୃଷ୍ଟି କରିପାରିଛି । କାରଣ ଏହି ପୀଠରେ ସ୍ୱୟଂ ବିଷ୍ଣୁ, ଦାରୁବ୍ରହ୍ମ ରୂପରେ ଓ ଦରିଦ୍ର ଭଞ୍ଜନ ଶ୍ରୀଜଗନ୍ନାଥଙ୍କ ନାମରେ ନାମିତ ।

ଦେବୀ ପୁରାଣରେ ବର୍ଣ୍ଣିତ ଅଛି ସତ୍ୟଯୁଗରେ ଶ୍ମଶାନବାସୀ ତଥା ପୃଥିବୀର ସଂହାରକର୍ତ୍ତା ପ୍ରଭୁ ଶିବଙ୍କ ପତ୍ନୀ ସତୀଙ୍କର ପିତା ଦକ୍ଷ ପ୍ରଜାପତିଙ୍କ ଦକ୍ଷ ଯଜ୍ଞରେ କନ୍ୟା ସତୀ ଅପମାନିତ ହୋଇ ଝାସ ଦେଇଥିଲେ ସେହି ଯଜ୍ଞକୁଣ୍ଡରେ । ତାହା ଜାଣିପାରି ବିଶ୍ୱନାଥ ରାଗ ଜର୍ଜରିତ ହୋଇ ମୃତ ପତ୍ନୀଙ୍କୁ କାନ୍ଧରେ ଧାରଣ କରି ବ୍ରହ୍ମାଣ୍ଡ ଭ୍ରମଣ କରିଥିଲେ । ତାଙ୍କର କୋପରେ ତ୍ରିଭୁବନ ପ୍ରକମ୍ପିତ ହୋଇ ଦେବାଦେବୀମାନଙ୍କର ଆସନ ଟଳମଳ ହୋଇଥିଲା । ଏହା ଦେଖି ସ୍ୱୟଂ ବିଷ୍ଣୁ ଛଦ୍ମରେ ତାଙ୍କ ସୁଦର୍ଶନ ଚକ୍ର ମାଧ୍ୟମରେ ମୃତ ସତୀଙ୍କ ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ପକାଇଥିଲେ । ସତୀଙ୍କ ମୃତ ଶରୀରର ଯେଉଁ ଅଂଶ ଯେଉଁ ସ୍ଥାନରେ ପଡ଼ିଥିଲା, ସେହି ସ୍ଥାନଗୁଡ଼ିକ ଗୋଟିଏ ଗୋଟିଏ ଶକ୍ତି ବା ଚଣ୍ଡୀପୀଠ ରୂପେ ପରିଚିତ ହେଲା । ସେହି ଅଂଶରୁ ନାଭି ଅଂଶଟି ଶ୍ରୀକ୍ଷେତ୍ରରେ ପଡ଼ିଥିଲା । ସେହି ନାଭି ଅଂଶରୁ ମା' ବିମଳା ଆବିର୍ଭାବ ହୋଇଥିଲେ । ସେହିଦିନଠାରୁ ଶ୍ରୀକ୍ଷେତ୍ର ମା' ବିମଳା ପୀଠ ରୂପରେ ଅଭିହିତ ହୋଇଅଛି ।

ପୌରାଣିକ କିମ୍ବଦନ୍ତୀ ଅନୁସାରେ ଦ୍ୱାପର ଯୁଗରେ ରାବଣ, ମହିଷାସୁର, ଶୁମ୍ଭ, ନିଶୁମ୍ଭ, ଚଣ୍ଡମୁଣ୍ଡ ଓ ରକ୍ତବୀର୍ଯ୍ୟ ଇତ୍ୟାଦି ମହାପ୍ରତାପୀ ଓ ମାୟାବୀ ଅସୁରଙ୍କୁ ନିହତ କରିବା ପାଇଁ ସମସ୍ତ ଦେବାଦେବୀଙ୍କ ବଳ ଓ ଅସ୍ତ୍ର ଧାରଣ ପୂର୍ବକ ମା' ଦେବୀ ଦୁର୍ଗା ଆବିର୍ଭୂତ ହୋଇଥିଲେ । ବିଭିନ୍ନ ସମୟ ଓ ସ୍ଥାନରେ ଅସୁରମାନଙ୍କୁ ନିପାତ କରିବା ପାଇଁ ଦୁର୍ଗତିନାଶିନୀ ଦୁର୍ଗାଙ୍କ ଇଚ୍ଛାରେ କେତେଗୁଡ଼ିଏ ନାରୀ, ଶକ୍ତି ତଥା ଚଣ୍ଡୀ ରୂପେ ଆବିର୍ଭାବ ହୋଇଥିଲେ । ସେହି ଚଣ୍ଡୀମାନଙ୍କ ମଧ୍ୟରେ ଶ୍ରୀକ୍ଷେତ୍ରର ଅଧିଶ୍ୱରୀ ଦେବୀ ମା' ବିମଳା ଅନ୍ୟତମ । ସେହି ଦିନଠାରୁ ମା' ବିମଳାପୀଠ ଚଣ୍ଡୀପୀଠ ନାମରେ ଅଭିହିତ ହୋଇଅଛି ।

ବିଷ୍ଣୁ ପୁରାଣରେ ମା' ଦେବୀ ବିମଳାଙ୍କୁ ପରମ ବୈଷ୍ଣବୀ ବୋଲି କୁହାଯାଇଅଛି । କାରଣ ବିଭୁ ପ୍ରେମକୁ ବୈଷ୍ଣବୀ କୁହାଯାଇଥାଏ । ଏହି ପରମ ବୈଷ୍ଣବୀ ମା' ବିମଳା ବିଭିନ୍ନ ରୂପ ଓ ସ୍ଥାନରେ ଆବିର୍ଭାବ ହୋଇ ମଣ୍ଡପ ମଣ୍ଡନ ପୂର୍ବକ ପୂଜା ପାଇ ଆସୁଛନ୍ତି । କେଉଁଠାରେ ମା' ଗୌରୀ ତ ଅନ୍ୟ କେଉଁଠାରେ କାତ୍ୟାୟିନୀ, କମଳା, ବିମଳା, ସୁଭଦ୍ରା, ମଙ୍ଗଳା, ଭଗବତୀ ଓ ଚର୍ଚ୍ଚିକା ଇତ୍ୟାଦି । ଶ୍ରୀକ୍ଷେତ୍ର ପୁରୀକୁ ମଧ୍ୟ ଶାକ୍ତ କ୍ଷେତ୍ର ବା ତନ୍ତ୍ର କ୍ଷେତ୍ର ରୂପେ ଗ୍ରହଣ କରାଯାଇଅଛି । ଏହି ପୀଠର ମୁଖ୍ୟ ଶାକ୍ତ ଦେବୀ ହେଉଛନ୍ତି ମୁକ୍ତି ଦାୟିନୀ ମା' ବିମଳା । ବହୁ ପ୍ରାଚୀନ ଯୁଗରୁ ଅର୍ଥାତ୍ ପ୍ରାଗ୍ ବୈଦିକ ଯୁଗରୁ ଶାକ୍ତଧର୍ମର ଆବିର୍ଭାବ ହୋଇ ଆଜି ମଧ୍ୟ ତା'ର ପ୍ରଭାବ ଦେଖିବାକୁ ମିଳୁଛି । ଭାରତରେ କେତେଗୁଡ଼ିଏ ତନ୍ତ୍ର କ୍ଷେତ୍ର ଦେଖିବାକୁ ମିଳେ । ତନ୍ମଧ୍ୟରୁ ଉଡ୍ଡୀୟାନ ପୀଠ ଅନ୍ୟତମ । କାଳିକା ପୁରାଣରେ କେତେଗୁଡ଼ିଏ ଗବେଷକ 'ଓଡାଖ୍ୟ'କୁ ଓଡ଼ିଶାର ବୋଲି କହିଛନ୍ତି । ଡଃ ନବୀନ କୁମାର ସାହୁ ଓଡ଼ିଶାକୁ ଉଡ୍ଡୀୟାନ ରୂପେ କହିଛନ୍ତି । ଆଉ ମଧ୍ୟ କେହି କେହି ଶ୍ରୀକ୍ଷେତ୍ରର ବିମଳାପୀଠକୁ ଜିହ୍ୱା ପୀଠ ଓ ପାଦ ପୀଠ ବୋଲି କହିଥାନ୍ତି ।

ଶ୍ରୀକ୍ଷେତ୍ର ପୁରୀର ମା' ବିମଳାଙ୍କର ଆବିର୍ଭାବ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପ୍ରତିମାଙ୍କ ପ୍ରତିଷ୍ଠା ପୂର୍ବରୁ ହୋଇଅଛି । କାରଣ ଶ୍ରୀମନ୍ଦିର ପ୍ରତିଷ୍ଠା ପାଇଁ ନାରଦଙ୍କ ପରାମର୍ଶକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗରେ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବା ଅବସରରେ ମର୍ତ୍ତ୍ୟଲୋକରେ ଶହ ଶହ ବର୍ଷ ଅତିବାହିତ ହୋଇଯାଇଥିଲା । କ୍ରମଶଃ ମନ୍ଦିରଟି ଏହି ସମୟ ଭିତରେ ବାଲିରେ ପୋତି ହୋଇ ନଷ୍ଟ ହୋଇ ଯାଇଥିଲା । ଶତ ଶତ ବର୍ଷ ପରେ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କ ସହିତ ମନ୍ଦିର ପ୍ରତିଷ୍ଠା ପାଇଁ ଆସି ଦେଖିଲେ, ମନ୍ଦିରଟି ସମ୍ପୂର୍ଣ୍ଣ ରୂପେ ଗାଲମାଧବ ନାମକ ଏକ ରାଜାଙ୍କ ଅଧୀନରେ । କାରଣ ମନ୍ଦିରକୁ ବାଲି ମଧ୍ୟରୁ କାଢ଼ି ନିଜ ତତ୍ତ୍ୱାବଧାନରେ ରଖିଥିଲେ ଗାଲମାଧବ । ବିଭିନ୍ନ ପ୍ରକାର ପ୍ରମାଣ ଦର୍ଶାଇ ଇନ୍ଦ୍ରଦ୍ୟୁମ୍ନ ନିଜର କର୍ତ୍ତୃତ୍ୱ ଜାହିରି କରିଥିଲେ । କିନ୍ତୁ ମା' ଦେବୀ ବିମଳା ମନ୍ଦିରର ରତ୍ନସିଂହାସନକୁ ଦଖଲ କରି ନେଇଥିଲେ । ଏଣୁ ରାଜା ଇନ୍ଦ୍ରଦ୍ୟୁମ୍ନ ମା' ଦେବୀଙ୍କୁ ସବିନୟ ପ୍ରାର୍ଥନା କରି ଜଣାଇ ଥିଲେ, ସେ ଅନ୍ୟତ୍ର ଗଲେ ସେଠାରେ ଜୀଉଙ୍କ ପ୍ରାଣ ପ୍ରତିଷ୍ଠା ହେବ । କିନ୍ତୁ ମା' ବିମଳା ସେହି ସିଂହାସନ ଛାଡ଼ିବା ପାଇଁ ରାଜି ହୋଇନଥିଲେ । ତେଣୁ ଇନ୍ଦ୍ରଦ୍ୟୁମ୍ନ ପ୍ରତିଜ୍ଞା କରି କହିଥିଲେ ଯେ ଦେବୀଙ୍କ ପୀଠ ଶ୍ରୀଜଗନ୍ନାଥଙ୍କ ପୀଠ ନିକଟରେ ଗଢ଼ାହେବ ଓ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ ହେଉଥିବା ପ୍ରସାଦ ପୁନରାୟ ମା'ଙ୍କୁ ଅର୍ପଣ ହୋଇ ମହାପ୍ରସାଦରେ ପରିଣତ ହେବ । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତିଜ୍ଞାରେ ସ୍ୱୀକୃତି ପ୍ରଦାନ କରିଥିଲେ ମା' ବିମଳା । ଫଳରେ ମା' ବିମଳା ଛାଡ଼ି ଦେଇଥିଲେ ରତ୍ନ ସିଂହାସନଟି ଜଗତାର ନାଥ ଜଗନ୍ନାଥ, ବଡ଼ଭାଇ ବଳଭଦ୍ର ଓ ଭଗିନୀ ସୁଭଦ୍ରାଙ୍କୁ । ଶ୍ରୀଜୀଉଙ୍କ ନିକଟରେ ମା' ବିମଳାଙ୍କ ମନ୍ଦିର ପ୍ରତିଷ୍ଠା ହୋଇଥିଲା । ନୀଳାଦ୍ରି ମହୋଦୟମ ଓ ବାମଦେବ ସଂହିତାରେ ବର୍ଣ୍ଣିତ ଅଛି ଶ୍ରୀକ୍ଷେତ୍ରରେ ବିମଳାଙ୍କ ପୂଜା ପୂର୍ବରୁ ଉତ୍କଳେଶ ଗାଲମାଧବ ମା' ବିମଳାଙ୍କ ବିଗ୍ରହ ପୂଜା କରୁଥିଲେ ।

ଶ୍ରୀକ୍ଷେତ୍ରର ଅଧିଶ୍ୱରୀ ଦେବୀ ପରମ ବୈଷ୍ଣବୀ ମା' ଭଗବତୀ ତଥା ଅଶେଷ ଦୟା ଓ କରୁଣାଦାୟିନୀ ମା' ବିମଳାଙ୍କ ଆବିର୍ଭାବ, ସଂସ୍କୃତି ଓ ପରମ୍ପରା ଯେପରି ରହସ୍ୟମୟ, ଠିକ୍ ମା' ବିମଳାଙ୍କର





ପୂଜାପଦ୍ଧତି ଓ ମେଳା ମହୋତ୍ସବ ମଧ୍ୟ ସେପରି ରହସ୍ୟମୟ । ମା' ବିମଳାଙ୍କ ମଣ୍ଡପଟି ଶ୍ରୀପୁରୁଷୋତ୍ତମଙ୍କ ରତ୍ନସିଂହାସନର ଦକ୍ଷିଣ ଦିଗରେ ମା' ଲକ୍ଷ୍ମୀ ମଣ୍ଡପଙ୍କ ବିପରିତ ପାର୍ଶ୍ୱରେ ୬୦ ଫୁଟ ଉଚ୍ଚତା ବିଶିଷ୍ଟ ବଉଳମାଳା ପଥରରେ ନିର୍ମିତ ହୋଇ ପ୍ରତୀୟମାନ । ମା'ଦେବୀଙ୍କ ଆସନଟି ଦୁଇଟି ଭାଗରେ ବିଭକ୍ତ ଯଥା- ଗର୍ଭଗୃହ ଓ ଜଗମୋହନ । ଜଗମୋହନ ସମ୍ମୁଖରେ ଦୁଇଟି ମଣ୍ଡପ ଅବସ୍ଥିତ । ଏହି ସମ୍ମୁଖ ମଣ୍ଡପଦ୍ୱୟ ଭିତର କାନ୍ଥରେ କେତେଗୁଡ଼ିଏ ମା' ଦେବୀ ଦୁର୍ଗାଙ୍କ ବିଗ୍ରହ ଦୃଷ୍ଟିଗୋଚର ହୁଏ । ସେଥିମଧ୍ୟରୁ ୧୦ ଗୋଟି ମହାବିଦ୍ୟା ଯଥା- ବିମଳା, ଛିନ୍ନମସ୍ତା, ଉଗ୍ରତାରା, ମହାକାଳୀ, କମଳା, ଧୂମାବତୀ, ଶ୍ୟାମାକାଳୀ, ଭୁବନେଶ୍ୱରୀ, ଷୋଡ଼ଶୀ ଓ ଭୈରବୀ । ଏତଦ୍‌ବ୍ୟତୀତ ୬ଟି ବିଗ୍ରହ ପ୍ରତୀୟମାନ । ସେମାନେ ହେଲେ ବନଦୁର୍ଗା, ଭଦ୍ରକାଳୀ, ବିମଳା, ହରଚଣ୍ଡୀ, ମାତଙ୍ଗିନୀ ଓ ଜୟଦୁର୍ଗା ।

ମନ୍ଦିରର ସମ୍ମୁଖରେ ପ୍ରାୟ ୧୦ ଫୁଟ ଦୂରରେ ରହିଅଛି ରୋହିଣୀକୁଣ୍ଡ ଓ ବାଟଗଣେଶ ମନ୍ଦିର । ଏକ ବିଶାଳକାୟ ପଶୁରାଜ ସିଂହ ମୂର୍ତ୍ତିଟି ସେଠାରେ ପ୍ରତୀୟମାନ । ସିଂହ ହେଉଛି ମା' ବିମଳାଙ୍କର ବାହନ । ପ୍ରତ୍ୟେକ ମନ୍ଦିରରେ ବାହନଗୁଡ଼ିକ ମନ୍ଦିରକୁ ଲାଗି କରି ରହିଥିବା ବେଳେ ମା' ଦେବୀଙ୍କ ବାହନ ମନ୍ଦିରଠାରୁ ୧୦ ଫୁଟ ଦୂରରେ ଅବସ୍ଥିତ । ଏହା ହିଁ ମା' ବିମଳା ଦେବୀଙ୍କ ଏକ ସ୍ୱତନ୍ତ୍ର ବିଶେଷତ୍ୱ । ବିମଳା ମନ୍ଦିରର ବାମ ପାର୍ଶ୍ୱରେ ବେଣୁମାଧବ ଓ ଦକ୍ଷିଣରେ ରାଧାକୃଷ୍ଣ ମନ୍ଦିର ଓ ପଛରେ ଏକ ଫୁଲ ବଗିଚା ଅବସ୍ଥିତ । ମନ୍ଦିରର ପ୍ରବେଶ ପଥର ଦୁଇ ପାଖରେ ସୁନ୍ଦର କାରୁକାର୍ଯ୍ୟରେ ପୂର୍ଣ୍ଣ, ହସ୍ତରେ ଅସ୍ତ୍ରଧାରଣ କରି ଉଭା ହୋଇଛନ୍ତି ଦୁଇଟି ଦ୍ୱାରପାଳ । ସତେ ଯେପରି ସେହି ୨ଟି ପ୍ରତିମା ମା' ଦେବୀଙ୍କର ଦେହରକ୍ଷୀ । ଦ୍ୱାରଦେଶର ପ୍ରଥମ ମଣ୍ଡପର ବାମପଟରେ କାନ୍ଥରେ ୨ଟି ବିଗ୍ରହ ଦେଖିବାକୁ ମିଳେ । ଏହି ପ୍ରତିମା ୨ଟି ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ୨ ଫୁଟ ଉଚ୍ଚତା ବିଶିଷ୍ଟ । ସେଥିମଧ୍ୟରୁ ଗୋଟିଏ ଗଣେଶ ନୃତ୍ୟରତ ଭଙ୍ଗୀରେ ଓ ଅନ୍ୟଟି କାର୍ତ୍ତିକେୟ ରୂପାୟିତ ହୋଇ ପାର୍ବତୀ ତନୟ ରୂପେ ବିରାଜିତ । ଭକ୍ତ, ଦର୍ଶକ ଓ ଭାବୁକମାନଙ୍କ ମନକୁ ସବୁଠାରୁ ଅଧିକ ଆକର୍ଷଣ କରିଅଛି ମନ୍ଦିର ଛାତର ମଧ୍ୟଭାଗରୁ ତଳକୁ ଓହଳିଥିବା ଏକ ଓଲଟା ପଦ୍ମ କୋରକର ଭାସ୍କର୍ଯ୍ୟ ।

ଅଶେଷ ମହିମାଧାରୀ ମା' ବିମଳାଙ୍କର ପୂଜିତ ପ୍ରତିମାଟି ପ୍ରାୟ ୪ ଫୁଟ ଉଚ୍ଚତାରୁ ସାମାନ୍ୟ ଅଧିକ ଓ ଚାରି ହସ୍ତ ବିଶିଷ୍ଟା ପ୍ରତ୍ୟକ୍ଷ ଠାକୁରାଣୀ ବିରାଜିତ ହୋଇଛନ୍ତି ଏକ ସିଂହାସନ ଉପରେ । ସିଂହାସନଟି ସେତେ ଉଚ୍ଚ ନହେଲେ ମଧ୍ୟ ଖୋଦିତ ହୋଇଅଛି ପଥରରେ । ଉର୍ଦ୍ଧ୍ୱଗାମୀ ଦୁଇଟି ହସ୍ତ ମଧ୍ୟରୁ ଗୋଟିକରେ ଦେବକନ୍ୟା ଓ ଅନ୍ୟଟିରେ ମାୟା ରୂପକ ନାଗକନ୍ୟା ଧାରଣ କରିଛନ୍ତି । ନିମ୍ନଗାମୀ ହସ୍ତଦ୍ୱୟ ମଧ୍ୟରୁ ଗୋଟିକରେ ଜପାମାଳୀ ଓ ଅନ୍ୟଟିରେ ଅମୃତ କଳସ ଧାରଣ କରିଛନ୍ତି । ମସ୍ତକରେ ଶୋଭା ପାଉଛନ୍ତି ଭୈରବ ବାସୁଦେବ, ଯାହାର ମୁକୁଟରେ ସପ୍ତଫଣା ନାଗ ଅବସ୍ଥିତ । ପ୍ରତିମାର ଦୁଇପାଖରେ ଉଭା ହୋଇଛନ୍ତି ଛାୟା ଓ ମାୟା ନାମକ ଦୁଇଟି ବିଗ୍ରହ । ଏତଦ୍‌ବ୍ୟତୀତ ମା' ନାନାଦି ଅଳଙ୍କାର, ପାଟଲୁଗା, ଫୁଲମାଳ, ସିନ୍ଦୂର ଇତ୍ୟାଦିରେ ବିଭୂଷିତା ହୋଇ ଅତୀବ ସୌନ୍ଦର୍ଯ୍ୟ ମଣ୍ଡନ କରିଛନ୍ତି ଗର୍ଭଗୃହର ସିଂହାସନ ଉପରେ । ଧୂପ, ଦୀପ, କର୍ପୂର ଓ ନୈବେଦ୍ୟ ଇତ୍ୟାଦିର ଅର୍ପଣ ସୁବାସରେ ମହକି ଉଠୁଛି ମନ୍ଦିରର ପରିବେଶ ।

ପରମ ଆରାଧ୍ୟ ଦେବୀ ମା' ବିମଳାଙ୍କ ପୂଜା ପଦ୍ଧତି ତଥା ଉପାସନା ପ୍ରାୟତଃ ଶ୍ରୀଜଗନ୍ନାଥଙ୍କ ସଂସ୍କୃତି ସହ ସମାନ । ତାଙ୍କର ମହିମା ବଳରେ ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ପ୍ରସାଦ ରୂପାନ୍ତରିତ ହୋଇଥାଏ ମହାପ୍ରସାଦରେ । ତେଣୁ ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କୁ ଲାଗି ହେଉଥିବା ପ୍ରସାଦ ମା' ବିମଳାଙ୍କ ପାଖକୁ ଅଣାଯାଇଥାଏ । ପୁନର୍ବାର ସେହି ପ୍ରସାଦ ମା' ବିମଳାଙ୍କୁ ଅର୍ପଣ ହେଲେ, ତାହା ମହାପ୍ରସାଦ ହୋଇଥାଏ । ଏହା ବିମଳାଙ୍କର ସ୍ୱତନ୍ତ୍ରତା ଅଟେ । ପ୍ରତ୍ୟହ ସକାଳ ଧୂପରେ ଶ୍ରୀଜଗନ୍ନାଥଙ୍କ ପାଖରେ ୧୬ ପ୍ରକାରର ଭୋଗ ଲାଗି ହୋଇଥିଲେ ମଧ୍ୟ ମାତ୍ର ଛଅ ପ୍ରକାରର ଭୋଗ ବିମଳାଙ୍କ ପାଖରେ ଭୋଗ ହୋଇଥାଏ । ସେଗୁଡ଼ିକ ଯଥା- ସୁନାଥାଳି ଖେଚୁଡ଼ି, ବଡ଼କାନ୍ତି, ସାନକାନ୍ତି, ଝିଲି, ଶାଗଭଜା ଓ କଦଳୀ ଭଜା । ଏହି ପୂଜାରେ ସୁଆର ନିଯୋଗରେ ଅନ୍ତର୍ଭୁକ୍ତ ହୋଇଥାଆନ୍ତି ବେହେରା, ପନ୍ତିବଡୁ ଓ ବିଡୁଆ । ଯଥାକ୍ରମେ ସେମାନେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ପାଖରୁ ବୋହି ଆଣନ୍ତି ମା' ବିମଳାଙ୍କ ପାଖକୁ ସେହି ପ୍ରସାଦ । ସେମାନେ ମା'ଙ୍କ ପାଖରେ ପ୍ରସାଦକୁ ଗୋଟିଏ ବାକ୍ୟରେ ପୂଜା କରିଥାନ୍ତି । ତାହା ହେଲା - 'ମା' ! ମହାପ୍ରସାଦ ସମର୍ପଣୀୟ ନମଃ ।' ସେହିପରି ଦୈନନ୍ଦିନ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ ହେଉଥିବା ଭୋଗ ଯଥା- ସକାଳ ଧୂପ, ଦ୍ୱିପ୍ରହର ଧୂପ, ସଅ ଧୂପ ବିମଳାଙ୍କ ପାଖକୁ ଯାଇ ପୂଜା ମାଧ୍ୟମରେ ମହାପ୍ରସାଦରେ ପରିଣତ ହୁଏ । ଏତଦ୍‌ବ୍ୟତୀତ ସକାଳର ସ୍ନାନ, ଆଳତୀ, ସନ୍ଧ୍ୟା ଆଳତୀ ଇତ୍ୟାଦି ଦୈନନ୍ଦିନ ହେବା ସଂଗେସଂଗେ ବିଭିନ୍ନ ପ୍ରକାର ମେଳା ମହୋତ୍ସବରେ ଅଧିକ ଧୂପ ଓ ପୂଜା ହୋଇଥାଏ । ମା'ଙ୍କର ଦୈନନ୍ଦିନ କାର୍ଯ୍ୟ ପାଇଁ ବିଭିନ୍ନ ଦିନ ଓ ସମୟରେ ଭିନ୍ନ ଭିନ୍ନ ସେବାୟତମାନେ ନିଯୋଗ ହୋଇଥାଆନ୍ତି ।

କଥାରେ ଅଛି, ଓଡ଼ିଆମାନେ ବାର ମାସରେ ତେର ପର୍ବ ପାଳନ କରିଥାଆନ୍ତି । ତେଣୁ ବର୍ଷକ ବାର ମାସରେ ତିଥି ଅନୁସାରେ ପଡୁଥିବା ଧାର୍ମିକ ପର୍ବପର୍ବାଣି ବିଧିବିଧାନ ସହ ଧୂପ, ଦୀପ, ନୈବେଦ୍ୟ, କର୍ପୂର, ଚନ୍ଦନ, ଫୁଲ ଇତ୍ୟାଦି ମାଧ୍ୟମରେ ବହୁ ଆଡ଼ମ୍ବରପୂର୍ଣ୍ଣ ଭାବରେ ପାଳନ କରାଯାଇଥାଏ ମା' ବିମଳାଙ୍କ ପୀଠରେ । ଏତଦ୍‌ବ୍ୟତୀତ ପ୍ରତିଦିନ ଶହ ଶହ ପରମ ଭକ୍ତ ସେମାନଙ୍କର ମାନସିକ ପୂରଣ ଓ କାମନା କରିବା ପାଇଁ ସମାବେଶ ହୋଇଥାନ୍ତି ମା'ଙ୍କ ପୀଠରେ ।

ଶୁଭଫଳ ଦାୟିନୀ ମା' ବିମଳାଙ୍କ ପୀଠରେ ଶାରଦୀୟ ପର୍ବ ଦଶହରା ପାଳନର ପୂଜା ପଦ୍ଧତି ଓଡ଼ିଶାର ଶାକ୍ତପୀଠଗୁଡ଼ିକଠାରୁ ସ୍ୱତନ୍ତ୍ର





ଅଟେ । ଷୋହଳ ଦିନଧରି ଏହି ପର୍ବ ମହାସମାରୋହ ଓ ଯାକଯମକରେ ଲକ୍ଷ ଲକ୍ଷ ଭକ୍ତମାନଙ୍କ ଗହଣରେ ପାଳିତ ହୋଇଥାଏ । ସବୁପୀଠରେ ମା' ଦୁର୍ଗାଙ୍କୁ ଶିବଙ୍କ ପତ୍ନୀ ରୂପେ ପୂଜା ହୋଇଥିଲେ ମଧ୍ୟ ବିମଳାଙ୍କ ପୀଠରେ ଦୁର୍ଗାମାଧବଙ୍କୁ ପୂଜା କରାଯାଇଥାଏ । ଏହି ପୂଜା ଆଶ୍ୱିନ ମାସ କୃଷ୍ଣପକ୍ଷ ଅଷ୍ଟମୀଠାରୁ ସେହି ମାସ ଶୁକ୍ଳପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ ଦୀର୍ଘ ଷୋହଳ ଦିନ ଧରି ପାଳନ କରାଯାଇଥାଏ । ଏହି ପୂଜାକୁ ମଧ୍ୟ ବିଭିନ୍ନ ନାମରେ ନାମିତ କରାଯାଇଅଛି । ଯଥା- ଷୋଳ ପୂଜା, ଶାରଦୀୟ ରଥଯାତ୍ରା, ଶାକ୍ତ ଗୁଣ୍ଡିଚା ପୂଜା, ଦୁର୍ଗା ମାଧବ ଉପାସନା ବା ଦଶହରା । ଏହି ପୂଜାର ପ୍ରଥମ ଦିନ ପ୍ରାତଃ ପୂଜା ପରେ ସୁବର୍ଣ୍ଣରେ ନିର୍ମିତ ଜୟଦୁର୍ଗାଙ୍କ ପ୍ରତିମାଙ୍କୁ ମା' ଦେବୀ ସୁଭଦ୍ରାଙ୍କ ପାଖରେ ରଖି ତାଙ୍କଠାରୁ ଆଜ୍ଞାମାଳ ଆଣି ଦୁର୍ଗା ଉତ୍ସବ ଆରମ୍ଭ ହୋଇଥାଏ । ଆଜ୍ଞାମାଳ ପାଇବା ପରେ ଜୟଦୁର୍ଗାଙ୍କୁ ମାଜଣା ମଣ୍ଡପରେ ରଖି ୧୦୮ ଗରା ଜଳରେ ବନଦୁର୍ଗା ମନ୍ତ୍ର ମାଧ୍ୟମରେ ଅଭିଷେକ କରାଯାଇଥାଏ । ତତ୍ପରେ ମାଧବ ମୂର୍ତ୍ତିଙ୍କୁ ସେଠାକୁ ଅଣାଯାଇ ୧୦୮ ଗରା ଜଳରେ ସ୍ନାନ କରାଯାଇଥାଏ । ଉଭୟ ଦୁଇଟି ପ୍ରତିମାଙ୍କୁ (ଦୁର୍ଗା ଓ ମାଧବ) ଗୋଟିଏ ଖଟୁଲୀରେ ରୀତି ଅନୁସାରେ ପୂଜା କରାଯାଇଥାଏ । ତତ୍ପରେ ବିମାନବଡୁ ନାମକ ସେବାୟତମାନେ ଦୁର୍ଗାମାଧବଙ୍କୁ ସୁସଜ୍ଜିତ ରଥରେ ନେଇଯାଆନ୍ତି ମା' ବିମଳା ପୀଠକୁ । ସେଠାରେ ବିମଳାଙ୍କ ଆସ୍ଥାନ ପାଖରେ ଏକ ଖଟୁଲୀରେ ବିଜେ କରିଥାନ୍ତି ଦୁର୍ଗାମାଧବ । ସେଠାରେ ଷୋଡ଼ଶ ଉପଚାରର ପୂଜା, ଆଳତୀ, ଭୋଗ ତିନି ଥର ହୋଇଥାଏ । ତତ୍ପରେ ଦୁର୍ଗାମାଧବ ସେହି ରଥରେ ଭଣ୍ଡାର ଘରକୁ ଆସିଥାନ୍ତି । ଏହିପରି ପ୍ରଥମ ଆଠଦିନ ପୂଜାକାର୍ଯ୍ୟ ସମ୍ପାଦନ ହୋଇଥାଏ । କିନ୍ତୁ ପର ଆଠଦିନ ନିକଟରେ ଥିବା ଦୋଳମଣ୍ଡପ ସାହିସ୍ଥିତ ଏକ ଛୋଟ ନାରାୟଣୀ ମନ୍ଦିରକୁ ଦୁର୍ଗାମାଧବ ପ୍ରତିମା ସେହି ରଥରେ ଯାଇଥାଆନ୍ତି । ସେଠାରେ ଯଥାରୀତି ପୂଜା ଅର୍ଚ୍ଚନା ହୋଇଥାଏ । ତତ୍ପରେ ଦୁଇ ଠାକୁର ଭଣ୍ଡାର ଘରକୁ ଆସିଥାନ୍ତି । ଶ୍ରୀକ୍ଷେତ୍ରରେ ମା' ବିମଳା ପ୍ରଭୁ ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ମାଧବଙ୍କ ସହ ପୂଜା ପାଇଥାଆନ୍ତି । ତେଣୁ ପୁରୀ ମନ୍ଦିର ପରମ୍ପରାରେ ବିମଳାଙ୍କ ଭୂମିକା ଅଦ୍ୱିତୀୟ ।

ଷୋଳପୂଜା ସମୟରେ ମା' ଦେବୀ ବିମଳା ପ୍ରତିଦିନ ବିଭିନ୍ନ ପ୍ରକାର ବେଶଭୂଷା ଓ ରୂପରେ ସୁସଜ୍ଜିତ ହୋଇଥାଆନ୍ତି । ପ୍ରତ୍ୟହ ମନ୍ତ୍ରପାଠ, ଚଣ୍ଡୀପାଠ, ନାମ ଯଜ୍ଞ ଇତ୍ୟାଦି ବିଧିବିଧାନ ସହିତ ପାଳନ ହୋଇଥାଏ । ସେହି ବେଶଗୁଡ଼ିକର ନାମ ହେଲା - ବନଦୁର୍ଗା, ଭୁବନେଶ୍ୱରୀ, ନାରାୟଣୀ, ମାତଙ୍ଗିନୀ, ଦଶଭୁଜା, ରାଜେଶ୍ୱରୀ ହରଚଣ୍ଡୀ ଓ ସିଂହବାହିନୀ । ଏହି ସମୟରେ ଦେଶ ଓ ବିଦେଶରୁ ଲକ୍ଷ ଲକ୍ଷ ଭକ୍ତ ଓ ପର୍ଯ୍ୟଟକ ମା'ଙ୍କୁ ଦର୍ଶନ କରିବା ପାଇଁ ସମବେତ ହୋଇଥାଆନ୍ତି ।

ଆଜି ସମଗ୍ର ବିଶ୍ୱବାସୀ ଯେପରି ପ୍ରଭୁ ଜଗନ୍ନାଥ କହିଲେ ଓଡ଼ିଶାକୁ ବୁଝିଥା'ନ୍ତି, ଠିକ୍ ସେପରି ମା' ବିମଳା କହିଲେ ଶ୍ରୀକ୍ଷେତ୍ର ତଥା ବିଶ୍ୱଧର୍ମର ପବିତ୍ର ଶାକ୍ତ କ୍ଷେତ୍ରକୁ ଜାଣିଥାନ୍ତି । ତେଣୁ ଆଜି ସମଗ୍ର ଓଡ଼ିଆ ଜାତି ବିଶ୍ୱର କୋଣ ଅଣ୍ଡୁକୋଣରେ ସୁପରିଚିତ । କାରଣ ପରମ ଭକ୍ତମାନଙ୍କୁ ସବୁଠାରୁ ଅଧିକ ଆକର୍ଷିତ କରିପାରିଛି ମା' ଦେବୀ ବିମଳାଙ୍କ ପୂଜିତ ବିଗ୍ରହଟି । ଏହି ପ୍ରତିମାର ଗଠନ ଶୈଳୀ ଓ ସୂକ୍ଷ୍ମ କାରୁକାର୍ଯ୍ୟରେ ଅପରୂପା ସୌନ୍ଦର୍ଯ୍ୟ ଦେଖାଯିବା ବିରଳ । ଅସୀମ ଦୟା, କରୁଣା ଓ ଆଶୀର୍ବାଦ ଚୁମ୍ବକୀୟ ଶକ୍ତି ପରି ଟାଣି ରଖିଛି କୋଟି କୋଟି ପରମଭକ୍ତ ତଥା ଆବାଳ-ବୃଦ୍ଧ-ବନିତାଙ୍କ ହୃଦୟ ମନ୍ଦିରକୁ ତାରି ଚରଣାବିନ୍ଦରେ । କିପ୍ରକାର ଶକ୍ତି ଅଛି ତାଙ୍କ ନିକଟରେ ଯେ, ସାତ ସମୁଦ୍ର ତେର ନଈ ପାରି ହୋଇ ଦେଶ ଓ ବିଦେଶରୁ ଛୁଟି ଆସନ୍ତି କୋଟି କୋଟି ପରମ ଭକ୍ତ । ପ୍ରକୃତରେ ସମସ୍ତ ଭକ୍ତ ଭୁଲି ଯାଆନ୍ତି ସେମାନଙ୍କର ଲୋଭ, ମୋହ, ମାୟା, କାମ, କ୍ରୋଧ, ଗର୍ବ ଓ ଅହଂକାର ଇତ୍ୟାଦି ମନ୍ଦ ଗୁଣଗୁଡ଼ିକୁ । ସ୍ୱତଃପ୍ରବୃତ୍ତ ଭାବରେ ମା'ଙ୍କ ପାଖରେ ଜାଗ୍ରତ ହୋଇଥାଏ ଭକ୍ତି, ପ୍ରୀତି, ଭ୍ରାତୃ ଓ ପ୍ରେମ ରୂପକ ରସବାଣୀ । ତେଣୁ ସେ ହେଉଛନ୍ତି ପ୍ରକୃତରେ ସମସ୍ତ ମାନବ ସମାଜର ଶୁଭଫଳ ଓ ଆଶୀର୍ବାଦ ଦାୟିନୀ ମାତୃରୂପିଣୀ ମାତୃଶକ୍ତି ।

ଏକାଧାରରେ ମା' ଦେବୀ ବିମଳା ହେଉଛନ୍ତି ବୈକୁଣ୍ଠ ପୁରୀର ଅଧିଷ୍ଠାତ୍ରୀ ଦେବୀ । ବିଶ୍ୱ ଜଗତର ଶ୍ରେଷ୍ଠ ଶକ୍ତି, ସଚରାଚର ବ୍ରହ୍ମାଣ୍ଡର ଆଦିଶକ୍ତି ତଥା ଆଦିମାତା, ତ୍ରୈଲୋକ୍ୟ ପୁରୀର ମଉଡ଼ମଣୀ ଓ ବଡ଼ ଦେଉଳର ବଡ଼ ଠାକୁରାଣୀ । ସର୍ବୋପରି, ସେ ହେଉଛନ୍ତି ସମସ୍ତ ଦେବୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ କର୍ତ୍ତ୍ରୀ ଓ ସମସ୍ତ ଜୀବଜଗତର ପ୍ରାଣବିନ୍ଦୁ । ତେଣୁ ତାଙ୍କରି ଚରଣାବିନ୍ଦରେ ସମସ୍ତ ମାନବ ସମାଜ ସେମାନଙ୍କର ଶରୀର ଓ ଆତ୍ମାକୁ ସମର୍ପଣ କରି ଦୈନନ୍ଦିନ କାର୍ଯ୍ୟ ସମ୍ପାଦନ କରିବା ଏକାନ୍ତ କାମ୍ୟ । ଫଳରେ ସମାଜରେ ଥିବା ସମସ୍ତ କଳୁଷିତ ପରିବେଶ ଦୂର ହୋଇ ସୃଷ୍ଟି ହେବ ସୁଖ, ଶାନ୍ତି, ପବିତ୍ର, ଐକ୍ୟ ଓ ସମତାର ଯୁଗ ।

ଘ.ନଂ.- ଟୁ.ଆର୍.ଏ.- ୩୫/୭
ଆଠ ନମ୍ବର, ଭୁବନେଶ୍ୱର





# ଶ୍ରୀଜୀଉଙ୍କ ସୁନାବେଶ

ପଙ୍କଜ ସାହୁ

**ଶ୍ରୀ**ଜଗନ୍ନାଥ, ଶ୍ରୀବଳଭଦ୍ର ଓ ମାତା ସୁଭଦ୍ରା ପ୍ରଭୃତି ଶ୍ରୀମୂର୍ତ୍ତିତ୍ରୟ ସ୍ଥୂଳତଃ ଅପୂର୍ଣ୍ଣ ରୂପେ ପ୍ରତିଭାତ ହେଉଥିଲେ ହେଁ ବାସ୍ତବରେ ସେମାନେ ଶ୍ରୀମଦ୍ ଭାଗବତ ଗୀତା ବର୍ଣ୍ଣିତ ପୁରୁଷୋତ୍ତମ ତତ୍ତ୍ୱାଧାରିତ ଅପରୂପ ବିଗ୍ରହ ଅଟନ୍ତି । ସେ କ୍ଷର-ଅକ୍ଷର, ସେ ପୁଣି କ୍ଷରାକ୍ଷରାତୀତ । ସେ ବ୍ୟକ୍ତ-ଅବ୍ୟକ୍ତ, ସେ ମଧ୍ୟ ବ୍ୟକ୍ତାବ୍ୟକ୍ତ ଅବସ୍ଥାର ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ ପ୍ରତୀକାତ୍ମକ ବିଗ୍ରହ । ରୂପଗୁଣ ବିବର୍ଜିତ ଅରୂପାନନ୍ଦ ଶ୍ରୀଜଗନ୍ନାଥ, ପୁନଶ୍ଚ ଅସୁମାରି ରୂପ ତାଙ୍କର । ଏହି ପରିପ୍ରେକ୍ଷୀରେ ଯଥାର୍ଥରେ କୁହାଯାଇଛି -

ଦେବ ଦେବ ଜଗନ୍ନାଥ ସର୍ବରୂପ ପରାୟଣମ୍
ଏକ ନିର୍ଗୁଣ ଭଗବାନ ସଗୁଣେ ବହୁଧା ସ୍ଥଥା ।'

ଶ୍ରୀଜଗନ୍ନାଥଙ୍କ ସେବା ନୀତିରେ କାଳକ୍ରମେ ବିଭିନ୍ନ ଉପାସନା ପଦ୍ଧତି ସନ୍ନିବିଷ୍ଟ ହୋଇଥିଲେ ହେଁ, ସ୍ମାର୍ତ୍ତ ଉପାସନାକୁ ତନ୍ମଧ୍ୟରେ ଯଥୋଚିତ ପ୍ରାଧାନ୍ୟ ଅର୍ପିତ ହୋଇଅଛି । ଶ୍ରୀଜଗନ୍ନାଥ ଯେହେତୁ ପଞ୍ଚଦେବତାଙ୍କର ସମ୍ମିଳିତ ବିଗ୍ରହ, ତେଣୁ ତାଙ୍କୁ ଏବଂବିଧ ପଦ୍ଧତିରେ ଉପାସନା କରିବା ଅବଶ୍ୟମ୍ଭାବୀ ମନେହୁଏ । ପୁନଶ୍ଚ ଶ୍ରୀଜଗନ୍ନାଥ ଯେହେତୁ ପ୍ରତିମା ନୁହନ୍ତି, ପ୍ରତୀକ ଅଟନ୍ତି ତେଣୁ ଶ୍ରୀବିଗ୍ରହରେ ଆବଶ୍ୟକତା ବୋଧରେ ସୁନାର ହସ୍ତପଦ ସଂଯୋଗ କରାଯାଇ ବିଭିନ୍ନ ଧର୍ମମତାବଲମ୍ବୀଗଣ ଶ୍ରୀଜଗନ୍ନାଥଙ୍କୁ ସ୍ୱୀୟ ଉପାସ୍ୟ ଭାବେ ସ୍ୱୀକାର କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ । ଭାରତର ଅନ୍ୟ କୌଣସି ଦେବବାଦରେ ଏତାଦୃଶ ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ ନାହିଁ ।

ସକଳ ରୂପ ଅରୂପର ଆଧାର ଶ୍ରୀବିଗ୍ରହ ଚତୁଷ୍ଟୟଙ୍କ ପ୍ରାତ୍ୟହିକ ନୀତି ଅନୁଯାୟୀ ବସ୍ତ୍ର, ପୁଷ୍ପ, ସ୍ୱର୍ଣ୍ଣାଳଙ୍କାର, ରତ୍ନଭୂଷଣରେ ବିଭୂଷିତ କରି ପ୍ରତ୍ୟହ ୨୪ ଘଣ୍ଟା ମଧ୍ୟରେ ଆଧ୍ୟାତ୍ମିକ ତତ୍ତ୍ୱାଧାରିତ ୨୪ ଗୋଟି ଦିବ୍ୟ ବେଶରେ ସୁସଜ୍ଜିତ କରାଯାଇଥାଏ ବୋଲି ଯଥାର୍ଥରେ କୁହାଯାଇଛି -

'ଚତୁର୍ବିଂଶତି ତତ୍ତ୍ୱକଥା । ଚବିଶି ବେଶର ବ୍ୟବସ୍ଥା ॥
କି ଦିବା ନିଶି ତୁ ମଗନ । ଚବିଶି ବେଶରେ ମଣ୍ଡନ ॥'

ମହାପ୍ରଭୁମାନଙ୍କର ଏହି ଦୈନନ୍ଦିନ ବେଶର ବିବିଧତା ଯୋଗୁଁ ଜନୈକ ଦର୍ଶନାର୍ଥୀ ଯଦି ଦିବସର ବିଭିନ୍ନ ସମୟରେ ଶ୍ରୀଜଗନ୍ନାଥଙ୍କୁ ପ୍ରତ୍ୟକ୍ଷ କରନ୍ତି, ତେବେ ଠାକୁରମାନେ ନିଶ୍ଚୟ ପ୍ରତିଥର ସ୍ୱତନ୍ତ୍ର ରୂପରେ ପ୍ରତିଭାତ ହେବେ । ଐଶ୍ୱର୍ଯ୍ୟ ମାଧୁର୍ଯ୍ୟର ସମନ୍ୱିତ ବିଗ୍ରହ ଶ୍ରୀଜଗନ୍ନାଥଙ୍କର ବର୍ଷ ମଧ୍ୟରେ ଅନୁଷ୍ଠିତ ପର୍ବପର୍ବାଣିର ମୁଖ୍ୟ ଆକର୍ଷଣ ହେଉଛି ତାଙ୍କର ଭବ୍ୟ ବେଶ ସଂଯୋଜନା । ତେଣୁ କ୍ଷେତ୍ରରାଜ ଶ୍ରୀପୁରୁଷୋତ୍ତମରେ ଅଧିଷ୍ଠିତ ଦେବାଧିରାଜ ଶ୍ରୀଜଗନ୍ନାଥଙ୍କର ବେଶ ବହୁଳ ତଥା ବିଭିନ୍ନତାରେ ପରିପୂର୍ଣ୍ଣ । ମହାପ୍ରଭୁଙ୍କର ଦୈନନ୍ଦିନ ବେଶ ବ୍ୟତୀତ ବର୍ଷ ମଧ୍ୟରେ ଅନୁଷ୍ଠିତ ବିଭିନ୍ନ ପୂଜା ମହୋତ୍ସବରେ ଅବତାରବାଦ ଉପରେ ପର୍ଯ୍ୟବସିତ ୨୪ ଗୋଟି ପୃଥକ୍ ବେଶରେ ଠାକୁରମାନଙ୍କର ରୂପମାଧୁର୍ଯ୍ୟ ପ୍ରକଟିତ ହୋଇଥାଏ । ଏ ସମ୍ବନ୍ଧରେ ଶାସ୍ତ୍ରୋକ୍ତି ରହିଛି -

'କିବା ଚବିଶି ଅବତାର । କଳ୍ପିତ ବେଶେ ତୋ ପ୍ରଚାର ॥
ନାହିଁ ସେ ବେଶର ଉପମା । ବାକ୍ୟେ କେ ବର୍ଣ୍ଣିବ ମହିମା ॥'

କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ଲୀଳାବିଧୃତ କଳେବର ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ଲୀଳାବିଳାସ ଅବଲମ୍ବନରେ ପୂଜୋତ୍ସବମାନଙ୍କରେ ତାଙ୍କର ଭିନ୍ନ ଭିନ୍ନ ବେଶ ବିନ୍ୟାସ ମହାପ୍ରଭୁଙ୍କୁ ଜୀବନ୍ତ ରୂପେ ବିଜ୍ଞପିତ କରିଥାଏ । ଶ୍ରୀବିଗ୍ରହ ପରିକଳ୍ପନାରେ ଯେପରି ଅନିର୍ବଚନୀୟ ତତ୍ତ୍ୱ ନିହିତ, ଶ୍ରୀଜୀଉଙ୍କ ବେଶ ସଂଯୋଜନାରେ ଅନୁରୂପ ତଥ୍ୟାବଳୀ ମଧ୍ୟ ସନ୍ନିବିଷ୍ଟ । ଏହି ବେଶଗୁଡ଼ିକ ଯେତିକି ମନୋଜ୍ଞ, ଏହାର ସମ୍ପାଦନା ମଧ୍ୟ ତଦନୁରୂପ କଷ୍ଟସାଧ୍ୟ । କାରଣ ବସ୍ତ୍ର ଅଳଙ୍କାର ତଥା ଆବଶ୍ୟକ ଆୟୁଧ/ଅସ୍ତ୍ରଶସ୍ତ୍ର ଦେଇ ହୁଏତ ଜନୈକ କଳାକାରକୁ ମହାଦେବ, ନୃସିଂହ, ପରଶୁରାମ, ରାମ ଅଥବା କୃଷ୍ଣ ବେଶରେ ସର୍ବୋପରି ରାଜା, ସନ୍ନ୍ୟାସୀ କିମ୍ବା ଭିକ୍ଷୁକ ବେଶରେ ସଜ୍ଜିତ କରାଯାଇପାରେ, ମାତ୍ର ସେହି ଅଭିନେତାକୁ ଜଗନ୍ନାଥ ବେଶରେ ସଜାଇବା ଏକାନ୍ତ ଦୁରୂହ । ଏହା ହିଁ ଶ୍ରୀଜୀଉଙ୍କ ବେଶ ବିନ୍ୟାସର ବୈଶିଷ୍ଟ୍ୟ । କୁଶଳୀ ତଥା ସିଦ୍ଧହସ୍ତ ସେବକ ସିଂହାରୀ ପୁଷ୍ପାଳକଗଣ ମହାପ୍ରଭୁଙ୍କର ଏହି ଭବ୍ୟ ବେଶ ସମ୍ପାଦନ କରିଥାନ୍ତି । ମହାପ୍ରଭୁଙ୍କର ବେଶ କର୍ମ ନିର୍ବାହ ନିମିତ୍ତ ସେବା ନିଯୋଗରେ 'ମେକାପ' ସଂଜ୍ଞ୍ୟକ ସେବକଙ୍କ ସଂପୃକ୍ତି ବାସ୍ତବରେ ତାତ୍ପର୍ଯ୍ୟପୂର୍ଣ୍ଣ । ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ସୁନିର୍ଦ୍ଦିଷ୍ଟ





ହୋଇଥିବା ବେଶମାନଙ୍କ ମଧ୍ୟରେ ଅନ୍ୟତମ ଆକର୍ଷଣୀୟ ବେଶ ହେଉଛି 'ସୁନାବେଶ' ଯାହାକି ଅତ୍ୟନ୍ତ ଉପଭୋଗ୍ୟ । ମହାପ୍ରଭୁଙ୍କର ସକଳ ବେଶରେ ମାଧୁର୍ଯ୍ୟକରଣ୍ୟ ପ୍ରକଟିତ ହେଉଥିବା ସ୍ଥଳେ, କେବଳ ସୁନାବେଶରେ ଐଶ୍ୱର୍ଯ୍ୟ ପ୍ରାବଲ୍ୟ ପରିସ୍ଫୁଟ ହୋଇଥାଏ । ବିଭିନ୍ନ ନୀତି ଅନୁଯାୟୀ ଶ୍ରୀବିଗ୍ରହମାନଙ୍କୁ ଯତ୍‌ସାମାନ୍ୟ ସୁନାଗହଣା ପ୍ରତିଦିନ ଲାଗି ହେଲେ ମଧ୍ୟ କେତେକ ବିଶେଷ ପର୍ବପର୍ବାଣି ଓ ସ୍ୱତନ୍ତ୍ର ଉତ୍ସବାନୁଷ୍ଠାନରେ ମହାପ୍ରଭୁମାନେ ଅଧିକ ରତ୍ନଖଚିତ ସ୍ୱର୍ଣ୍ଣାଳଙ୍କାର ପରିଧାନ କରିଥା'ନ୍ତି । ମାତ୍ର ମହାପ୍ରଭୁଙ୍କ ସୁନାବେଶରେ ସ୍ୱର୍ଣ୍ଣାଳଙ୍କାରର ସଂଖ୍ୟା ଓ ପରିମାଣ ସର୍ବାଧିକ ହୋଇଥାଏ । ଏହି ବେଶରେ ମହାପ୍ରଭୁ ସ୍ୱର୍ଣ୍ଣଗଠିତ ହସ୍ତପଦ ଲାଗି ହେବା ସହିତ ସମ୍ପୂର୍ଣ୍ଣ ରୂପେ ସ୍ୱର୍ଣ୍ଣାଭରଣରେ ବିଭୂଷିତ ହୋଇଥାନ୍ତି । ଏହି ପରିପ୍ରେକ୍ଷୀରେ ପ୍ରାସଙ୍ଗିକତା ରକ୍ଷାପୂର୍ବକ 'ସୁନାବେଶ' ସମ୍ବନ୍ଧରେ ପାଠକବର୍ଗଙ୍କୁ ସମ୍ୟକ୍ ସୂଚନା ପ୍ରଦାନ କରିବା ଅପରିହାର୍ଯ୍ୟ ମନେହୁଏ ।

ପୁରାଣ ସମର୍ଥିତ ତଥ୍ୟାନୁସାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସୁନାବେଶ ସମ୍ବନ୍ଧରେ କତିପୟ କିମ୍ବଦନ୍ତୀ ଶ୍ରୁତିଗୋଚର ହୋଇଥାଏ । ଏହି ସୁନାବେଶକୁ ରାଜବେଶ, ରାଜରାଜେଶ୍ୱର ବେଶ ସର୍ବୋପରି ବଡ଼ ତଡ଼ଉବେଶ ନାମରେ ମଧ୍ୟ ଅଭିହିତ କରାଯାଇଥାଏ । ସୁନାବେଶକୁ ରାଜବେଶ କହିବା ପୃଷ୍ଠଭୂମିରେ ଏକ କିମ୍ବଦନ୍ତୀ ଅଛି ଯେ, ଶ୍ରୀଜଗନ୍ନାଥ ସଂସ୍କୃତିର ଆବିଷ୍କର୍ତ୍ତା ଅଶ୍ୱମେଧୀ ରାଜା ଇନ୍ଦ୍ରଦ୍ୟୁମ୍ନ : ଶ୍ରୀବିଗ୍ରହ ନିର୍ମାଣ ଅବ୍ୟାହତ ଥିବା ଅବସ୍ଥାରେ ସ୍ୱୀୟ ରାଣୀଙ୍କ ଅହେତୁକୀ ଆଶଙ୍କା ପ୍ରତି ଦୁର୍ବଳତା ପ୍ରଦର୍ଶନ ପୂର୍ବକ ନିର୍ଦ୍ଧାରିତ ଦିବସ ପୂର୍ବରୁ କପାଟ ଉନ୍ମୋଚନମାତ୍ରେ ଅସମ୍ପୂର୍ଣ୍ଣ ପ୍ରତୀୟମାନ ବିଗ୍ରହ ପ୍ରତ୍ୟକ୍ଷ କରି ଦୁଃଖରେ ମ୍ରିୟମାଣ ହୋଇ ମହାପ୍ରଭୁଙ୍କ ଅଙ୍ଗବୈକଲ୍ୟ ନିମିତ୍ତ ନିଜକୁ ଦାୟୀ ମନେକରି ନିରାହାରରେ ମୃତ୍ୟୁବରଣ କରିବା ପାଇଁ କୃତସଙ୍କଳ୍ପ ହେଲେ । ସୀମିତ ଶକ୍ତି ସମ୍ପନ୍ନ ଇନ୍ଦ୍ରିୟଜ୍ଞାନରେ ଅସୀମଙ୍କ ଅବବୋଧ କରିବାରେ ବିଫଳ ହୋଇଥିବା ପରମ ବିଷ୍ଣୁଭକ୍ତ ରାଜାଙ୍କର ଏତାଦୃଶ ନିଷ୍ପତ୍ତିରେ ମହାପ୍ରଭୁ ନିରାକାର ବ୍ରହ୍ମ ସୂଚନା ପ୍ରଦାନ କଲେ ଯେ, 'ହେ ରାଜନ୍ ! ବ୍ରହ୍ମର ଅବୟବ ନାସ୍ତି । ବ୍ରହ୍ମରେ ଅବୟବ ପରିକଳ୍ପନା ଉଦ୍ଭଟ ଚିନ୍ତାର ପରିଚାୟକ ମାତ୍ର । ତୁମେ ମୋର ପ୍ରତୀକର ଏ ଯେଉଁ ବିଗ୍ରହ ଦେଖୁଛ, ତାହା ଆଦୌ ଅସମ୍ପୂର୍ଣ୍ଣ ନୁହେଁ, ଯାହାକି ମୋ ଇଚ୍ଛାର ସମ୍ପୂର୍ଣ୍ଣ ପରିପ୍ରକାଶ ମାତ୍ର । ଯଦି ଏହା ତୁମକୁ ଅସମ୍ପୂର୍ଣ୍ଣବୋଧ ହେଉଅଛି, ତେବେ ଆବଶ୍ୟକସ୍ଥଳେ ସ୍ୱର୍ଣ୍ଣ ନିର୍ମିତ ହସ୍ତପଦାଦି ଦ୍ୱାରା ମୋର ସାଙ୍କେତିକ ବିଗ୍ରହକୁ ସମ୍ପୂର୍ଣ୍ଣ ମାନବ ରୂପ ପ୍ରଦାନ କରିବ ।' ତତ୍‌ପରେ ରାଜା ଇନ୍ଦ୍ରଦ୍ୟୁମ୍ନ ମହାପ୍ରଭୁଙ୍କ ନିର୍ଦ୍ଦେଶକୁ ସମ୍ମାନ ଦେଇ, ଶ୍ରୀଜଗନ୍ନାଥ-ଶ୍ରୀବଳଭଦ୍ରଙ୍କ ଶ୍ରୀହସ୍ତର ଥୁଣ୍ଟା ଅଂଶକୁ ଆବୃତ୍ତ କରିବା ପାଇଁ ସର୍ବସାଧାରଣରେ 'ନଳିଭୁଜ' ନାମରେ ପରିଚିତ, ନଳି ସଦୃଶ ଏକ ସ୍ୱର୍ଣ୍ଣ ଆଭୂଷଣ ପ୍ରସ୍ତୁତ କଲେ, ଯାହାର ମୁଦା ହୋଇଥିବା ବହିର୍ଭାଗରେ ଜଗନ୍ନାଥଙ୍କ ନିମନ୍ତେ ଶଙ୍ଖଚକ୍ର ଓ ବଳଭଦ୍ରଙ୍କ ନିମନ୍ତେ ହଳମୂଷଳ ମୁଦ୍ରିତ । ଆଷାଢ଼ ଶୁକ୍ଳ ଏକାଦଶୀରେ ମହାପ୍ରଭୁମାନଙ୍କୁ ସୁନାର ଶ୍ରୀହସ୍ତ ଶ୍ରୀପୟର ଲାଗି ସହିତ ସୁନାରେ ବେଶ କରାଇବା କାର୍ଯ୍ୟ ସର୍ବପ୍ରଥମେ ରାଜା ଇନ୍ଦ୍ରଦ୍ୟୁମ୍ନ କର୍ତ୍ତୃକ ଆରମ୍ଭ ହୋଇଥିବାରୁ ଏହା 'ରାଜବେଶ' ନାମରେ ସର୍ବଜନ ବିଦିତ । ସେହି ବିଷ୍ଣୁଭକ୍ତ ରାଜାଙ୍କ ସ୍ମୃତିରେ ପ୍ରୋକ୍ତ ପବିତ୍ର ତିଥିରେ ମହାପ୍ରଭୁଙ୍କର ଆଲୋଚ୍ୟ ସୁନାବେଶ ଅନୁଷ୍ଠିତ ହେଉଥିବା ଅନୁମେୟ ।

ପୁନଶ୍ଚ ମହାପ୍ରଭୁଙ୍କର ଏହି ସୁନାବେଶକୁ 'ରାଜରାଜେଶ୍ୱର ବେଶ' ନାମରେ ଅଭିହିତ କରିବା ପଶ୍ଚାତ୍‌ରେ ଶ୍ରୀଜଗନ୍ନାଥଙ୍କୁ ଆମଦେଶର ସମ୍ରାଟ ବା ରାଜାଧିରାଜ ସମ୍ମାନରେ ଅଧିଷ୍ଠିତ କରିବାର ପ୍ରଚ୍ଛନ୍ନ ଅଭିବ୍ୟକ୍ତି ନିହିତ । ଓଡ଼ିଆ ଜାତିର ପ୍ରାଣପୁରୁଷ ଶ୍ରୀଜଗନ୍ନାଥଙ୍କୁ ରାଷ୍ଟ୍ରଦେବତା ରୂପେ ସ୍ୱୀକାର କରି ଏ ଦେଶର ରାଜା ମହାରାଜା ସ୍ୱୟଂ ରାଉତ ତଥା ଆଦେଶବାହକ ରୂପେ ମହାପ୍ରଭୁଙ୍କ ସେବା ନିର୍ବାହ କରିଥିବାର ଭୂୟସୀ ପ୍ରମାଣ ଉପଲବ୍‌ଧ ହୋଇଥାଏ । ଅନଙ୍ଗଭୀମ ଦେବ ତୃତୀୟ (୧୨୧୧-୧୨୩୮) ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ପ୍ରକୃତରାଜା ଓ ନିଜକୁ ତାଙ୍କର ଜନୈକ ସେବକଭାବେ ସର୍ବପ୍ରଥମେ ଉଦ୍‌ଘୋଷଣ କରିଥିଲେ । ତାଙ୍କପୁତ୍ର ଲାଙ୍ଗୁଳା ନରସିଂହ ଦେବ (୧୨୩୮-୧୨୬୪) ମଧ୍ୟ ନିଜକୁ ପୁରୁଷୋତ୍ତମ ପୁତ୍ର[୧] ଭାବେ ଅଭିହିତ କରିଥିଲେ । ଗଙ୍ଗବଂଶୀ ରାଜା ଭାନୁଦେବ ତୃତୀୟ (୧୩୦୮-୧୩୨୮) ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ପ୍ରକୃତ ରାଜା ରୂପେ ବିଜ୍ଞପିତ କରିବା ସହିତ ମହାପ୍ରଭୁଙ୍କ ନାମରେ ଅଙ୍କ ଗଣନା ଆରମ୍ଭ କରିଥିଲେ । ସୂର୍ଯ୍ୟବଂଶୀ ରାଜତ୍ୱ କାଳରେ ମଧ୍ୟ କପିଳେନ୍ଦ୍ର ଦେବ (୧୪୩୫-୧୪୬୬) ଶ୍ରୀଜଗନ୍ନାଥଙ୍କୁ ଜାତୀୟ ଦେବତା ରୂପେ ପ୍ରଚାରିତ କରି ନିଜକୁ ତାଙ୍କର ସେବକ ଭାବେ ସ୍ୱୀକାର କରିଥିଲେ । କେବଳ ସେତିକି ନୁହେଁ ଅନଙ୍ଗଭୀମ ଦେବ ଓ ପୁରୁଷୋତ୍ତମ ଦେବ ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ରାଜା ରୂପେ ମାନ୍ୟତା ପ୍ରଦାନ ପୂର୍ବକ ଉଭୟେ ଦୁଇବର୍ଷ ଧରି ଅଭିଷେକ[୨] ହୋଇନଥିଲେ ।

ଓଡ଼ିଆର ଇଷ୍ଟଦେବତା ଶ୍ରୀଜଗନ୍ନାଥଙ୍କୁ ରାଷ୍ଟ୍ରଦେବତା ରୂପେ ସମ୍ମାନିତ କରି କେବଳ ସନ୍ତୁଷ୍ଟ ହୋଇନଥିଲେ, ତତ୍ ସହିତ ଦିଗ୍‌ବିଜୟ ଲବ୍‌ଧ ସକଳ ଐଶ୍ୱର୍ଯ୍ୟ ତାଙ୍କର ପାଦତଳେ ସମର୍ପି ଦେବାକୁ ଅହୋଭାଗ୍ୟ ମଣୁଥିଲେ ରାଜା ମହାରାଜାମାନେ । ଏକଦା ଶ୍ରୀଜୀଉଙ୍କୁ ଉତ୍କଳର ସମ୍ରାଟ ବୋଲି ଘୋଷଣା କରି ଅନଙ୍ଗ ଭୀମଦେବ ତୃତୀୟ ମହାପ୍ରଭୁଙ୍କ ରତ୍ନ ସିଂହାସନରେ ଛାଉଣି ପାଇଁ ୩୦୦୦ ମାଢ଼ (ପ୍ରତିମାଢ଼ ପ୍ରାୟ ୬ ଗ୍ରାମ) ସୁନାଦାନ କରି ସ୍ୱର୍ଣ୍ଣଦାନ ପରମ୍ପରାର ଶୁଭାରମ୍ଭ କରିଥିଲେ । ଏତଦ୍‌ବ୍ୟତୀତ ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅଳଙ୍କାର ଗଠନ ନିମିତ୍ତ ଦଶସହସ୍ର ସ୍ୱର୍ଣ୍ଣମୁଦ୍ରା[୩] ପ୍ରଦାନ କରିଥିଲେ, ଯାହାର ତତ୍କାଳୀନ ଓଜନ ଦୁଇ ଲକ୍ଷ ପଚାଶହଜାର ମାଢ଼[୪] ଥିଲା । ପୁନଶ୍ଚ ଏହିରାଜା ବ୍ରହ୍ମହତ୍ୟାର ପ୍ରାୟଶ୍ଚିତ ଉଦ୍ଦେଶ୍ୟରେ ଶ୍ରୀଜଗନ୍ନାଥଙ୍କ ସେବାନୀତି ପରିଚାଳନା ନିମିତ୍ତ ଦଶହଜାର ସ୍ୱର୍ଣ୍ଣମୁଦ୍ରା[୫] ଦେଇଥିବା ଜଣାଯାଏ । ପୁରୁଷୋତ୍ତମ ଦେବ ଜୟବିଜୟ ଦ୍ୱାରସ୍ଥ ଏକ ଶିଳାଲେଖରେ ଶ୍ରୀଜଗନ୍ନାଥଙ୍କ ସେବାପାଇଁ





କେତେକ ମୂଲ୍ୟବାନ ପଦାର୍ଥ ସହ ରତ୍ନପଦକ, ରତ୍ନକାନଫୁଲ ଓ ବାହୁଟି ଆଦି ଅର୍ପଣ କରିଥିବା ଖୋଦିତ[୬] ହୋଇଅଛି । ଫଳରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ସ୍ୱର୍ଣ୍ଣଦାନ ପ୍ରକ୍ରିୟା କ୍ରମେ ଏକ ପରମ୍ପରାରେ ପରିଣତ ହୋଇଯାଇଛି । ସରକାରୀ ଆର୍ଥିକ ବର୍ଷ ଅପ୍ରେଲ ପହିଲାରୁ ଆରମ୍ଭ ହେବା ସଦୃଶ ଶ୍ରୀଜୀଉଙ୍କ ଆର୍ଥିକ ବର୍ଷ ସାଧାରଣତଃ ଆରମ୍ଭ ହୋଇଛି ଭାଦ୍ରଶୁକ୍ଳ ଦ୍ୱାଦଶୀ ଅର୍ଥାତ୍ ସୁନିଆଠାରୁ । ଏହି ପବିତ୍ର ତିଥିରେ ମହାପ୍ରଭୁଙ୍କର ପ୍ରଧାନ ସେବକ ତଥା ଚଳନ୍ତି ବିଷ୍ଣୁ ଗଜପତି ମହାରାଜାଙ୍କର ଅଙ୍କଗଣନା ମଧ ନବୀକରଣ କରାଯାଇଥାଏ । ସୁନିଆଦିନ ପ୍ରଜାମାନେ ଗଜପତିଙ୍କୁ ଓ ଗଜପତି ମହାରାଜା ଦେବାଧିରାଜ ଶ୍ରୀଜଗନ୍ନାଥଙ୍କୁ 'କନକ ଭେଟି' ପ୍ରଦାନ କରିବା ବିଧି ପ୍ରଚଳିତ ଥିଲା, ଯାହାକି ସମ୍ପ୍ରତି ନାମକୁ ମାତ୍ର ଅବ୍ୟାହତ ରହିଅଛି । କେବଳ ଓଡ଼ିଶାର ରାଜାମାନେ ଯେ ମହାପ୍ରଭୁଙ୍କୁ ସ୍ୱର୍ଣ୍ଣଦାନ କରୁଥିଲେ ତାହା ନୁହେଁ, ଉଦାହରଣତଃ କୁହାଯାଇପାରେ ଯେ ଅଧୁନା ବିଲାତ ସାମ୍ରାଜ୍ଞୀଙ୍କର ରାଜମୁକୁଟ ପରିଶୋଭିତ ତଥା ବ୍ୟକ୍ତିଗତ ସମ୍ପତ୍ତି ରୂପେ ବିବେଚିତ ହେଉଥିବା ବିଶ୍ୱପ୍ରସିଦ୍ଧ ମୂଲ୍ୟବାନ 'କୋହିନୁର ହୀରା' ଏକଦା ବୀରପୁଙ୍ଗବ ରଣଜିତ ସିଂହ ଶ୍ରୀଜଗନ୍ନାଥଙ୍କୁ ଉତ୍ସର୍ଗ କରିଥିଲେ । ଅତୀତରେ ବହୁ ରାଜାମହାରାଜା ସମେତ ସେଠସୌଦାଗର ତଥା ଶ୍ରଦ୍ଧାଳୁ ଧନପତିଗଣ ବିଭିନ୍ନ ସମୟରେ ମହାପ୍ରଭୁଙ୍କୁ ରତ୍ନଖଚିତ ବିଶୁଦ୍ଧ-ସୁବର୍ଣ୍ଣ ଅଳଙ୍କାର ସହିତ ହୀରା, ଲୀଳା, ମୋତି, ମାଣିକ, ଗୋମେଦ, ପାନ୍ନା, ପଦ୍ମରାଗ ଓ ବୈଦୁର୍ଯ୍ୟ ପ୍ରଭୃତି ଯେଉଁ ଅଷ୍ଟରତ୍ନ / ଉପହାର ପ୍ରଦାନ କରିଥିଲେ, ଶ୍ରୀଜଗନ୍ନାଥଙ୍କ କୋଷାଗାର (ରତ୍ନଭଣ୍ଡାର)ରେ ଗଚ୍ଛିତ ସେସବୁ ରତ୍ନସମ୍ପଦ ହେଉଛି ମହାପ୍ରଭୁଙ୍କର ନିଜସ୍ୱ ସମ୍ପତ୍ତି । ଏହି ବିପୁଳ ସମ୍ପତ୍ତି ହେଉଛି ମହାପ୍ରଭୁଙ୍କର ନିଜସ୍ୱ ସମ୍ପତ୍ତି ଶ୍ରୀମନ୍ଦିର ରତ୍ନ ଭଣ୍ଡାରରେ ସଞ୍ଚିତ ଏବଂ ବିଧ ବିପୁଳ ସମ୍ପତ୍ତି ଲୁଣ୍ଠନ ନିମିତ୍ତ ଅତୀତରେ ଅଗଣିତ ଅଣହିନ୍ଦୁ ଧନଲୋଲୁପୀ ତସ୍କରମାନେ ବାରମ୍ବାର ଶ୍ରୀମନ୍ଦିର ଆକ୍ରମଣ କରିଥିବାର ଦୃଷ୍ଟାନ୍ତ ରହିଛି । ଅତଏବ ଏ ଜାତିର ଅଧୀଶ୍ୱର ତଥା ସକଳ ଐଶ୍ୱର୍ଯ୍ୟର ଅଧିକାରୀ ଶ୍ରୀଜଗନ୍ନାଥ ମହାପ୍ରଭୁ ଅନଙ୍ଗଭୀମ ଦେବ କର୍ତ୍ତୃକ ଉତ୍କଳର ସମ୍ରାଟ ବା ରାଷ୍ଟ୍ରଦେବତା ରୂପେ ସ୍ୱୀକୃତ ହେବାଠାରୁ ପବିତ୍ର ଆଷାଢ଼ ଶୁକ୍ଳ ଏକାଦଶୀର ଏକ ବିଶେଷ ଉତ୍ସବରେ ମହାପ୍ରଭୁଙ୍କୁ ସୁନାବେଶ କରାଯାଇ, ଅଗଣିତ ରାଜା ମହାରାଜାଙ୍କ ଦ୍ୱାରା ସ୍ୱର୍ଣ୍ଣଦାନର ସ୍ମାରକୀକୁ ଉଜ୍ଜୀବିତ ରଖିବା ପାଇଁ ରାଜପ୍ରତିନିଧି ମୁଦ୍ରହସ୍ତ ମନ୍ତ୍ରୋଚ୍ଚାରଣ[୭] ପୂର୍ବକ ରାଜପୁଷ୍ପାଞ୍ଜଳି ଅର୍ପଣ କରିଥାନ୍ତି । ଏହି ଆପ୍ତ ପରମ୍ପରା ଅଦ୍ୟାବଧି ଅବିଚ୍ଛିନ୍ନ ରହି ଓଡ଼ିଶାର ମହାରାଜା ଅନଙ୍ଗଭୀମ ଦେବଙ୍କ କୀର୍ତ୍ତିକୁ ଦୃପ୍ତ କଣ୍ଠରେ ଉଦ୍‌ଘୋଷଣ ସହ ପ୍ରୋକ୍ତ ପବିତ୍ର ତିଥିରେ[୮] ମହାପ୍ରଭୁଙ୍କ ରାଜରାଜେଶ୍ୱର ବେଶ ବା ସୁନାବେଶ ହେଉଥିବା ଅନୁମେୟ ।

ମତାନ୍ତରେ ଏହି ବେଶ 'ବଡ଼ତଢ଼ଉ ବେଶ' ନାମରେ କଥିତ । 'ତଢ଼ଉ' ହେଉଛି ଶ୍ରୀଜଗନ୍ନାଥଙ୍କ ସେବାନୀତି ଅନ୍ତର୍ଭୁକ୍ତ ସେବକ ବିଶେଷ । ମହାପ୍ରଭୁଙ୍କର କେଉଁ ବେଶରେ କେତେ ପରିମାଣରେ ଅଳଙ୍କାର ଲାଗି ହେବ[୯], ଏ ସମ୍ବନ୍ଧରେ ତଢ଼ଉମାନେ ହିଁ ନିର୍ଦ୍ଧାରଣ କରିଥାନ୍ତି । ଶ୍ରୀଜଗନ୍ନାଥଙ୍କ ସୁନାବେଶରେ ବ୍ୟବହୃତ ବଡ଼ତଢ଼ାଉ ନାମ କଣ୍ଠମାଳା[୧୦]ର ତଢ଼ଉ ଏକପ୍ରକାର ଅଳଙ୍କାର[୧୧] ବ୍ୟତୀତ ଅନ୍ୟକିଛି ନୁହେଁ । ସର୍ବୋପରି ଶ୍ରୀମନ୍ଦିର ସେବକ ମୁଖ୍ୟ ରାଜଗୁରୁଙ୍କୁ 'ବଡ଼ତଢ଼ଉ' ନାମରେ ଅଭିହିତ କରାଯାଇଥାଏ । ଶ୍ରୀଜଗନ୍ନାଥଙ୍କ ବଡ଼ତଢ଼ଉ ବେଶ ପରିପ୍ରେକ୍ଷୀରେ ଇତିହାସ ସାକ୍ଷ୍ୟ ଦିଏ ଯେ, ଖ୍ରୀ:୧୪୬୦ରେ କପିଳେନ୍ଦ୍ର ଦେବ ଜୟଦୁର୍ଗାଙ୍କ କୃପାରୁ ସମଗ୍ର ଦକ୍ଷିଣ ବିଜୟ କରି ୧୬ ଗୋଟି ହସ୍ତୀପୃଷ୍ଠରେ ଲଦି ବିପୁଳ ଧନରତ୍ନ ନିଜ ରାଜ୍ୟକୁ ଆଣି ଶ୍ରୀମନ୍ଦିରରେ ମହାପ୍ରଭୁମାନଙ୍କୁ ଉତ୍ସର୍ଗ କରିଥିଲେ । ଏହି ବିବରଣୀ ସ୍ୱୟଂ କପିଳେନ୍ଦ୍ର ଦେବଙ୍କ ଦ୍ୱାରା ଖୋଦିତ ଜୟବିଜୟ ଦ୍ୱାର ଶିଳାଲେଖ[୧୨]ରୁ ଜଣାଯାଏ । ଦିଗ୍‌ବିଜୟ ଲବ୍‌ଧ ସ୍ୱର୍ଣ୍ଣ ସମ୍ପଦରେ ମହାପ୍ରଭୁମାନଙ୍କୁ ଭୂଷିତ କରିବା କାମନା ମନରେ ପୋଷଣ କରି କପିଳେନ୍ଦ୍ର ଦେବ ଅଳଙ୍କାର ଦାୟିତ୍ୱରେ ଥିବା ନିଯୋଗ ତଢ଼ଉ କରଣ/ମତାନ୍ତରେ ରାଜଗୁରୁଙ୍କ ସହ ପରାମର୍ଶ[୧୩] କରିଥିଲେ । ଗଜପତି ମହାରାଜାଙ୍କର ଅନୁରୂପ ଆଗ୍ରହ ଦେଖି ବଡ଼ତଢ଼ଉ ଶ୍ରୀଛାମୁରେ ଜଣାଇଲେ ଯେ, ରତ୍ନସିଂହାସନ ଉପରେ ବର୍ଷ ମଧରେ ଅନୁଷ୍ଠିତ ସକଳ ବେଶ ସମସ୍ତ ବର୍ଗର ଜନତା ସବୁସମୟରେ ଦର୍ଶନ ସୁଯୋଗ ଲାଭ କରିବା ସମ୍ଭବ ହୁଏ ନାହିଁ । ତେଣୁ ରଥଯାତ୍ରାର ଅନ୍ତିମ ପର୍ଯ୍ୟାୟରେ ମହାପ୍ରଭୁ ଶ୍ରୀମନ୍ଦିର ଅଭିମୁଖେ ଦକ୍ଷିଣାଭିମୁଖୀ[୧୪] ଯାତ୍ରା ଶେଷରେ ସିଂହଦ୍ୱାରଠାରେ ପହଞ୍ଚିବା ପରେ ଓ ଶ୍ରୀମନ୍ଦିର ବେଢ଼ାବଳୟ ପ୍ରବେଶର ଅବ୍ୟବହିତ ପୂର୍ବରୁ ବଡ଼ଏକାଦଶୀ ଦିନ ରଥ ଉପରେ ମହାପ୍ରଭୁମାନଙ୍କୁ ସର୍ବସମକ୍ଷରେ ସୁନାବେଶରେ ସୁସଜ୍ଜିତ କରିବା ପାଇଁ ଅନୁରୋଧ କଲେ । ବଡ଼ତଢ଼ଉଙ୍କ ଶ୍ରଦ୍ଧା ଓ ଅନୁରୋଧ କ୍ରମେ ମହାରାଜା ବଡ଼ତଢ଼ଉ ନାମକ ଏକ ପ୍ରକାର କଣ୍ଠମାଳା ସମେତ ଶ୍ରୀଭୁଜ ନିମନ୍ତେ ରତ୍ନ ଶଙ୍ଖ, ଚକ୍ର, ରତ୍ନପଦକ, ରତ୍ନମୁକୁଟ, କାନଫୁଲ, ମୁଦି, କଣ୍ଠିମାଳ, କାଣିକସୂତା, ମର୍କତ ଜାଉଁଳି, ମର୍କତ ମୁକୁଟ, ପଦପଲ୍ଲବ, ବାହୁଟି, ବଳା, ଜାଲି ତୋଡ଼ର, କାନ୍ତି ଜରକବର କଟି ମେଖଳା୧୫ ପ୍ରଭୃତି ୧୩୮ ପ୍ରକାର ରତ୍ନଖଚିତ ସ୍ୱର୍ଣ୍ଣାଳଙ୍କାର ନିର୍ମାଣ କରି ପ୍ରଥମେ ରଥ ଉପରେ ମହାପ୍ରଭୁମାନଙ୍କୁ ଏହି ବେଶ କରାଇଥିଲେ, ଯାହାକି କ୍ରମେ ନୀତି ଅନ୍ତର୍ଭୁକ୍ତ ହୋଇଯାଇଛି । ବଡ଼ତଢ଼ଉଙ୍କ ଅଳିକୁ ସମ୍ମାନ ଦେଇ ସେହି ଦିନଠାରୁ ଅନୁଷ୍ଠିତ ସୁନାବେଶ : ବଡ଼ତଢ଼ଉ ବେଶ ନାମରେ ବିଦିତ । ମହାପ୍ରଭୁଙ୍କ ବେଶ ବ୍ୟବସ୍ଥାରେ ଅନ୍ତର୍ଭୁକ୍ତ ଅନେକ ସୁନାବେଶ ମଧରେ ରଥାରୂଢ଼ ଦକ୍ଷିଣାଭିମୁଖୀ ଶ୍ରୀଜୀଉଙ୍କ ସୁନାବେଶର ଅନ୍ୟନାମ କେବଳ ବଡ଼ତଢ଼ଉବେଶ ଅଟେ ।

ସ୍ନାନଯାତ୍ରାଠାରୁ ବାହୁଡ଼ାଯାତ୍ରା ପର୍ଯ୍ୟନ୍ତ ପ୍ରାୟ ମାସାବଧି ସମୟ, ସରଳ ନିରାଡ଼ମ୍ବର ଶାବରାୟିତ ଉପାସନା ପରିସମାପ୍ତିରେ ବଡ଼ ଏକାଦଶୀ ଦିନ ମହାପ୍ରଭୁମାନଙ୍କୁ ପୁନର୍ବାର ଐଶ୍ୱର୍ଯ୍ୟ ପ୍ରାଚୁର୍ଯ୍ୟ ବିମଣ୍ଡିତ କରି ରଥଉପରେ ଧନାଢ଼୍ୟ ବେଶରେ ସଜାଇ ଏ ଜାତି ଆତ୍ମ ପ୍ରସାଦ





ଲାଭ କରିଥାଏ । ସର୍ବୋପରି ଶ୍ରୀଗୁଣ୍ଡିଚା ବାହୁଡ଼ା ଦୁଇଦିନ ମହାପ୍ରଭୁମାନଙ୍କ ଶ୍ରୀମନ୍ଦିର ବହିର୍ଦ୍ଦେଶରେ ରଥ ଉପରେ ଓ ମଧ୍ୟବର୍ତ୍ତୀ ସପ୍ତାହେବ୍ୟାପୀ ଆଡ଼ପ ଅବସ୍ଥାନ କାଳ ଏହିପରି ମୋଟ ନଅଦିନ ଧରି ଭକ୍ତଗଣ ଠାକୁରମାନଙ୍କୁ ଅନାୟାସରେ ଦର୍ଶନ କଲାପରେ ମଧ୍ୟ ଆଷାଢ଼ଶୁକ୍ଳ ଏକାଦଶୀ ଦିନ ଶ୍ରୀଜୀଉଙ୍କ ଦର୍ଶନ ନିମିତ୍ତ ସାଧାରଣ ଜନମାନସକୁ ଆକର୍ଷିତ କରିବା ପାଇଁ ଏ ସୁନାବେଶର ଯଥୋଚିତ ଆବଶ୍ୟକତା ସମୀଚୀନ ବୋଧ ହୋଇଥାଏ । ପ୍ରୋକ୍ତ ପବିତ୍ର ତିଥିରେ ଦ୍ୱିପ୍ରହର ଧୂପ ପରେ ସିଂହାରୀ, ପାଳିଆଖୁଣ୍ଟିଆ, ଭଣ୍ଡାରମେକାପ, ଚାଙ୍ଗଡ଼ା ମେକାପ ପ୍ରଭୃତି ସେବକ ସେବାୟତଗଣ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ମହାପ୍ରଭୁମାନଙ୍କୁ ସୁନାବେଶରେ ସଜାଇଥାନ୍ତି ।

ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପ୍ରଭୃତି ତ୍ରିମୂର୍ତ୍ତିଙ୍କ ଶ୍ରୀଅଙ୍ଗରେ ସିଂହାରୀ ଶାଢ଼ୀ ଖଣ୍ଡୁଆ ଲାଗି କରାଇବା ପରେ କେବଳ ଶ୍ରୀଜଗନ୍ନାଥ ଓ ବଳଭଦ୍ରଙ୍କ ଶ୍ରୀହସ୍ତରେ ନେତଫୁଟା ପରିଧାନ କରାଇଥାନ୍ତି । ଏହି ବସ୍ତ୍ରଭୂଷଣ ଉପରେ ଶ୍ରୀମନ୍ଦିର ପ୍ରଶାସନିକ ଅଧିକାରୀଙ୍କ ସହଯୋଗକ୍ରମେ ଭଣ୍ଡାରମେକାପ କର୍ତ୍ତୃକ ଶ୍ରୀମନ୍ଦିର ରତ୍ନଭଣ୍ଡାରରୁ ଆନୀତ ପର୍ଯ୍ୟାପ୍ତ ପରିମାଣର ମୂଲ୍ୟବାନ ରତ୍ନଖଚିତ ସ୍ୱର୍ଣ୍ଣାଳଙ୍କାର ଦ୍ୱାରା ମହାପ୍ରଭୁଙ୍କୁ ସୁନାବେଶ କରାଇଥାନ୍ତି । ଦୃଢ଼ ନିରାପତ୍ତା ବଳୟ ମଧ୍ୟରେ ଭଣ୍ଡାର ମେକାପ ଯେଉଁସବୁ ଅଳଙ୍କାର ଓ ଆୟୁଧ ପ୍ରଭୃତି ଆଣି ମହାପ୍ରଭୁଙ୍କ ବେଶପାଇଁ ଯୋଗାଇଥାନ୍ତି, ତାହାର ସବିଶେଷ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା । ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ବଡ଼ଠାକୁର ଶ୍ରୀବଳଭଦ୍ରଙ୍କ ହସ୍ତପଦକୁ ଆବୃତ୍ତ କରୁଥିବା ସ୍ୱର୍ଣ୍ଣନିର୍ମିତ ଶ୍ରୀପୟର ୪ ଓ ଶ୍ରୀଭୁଜ ୪ ଲାଗି କରାଯାଏ, ଯହିଁରେ ଆଙ୍ଗୁଳି ତଥା ଆଙ୍ଗୁଳି ସମୂହରେ ମୁଦ୍ରିକା ସଂଯୋଜିତ ହୋଇଅଛି । କେବଳ ସେତିକି ନୁହେଁ, ମହାପ୍ରଭୁଙ୍କର ବାମ ଶ୍ରୀହସ୍ତରେ ବର୍ଣ୍ଣ ସାମଞ୍ଜସ୍ୟ ରକ୍ଷାକରି ରୌପ୍ୟ ନିର୍ମିତ ପାଞ୍ଚଜନ୍ୟ ଶଙ୍ଖ ଓ ଦକ୍ଷିଣ ଶ୍ରୀଭୁଜରେ ସ୍ୱର୍ଣ୍ଣ ନିର୍ମିତ ସୁଦର୍ଶନଚକ୍ର ଲାଗି କରାଯାଇଥାଏ । ତଦନୁରୂପ ବଡ଼ଠାକୁରଙ୍କୁ ମଧ୍ୟ ସ୍ୱର୍ଣ୍ଣନିର୍ମିତ ହଳମୂଷଳ ପ୍ରଭୃତି ଆୟୁଧରେ ସଜାଇ ଦିଆଯାଇଥାଏ । ଏଠାରେ ସ୍ପଷ୍ଟ କରାଇ ଦିଆଯାଇ ପାରେ ଯେ ଦେବୀ ସୁଭଦ୍ରାଙ୍କର ହସ୍ତପଦ ସଂଯୋଜିତ ହୁଏ ନାହିଁ । ତତ୍ପରେ ତ୍ରିମୂର୍ତ୍ତିଙ୍କର ଶ୍ରୀମୁଖ ସଜ୍ଜା ସମୟରେ କପାଳ ଦେଶରେ ଚୂର୍ଣ୍ଣକୁନ୍ତଳ ରୂପେ ପ୍ରତ୍ୟୟ ସୃଷ୍ଟି କରୁଥିବା ଅଗସ୍ତି ଫୁଲର କଢ଼ି ସଦୃଶ ଶ୍ରୀମୁଖକୁ ଶୋଭମାନ ଅଳକା ନାମକ ସ୍ୱର୍ଣ୍ଣାଳଙ୍କାର ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ରଥଚକ ଅନୁପାତରେ ଯଥାକ୍ରମେ ୧୬, ୧୪, ୧୨ ସଂଖ୍ୟାରେ ଲାଗି କରାଯାଇ, ଶ୍ରୀମୁଖର ଚତୁଃପାର୍ଶ୍ୱରେ ସ୍ୱର୍ଣ୍ଣ ନିର୍ମିତ ମୁଖପଦ୍ମ ଦ୍ୱାରା ସୁସଜ୍ଜିତ କରାଗଲା ପରେ, ତା' ଉପରେ ଲୁଗାର ଭାଙ୍ଗ ଦିଆଯାଇ, ବୋଳା ଉପରେ ବାଳକ୍ଲିପ୍ ସଦୃଶ ଆଡ଼କାନି ନାମକ ସ୍ୱର୍ଣ୍ଣାଳଙ୍କାର ଖଞ୍ଜାଯାଇ ମସ୍ତକର ପଶ୍ଚାତଭାଗକୁ ଭିଡ଼ାଯାଏ, ଯାହାଫଳରେ ମସ୍ତକର ସାଜସଜ୍ଜା ଦୃଢ଼ ରହେ । ମସ୍ତକରେ କାରୁକାର୍ଯ୍ୟପୂର୍ଣ୍ଣ ବିଶାଳକାୟ ସ୍ୱର୍ଣ୍ଣକିରୀଟ / ମୁକୁଟ ପରିଧାନ କରିବା ସହିତ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ମୁକୁଟ ଉପରେ ଏକ ଏକ ମୟୂରଚୂଳ ନାମକ ସ୍ୱର୍ଣ୍ଣାଳଙ୍କାର ଖଞ୍ଜାଯାଇଥାଏ, ଯାହାକୁ ଚନ୍ଦ୍ରିକା କୁହାଯାଏ । ଏତଦ୍‌ବ୍ୟତୀତ ଦୁଇଠାକୁରଙ୍କ ସ୍ୱର୍ଣ୍ଣକିରୀଟର ମଧ୍ୟଦେଶରେ ଏକ ଏକ ଆକର୍ଷଣୀୟ ଅଳଙ୍କାର ସଂଯୋଜିତ ହୋଇଥାଏ, ଯାହା କିରୀଟ ତିଳକ ନାମରେ ଚିହ୍ନିତ । ପୁନଶ୍ଚ ମସ୍ତକ ଆଭୂଷଣ ରୂପେ ଚନ୍ଦ୍ରସୂର୍ଯ୍ୟ ସହିତ ରାହୁଭଳି ମୁଖଚନ୍ଦ୍ରକୁ ସୁନାପାତର ଧାର ସଦୃଶ ଅନ୍ୟ ଏକ ଆଭୂଷଣ ଘେରି ରହୁଥିବାରୁ ଏହାର ନାମ ରାହୁରେଖା ହେବା ଅନୁମେୟ । ଶ୍ରୀମୂର୍ତ୍ତିତ୍ରୟଙ୍କ କପାଳଦେଶରେ ସୁନା ଓ ପଥରବସା ସୋଲଚିତା ସହିତ ଏହି ଚିତାକୁ ଘେରି ଉର୍ଦ୍ଧ୍ୱପୁଣ୍ଡ ତିଳକ ସଦୃଶ ଅଳଙ୍କାର ମଧ୍ୟ ଲାଗି ହୋଇଥାଏ । କେବଳ ଦେବୀ ସୁଭଦ୍ରା କର୍ଣ୍ଣରେ 'ତଡ଼କୀ' ନାମକ ଏକ ସ୍ୱତନ୍ତ୍ର ଅଳଙ୍କାର ପରିଧାନ କରିଥାନ୍ତି । ଏତଦ୍‌ବ୍ୟତୀତ ତିନିଠାକୁର ପ୍ରତ୍ୟେକ କର୍ଣ୍ଣରେ ଦୁଇଟି ଲେଖାଏଁ ସ୍ୱର୍ଣ୍ଣକୁଣ୍ଡଳ ପିନ୍ଧିଥାନ୍ତି । ଆୟୁଧରାଜ ସୁଦର୍ଶନ ମସ୍ତକରେ କେବଳ ମାତ୍ର ସ୍ୱର୍ଣ୍ଣମୁକୁଟ ପରିଧାନ କରିଥାନ୍ତି ।

ମହାପ୍ରଭୁ ତ୍ରିମୂର୍ତ୍ତି ଓଡ଼ିଆଣୀ ନାମକ ଚନ୍ଦ୍ରହାର/ଗୋଠ ବା କଟିମେଖଳା ଲାଗି ହୋଇଥାନ୍ତି । ଏତଦ୍‌ବ୍ୟତୀତ ମହାପ୍ରଭୁମାନଙ୍କୁ ବାହାଡ଼ାମାଳି-୨, ତାବିଜ୍‌ମାଳି-୧, ହରିଡ଼ାକଦମ୍ବ ମାଳି-୧, ବାଘନଖି ମାଳି-୧, କଦମ୍ବମାଳି-୪, ସେବତିମାଳି-୩ ଲାଗି ହୋଇଥାଏ । ଆଲୋଚ୍ୟ ସ୍ୱର୍ଣ୍ଣାଳଙ୍କାର ସହିତ ମହାପ୍ରଭୁତ୍ରୟ ଶ୍ରୀମୁଖରେ ଚିତାତଳୁ ନାସାଗ୍ର ପର୍ଯ୍ୟନ୍ତ ସ୍ଥାନରେ ପୁଷ୍ପନିର୍ମିତ ନାକୁଆସି, ଝୁମ୍ପା, ଅଧରରେ ଅଧରଚୁମ୍ବିତମାଳା ବ୍ୟବହାର କରିଥାନ୍ତି । ସର୍ବୋପରି ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ବଡ଼ଠାକୁର ବଳଭଦ୍ରଙ୍କ ହସ୍ତବେଶରେ ଝୁଲାଇ ଦିଆଯାଇଥିବା ରଙ୍ଗିନ୍ ଓରମାଳ (ଆଲମ୍ବନ/ରୁମାଲ)ମାନ ଏହି ସୁନାବେଶ ପରିପାଟୀକୁ ଦ୍ୱିଗୁଣିତ କରିଥାଏ । ଏତଦ୍‌ଭିନ୍ନ ୧୮୦୫ ମସିହାରେ ପୁରୀ ଜିଲ୍ଲାପାଳଙ୍କ ଦ୍ୱାରା ପ୍ରସ୍ତୁତ ତାଲିକା ଅନୁଯାୟୀ ମହାପ୍ରଭୁମାନଙ୍କୁ ନଳିବାହୁଟି, ଅଗସ୍ତିମାଳା, ପାରିଜାତମାଳା, ଓଡ଼ିଆଣୀ ପଦକମାଳା, ଗ୍ରୀବାୟ ବୈଜୟନ୍ତୀମାଳା, ହରିତକମାଳା, ଅଉଲମୁଲ, ମକରକୁଣ୍ଡଳ, କଟିକିଙ୍କିଣି, କର୍ଣ୍ଣଚିଲ୍, ଚୂଳପନ୍ତି, ଅପରାଜିତା ଚିତା, ଭରିଆକମରପଟା, କମର ଝୁମ୍ପା, ଧୁକୁଧୁକିଆ ଝୁମ୍ପା, ତୁରୁକୁସିଆ ଇତ୍ୟାଦି ଅନେକ ସ୍ୱର୍ଣ୍ଣାଳଙ୍କାର ଘୋର ପହରା ମଧ୍ୟରେ ରତ୍ନଭଣ୍ଡାରରୁ ଯତ୍ନ ସହକାରେ ଆସି ଲାଗି ହୋଇଥାଏ । ରଥ ଉପରେ ଅନୁଷ୍ଠିତ ଏହି ସୁନାବେଶରେ ଦକ୍ଷିଣାଭିମୁଖୀ[୬] ଶ୍ରୀବିଗ୍ରହମାନଙ୍କର ହସ୍ତପଦ ତଥା ଆୟୁଧ ସଂଯୋଗ କରାଯିବା ସହିତ ବିଭିନ୍ନ ରତ୍ନ ତଥା ସ୍ୱର୍ଣ୍ଣାଳଙ୍କାରରେ ମହାପ୍ରଭୁମାନଙ୍କୁ ସାମନ୍ତବାଦୀ ଢଙ୍ଗରେ ଏପରିଭାବରେ ସୁସଜ୍ଜିତ କରାଯାଏ ଯେ, ତାଙ୍କର ଅପୂର୍ଣ୍ଣ ରୂପେ ପ୍ରତିଭାତ ଦାରୁବିଗ୍ରହ, ଏକ ଏକ ପୂର୍ଣ୍ଣାବୟବ ବିଶିଷ୍ଟ କନକ ପ୍ରତିମାର ପ୍ରତ୍ୟୟ ସୃଷ୍ଟି କରିଥାଏ ।

ସ୍ୱରାଟରାଟ ବିଶ୍ୱ ସମ୍ରାଟ ଶ୍ରୀଜଗନ୍ନାଥଙ୍କ ସେବାବିଧିରେ ଅନୁସୃତ ବିଭିନ୍ନ ରାଜକୀୟ ନୀତି ମଧ୍ୟରେ ମହାପ୍ରଭୁଙ୍କର ସୁନାବେଶ ଯେପରି





ମନୋମୁଗ୍ଧକର ସେହିପରି ଚିତ୍ତାକର୍ଷକ ମଧ୍ୟ । ଆଷାଢ଼ ଶୁକ୍ଳ ଏକାଦଶୀରେ ସମାହିତ ସୁନାବେଶ ସଦୃଶ ବର୍ଷର ଅନ୍ୟାନ୍ୟ ସମୟରେ ମଧ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସୁନାବେଶ ଅନୁଷ୍ଠିତ ହୋଇଥାଏ । ମହାପ୍ରଭୁଙ୍କୁ ଦୋଳପୂର୍ଣ୍ଣିମାରେ ଯୋଗେଶ୍ୱର କୃଷ୍ଣବେଶରେ, ଦଶହରାରେ ରାବଣ ବିଜୟୀ ରାମଚନ୍ଦ୍ର ବେଶରେ, କାର୍ତ୍ତିକ ପୂର୍ଣ୍ଣିମାରେ ଦ୍ୱାରକାନାଥ କୃଷ୍ଣବେଶରେ ଓ ପୌଷ ପୂର୍ଣ୍ଣିମାରେ ଅଯୋଧ୍ୟା ସିଂହାସନରେ ଅଭିଷିକ୍ତ ରଘୁପତି ରାମଚନ୍ଦ୍ର ଭାବେ ସୁନାବେଶରେ ସଜାଇ ଦିଆଯାଏ । ଅତୀତରେ ସ୍ୱର୍ଣ୍ଣଦାନର ସ୍ମାରକୀ ସ୍ୱରୂପ ସୁନିଆ ଦିନ ମହାପ୍ରଭୁମାନଙ୍କୁ ସୁନାବେଶ କରାଯାଉଥିଲା । ମାତ୍ର ସମ୍ପ୍ରତି ଉକ୍ତ ଦିବସରେ ଶ୍ରୀଜୀଉ ସୁନାବେଶ ପରିବର୍ତ୍ତେ ବାମନ ବେଶରେ ସୁସଜ୍ଜିତ ହେଉଛନ୍ତି । ରାଜା ରାଜମୁକୁଟ ପରିଧାନ ଓ ଅସ୍ତ୍ରଶସ୍ତ୍ର ଧାରଣ କରିବା ସଦୃଶ, ସୁନାବେଶରେ ହସ୍ତପଦ ଖଚିତ ଅନୁପମ ଶ୍ରୀମୂର୍ତ୍ତି ତ୍ରୟ ରତ୍ନ ଜଡ଼ିତ କିରୀଟ ଆୟୁଧ ସହିତ ପର୍ଯ୍ୟାପ୍ତ ପରିମାଣର ସ୍ୱର୍ଣ୍ଣାଳଙ୍କାରରେ ଶୋଭାମାନ ହେଉ ଥିବାରୁ, ସମଗ୍ର ସନାତନୀ ସମାଜର ମହାସମ୍ରାଟ ଉକ୍ତିର ପୁଷ୍ଟି ନିମିତ୍ତ ଆଲୋଚ୍ୟ ସୁନାବେଶଗୁଡ଼ିକୁ ରାଜବେଶ ନାମରେ ଅଭିହିତ କରିବା ଯଥାର୍ଥ ବୋଧ ହୋଇଥାଏ । କିନ୍ତୁ ଦୋଳପୂର୍ଣ୍ଣମୀରେ ମହାପ୍ରଭୁମାନଙ୍କୁ ସୁନାବେଶ କରାଯାଉଥିଲେ ହେଁ ତାହା ରାଜବେଶ ନୁହେଁ । ସୁତରାଂ ସବୁ ରାଜବେଶ ସୁନାବେଶ ମାତ୍ର ସବୁ ସୁନାବେଶ ରାଜବେଶ ନୁହେଁ । ସେହିପରି କାର୍ତ୍ତିକ ପୂର୍ଣ୍ଣମୀର ରାଜବେଶକୁ ରାଜରାଜେଶ୍ୱର ବେଶ ଓ ରଥ ଉପର ସୁନାବେଶକୁ ବଡ଼ତଡ଼ଉ ବେଶ କୁହାଯାଇଥାଏ । କାର୍ତ୍ତିକ ପୂର୍ଣ୍ଣିମାରେ ସୁନାବେଶ ହୋଇ ସକାଳଧୂପ ହୁଏ, ମାତ୍ର ବିଜୟା ଦଶମୀ ଦିନ ସକାଳେ ଅବକାଶ ନୀତି ପରେ ମହାପ୍ରଭୁମାନଙ୍କୁ ସୁନାବେଶ କରାଯାଏ । ସର୍ବୋପରି ସମସ୍ତ ସୁନାବେଶ ଗର୍ଭଗୃହ ମଧ୍ୟସ୍ଥ ରତ୍ନସିଂହାସନ ଉପରେ ଅନୁଷ୍ଠିତ ହେଉଥିବା ସ୍ଥଳେ ଆଷାଢ଼ ଶୁକ୍ଳ ଏକାଦଶୀରେ ସିଂହଦ୍ୱାର ସମ୍ମୁଖସ୍ଥ ବଡ଼ଦାଣ୍ଡରେ ରଥ ଉପରେ ସମ୍ପାଦିତ ହୋଇଥାଏ । ଯାହାଫଳରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଅଗଣିତ ଜନତା ଏ ବେଶ ସନ୍ଦର୍ଶନ ପୂର୍ବକ କୃତ୍ୟକୃତ୍ୟ ହୋଇଥାନ୍ତି । ରଥ ଉପରେ ଦ୍ୱିପ୍ରହର ଧୂପ ପରେ ଏହି ବେଶ ସମାହିତ ହୋଇ ବେଶ ପରେ ଶ୍ରୀଜୀଉମାନଙ୍କୁ ଅଧର ପଣା ଭୋଗ ଲାଗି ହୁଏ । ଏହି ବେଶରେ ରାଜା କିମ୍ବା ରାଜପ୍ରତିନିଧି ମୁଦିରଥ ପୁଷ୍ପାଞ୍ଜଳି ପ୍ରଦାନ କରିବା ଏକ ଅପରିହାର୍ଯ୍ୟ ବିଧି । ଏଥିରୁ ଓଡ଼ିଆ ଗଜପତିର ଦିଗ୍‌ବିଜୟ ପରମ୍ପରାର ସଫଳ ପରିଣତିରେ ମହାପ୍ରଭୁଙ୍କ ଏହି ସୁନାବେଶର ଯେ ପରିକଳ୍ପନା, ତାହା ହିଁ ଅନୁଭୂତ ହୋଇଥାଏ ।

ନୂଆଗାଁ
ଇତିପୁର, ଭୁବନେଶ୍ୱର-୨

---

# ନମାମି ପ୍ରଣାମ ଘେନ

ସ୍ୱାଗତିକା ଶୁଭଦର୍ଶିନୀ ପାଣିଗ୍ରାହୀ

କାଳିଆରେ ...
ଜାଣେନା ମୁଁ କାହିଁ ତତେ
ଭଲପାଏ ଏତେ
କି ଅବା ଦେଇଛୁ ମୋତେ
କହିଦେ ତୁ ସତେ ।

ଜଗନ୍ନାଥ ନାମ ବହି
ଜଗତେ ବସିଛୁ
ନାଲି ଅଧରରେ ଖାଲି
ଅନାଇ ହସୁଛୁ ।

କଳା ବଦନକୁ ତୋର
ଦେଖିବାର ପାଇଁ
ସମସ୍ତ ଲୋକଙ୍କୁ ତୁହି
କରୁ ହାଇଁପାଇଁ ।



ଚକା ଚକା ଆଖି ତୋର
କେଡ଼େ ଯେ ସୁନ୍ଦର
ପଲକେ ସେ କରିଦିଏ
ସଭିଙ୍କୁ ମନ୍ତର ।

ସଭିଏଁ କୁହନ୍ତି ସିନା
ତୋ ହାତ ଖଣ୍ଡିଆ
ଖଣ୍ଡିଆ ଜାଣି ବି ନିତି
ମାରନ୍ତି ମୁଣ୍ଡିଆ ।

ଖଣ୍ଡିଆ ହାତରେ ତୋର
ଏଡ଼େ ଯେ ମହତ
ନମାମି ପ୍ରଣାମ ଘେନ
ପ୍ରଭୁ ଜଗନ୍ନାଥ ।

ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ
ପୁରୀ







# କୃଷ୍ଣାବତାରୀ ଶ୍ରୀଜଗନ୍ନାଥ

ତପନ କୁମାର ଶତପଥୀ

ଦାରୁବ୍ରହ୍ମ ଜଗନ୍ନାଥଙ୍କର ଶ୍ରୀକ୍ଷେତ୍ର ଲୀଳାକୁ ଅନୁଧ୍ୟାନ କଲେ ସେ ଯେ ସର୍ବାବତାରୀ ଭଗବାନ ବିଷ୍ଣୁ ଏହା ଦୃଢ଼ ଭାବରେ ପ୍ରତୀୟମାନ ହୋଇଥାଏ । ତନ୍ମଧ୍ୟରୁ, ସେ ମତ୍ସ୍ୟାଦି ଦଶାବତାର ଲୀଳା ସହିତ କେତେକ ବିଶେଷ ଲୀଳାର ଅବତାରଣା କରି ଭକ୍ତ ଜନମାନସ ହଂସ ରୂପରେ ପ୍ରତିଭାତ ହୋଇଥାନ୍ତି । ତାଙ୍କର ବିଭିନ୍ନ ବେଶଗୁଡ଼ିକ କେତେକ ସ୍ୱତନ୍ତ୍ର ପୁରାଣ ବର୍ଣ୍ଣିତ କଥାବସ୍ତୁକୁ ଆଧାର କରି ଅନୁଷ୍ଠିତ ହୋଇଥାଏ । ଜଗନ୍ନାଥଙ୍କ ସ୍ୱରୂପ ଓ ତତ୍ତ୍ୱ ସର୍ବ ସମ୍ପ୍ରଦାୟ ସମ୍ମତ ଓ ଆଦୃତ । ଶାବର, ଜୈନ, ବୌଦ୍ଧ, ଶାକ୍ତ, ଶୈବ, ବୈଷ୍ଣବ, ଗାଣପତ୍ୟ, ଶିଖ ପ୍ରଭୃତି ସଂପ୍ରଦାୟର ଭକ୍ତଗଣ ଓ ସେମାନଙ୍କର ପ୍ରମୁଖ ଆଚାର୍ଯ୍ୟଗଣ ପ୍ରଭୁ ଶ୍ରୀଜଗନ୍ନାଥଙ୍କଠାରେ ଅଖଣ୍ଡ ଭକ୍ତିଭାବ ଓ ବିଶ୍ୱାସ ସ୍ଥାପନ କରି ନିଜ ନିଜର ଉପାସ୍ୟ ଇଷ୍ଟ ରୂପରେ ମହାପ୍ରଭୁଙ୍କୁ ଦେଖିଥାନ୍ତି । କେବଳ ସେତିକି ନୁହେଁ, ନିଜ ନିଜର ମତବାଦ ଅନୁସାରେ ପ୍ରଭୁଙ୍କଠାରେ ସେହି ଭାବ ଆରୋପକରି, ମନନ ଓ ଚିନ୍ତନ କରି, ସେବା ଯୋଗାଇଦେବା ଉଦ୍ଦେଶ୍ୟରେ ବହୁ ମଠ ସ୍ଥାପନ କରି ଯାଇଛନ୍ତି । ମହାପ୍ରଭୁଙ୍କର ବାର ମାସରେ ୨୪ଟି ପ୍ରମୁଖ ବେଶ ବ୍ୟତୀତ କେତେକ ସାମୟିକ ପାର୍ବଣ ବେଶ ଏବଂ ଆହ୍ନିକ ବେଶ ମଧ୍ୟ ଅନୁଷ୍ଠିତ ହୋଇଥାଏ । ଏହିସବୁ ବେଶଗୁଡ଼ିକ ମଧ୍ୟରେ ଯେଉଁ କେତୋଟି ଶ୍ରୀଜଗନ୍ନାଥଙ୍କର ଦ୍ୱାପର ଯୁଗୀୟ କୃଷ୍ଣଲୀଳାନୁକରଣ ସହିତ ସମ୍ବନ୍ଧିତ ସେହି ସବୁର ପର୍ଯ୍ୟାଲୋଚନା ମାଧ୍ୟମରେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଐକ୍ୟ ଓ ସାଦୃଶ୍ୟର ଅବତାରଣା କରିବା ଏହି ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ । ରତ୍ନସିଂହାସନାରୂଢ଼ ଚତୁର୍ଦ୍ଧାମୂର୍ତ୍ତି ଶ୍ରୀଜଗନ୍ନାଥ (ଶ୍ରୀକୃଷ୍ଣ) ଶ୍ରୀବଳଭଦ୍ର (କୃଷ୍ଣଭ୍ରାତା ବଳରାମ), ସୁଭଦ୍ରା (କୃଷ୍ଣଙ୍କ ଭଗ୍ନୀ) ଓ ସୁଦର୍ଶନ (କୃଷ୍ଣଙ୍କ ଆୟୁଧ) ଦ୍ୱାପର ଯୁଗୀୟ କୃଷ୍ଣଲୀଳାର ସମ୍ୟକ୍ ଅନୁକରଣ ଭକ୍ତଜନମାନଙ୍କୁ ସ୍ମରଣ କରାଇ ଦେଇଥାଏ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଦୈନିକ ବେଶରେ ବାଳଧୂପ, ମଧ୍ୟାହ୍ନଧୂପ, ସନ୍ଧ୍ୟାଧୂପ ଓ ରାତ୍ରୀଧୂପର ନିର୍ଘଣ୍ଟ ଅନୁସାରେ କୃଷ୍ଣଙ୍କର ବୃନ୍ଦାବନୀୟ ଅଷ୍ଟକାଳୀୟ ଲୀଳାର କେତେକ ପ୍ରଭାବ ଦୃଷ୍ଟିଗୋଚର ହୋଇଥାଏ । ଶ୍ରୀଗୋପାଳାର୍ଚ୍ଚନ ପୂଜାପଦ୍ଧତି ଅନୁଯାୟୀ ବାଳଧୂପରେ ବାଳକୃଷ୍ଣ, ମଧ୍ୟାହ୍ନ ଧୂପରେ ବୃନ୍ଦାବନ ବିହାରୀ, ସନ୍ଧ୍ୟାରେ ଦ୍ୱାରକାଧିପତି ଓ ରାତ୍ରରେ ରାସରସିକ ସଂହାରୀକୃଷ୍ଣ ଭାବରେ ଶ୍ରୀଜଗନ୍ନାଥ ସେବିତ ହୋଇଥାନ୍ତି । ବଡ଼ସିଂହାର ବେଶରେ ମହାପ୍ରଭୁଙ୍କର ଫୁଲଶଯ୍ୟା ନିର୍ମିତ ହୋଇଥାଏ ଓ ଶ୍ରୀଅଙ୍ଗରେ ଗୀତଗୋବିନ୍ଦ ଖଣ୍ଡୁଆ ଲାଗିହୁଏ । ଦେବଦାସୀ ନୃତ୍ୟରେ ଶ୍ରୀ ଜୟଦେବ ପ୍ରଣୀତ ଗୀତଗୋବିନ୍ଦ ଗାନ କରାଯାଏ । କୃଷ୍ଣଲୀଳାର ସର୍ବାଧିକ ପରିପ୍ରକାଶ ଏହା ମାଧ୍ୟମରେ ହୋଇଥାଏ ।

ବୈଶାଖମାସ ଶୁକ୍ଳପକ୍ଷ ତୃତୀୟାକୁ ଅକ୍ଷୟ ତୃତୀୟା କୁହାଯାଏ । ଏହି ତିଥିରୁ ୨୧ ଦିନବ୍ୟାପୀ ଚନ୍ଦନଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହି ଯାତ୍ରାରେ ଶ୍ରୀଜଗନ୍ନାଥଙ୍କର ବିଜେ ପ୍ରତିମା ଶ୍ରୀମଦନମୋହନ, ରାମକୃଷ୍ଣ, ଭୂଦେବୀ ଓ ଶ୍ରୀଦେବୀ (ଲକ୍ଷ୍ମୀ ଓ ସରସ୍ୱତୀ) ସୁସଜ୍ଜିତ ବିମାନରେ ବିଜେ କରନ୍ତି । ତାଙ୍କ ସହିତ ଶ୍ରୀକ୍ଷେତ୍ରର ପଞ୍ଚମହାଦେବ ଯଥା- ଶ୍ରୀଲୋକନାଥ, ଶ୍ରୀମାର୍କଣ୍ଡେଶ୍ୱର, ଶ୍ରୀନୀଳକଣ୍ଠେଶ୍ୱର, ଶ୍ରୀଯମେଶ୍ୱର ଓ ଶ୍ରୀକପାଳମୋଚନ ସ୍ୱ ସ୍ୱ ବିମାନରେ ବିଜେକରି ନରେନ୍ଦ୍ର ସାଗରକୁ ଚନ୍ଦନଯାତ୍ରା ଉଦ୍ଦେଶ୍ୟରେ ନୌବିହାର ପାଇଁ ଯାଇଥାନ୍ତି । ଏହି ଏକୋଇଶି ଦିନାତ୍ମିକା ଯାତ୍ରାର ତାତ୍ପର୍ଯ୍ୟ ଏହିକି ଯେ, ଏହାର ଅନେକଗୁଡ଼ିଏ ବେଶ କୃଷ୍ଣଲୀଳାର ସ୍ମୃତି ଚାରଣ ଉଦ୍ଦେଶ୍ୟରେ ଅନୁଷ୍ଠିତ ହୋଇଥାଏ । କ୍ରମାନ୍ୱୟରେ ଏଗୁଡ଼ିକ ହେଲା -

୧. ନଟବର ବେଶ (ତ୍ରିଭଙ୍ଗ ନୃତ୍ୟରତ ଶ୍ରୀକୃଷ୍ଣ)

୨. ହରିଜନ୍ମ ବେଶ (ବସୁଦେବଙ୍କ ଦ୍ୱାରା ନଦୀପାରି ବେଶ)

୩. ଖଟଦୋଳି ବେଶ (କୁଞ୍ଜରେ ଦୋଳିଖେଳ)

୪. ରାଜାଧିରାଜ ବେଶ (ଦ୍ୱାରକାଧୀଶ)

୫. ବତ୍ସା ଚାରଣ ବେଶ (ଗୋଚାରଣ ଗୋପାଳ)

୬. ବତ୍ସା ହରଣ ବେଶ (ବ୍ରହ୍ମ ବିମୋହନ ଲୀଳା)

୭. ଗୋମତୀ କୃଷ୍ଣ ବେଶ (ବ୍ରହ୍ମଗୋପାଳ ବେଶ)

୮. ଗୋମତୀ କୃଷ୍ଣ ବେଶ (କୃଷ୍ଣଙ୍କ ଦ୍ୱାରା ଅଘାସୁର ବଧ)

୯. ଚକ୍ର ନାରାୟଣ ବେଶ (ଚକ୍ରଧାରୀ କୃଷ୍ଣ)

୧୦. ନାବକେଳି ବେଶ (ଯମୁନା କେଳି)

୧୧. ରାସ ମଣ୍ଡଳୀ ବେଶ (ରାସ କ୍ରୀଡ଼ା)

୧୨. ନୃସିଂହ ବେଶ (ହିରଣ୍ୟକଶ୍ୟପୁ ବିଦାରଣ ଲୀଳା-ସତ୍ୟଯୁଗୀୟ)

୧୩. କନ୍ଦର୍ପ ରଥ ବେଶ (ଗୋପାଙ୍ଗନାଙ୍କ ଦ୍ୱାରା ରଥାକୃତି ପରିବେଷ୍ଟିତ କୃଷ୍ଣ)

୧୪. ଷଡ଼ଭୁଜ ଗୌରାଙ୍ଗ ବେଶ (କଳିଯୁଗ ପ୍ରେମାବତାର)

୧୫. ରଘୁନାଥ ବେଶ (କାଣ୍ଡ କୋଦଣ୍ଡଧାରୀ ଶ୍ରୀରାମ)

୧୬. ବସ୍ତ୍ରହରଣ ବେଶ (କେଳି କଦମ୍ବ ତରୁରେ ଆରୂଢ଼ କୃଷ୍ଣଙ୍କ କର୍ତ୍ତୃକ ସ୍ନାନରତା ଗୋପୀମାନଙ୍କର ବସ୍ତ୍ରହରଣ ଲୀଳା)

୧୭. ଗିରିପୂଜା ବେଶ (ଗୋବର୍ଦ୍ଧନ ପୂଜା)

୧୮. ଗିରିଟେକା ବେଶ (ଗୋବର୍ଦ୍ଧନଧାରୀ)

୧୯. ମଦନମୋହନ ବେଶ (ମୂରଲୀଧର)

୨୦. ଗଜ ଉଦ୍ଧାରଣ ବେଶ (ଗଜକୁ କୁମ୍ଭୀର କବଳରୁ ରକ୍ଷା କରିବା)

୨୧. କୁଞ୍ଜ ଦୋଳି ବେଶ (ନିକୁଞ୍ଜରେ ଦୋଳି ଖେଳା)

ଶ୍ରୀମଦ୍ ଭାଗବତରେ ବ୍ରହ୍ମଗୋପାଳ ଶ୍ରୀକୃଷ୍ଣଙ୍କର ନଟବର ବେଶର ଦିବ୍ୟାତିଦିବ୍ୟ ବର୍ଣ୍ଣନା ଅତି ପ୍ରାଣବନ୍ତ ଭାବରେ ବର୍ଣ୍ଣିତ ।

ବର୍ହାପୀଡ଼ଃ ନଟବର ବପୁଃ କର୍ଣ୍ଣୟୋ କର୍ଣ୍ଣିକାରଂ
ବିଭ୍ରଦ୍ ବାସଃ କନକ କପୀଶଂ ବୈଜୟନ୍ତି ଚ ମାଳାଂ ।
ରନ୍ଧ୍ରାନ୍ ବେଣୋଃ ଅଧର ସୁଧୟା ପୁରୟନ୍ ଗୋପବୃନ୍ଦୈ
ବୃନ୍ଦାରଣ୍ୟଂ ସ୍ୱପଦରମଣଂ ପ୍ରାବିଶଦ୍ ଗୀତକୀର୍ତ୍ତିଃ ।।
(ଶ୍ରୀଭା-୧୦/୨୧)

ମାଧୁର୍ଯ୍ୟ ଭାବପୂର୍ଣ୍ଣ ଏହି ବେଶର ବର୍ଣ୍ଣନାର ସ୍ମୃତିଚାରଣ କରି ମଦନମୋହନଙ୍କୁ ନରେନ୍ଦ୍ର ସରୋବରଠାରେ ଏହି ଚନ୍ଦନ ଯାତ୍ରା ଅବସରରେ ବିଭିନ୍ନ ବେଶରେ ସୁସଜ୍ଜିତ କରି ଲୀଳାଭିନୟ କରାଯାଇଥାଏ । ପ୍ରମୁଖ ବେଶମାନଙ୍କ ମଧ୍ୟରେ ହରିଜନ୍ମ ବେଶରେ କଂସ ବନ୍ଦୀଗୃହରେ ମାତା ଦେବକୀଙ୍କ ଉଦରରୁ ଜନ୍ମ ସହିତ ବସୁଦେବଙ୍କ କର୍ତ୍ତୃକ ପୂର୍ଣ୍ଣଗର୍ଭା ଯମୁନା ନଦୀ ପାର, ମାଧବୀ ମାଳତୀ ଲତା ବେଷ୍ଟିତ ନିକୁଞ୍ଜରେ ଦୋଳି ଖେଳ ଅବସରରେ ସ୍ୱ-ନିତ୍ୟକାନ୍ତା ଗୋପାଙ୍ଗନାମାନଙ୍କ ସହିତ ନର୍ମ ବିଳାସ, ରାଜାଧିରାଜ ବେଶରେ ଦ୍ୱାରକା ଲୀଳାରେ ଐଶ୍ୱର୍ଯ୍ୟ ପରିପ୍ରକାଶ, ଗୋବତ୍ସା ଚାରଣ ବେଶରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ବିମୋହିତ କରି କେବଳ ଗୋମାତା ନୁହନ୍ତି, ସମସ୍ତ ବ୍ରଜର ମାତାମାନଙ୍କୁ ବତ୍ସା ଓ ଗୋପବାଳକ ବେଶରେ ସ୍ୱ-ମାଧୁର୍ଯ୍ୟ ଆସ୍ୱାଦନ, ଗୋମତି କୃଷ୍ଣ ବେଶରେ ସ୍ୱ-ବଂଶୀବାଦନ ମାଧ୍ୟମରେ ଗୋ-ଗୋଷ୍ଠକୁ ଆକର୍ଷଣ, ଅଘାସୁର ବଧ ଲୀଳାର ଭବ୍ୟ ଅଭିନୟ, ଯମୁନା ଜଳରେ ନାବ ଉପରେ ଶ୍ରୀରାଧାଙ୍କ ସହିତ ଅଷ୍ଟସଖୀମାନଙ୍କ ଦ୍ୱାରା ନାବକେଳି, ରାସ ମଣ୍ଡଳରେ ନୃତ୍ୟରତ କୃଷ୍ଣ ଅର୍ଥାତ୍ ଯେତେ ଗୋପୀ ସେତେ କୃଷ୍ଣ ରୂପରେ ଯୋଗେଶ୍ୱରଙ୍କ ଆତ୍ମପ୍ରକାଶ, କନ୍ଦର୍ପରଥ ଅବସରରେ ଗୋପାଙ୍ଗନାମାନଙ୍କ ଦ୍ୱାରା ବିଭିନ୍ନ ଛନ୍ଦ ଓ ଭଙ୍ଗୀରେ ସୁସଜ୍ଜିତ ରଥାକୃତି ପରିପାଟୀରେ ଆତ୍ମପ୍ରକାଶ, ବସ୍ତ୍ରହରଣ ବେଶରେ କେଳି କଦମ୍ବ ତରୁରେ ଆରୂଢ଼ କୃଷ୍ଣଙ୍କ କର୍ତ୍ତୃକ ସ୍ନାନରତା ଗୋପାଙ୍ଗନାମାନଙ୍କର ବସ୍ତ୍ର ଅପହରଣ ପୂର୍ବକ ବଂଶୀବାଦନ ଲୀଳା, ଇନ୍ଦ୍ର ଗର୍ବ ଖର୍ବ କରିବା ଉଦ୍ଦେଶ୍ୟରେ ଗିରିଗୋବର୍ଦ୍ଧନ ପୂଜା, ପରବର୍ତ୍ତୀ ସନ୍ଧ୍ୟାରେ କ୍ରୋଧିତ ଇନ୍ଦ୍ରଙ୍କ ଦ୍ୱାରା ପ୍ରଳୟଙ୍କରୀ ବର୍ଷା, ତୋଫାନ ଓ ବଜ୍ରାଘାତରୁ ଗୋକୁଳକୁ ସୁରକ୍ଷା ପ୍ରଦାନ ନିମିତ୍ତ ପ୍ରଭୁଙ୍କ ଗିରିଗୋବର୍ଦ୍ଧନଧାରୀ ଲିଳା ଓ ଇତ୍ୟବସରରେ ଅନ୍ୟାନ୍ୟ ଗୋପ ବାଳକମାନଙ୍କର ଭୀତତ୍ରସ୍ତ ଅବସ୍ଥାରେ ଗୋବର୍ଦ୍ଧନକୁ ନିଜ ନିଜର ବାଡ଼ି ଦ୍ୱାରା ଟେକି ଧରିବାର ପରିକଳ୍ପନା ଓ ସ୍ମୃତିଚାରଣ, ମଦନମୋହନ ବେଶରେ ସାକ୍ଷାତ୍ ମନ୍ମଥ ରୂପରେ ତ୍ରିଭଙ୍ଗ ଛନ୍ଦରେ ଉଭା ହୋଇ ବଂଶୀବାଦନ ଓ କୁଞ୍ଜ ଦୋଳି ବେଶରେ ବୃନ୍ଦାବନୀୟ ନିକୁଞ୍ଜ ବିହାରର ସ୍ମୃତିଚାରଣ କରାଯାଇଥାଏ । ଦ୍ୱାପର ଯୁଗର ଏହି ସମସ୍ତେ କୃଷ୍ଣଲୀଳାର ଏକତ୍ର ସଂସ୍କରଣ ଏହି ଚନ୍ଦନଯାତ୍ରା ଅବସରରେ ସମାପିତ ହୋଇଥାଏ ।

ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପି ଓ ମାଦଳା ପାଞ୍ଜିର ବର୍ଣ୍ଣନାନୁସାରେ ଜଗନ୍ନାଥଙ୍କ ସୁନାବେଶ ବର୍ଷରେ ପାଞ୍ଚଥର ଅନୁଷ୍ଠିତ ହୋଇଥାଏ । ସେଗୁଡ଼ିକ ହେଲା ଆଶ୍ୱିନ ଶୁକ୍ଳ ବିଜୟା ଦଶମୀ ଦଶହରା ତିଥିରେ, କାର୍ତ୍ତିକ ପୂର୍ଣ୍ଣିମା ଅବସରରେ, ପୌଷ ପୂର୍ଣ୍ଣିମା ପୁଷ୍ୟାଭିଷେକ ତିଥିରେ ଦୋଳ ପୂର୍ଣ୍ଣିମା ତିଥିରେ ଏହିପରି ମୋଟ ଚାରିଥର ଶ୍ରୀମନ୍ଦିରର ରତ୍ନସିଂହାସନ ଉପରେ ଓ ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ବଡ଼ଦାଣ୍ଡ ଉପରେ ରଥରେ ସୁନାବେଶ ହୋଇଥାଏ । ସ୍ୱର୍ଣ୍ଣନିର୍ମିତ ଶ୍ରୀଭୁଜ, ଶ୍ରୀପୟର, କିରିଟ, ଚନ୍ଦ୍ରସୂର୍ଯ୍ୟ, ଓଡ଼ିଆଣିରେ ଭୂଷିତ ହୋଇ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବିରାଜମାନ ହୁଅନ୍ତି । ବଳଭଦ୍ରଙ୍କୁ ସୁନାର ହଳ ଓ ମୂଷଳ ଏବଂ ଜଗନ୍ନାଥଙ୍କୁ ଶଙ୍ଖ ଓ ଚକ୍ର ଆୟୁଧ ରୂପରେ ଲାଗି କରାଯାଏ । ବଳରାମଙ୍କର ବାଘନଖି ମାଳି, ସେବତି ମାଳି ଓ ବାହାଡ଼ାମାଳି ଏବଂ ଜଗନ୍ନାଥଙ୍କର କଦମ୍ବମାଳି, ମୟୂର ଚନ୍ଦ୍ରିକା, ହରିଡ଼ା କଦମ୍ବମାଳି, ବାହାଡ଼ାମାଳି, ସେବତି ମାଳି ପ୍ରଭୃତି ସ୍ୱର୍ଣ୍ଣାଳଙ୍କାର ଦ୍ୱାପର ଯୁଗର କୃଷ୍ଣବଳରାମ ଉପାସନାର ସର୍ବସମ୍ମତ ପ୍ରଚଳନ ବୋଲି ବିଶ୍ୱାସ କରାଯାଏ । ପ୍ରାଚୀନ ଉତ୍କଳ ପୁସ୍ତକରେ ବିଶିଷ୍ଟ ଐତିହାସିକ ଜଗବନ୍ଧୁ ସିଂହଙ୍କ ବର୍ଣ୍ଣନା ଅନୁସାରେ ଏହି ସୁନାବେଶର ପ୍ରଚଳନ ସମ୍ରାଟ ଅନଙ୍ଗଭୀମ ଦେବ (ଦ୍ୱିତୀୟ)ଙ୍କ ସମୟରୁ ହୋଇଥିଲା ବୋଲି ପ୍ରମାଣ ମିଳେ ।

ଭାଦ୍ରବ କୃଷ୍ଣ ଦଶମୀ ତିଥିରେ ସନ୍ଧ୍ୟାଧୂପ ଅବସରରେ ମହାପ୍ରଭୁଙ୍କୁ ରତ୍ନସିଂହାସନରେ ବଣଭୋଜି ବେଶ କରାଯାଏ । କୃଷ୍ଣାବତାରରେ ବଣଭୋଜି ଲୀଳାର ବର୍ଣ୍ଣନା ଶ୍ରୀମଦ୍ ଭାଗବତ





ଦଶମସ୍କନ୍ଧ ଚତୁର୍ଦ୍ଦଶ ଅଧ୍ୟାୟରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ମଧ୍ୟାହ୍ନ ଧୂପ ପରେ ରତ୍ନସିଂହାସନସ୍ଥ ଶ୍ରୀବଳରାମ ଓ ଜଗନ୍ନାଥଙ୍କଠାରୁ ଆଜ୍ଞାମାଳ ନେଇ ଦକ୍ଷିଣ ଘରେ ଥିବା ରାମକୃଷ୍ଣ ମୂର୍ତ୍ତିଙ୍କୁ ଦିଆଯାଇ ସେମାନଙ୍କୁ ପାଲିଙ୍କିରେ ବଡ଼ଛତା ମଠକୁ ନିଆଯାଏ, ସେଠାରେ କୋଳିବିକା ପ୍ରସଙ୍ଗର ଲୀଳାଭିନୟ କରାଯାଏ । ପ୍ରତ୍ୟାବର୍ତ୍ତନ ସମୟରେ ଜଗମୋହନରେ ଠାକୁର ବିଜେ କରନ୍ତି ଏବଂ ବାଲିସାହି ଲୋକମାନେ ବକାସୁରବଧ ଓ ତତ୍ପରେ ହରଚଣ୍ଡି ସାହି ଲୋକମାନେ ଅଘାସୁରବଧ ଲୀଳା ପରିବେଷଣ କରିଥାନ୍ତି । ଶ୍ରୀମଦ୍ ଭାଗବତ ଦଶମ ସ୍କନ୍ଧର ଦ୍ୱାଦଶ ଓ ତ୍ରୟୋଦଶ ଅଧ୍ୟାୟରେ ବକାସୁର ଓ ଅଘାସୁର ବଧ ଲୀଳା ବର୍ଣ୍ଣିତ ହୋଇଅଛି ଓ ତଦନୁସାରେ ଶ୍ରୀଜଗନ୍ନାଥଙ୍କର ଏହି ଲୀଳାଭିନୟ ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ । ମହାଭୋଇ ସେବକ ଓ ପାଟଯୋଷୀ ମହାପାତ୍ର ସରଳବଣୀ ଓ ଖୁଆପେଡ଼ା ଲାଗି କରନ୍ତି । ବଣଭୋଜି ବେଶରେ ମହାପ୍ରଭୁ ଜଗନ୍ନାଥ ଓ ବଳରାମଙ୍କର ଶିରରେ ପଗଡ଼ି ସିକା ଭାରରେ ବେତ୍ରଦଣ୍ଡ ସହିତ ସରଳବଣୀ ଓ ଖୁଆପେଡ଼ା, ଗଳାରେ କେତକୀ, ସେବତୀ ହରିଡ଼ା ଓ ଦୟଣାର ମାଳ, କଦମ୍ବ ଓ ବାଘନଖିମାଳ ଦ୍ୱାପର ଯୁଗୀୟ କୃଷ୍ଣଲୀଳାର ମନୋଜ୍ଞ ପରିପ୍ରକାଶ । ପ୍ରଭୁ ବଳରାମ ନିଜର ଦୁଇ ହାତରେ ଶିଙ୍ଗା ଓ କ୍ଷୀର ସିକା ଓ ଶ୍ରୀଜଗନ୍ନାଥ ବଂଶୀ ଓ ଲହୁଣୀ ପସରା ଧରି ପାରମ୍ପରିକ ଗୋପାଳ ବେଶ ଧାରଣ କରିଥାନ୍ତି ।

ଭାଦ୍ରବ ଶୁକ୍ଳ ଏକାଦଶୀ ତିଥିରେ ଶ୍ରୀମଦ୍ ଭାଗବତର ଦଶମସ୍କନ୍ଧର ସପ୍ତଦଶ ଅଧ୍ୟାୟରେ ବର୍ଣ୍ଣିତ କାଳୀୟ ଦଳନ ପ୍ରସଙ୍ଗାନୁସାରେ କାଳୀୟ ଦଳନ ବେଶ କରାଯାଇଥାଏ । ଏହିବେଶ ମଧ୍ୟାହ୍ନଠାରୁ ସନ୍ଧ୍ୟାଧୂପ ପର୍ଯ୍ୟନ୍ତ ରହିଥାଏ । ରତ୍ନସିଂହାସନରେ ଜଗନ୍ନାଥ ଓ ବଳଭଦ୍ର କାଷ୍ଠ ନିର୍ମିତ ଶ୍ରୀଭୁଜ ଓ ଶ୍ରୀପୟର ଯୁକ୍ତ ହୁଅନ୍ତି । ପ୍ରାୟ କୋଡ଼ିଏ ହାତ ଲମ୍ବର ବେତ ଓ କନାରେ ତିଆରି ଏକ କାଳୀୟ ସର୍ପର ସପ୍ତଫଣୀ ପ୍ରତିକୃତି ନିର୍ମିତ ହୁଏ । ମହାପ୍ରଭୁ ବାମ ହସ୍ତରେ ଏକ ସିଙ୍ଗା ଓ କାଳୀୟ ସର୍ପର ଲାଞ୍ଜ ଧରିଥାନ୍ତି । ଦକ୍ଷିଣ ଭୁଜରେ ଏକ ପଦ୍ମଫୁଲ ଶୋଭାପାଏ । ପ୍ରାର୍ଥନା ମୁଦ୍ରାରେ ଉଭୟ ପାର୍ଶ୍ୱରେ ଦୁଇଟି ନାଗୁଣୀ ମୂର୍ତ୍ତି ଦଣ୍ଡାୟମାନ ଥାନ୍ତି । ସେହିପରି ବଳରାମ ମଧ୍ୟ ବାମ ହସ୍ତରେ ସୋଲ ତିଆରି ପଦ୍ମକଢ଼ି ଓ ଡାହାଣ ହାତରେ ଅମୃତ ଲଡୁ ଧରିଥାନ୍ତି । କାଷ୍ଠ ନିର୍ମିତ ଗାଈ ଓ ବାଛୁରୀ ଠାକୁରଙ୍କ ସମ୍ମୁଖରେ ରଖାଯାଏ । ଏହାପରେ ଠାକୁରଙ୍କଠାରୁ ଆଜ୍ଞାମାଳ ଅଣାଯାଇ ମଦନମୋହନ ରାମକୃଷ୍ଣଙ୍କୁ ଦେଇ ସେମାନଙ୍କୁ ରତ୍ନ ପାଲିଙ୍କିରେ ବିଜେ କରାଯାଇ ମାର୍କଣ୍ଡ ସରୋବରକୁ ନିଆଯାଏ । ବାଟରେ ସରଳବଣୀ ଭୋଗ ହୋଇ ବନ୍ଦାପନା କରାଯାଏ । ମାର୍କଣ୍ଡ ପୋଖରୀ ମଝିରେ ଏକ ମଞ୍ଚା ତିଆରି ହୋଇଥାଏ । ସେଠାରେ ମଦନମୋହନ ବିଜେ କଲାପରେ ଏକ କନା ନିର୍ମିତ ସାପ ତାଙ୍କୁ ଦଂଶନ କରେ ଓ ଗରୁଡ଼ ବିଷ ଝାଡ଼ିବା ପରେ ଅମୃତ ଲଡୁ ଭୋଗ ହୁଏ । ସେଠାରେ କାଳୀୟ ଦଳନ ଲୀଳାଭିନୟ ପରେ ଠାକୁରମାନେ ଶ୍ରୀମନ୍ଦିରକୁ ବିଜେ କରିଥାନ୍ତି ।

ଭାଦ୍ର କୃଷ୍ଣ ଦ୍ୱାଦଶୀ ତିଥିରେ ବଳରାମଙ୍କର ପ୍ରଳମ୍ବାସୁରବଧ ଲୀଳାବେଶ ଶ୍ରୀମଦ୍ ଭାଗବତର ଦଶମସ୍କନ୍ଧ ଊନବିଂଶତମ ଅଧ୍ୟାୟ ଅନୁସାରେ ଅନୁଷ୍ଠିତ ହୁଏ । ବଳଭଦ୍ରଙ୍କ ସମ୍ମୁଖରେ ଏକ କାଷ୍ଠ ନିର୍ମିତ ପ୍ରଳମ୍ବାସୁର ମୂର୍ତ୍ତି ସ୍ଥାପିତ ହୁଏ । ବଳରାମ ହାତରେ ହଳ ମୂଷଳ ଧରି ରାକ୍ଷସର ସ୍କନ୍ଧାରୋହଣ କରିଥାନ୍ତି । ଜଗନ୍ନାଥ ଶଙ୍ଖଚକ୍ର ଧରିଥାନ୍ତି । ମଧ୍ୟାହ୍ନରୁ ସନ୍ଧ୍ୟାଧୂପ ପର୍ଯ୍ୟନ୍ତ ଅନୁଷ୍ଠିତ ଏହି ବେଶ ଅବସରରେ ରାମକୃଷ୍ଣଙ୍କୁ ଦକ୍ଷିଣ ଘରୁ ରତ୍ନସିଂହାସନକୁ ବିଜେ କରାଯାଏ । ଦୋଳମଣ୍ଡପ ସାହି ବାସିନ୍ଦାମାନେ ଏହି ବେଶରେ ଲୀଳାଭିନୟ କରନ୍ତି । ଜଗନ୍ନାଥବଲ୍ଲଭ ମଠରୁ ଦୁଇଟି ବଡ଼ କୋରା ଭୋଗ ଆଣି ଜଗନ୍ନାଥ ବଳରାମଙ୍କ ଦୁଇ ହାତରେ ଧରାଇ ଦିଆଯାଏ ।

ଭାଦ୍ର କୃଷ୍ଣ ତ୍ରୟୋଦଶୀ ତିଥିରେ ରତ୍ନସିଂହାସନରେ ପ୍ରଭୁ କୃଷ୍ଣବଳରାମ ବେଶ ହୋଇଥାନ୍ତି । ବିଶେଷତ୍ୱ ହେଲା ଯେ ଜଗନ୍ନାଥ କୃଷ୍ଣ ଭାବରେ, ବଳଭଦ୍ର ବଳରାମ ଭାବରେ ସୁସଜ୍ଜିତ ହେବା ସହିତ ସୁଭଦ୍ରା ମଧ୍ୟ ଚତୁର୍ଭୁଜ ଧାରଣ କରି ପଦ୍ମାସନରେ ଉପବେଶନ କରନ୍ତି । ତାଙ୍କ ଚାରି ହାତରେ ପାଶ, ଅଙ୍କୁଶ, ଅଭୟ ଓ ବରଦ ଶୋଭାପାଏ । କାଷ୍ଠ ନିର୍ମିତ ଗୋଡ଼ ଲାଗି ହୋଇ ଜଗନ୍ନାଥ ଓ ବଳରାମ ତ୍ରିଭଙ୍ଗୀ ଛନ୍ଦରେ ଉଭା ହୁଅନ୍ତି । ଜଗନ୍ନାଥ କୃଷ୍ଣବେଶରେ ଦୁଇ ହାତରେ ସ୍ୱର୍ଣ୍ଣବଂଶୀ ଓ ପଦ୍ମ ଏବଂ ବଳରାମ ଦୁଇହାତରେ ଶିଙ୍ଗା ଓ ପଦ୍ମ ଧରନ୍ତି । ବଳରାମ ଓ କୃଷ୍ଣଙ୍କ ମସ୍ତକରେ ଠେକା ବନ୍ଧାଯାଇ ବଳରାମଙ୍କ ଶିରରେ ସପ୍ତଫଣୀ ନାଗ ବିରାଜମାନ କରନ୍ତି । କଦମ୍ବଫୁଲ ଓ ପତ୍ର ସହିତ ମଲ୍ଲିକଢ଼, କିଆଫୁଲ ଇତ୍ୟାଦି ଦିଆଯାଇ ପାରମ୍ପରିକ ଗୋପବେଶରେ ଜଗନ୍ନାଥ ବଳଭଦ୍ର ଶୋଭା ପାଆନ୍ତି । ସ୍ୱତନ୍ତ୍ର ଭାବରେ କାଷ୍ଠ ନିର୍ମିତ ୪ଟି ଗାଈ, ବ୍ରହ୍ମା, ନାରଦ, ସହସ୍ର ଚକ୍ଷୁ ଇନ୍ଦ୍ର, ୪ ଗୋପବାଳକ, ନନ୍ଦ ଯଶୋଦା, ବସୁଦେବ ଦେବକୀ, ରୋହିଣୀ, ଉପନନ୍ଦ, ଛାୟାନନ୍ଦ, ଛାୟାମାୟା ଦୁଇଗୋଟି ପ୍ରଭୃତି ରତ୍ନସିଂହାସନରେ ବିଜେ ହୋଇ ନୈସର୍ଗିକ ଦ୍ୱାପର ଯୁଗୀୟ ରମଣୀୟ ପରିପାଟୀ ପ୍ରକାଶିତ ହୋଇଥାଏ । ଏହି କୃଷ୍ଣବଳରାମ ବେଶ ପୂର୍ବରୁ ଏହି ତିଥିରେ ଓଡ଼ିଆମଠ ସୌଜନ୍ୟରୁ ଗିରିଗୋବର୍ଦ୍ଧନ ବେଶ ଅନୁଷ୍ଠିତ ହେଉଥିଲା । ସମୟକ୍ରମେ ଏହି ବେଶ ପରବର୍ତ୍ତୀ କାଳରେ ଅନୁଷ୍ଠିତ ହେଉଛି ଓ ଖଣ୍ଡସାହିର ତତ୍କାଳୀନ ଜମିଦାରମାନେ ଏହା କରି ଆସୁଛନ୍ତି ।

ଆଶ୍ୱିନ ମାସ ଶୁକ୍ଳପକ୍ଷ ଏକାଦଶୀ ତିଥିରୁ ଏକ ମାସ ବ୍ୟାପୀ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଜଗନ୍ନାଥ ମହାପ୍ରଭୁଙ୍କର ରାଧା ଦାମୋଦର ବେଶ ଅନୁଷ୍ଠିତ ହୋଇଥାଏ । ଦ୍ୱାପର ଯୁଗରେ ଗୋପୀମାନେ କାର୍ତ୍ତିକବ୍ରତ ଆଚରଣ କରି ଯମୁନା କୂଳରେ ରାଧାଦାମୋଦରଙ୍କୁ ପୂଜା କରୁଥିଲେ । ତେଣୁ ରାତ୍ର ଦୁଇଘଡ଼ି ଥାଇ ଜଗନ୍ନାଥଙ୍କର ମଙ୍ଗଳ ଆଳତିଠାରୁ ବାଳଧୂପ ପର୍ଯ୍ୟନ୍ତ ଏହି ବେଶ କରାଯାଏ । ପ୍ରାତଃ ସ୍ନାନ ସାରି ରାଧାଦାମୋଦରଙ୍କର ବାଲୁକା ମୂର୍ତ୍ତି ତିଆରି କରି ସୂର୍ଯ୍ୟପୂଜା କରିବା ଦାମୋଦର ବ୍ରତର ବିଧାନ । କାର୍ତ୍ତିକ ମାସରେ ହବିଷ୍ୟାଳୀମାନେ ପ୍ରାତଃକାଳରୁ ମହୋଦଧି




ସ୍ନାନକରି ଶ୍ରୀଜଗନ୍ନାଥଙ୍କର ରାଧାଦାମୋଦର ବେଶ ଦର୍ଶନ କରିଥାନ୍ତି । ଏହି ବେଶ ମଧ ଦାମବନ୍ଧନ ଲୀଳାର ଭବ୍ୟ ସ୍ମୃତିଚାରଣ । ଯଶୋଦା କର୍ତ୍ତୃକ କୃଷ୍ଣଙ୍କୁ ଉଦୁଖଳରେ ବାନ୍ଧି ଯାମଳାର୍ଜ୍ଜୁନ ମୋକ୍ଷ ଲୀଳାର ଏହା ସ୍ମୃତି ବହନ କରେ ।

କାର୍ତ୍ତିକ ଶୁକ୍ଳପକ୍ଷ ଦ୍ୱାଦଶୀ ତିଥିରେ ଅନୁଷ୍ଠିତ ହେଉଥିବା ବାଙ୍କଚୂଡ଼ା ବେଶ କୃଷ୍ଣଲୀଳା ସମ୍ପର୍କିତ । ଜଗନ୍ନାଥ ଓ ବଳରାମଙ୍କର ଚୂଡ଼ା ଦକ୍ଷିଣକୁ ଢଳାଇ ବେତ, କନା ଓ ମୟୂର ଚନ୍ଦ୍ରିକାରେ ନିର୍ମିତ ହୋଇଥାଏ । ଜଗନ୍ନାଥ ଶଙ୍ଖଚକ୍ର ଓ ବଳରାମ ହଳ ମୂଷଳ ଧାରଣ କରିଥାନ୍ତି । କିଆଫୁଲ, ଅଗସ୍ତିମାଳି, ଘାଗଡ଼ା, ପଦ୍ମଫୁଲ, ସେବତୀ ମାଳରେ ଠାକୁର ବିଭୂଷିତ ହୋଇଥାନ୍ତି । ଏହି ବାଙ୍କ ଚୂଡ଼ା ବା ବାଙ୍କ ଚୂଳିଆ ବେଶ ଗୋପୀମାନଙ୍କୁ ନିରନ୍ତର ଆକର୍ଷିତ କରିଥାଏ । କୃଷ୍ଣରୂପୀ ଜଗନ୍ନାଥଙ୍କର ପୀତାମ୍ବର, ବନମାଳି ପ୍ରଭୃତି ଏହି ବେଶକୁ ଦ୍ୱାପର ଯୁଗୀୟ ଶୈଳୀରେ ମନୋଜ୍ଞ ଭାବରେ ଉପସ୍ଥାପିତ କରିଥାଏ ।

ଜଗନ୍ନାଥ ନିଜର ପିତୃ ପୁରୁଷମାନଙ୍କୁ ଶ୍ରାଦ୍ଧ ଦେବାର ପରମ୍ପରା ଶ୍ରୀମନ୍ଦିରରେ ଚାଲି ଆସୁଅଛି । ଏହି କ୍ରମରେ ସେ ମାର୍ଗଶିର ମାସ କୃଷ୍ଣ ଚତୁର୍ଦ୍ଦଶୀ ଦିନ ଅଦିତି କଶ୍ୟପଙ୍କ ଉଦ୍ଦେଶ୍ୟରେ, ଅମାବାସ୍ୟା ଦିନ କୌଶଲ୍ୟା ଦଶରଥଙ୍କ ଉଦ୍ଦେଶ୍ୟରେ ଏବଂ ପ୍ରତିପଦା ଦିନ ଦେବକୀଙ୍କ ବସୁଦେବ, ନନ୍ଦ ଯଶୋଦା ଓ ଇନ୍ଦ୍ରଦ୍ୟୁମ୍ନ ଗୁଣ୍ଡିଚାଙ୍କୁ ଦୀପଦାନ ଶ୍ରାଦ୍ଧ କରିଥାନ୍ତି । ଠାକୁରମାନେ ଶ୍ୱେତବସ୍ତ୍ର ପରିଧାନ କରିଥାନ୍ତି । ଜଗନ୍ନାଥଙ୍କ ସମ୍ମୁଖରେ ୧୦ଟି, ବଳଭଦ୍ରଙ୍କ ସମ୍ମୁଖରେ ୯ଟି ଓ ସୁଭଦ୍ରାଙ୍କ ସମ୍ମୁଖରେ ୯ଟି ଏପରି ମୋଟ ୨୮ଟି ଗବ୍ୟଘୃତ ପରିପୂର୍ଣ୍ଣ କର୍ପୂର ବତୀଯୁକ୍ତ ପ୍ରଦୀପ ରଖାଯାଏ ଓ ଏହିଗୁଡ଼ିକ ପିତୃଗଣଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଏ । ସୂଚୀତବ୍ୟ ଏହିକି ଯେ ଭଗବାନ୍ ଶ୍ରୀଜଗନ୍ନାଥ କୃଷ୍ଣାବତାର ଯୁଗ୍ମ ପିତାମାତା ନନ୍ଦ ଯଶୋଦା ଓ ଦେବକୀ ବସୁଦେବଙ୍କ ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ଶ୍ରାଦ୍ଧର ବ୍ୟବସ୍ଥା କରି ଦ୍ୱାପର ଲୀଳାର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ।

ଫାଲଗୁନ ଶୁକ୍ଳ ଦଶମୀଠାରୁ ଚତୁର୍ଦ୍ଦଶୀ ତିଥି ପର୍ଯ୍ୟନ୍ତ ରତ୍ନସିଂହାସନରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ଚାଚେରୀ ବେଶ ଅନୁଷ୍ଠିତ ହୋଇଥାଏ । ଫଗୁଖେଳ ଓ ଚାଚେରୀ ଭୋଗ ସନ୍ଧ୍ୟାଧୂପ ଅବକାଶରେ ହୋଇଥାଏ । ଦୋଳ ଗୋବିନ୍ଦ ଆଜ୍ଞାମାଳ ପାଇ ପାଲିଙ୍କିରେ ବିଜେ ହୋଇ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ କରନ୍ତି । ଶ୍ରୀମନ୍ଦିର ସମ୍ମୁଖସ୍ଥ ଦୋଳମଣ୍ଡପ ସାହିରେ ପୂର୍ବରୁ ଦୋଳମଣ୍ଡପ ଥିଲା ଓ ସେଠାକୁ ଶ୍ରୀମନ୍ଦିରରୁ ଜଗନ୍ନାଥ ବଳଭଦ୍ର ସୁଭଦ୍ରା ସ୍ୱୟଂ ବିଜେ କରୁଥିଲେ ବୋଲି ପ୍ରବାଦ ରହିଅଛି ।

ଏହି ବେଶମାନଙ୍କ ବ୍ୟତୀତ ଅତୀତ କାଳରେ ଅନେକ ସନ୍ଥ ମହାତ୍ମା ଶ୍ରୀକ୍ଷେତ୍ର ପରିଦର୍ଶନ କରି ଶ୍ରୀଜଗନ୍ନାଥଙ୍କୁ କୃଷ୍ଣାବତାର ରୂପରେ ଦର୍ଶନ କରିଛନ୍ତି । ନବମ ଶତାବ୍ଦୀରେ ଆଦି ଶଙ୍କାରାଚାର୍ଯ୍ୟ ନୀଳାଚଳଧାମରେ ପଦାର୍ପଣ କରି ତତ୍‌ପ୍ରଣୀତ ଶ୍ରୀଜଗନ୍ନାଥାଷ୍ଟକମ୍ ମାଧ୍ୟମରେ ଜଗନ୍ନାଥଙ୍କୁ କୃଷ୍ଣ ରୂପରେ ବନ୍ଦନା କରିଛନ୍ତି । ଦ୍ୱାଦଶ ଶତାବ୍ଦୀରେ ରାମାନୁଜ, ନିମ୍ବାର୍କ, ଜୟଦେବ ପ୍ରଭୃତି କୃଷ୍ଣଙ୍କ ସହ ଜଗନ୍ନାଥଙ୍କର ଅଭେଦ ତତ୍ତ୍ୱ ହୃଦୟଙ୍ଗମକରି ପ୍ରଚ୍ଛନ୍ନ ଦ୍ୱାପର ଲୀଳା ରୂପରେ ଶ୍ରୀକ୍ଷେତ୍ର ଲୀଳାକୁ ଅଭିହିତ କରିଛନ୍ତି । ଚତୁର୍ଦ୍ଦଶ ଶତାବ୍ଦୀର ଶ୍ରୀଧର ସ୍ୱାମୀ, କୃଷ୍ଣପାଦ, ଅମର୍ଷ, ମଧ୍ୱାଚାର୍ଯ୍ୟ ପ୍ରଭୃତି ମନିଷୀ ସନ୍ଥ ମହାତ୍ମାଗଣ ଏହି କ୍ଷେତ୍ରରେ ପଦାର୍ପଣ କରି କୃଷ୍ଣାବତାର ସହିତ ଜଗନ୍ନାଥ ସଂସ୍କୃତିର ଐକ୍ୟ ନିରୂପଣ କରି ଯାଇଛନ୍ତି । ପଞ୍ଚଦଶ ଶତାବ୍ଦୀର କବୀର, ନାନକ, ବିଲ୍ୱମଙ୍ଗଳ, ଚଣ୍ଡିଦାସ, ବିଦ୍ୟାପତି ପ୍ରଭୃତି ଓ ଷୋଡ଼ଶ ଶତାବ୍ଦୀରେ ସ୍ୱୟଂ ଶ୍ରୀଚୈତନ୍ୟ, ମାଧବେନ୍ଦ୍ରପୁରୀ, ପଞ୍ଚସଖା, ଷଡ଼ ଗୋସ୍ୱାମୀ ପ୍ରଭୃତି ସନ୍ଥ ମଣ୍ଡଳୀ ଏହି ଧାମରେ ସ୍ୱ ସ୍ୱ ମତବାଦ୍, ଚିନ୍ତନ ଓ ଉପାସନା ତତ୍ତ୍ୱ ପଦ୍ଧତି ମାଧ୍ୟମରେ କେବଳ କୃଷ୍ଣାବତାରୀ ଜଗନ୍ନାଥଙ୍କୁ ହିଁ ବନ୍ଦନା କରି ଏହି କ୍ଷେତ୍ରର ଉତ୍କର୍ଷ ପ୍ରତିପାଦିତ କରିଯାଇଛନ୍ତି ।

ତହସିଲଦାର, କାମାକ୍ଷାନଗର
ଢେଙ୍କାନାଳ








# ଶ୍ରୀମନ୍ଦିରରେ ଦାରୁବ୍ରହ୍ମଙ୍କ ଐତିହାସିକ ସ୍ୱରୂପ

ଡଃ ଜନ୍ମେଜୟ ଚୌଧୁରୀ

**ପୌ**ରାଣିକ ଆଖ୍ୟାନ ତଥା କିମ୍ବଦନ୍ତୀମୂଳକ ମାଦଳାପାଞ୍ଜିର ବିବରଣୀକୁ ଭିତ୍ତିକରି ସୃଷ୍ଟିର ଆରମ୍ଭରୁ ପୁରୀ ଶ୍ରୀପୁରୁଷୋତ୍ତମଙ୍କ ଲୀଳାସ୍ଥଳୀ ଥିଲାବୋଲି କୁହାଯାଏ । ଏଠାରେ ଆଦିବାସୀ ଶବରମାନେ 'ନୀଳମାଧବ' ନାମରେ ବିଷ୍ଣୁ ପ୍ରତିମା ସ୍ଥାପନ କରି ତାଙ୍କୁ ଆରାଧନା କରୁଥିଲେ । କାଳକ୍ରମେ ବିଦ୍ୟାପତି ନାମକ ଜଣେ ବ୍ରାହ୍ମଣଙ୍କଠାରୁ ସେହି 'ନୀଳମାଧବ' (ବିଷ୍ଣୁ) ପ୍ରତିମାଙ୍କ ମାହାତ୍ମ୍ୟ ଅବଗତ ହୋଇ ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନ ସେହି ନୀଳାଚଳ କ୍ଷେତ୍ରରେ ଏକ ବିରାଟ ମନ୍ଦିର ନିର୍ମାଣ କଲେ । କିନ୍ତୁ ନୀଳମାଧବଙ୍କୁ ଅନ୍ୱେଷଣ ପାଇଁ ଗଲାବେଳେ ଶ୍ରୀନୀଳମାଧବ ମୂର୍ତ୍ତି ଅନ୍ତର୍ହିତ ହେବାରୁ ରାଜା ଶ୍ରୀ ପୁରୁଷୋତ୍ତମଙ୍କ ଦାରୁ ପ୍ରତିମା ଗଠନ କରାଇ ସେହି ମନ୍ଦିରରେ ପ୍ରତିଷ୍ଠା କଲେ । ମାତ୍ର ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଓ ଜନପ୍ରିୟତା ସମ୍ବନ୍ଧରେ ଅନେକ ବିଦ୍ୱାନ ଓ ଗବେଷକ ବିଭିନ୍ନ ଦିଗରୁ ବିଭିନ୍ନ ମତ ଦେଇଥାନ୍ତି । ଦେଖିବାକୁ ଗଲେ ପ୍ରଥମତଃ ବ୍ରାହ୍ମଣ ଧର୍ମର ବେଦ, ପୁରାଣ, ମହାଭାରତ, ରାମାୟଣ କିମ୍ବା ଉପନିଷଦମାନଙ୍କରୁ ଶ୍ରୀଜଗନ୍ନାଥଙ୍କ ଅସ୍ତିତ୍ୱର ପ୍ରମାଣ ମିଳେ ନାହିଁ । କାରଣ ବୈଦିକ ଯୁଗରେ ଦେବତାଙ୍କର ମୂର୍ତ୍ତି ଗଠନ ଓ ମୂର୍ତ୍ତି ପୂଜା ପଦ୍ଧତି ନ ଥିଲା । ଆର୍ଯ୍ୟମାନେ କେବଳ ହୋମ-ଯାଗ-ଯଜ୍ଞ କର୍ମରେ ଦେବଦେବୀଙ୍କୁ ଆରାଧନା କରୁଥିଲେ । ଆର୍ଯ୍ୟମାନଙ୍କ ଆଗମନର ଅନେକ ବର୍ଷ ପୂର୍ବରୁ ଯେଉଁ ଅନାର୍ଯ୍ୟ ବା ଦ୍ରାବିଡ଼ୀୟମାନେ ସିନ୍ଧୁ ଉପତ୍ୟକାରେ ଉପନିବେଶ ପ୍ରତିଷ୍ଠା କରିଥିଲେ, ସେମାନେ ମୂର୍ତ୍ତି ପୂଜା କରୁଥିଲେ । କାରଣ ସିନ୍ଧୁ ସଭ୍ୟତାରୁ ପ୍ରାପ୍ତ ଅନେକ ମୂର୍ତ୍ତି ହସ୍ତଗତ ହୋଇଛି । ଏହି ଦ୍ରାବିଡ଼ୀୟ ମୂର୍ତ୍ତି ପୂଜା ପଦ୍ଧତି ସମୟରେ ଯେଉଁସବୁ ବିଚିତ୍ର ମୂର୍ତ୍ତି ପ୍ରଚଳିତ ଥିଲା, ସେଥିରୁ ଶ୍ରୀଜଗନ୍ନାଥଙ୍କ ବିଚିତ୍ର ମୂର୍ତ୍ତି ଅନ୍ୟତମ କି ନାହିଁ ପ୍ରଶ୍ନବାଚୀ ଅଟେ । ବୌଦ୍ଧ ଯୁଗରେ ମହାଯାନୀ ସମ୍ପ୍ରଦାୟ ଯେଉଁ ମୂର୍ତ୍ତିଗୁଡ଼ିକ ପୂଜା କରୁଥିଲେ, ସେଥିରେ ମଧ୍ୟ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ମୂର୍ତ୍ତି ସ୍ଥାନ ପାଇ ନଥିଲା । ଅତଏବ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କୁ ହିନ୍ଦୁ ଓ ବୌଦ୍ଧମାନଙ୍କ ମଧ୍ୟରେ ସ୍ଥାନ ଦିଆଯାଇନଥିଲା । ଓଡ଼ିଶାରେ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରୁ ଅଷ୍ଟମ ଶତାବ୍ଦୀ ମଧ୍ୟରେ ଶାସନ କରିଥିବା ଭୌମବଂଶୀୟ ରାଜା ତଥା ବୌଦ୍ଧ ଧର୍ମାବଲମ୍ବୀମାନେ ଶ୍ରୀଜଗନ୍ନାଥଙ୍କୁ ତାଙ୍କର ଦେବତା ଭାବରେ ଗ୍ରହଣ କରି ନଥିଲେ । ମାତ୍ର ତା'ପରେ ଶ୍ରୀଜଗନ୍ନାଥ-ପୁରୁଷୋତ୍ତମ ଓଡ଼ିଶାର ରାଷ୍ଟ୍ର ଦେବତା ହେଲେ । ଭୌମକର ବଂଶୀୟ ରାଜାମାନଙ୍କ ଶାସନର ଦ୍ୱିତୀୟ ସୋପାନରେ ଶ୍ରୀପୁରୁଷୋତ୍ତମଙ୍କର ପ୍ରାଧାନ୍ୟ ଓଡ଼ିଶାରେ ପ୍ରତିଷ୍ଠିତ ହୋଇ ତାହା କ୍ରମଶଃ ପଡ଼ୋଶୀ ରାଜ୍ୟକୁ ବ୍ୟାପି ଥିଲା ।

ପ୍ରାଚୀନ କାଳରେ ଯେତେବେଳେ ଓଡ଼ିଶାର ଉପକୂଳ ଅଞ୍ଚଳ ଆର୍ଯ୍ୟମାନଙ୍କର ଉପନିବେଶରେ ପରିଣତ ହୋଇ ନଥିଲା, ସେତେବେଳେ ଶବରମାନେ ନୀଳମାଧବ ରୂପେ ଦେବତାଙ୍କୁ ପୂଜା କରୁଥିଲେ । ପରେ ସେହି ଦେବତାଙ୍କୁ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନେ ଅପହରଣ କରିବାକୁ ଚେଷ୍ଟା କରି ବିଷ୍ଣୁ ଆରାଧନାର ଆୟୋଜନ କରିଥିଲେ । ଆର୍ଯ୍ୟମାନଙ୍କ ଆବିର୍ଭାବ ପୂର୍ବରୁ ଶବର ବା ପୁଳିନ୍ଦ ଜାତି ପୂର୍ବଘାଟ ପର୍ବତମାଳାର ବିଭିନ୍ନ ଅଞ୍ଚଳରେ ରହି ତାଙ୍କର ନିଜ ଭାଷାରେ ପରିକଳ୍ପିତ ଦେବତାଙ୍କୁ ପ୍ରସ୍ତର ବା ଦାରୁ ମୂର୍ତ୍ତିରେ ପୂଜା କରୁଥିଲେ । ତାଙ୍କ ଭାଷାରେ ନୀଳମାଧବ ରୂପକ ସଂସ୍କୃତ ଶବ୍ଦ ପ୍ରଚଳିତ ନଥିଲା । ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କ ଅଭିଲେଖରେ ବର୍ଣ୍ଣିତ ଅଛି ଯେ, ପୂର୍ବେ କଳିଙ୍ଗରେ ପୁଳିନ୍ଦସେନ ନାମକ ଜଣେ ନେତୃ ସ୍ଥାନୀୟ ବ୍ୟକ୍ତି (ରାଜା) ଶାସନ କାର୍ଯ୍ୟ ଚଳାଉଥିଲେ । ତାଙ୍କ ବୃଦ୍ଧ ସମୟରେ ସେ ଦେବତାଙ୍କୁ ଆରାଧନା କରି ପ୍ରାର୍ଥନା କଲେ, 'ହେ ପ୍ରଭୁ ସ୍ୱୟଂଭୂ, ମୋ' ପରେ କଳିଙ୍ଗ ରାଜ୍ୟର ଶାସନ ପ୍ରଚଳନ ପାଇଁ ସମର୍ଥ ବ୍ୟକ୍ତି ପ୍ରେରଣ କରନ୍ତୁ ।' ସ୍ୱପ୍ନରେ ଦେବତା କହିଲେ, କାଲି ପ୍ରଭାତରୁ ମହେନ୍ଦ୍ରାଚଳ ଶିଖର ଦେଶରେ ଏକ ବୃହତ୍ ଶିଳା ଦୁଇଫାଳ ହୋଇ ଫାଟି ଯିବ ଏବଂ ସେଥିରୁ ଯେଉଁ ପ୍ରତିଭାମାନ ବ୍ୟକ୍ତି ଆବିର୍ଭାବ ହେବେ ସେ ହିଁ ତୁମର ଦାୟାଦ । ସ୍ୱୟଂଭୂଙ୍କର ଏହି ଆଦେଶକ୍ରମେ ଶିଳାଗର୍ଭରୁ ଜଣେ ଯୁବପୁରୁଷ ଆବିର୍ଭାବ ହେବାରୁ ତାଙ୍କ ନାମ ରଖାଗଲା ଶୈଳୋଦ୍ଭବ ଯେ କି କଳିଙ୍ଗ ସଙ୍ଗେ କଙ୍ଗୋଦ ପ୍ରଭୃତି ରାଜ୍ୟରେ ଶାସନ ବିସ୍ତାର କରି ରହିଲେ । ପରବର୍ତ୍ତୀ ରାଜାମାନେ ଶୈଳୋଦ୍ଭବ ବଂଶୀ ନାମରେ ପରିଚିତ ହେଲେ ।





ଯେଉଁ ଦେବତା ସ୍ୱୟଂଭୂ ବା ଶିବ ନାମରେ ଶୈଳୋଦ୍ଭବମାନଙ୍କ ଦ୍ୱାରା ଓଡ଼ିଶାରେ ଖ୍ୟାତି ବିସ୍ତାର କରିଥିଲେ ଏବଂ ରାଜ୍ୟର ରାଷ୍ଟ୍ର ଦେବତା ରୂପେ ସର୍ବତ୍ର ପୂଜିତ ହେଉଥିଲେ ଆଉ ମଧ ତାଙ୍କର ପୂଜକ ରୂପେ ସେହି ଆଦିବାସୀ ଶବରମାନେ ନିଯୁକ୍ତ ହୋଇଥିଲେ, ଠିକ୍ ସେହି ଦେବତାଙ୍କୁ ଭୌମକର ବଂଶୀୟ ରାଜାମାନେ ତଥାଗତ ବୁଦ୍ଧ ନାମରେ ଅଭିହିତ କରି ଶବରମାନଙ୍କ ଦ୍ୱାରା ତାଙ୍କର ପୂଜାପଦ୍ଧତି ନିୟନ୍ତ୍ରଣ କରିବାକୁ ଲାଗିଲେ । ବୌଦ୍ଧ ଧର୍ମର ନୀତି ତାଙ୍କ ମନ୍ଦିରରେ ପ୍ରଚଳିତ ହୋଇ ଜାତିଭେଦ ପ୍ରଥାର ଅବସାନ ହେଲା । ନିମ୍ନ ଶ୍ରେଣୀୟ ଅଧିବାସୀ ଶ୍ରୀମନ୍ଦିରକୁ ପ୍ରବେଶ ଅଧିକାର ପାଇବା ସହିତ ମହାପ୍ରସାଦ ସେବନରେ କୌଣସି ଜାତି ପ୍ରଥାର ଲେଖ ରହିଲା ନାହିଁ । ନିର୍ମାଲ୍ୟ ଓ କୈବଲ୍ୟ ସମେତ ବୋଧିବୃକ୍ଷ ପ୍ରତୀକ କଳ୍ପବୃକ୍ଷର ଆରାଧନା ପ୍ରଚଳିତ ହେଲା । ଅଦ୍ୟାବଧି ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧାବତାର ରୂପେ ଗ୍ରହଣ କରାଯିବା ସହିତ ଆଦିବାସୀମାନେ ତାଙ୍କର ସେବକ ହୋଇ ରହିଛନ୍ତି ।

ବୌଦ୍ଧ ଧର୍ମର ଅବସାନ ପରେ ସୋମବଂଶୀ ରାଜା ଯଯାତି କେଶରୀଙ୍କ ସମୟରେ ଯେତେବେଳେ ହିନ୍ଦୁଧର୍ମ ପୁନଃ ପ୍ରତିଷ୍ଠିତ ହେଲା, ସେତେବେଳେ ଶ୍ରୀଜଗନ୍ନାଥଙ୍କ ସଙ୍ଗେ ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ମିଶାଇ ବିଶାଳ ତ୍ରିକଳିଙ୍ଗ ସାମ୍ରାଜ୍ୟର ଏକତା ସୃଷ୍ଟି କରିବାକୁ ବିଭିନ୍ନ ଅଞ୍ଚଳର ରାଷ୍ଟ୍ର ଦେବଦେବୀଙ୍କୁ ଏକତ୍ରିତ କରାଗଲା । କଳିଙ୍ଗ ଓ କଙ୍ଗୋଦରେ ଯେଉଁ ଦେବତା ପୂଜିତ ହେଉଥିଲେ ଏବଂ ବୁଦ୍ଧ ରୂପରେ ପରେ ଆରାଧିତ ହେଲେ, ସେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ରୂପେ ପୁରୀରେ ପ୍ରତିଷ୍ଠିତ ହେଲେ । ସେହିପରି ପଶ୍ଚିମ ଓଡ଼ିଶାରେ ପୂଜିତ ସ୍ତମ୍ଭେଶ୍ୱରୀ ଦେବୀ ଏକାନଂସା ସୁଭଦ୍ରା ରୂପେ ଏବଂ ତୋଷାଳୀ ରାଜ୍ୟରେ ଅର୍ଥାତ୍ ଆଧୁନିକ ଉତ୍ତର-ଓଡ଼ିଶାର ପୂଜିତ ବଳଦେବ ବଳଭଦ୍ର ରୂପେ ତ୍ରିକଳିଙ୍ଗରେ ତିନୋଟି ରାଷ୍ଟ୍ର ଦେବତା ଏହିପରି ଏକତ୍ରିତ ହୋଇ ପୁରୀରେ ଅବସ୍ଥାପିତ ହେଲେ । ମାତ୍ର ସୋମବଂଶୀ ରାଜା ଯଯାତିଙ୍କ ଦ୍ୱାରା ଶ୍ରୀମନ୍ଦିର ଗଠନ ସମ୍ଭବ ହୋଇପାରିଲା ନାହିଁ । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରୁ ଗଙ୍ଗବଂଶୀୟ ମହାରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ ଯେତେବେଳେ ସୋମବଂଶୀ ରାଜାମାନଙ୍କର ଉଚ୍ଛେଦ ସାଧନ କରି କଳିଙ୍ଗ, ତୋଷଳ ଓ ଦକ୍ଷିଣ କୋଶଳକୁ ଏକତ୍ରିତ କରି ଏକ ବିଶାଳ ସାମ୍ରାଜ୍ୟ ଗଠନ କଲେ, ସେତେବେଳେ ପୁରୀର ସେହି ବିରାଟ ଶ୍ରୀଜଗନ୍ନାଥ ମନ୍ଦିର ପୂର୍ଣ୍ଣତା ଲାଭ କଲା । ମହାରାଜା ଚୋଡ଼ଗଙ୍ଗ ଦେବ ପ୍ରଥମେ ପରମ ମାହେଶ୍ୱର ଉପାଧି ବହନ କରି ଶୈବ ଧର୍ମ ଗ୍ରହଣ କରିଥିଲେ ସୁଦ୍ଧା ଉତ୍କଳର ଜୟଲାଭ ପରେ ବ୍ରାହ୍ମଣ ଧର୍ମ, ଶୈବ ଧର୍ମ ଓ ବୈଷ୍ଣବ ଧର୍ମର ଉପାଧି ଲାଭ କରିଥିଲେ । କାରଣ ତାଙ୍କ ସମୟରେ ପ୍ରବର୍ତ୍ତିତ ଧର୍ମ ବିଦ୍ୱେଷ ରାଜ୍ୟରେ ଘୋର ଅନିଷ୍ଟ କରୁଥିବାରୁ ସେ ସମସ୍ତ ଧର୍ମ ଏକତ୍ର କରି ଶ୍ରୀପୁରୁଷୋତ୍ତମଙ୍କର ଧର୍ମ ସଂସ୍ଥା ଏପରି ନିୟନ୍ତ୍ରଣ କଲେ, ଯଦ୍ଦ୍ୱାରା ଜାତି ଜାତି ଓ ଧର୍ମ ଧର୍ମ ମଧ୍ୟରେ କୌଣସି ବିଦ୍ୱେଷ ରହିଲା ନାହିଁ । ଏହି ସମୟରେ ଶ୍ରୀକ୍ଷେତ୍ରରେ ଅନେକ ସଂଖ୍ୟାରେ ମଠ ପ୍ରତିଷ୍ଠା ହୋଇ ବିଭିନ୍ନ ମତବାଦୀମାନଙ୍କର ଏକତ୍ର ସମାବେଶ ହେଲା । ସର୍ବ ସମନ୍ୱୟ ଧର୍ମ ପ୍ରତିଷ୍ଠିତ ହୋଇ ଶ୍ରୀଜଗନ୍ନାଥଙ୍କୁ ଏକ ନୂତନ ପରିସର ମଧ୍ୟରେ ସର୍ବୋତ୍କୃଷ୍ଟ ଦେବତା ରୂପେ ଆରାଧନା କରାଗଲା । ସେ ନିଜେ ଶିବ, ବିଷ୍ଣୁ ଓ ଦୁର୍ଗାଙ୍କର ପରମଭକ୍ତ ହୋଇଥିବାରୁ ନିଜକୁ ପ୍ରଥମେ 'ପରମ ବ୍ରାହ୍ମଣ୍ୟ, ପରମ ବୈଷ୍ଣବ ଓ ପରମ ମାହେଶ୍ୱର' ଉପାଧିରେ ଭୂଷିତ କରି ନୀଳାଚଳ ଧାମରେ ସେହି ତିନି ଦେବତାଙ୍କ ଆରାଧନା ନିମିତ୍ତ ଶ୍ରୀପୁରୁଷୋତ୍ତମ, ଶ୍ରୀବଳଦେବ ଓ ଦେବୀ ସୁଭଦ୍ରାଙ୍କୁ ଏକତ୍ରିତ କରି ଏକ ମନ୍ଦିର ସ୍ଥାପନ ପାଇଁ ପ୍ରୟାସ କଲେ । ଏଥିପାଇଁ ସେ ତିନୋଟି ସଂପ୍ରଦାୟରୁ ତିନିଜଣ ରାଜଗୁରୁ ବା ଦୀକ୍ଷାଗୁରୁଙ୍କୁ ଗ୍ରହଣ କରି ଏପରି କାର୍ଯ୍ୟ ସମାପନ କରିଥିଲେ ଓ ଶାସ୍ତ୍ର ସମ୍ମତ ପଦ୍ଧତି ଅନୁସରଣ କରିଥିଲେ । ବ୍ରାହ୍ମଣ ଧର୍ମରେ ଦୀକ୍ଷିତ ହୋଇ ବହୁ ଯାଗଯଜ୍ଞ ସଂପନ୍ନ କରିବା ସହିତ ଶୈବ ଓ ବୈଷ୍ଣବ ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରି ଅନେକ ମଠବାଡ଼ି ଓ ମନ୍ଦିର ପ୍ରତିଷ୍ଠା କରିଥିଲେ । ଉତ୍କଳ ଜୟ କରିବା ପୂର୍ବରୁ ସେ ସୋମବଂଶୀୟ ମହାରାଜା ଯଯାତିକେଶରୀ ଯେଉଁଠାରେ ଶ୍ରୀପୁରୁଷୋତ୍ତମଙ୍କ ଶିଳା ବିଗ୍ରହ ସ୍ଥାପନ କରିଥିଲେ, ସେହି ମନ୍ଦିରରେ ମହାରାଜା ଚୋଡ଼ଗଙ୍ଗ ଦେବ ସର୍ବ ଧର୍ମ ସମନ୍ୱୟର ପ୍ରତୀକ ରୂପେ ଶ୍ରୀପୁରୁଷୋତ୍ତମ ମୂର୍ତ୍ତିତ୍ରୟ ପ୍ରତିଷ୍ଠିତ ପାଇଁ ଏକ ବିରାଟ ମନ୍ଦିର (ବର୍ତ୍ତମାନର ମୁକ୍ତି ମଣ୍ଡପ ସନ୍ନିକଟ ନୃସିଂହ ମନ୍ଦିର) ଗଠନ କଲେ । ନୃସିଂହ ମନ୍ଦିରରୁ ପ୍ରାପ୍ତ ଏକ ଶିଳାଖଣ୍ଡରୁ ଜଣାଯାଏ, ଯଯାତି କେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ଚତୁର୍ଭୁଜ ବିଶିଷ୍ଟ ଶ୍ରୀପୁରୁଷୋତ୍ତମମାଧବଙ୍କ ମୂର୍ତ୍ତି କୌଣସି ଅଜ୍ଞାତ କାରଣରୁ ବହୁକାଳ ପର୍ଯ୍ୟନ୍ତ ଅପୂଜିତ ହେବା ଦ୍ୱାରା ସେହି ମୂର୍ତ୍ତିକୁ ଅନ୍ୟତ୍ର ସ୍ଥାପନ କରି ସେଠାରେ ଶ୍ରୀପୁରୁଷୋତ୍ତମ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ମୂର୍ତ୍ତି ସ୍ଥାପନ କରାଗଲା । ଶିଳାରେ ନିର୍ମିତ ଏହି ତ୍ରିମୂର୍ତ୍ତି ଧର୍ମଶାସ୍ତ୍ର ଓ ଶିଳ୍ପଶାସ୍ତ୍ରର ପଦ୍ଧତି ଅନୁସାରେ ଗଠିତ ହୋଇଥିଲା । ଏହି ଶିଳାମୂର୍ତ୍ତି ନୃସିଂହ ମନ୍ଦିର ପରି ଏକକ୍ଷୁଦ୍ର ମନ୍ଦିରରେ ସ୍ଥାପନ କରାଯାଇଥିବାରୁ ମହାରାଜା ଚୋଡ଼ଗଙ୍ଗ ଦେବଙ୍କ ପରି ଜଣେ ସମ୍ରାଟଙ୍କ ପକ୍ଷେ ଶ୍ରୀପୁରୁଷୋତ୍ତମଙ୍କୁ ଇଷ୍ଟ ଦେବତା ରୂପେ ସମସ୍ତ ନୀତି ନିୟମ ଅନୁସାରେ ଆରାଧନା କରିବା ଏବଂ ଅନ୍ୟାନ୍ୟ ବିଷ୍ଣୁ କ୍ଷେତ୍ରରେ ପ୍ରବର୍ତ୍ତିତ ଉତ୍ସବ ଆଦି କ୍ରିୟା ସଂପନ୍ନ କରିବା ସମ୍ଭବ ହେଲା ନାହିଁ । ତେଣୁ ତାଙ୍କ ରାଜତ୍ୱର ଶେଷ କାଳରେ ନିଜ ଜ୍ୟେଷ୍ଠ ପୁତ୍ର କାମାର୍ଣ୍ଣବ ଦେବଙ୍କ ହସ୍ତରେ ରାଜ୍ୟ ଶାସନ ଭାର ଅର୍ପଣ କରି ୧୧୪୨ ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ଦିର କାର୍ଯ୍ୟ ଆରମ୍ଭ ପାଇଁ ଉତ୍କଳର ସୁପ୍ରସିଦ୍ଧ ଶିଳ୍ପୀ ତଥା କର୍ମକାର କୁଳପୁତ୍ରଙ୍କୁ ସେହି କର୍ମରେ ନିୟୋଜିତ କଲେ । ବୈଷ୍ଣବ ଗୁରୁଙ୍କ ନିର୍ଦ୍ଦେଶକ୍ରମେ ଏହି ମନ୍ଦିରଟି ଲିଙ୍ଗରାଜ ମନ୍ଦିରଠାରୁ ଉଚ୍ଚତର ହେବା ସାଙ୍ଗକୁ କାରୁକାର୍ଯ୍ୟ ଭରା ଏବଂ ଧର୍ମଶାସ୍ତ୍ରୋକ୍ତ ପଦ୍ଧତି ଅନୁସାରେ ଗଠିତ ହେଲା । ମାତ୍ର ମହାରାଜା ଚୋଡ଼ଗଙ୍ଗ ଦେବଙ୍କ ଜୀବିତ କାଳ ମଧ୍ୟରେ ମନ୍ଦିର ନିର୍ମାଣ ସଂପୂର୍ଣ୍ଣ ହୋଇପାରିଲା ନାହିଁ । ତେଣୁ ତାଙ୍କ ଜୀବନକାଳ ମଧ୍ୟରେ ସେହି ତ୍ରିମୂର୍ତ୍ତି ନୃସିଂହ ମନ୍ଦିରରେ ହିଁ ପୂଜିତ ହେଉଥିଲେ ।





ଏହାପରେ ପ୍ରାୟ ୯୦ ବର୍ଷ ପର୍ଯ୍ୟନ୍ତ ମହାରାଜା ଚୋଡ଼ଗଙ୍ଗ ଦେବଙ୍କ ଉତ୍ତରାଧିକାରୀମାନେ ସାମ୍ରାଜ୍ୟର ଉପାନ୍ତ ଅଞ୍ଚଳରେ ସଂଗଠିତ ଯୁଦ୍ଧରେ ଲିପ୍ତ ରହି ମନ୍ଦିର ନିର୍ମାଣ କାର୍ଯ୍ୟରେ ମନୋନିବେଶ କଲେ ନାହିଁ । ଶେଷରେ ତ୍ରୟୋଦଶ ଶତାବ୍ଦୀର ଆରମ୍ଭରେ ଯେତେବେଳେ ଶତ୍ରୁ ଉପଦ୍ରବ ହ୍ରାସ ପାଇଲା, ସେତେବେଳେ ମହାବୀର ଧର୍ମପ୍ରାଣ ମହାରାଜା ତୃତୀୟ ଅନଙ୍ଗଭୀମ ଦେବ ଶାସନ ଭାର ଗ୍ରହଣ କରି ଶ୍ରୀମନ୍ଦିର ଗଠନ କାର୍ଯ୍ୟ ସମ୍ପୂର୍ଣ୍ଣ କରି ବହୁ ଯଜ୍ଞ, ଭୂମିଦାନ ସମେତ ବିରାଟ ଉତ୍ସବ ମଧ୍ୟରେ ନବଗଠିତ ମନ୍ଦିରଟି ପ୍ରତିଷ୍ଠିତ ହେଲା ଓ ସେଥିରେ ହସ୍ତପଦଯୁକ୍ତ ପ୍ରସ୍ତର ତ୍ରିମୂର୍ତ୍ତି ଶ୍ରୀପୁରୁଷୋତ୍ତମ ଦେବ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ରତ୍ନସିଂହାସନରେ ପ୍ରତିଷ୍ଠିତ ହେଲେ । ଏହି ତ୍ରିମୂର୍ତ୍ତିଙ୍କର ପୂଜା ପଦ୍ଧତି ଓ ଯାନିଯାତ୍ରାଗୁଡ଼ିକ ମହାରାଜା ଅନଙ୍ଗଭୀମ ଦେବଙ୍କ ଗୁରୁ ଦ୍ୱୌତାପତାବାଦୀ ଶ୍ରୀବୈଷ୍ଣବ ସମ୍ପ୍ରଦାୟର ପଦ୍ଧତି ଅନୁଯାୟୀ ପରିଚାଳିତ ହେଲା । ମାତ୍ର ରଥଯାତ୍ରା ଏହି ପ୍ରସ୍ତର ମୂର୍ତ୍ତିକୁ ନେଇ ସମ୍ଭବ ହେଉ ନଥିବାରୁ ଉତ୍ସବ ମୂର୍ତ୍ତିମାନ ସ୍ୱତନ୍ତ୍ର ଭାବରେ ମଧ ପ୍ରତିଷ୍ଠିତ ଥିଲେ । ଯେତେଦିନ ପର୍ଯ୍ୟନ୍ତ ହସ୍ତପଦଯୁକ୍ତ ପ୍ରସ୍ତର ମୂର୍ତ୍ତିମାନ ଶ୍ରୀମନ୍ଦିରରେ ଥିଲେ, ସେପର୍ଯ୍ୟନ୍ତ ସେମାନେ ସିଂହାସନ ଚ୍ୟୁତ ହୋଇନଥିଲେ । କାରଣ ଧର୍ମଶାସ୍ତ୍ର ଅନୁସାରେ ପ୍ରତିଷ୍ଠିତ ପ୍ରସ୍ତର ମୂର୍ତ୍ତି ସ୍ଥାନଚ୍ୟୁତ ହେଲେ ତାଙ୍କୁ ଫେରାଇ ଆଣି ସିଂହାସନରେ ପୁନଃ ପୂଜିତ କରିବା ଧର୍ମ ବିରୋଧୀ ଅଟେ । ତେଣୁ ପ୍ରସ୍ତର ମୂର୍ତ୍ତିକୁ ଦାରୁ ବିଗ୍ରହରେ ପରିଣତ ହେବା ପର୍ଯ୍ୟନ୍ତ ରଥଯାତ୍ରା ଆଦି ବାହ୍ୟଯାତ୍ରାରେ ଉତ୍ସବ ପ୍ରତିମାଙ୍କୁ ପ୍ରଚଳନ କରାଯାଉଥିଲା ।

ମହାରାଜା ଅନଙ୍ଗଭୀମ ଦେବଙ୍କ ପୁତ୍ର ପ୍ରଥମ ନରସିଂହ ଦେବ ଜଣେ ପରାକ୍ରମୀ ଓ ଧର୍ମପ୍ରାଣ ରାଜା ଥିଲେ । ଏହାଙ୍କ ରାଜତ୍ୱ ସମୟରେ ବଙ୍ଗର ମୁସଲମାନ ସୁଲତାନମାନେ ଓଡ଼ିଶାକୁ ଆସୁଥିଲେ ଓ ଆକ୍ରମଣ କରୁଥିଲେ । ସେମାନଙ୍କୁ ସମ୍ମୁଖୀନ ହେବା ପାଇଁ ଓଡ଼ିଶାର ଖଣ୍ଡାୟତମାନେ ଅକ୍ଷମ ଥିଲେ । କାରଣ ଔରଙ୍ଗଜେବ ଯେପରି ଶିବାଜୀଙ୍କ ବିପକ୍ଷରେ ଯୁଦ୍ଧ କରିବାବେଳେ ହିନ୍ଦୁ ସୈନ୍ୟମାନଙ୍କୁ ନିରୁତ୍ସାହିତ କରିବା ଉଦ୍ଦେଶ୍ୟରେ ଗୋଟିଏ ଗୋଟିଏ ଗୋରୁ ପଲକୁ ଆଗରେ ରଖି ମୁସଲମାନ ସୈନ୍ୟଙ୍କ ସହିତ ପଛରେ ଥାଇ ଯୁଦ୍ଧ କରୁଥିଲେ, ଠିକ୍ ସେହିପରି ପ୍ରଥା ବଙ୍ଗର ମୁସଲମାନମାନେ ଉତ୍କଳ ଅଧିକାର ପାଇଁ ଗୋରୁ ପଲ ବ୍ୟବହାର କରୁଥିଲେ । ଫଳରେ ପରାକ୍ରମୀ ଖଣ୍ଡାୟତମାନେ ଯୁଦ୍ଧ ଭୂମିରେ ଅସ୍ତ୍ରତ୍ୟାଗ ପୂର୍ବକ ପଶ୍ଚାତପଦ ହେଲେ । ଏହା ମହାରାଜା ନରସିଂହ ଦେବଙ୍କ ପକ୍ଷରେ ଏକ ବିରାଟ ସମସ୍ୟା ସୃଷ୍ଟି କଲା । ତେଣୁ ସେ ନିଜ ଗୁରୁଙ୍କ ନିର୍ଦ୍ଦେଶକ୍ରମେ ଶବରମାନଙ୍କୁ ନିମନ୍ତ୍ରଣ କରି ସୈନ୍ୟ ଶ୍ରେଣୀରେ ନିଯୁକ୍ତ କଲେ । ଯଦ୍ୱାରା ମୁସଲମାନ ସୈନ୍ୟ ହାର ମାନିଲେ । ସେତେବେଳେ ଶବରମାନଙ୍କ ଅଧୀନରେ ଉତ୍କଳ ସୈନ୍ୟବାହିନୀ ବଙ୍ଗ ଦେଶର ଲକ୍ଷଣାବତୀ ପର୍ଯ୍ୟନ୍ତ ଅଶ୍ୱ ଚାଳନା କରିଥିଲେ । ଏ ସମୟରୁ ଶବରମାନେ ଏଠାରେ ବସବାସ କଲେ ଏବଂ ଏହା ସହିତ ସେମାନଙ୍କ ଦେବତାଙ୍କୁ ଆରାଧନା କରିବା ପାଇଁ ପ୍ରବଳ ଆଗ୍ରହ ହେତୁ ପ୍ରସ୍ତର ତ୍ରିମୂର୍ତ୍ତିଙ୍କୁ ଶ୍ରୀମନ୍ଦିରରୁ ଗାଦିଚ୍ୟୁତ କରି ଆଦିବାସୀ ଶବରମାନଙ୍କ ପୂଜିତ ଦେବତାଙ୍କ ସ୍ୱରୂପରେ ଦାରୁ ବିଗ୍ରହ ସ୍ଥାପନ କରାଯାଇଥିଲା ଏବଂ ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ନବଗଠିତ ଦାରୁବିଗ୍ରହଙ୍କ ନାଭି ମଧ୍ୟରେ ଦୁଇଟି ଶାଳଗ୍ରାମ ଶିଳା ସ୍ଥାପିତ ହେଲା । ଏହି ଦୁଇଟି ପବିତ୍ର ଶାଳଗ୍ରାମ ମଧ୍ୟରୁ ଗୋଟିଏ ନେପାଳର ଗଣ୍ଡକି ନଦୀରୁ ଏବଂ ଅନ୍ୟଟି ଦ୍ୱାରକାରୁ ଅଣାଯାଇ ଶ୍ରୀଜଗନ୍ନାଥଙ୍କ ହୃଦୟ ମଧ୍ୟରେ ସ୍ଥାପନ କରାଗଲା । ଫଳରେ ଉଭୟେ ଆଦିବାସୀ ଓ ବ୍ରାହ୍ମଣମାନେ କୌଣସି ଆକ୍ଷେପ ନକରି ସର୍ବଧର୍ମ ସମନ୍ୱିତ ଧର୍ମ ରୂପେ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଦାରୁ-ବିଗ୍ରହଙ୍କୁ ଆରାଧନା କଲେ ।

ହସ୍ତପଦଯୁକ୍ତ ପ୍ରସ୍ତର ତ୍ରିମୂର୍ତ୍ତି ପରିବର୍ତ୍ତେ ହସ୍ତପଦଶୂନ୍ୟ ଦାରୁ ତ୍ରିମୂର୍ତ୍ତି କେବେ ଗଠିତ ହୋଇ କେବେ ଓ କେଉଁ ପରିସ୍ଥିତିରେ ପୂଜିତ ହେଲେ, ତାହା ଆଜି ପ୍ରଶ୍ନବାଚୀ ଅଟେ । ମହାରାଜା ଚୋଡ଼ଗଙ୍ଗ ଦେବଙ୍କ ପରି ଜଣେ ଶାସ୍ତ୍ରଜ୍ଞ ପଣ୍ଡିତ ଶାସ୍ତ୍ରୋକ୍ତ ବିଧିରେ, ବିଷ୍ଣୁଙ୍କ ମୂର୍ତ୍ତି-ତତ୍ତ୍ୱ ଅନୁସାରେ ହସ୍ତପଦଯୁକ୍ତ ପ୍ରସ୍ତର ବିଗ୍ରହ ଶ୍ରୀପୁରୁଷୋତ୍ତମଙ୍କୁ ସ୍ଥାପନ କରିଥିଲେ । ବୃହଦ୍ ସଂହିତା, ମତ୍ସ୍ୟ ପୁରାଣ, ଅଗ୍ନି ପୁରାଣ ଓ ପଦ୍ମପୁରାଣ ଆଦିରେ ଚତୁର୍ଭୁଜ ବିଷ୍ଣୁଙ୍କ କଥା ବର୍ଣ୍ଣିତ ଅଛି । ଏ ସମସ୍ତ ଗ୍ରନ୍ଥରେ ଚବିଶ ପ୍ରକାର ବିଷ୍ଣୁ ପ୍ରତିମାଙ୍କ କଥା ବର୍ଣ୍ଣିତ ଅଛି । ଏହି ଚବିଶ ପ୍ରକାର ପ୍ରତିମା ହେଲେ- ୧. କେଶବ, ୨. ନାରାୟଣ, ୩. ମାଧବ, ୪. ଗୋବିନ୍ଦ, ୫. ବିଷ୍ଣୁ, ୬. ମଧୁସୂଦନ, ୭. ତ୍ରିବିକ୍ରମ, ୮. ବାମନ, ୯. ଶ୍ରୀଧର, ୧୦. ହୃଷୀକେଶ, ୧୧. ପଦ୍ମନାଭ, ୧୨. ଦାମୋଦର, ୧୩. ଶଙ୍କର୍ଷଣ, ୧୪. ବାସୁଦେବ, ୧୫. ପ୍ରଦ୍ୟୁମ୍ନ, ୧୬, ଅନିରୁଦ୍ଧ, ୧୭. ପୁରୁଷୋତ୍ତମ, ୧୮. ଅଧୋକ୍ଷକ, ୧୯. ନରସିଂହ, ୨୦. ଅଚ୍ୟୁତ, ୨୧. ଜନାର୍ଦ୍ଦନ, ୨୨. ଉପେନ୍ଦ୍ର, ୨୩. ହରି ଓ ୨୪. ଶ୍ରୀକୃଷ୍ଣ । ଏହି ଚବିଶ ନାମ ମଧ୍ୟରୁ ତେର ସଂଖ୍ୟାର ମୂର୍ତ୍ତି ହେଉଛନ୍ତି, ଶଙ୍ଖ, ଚକ୍ର, ଗଦା ଓ ପଦ୍ମଧାରୀ ପୁରୁଷୋତ୍ତମ ଯାହାଙ୍କୁ ପୁରୀରେ ଶ୍ରୀକୃଷ୍ଣ ଓ ଶ୍ରୀବଳରାମ ରୂପରେ ପରିଣତ କରି ବୈଷ୍ଣବ ସଂପ୍ରଦାୟ ଆରାଧନା କଲେ । ଚତୁର୍ଭୁଜ ଶ୍ରୀକୃଷ୍ଣଙ୍କୁ ପୁରୀର ଶ୍ରୀମନ୍ଦିରରେ ପ୍ରତିଷ୍ଠା କରି ତାଙ୍କର ପୂଜା ଅର୍ଚ୍ଚନା କରାଯାଇଥିଲା, ଯାହାଙ୍କୁ ଭିତ୍ତିକରି ଓଡ଼ିଶାର ଅନେକ ସ୍ଥାନରେ ଏହି ଚତୁର୍ଭୁଜା ବିଶିଷ୍ଟ ଶ୍ରୀକୃଷ୍ଣଙ୍କ ମୂର୍ତ୍ତିମାନ ସ୍ଥାପନ କରି ତାଙ୍କୁ 'ମାଧବ' ଆଖ୍ୟା ଦିଆଯାଇଥିଲା ।

ଶ୍ରୀମନ୍ଦିରରେ ପୂଜା ପାଉଥିବା ପ୍ରସ୍ତର ମୂର୍ତ୍ତିକୁ ପରିବର୍ତ୍ତନ କରିବାର ଅନ୍ୟତମ କାରଣ ହେଲା ମୁସଲମାନ ଶତ୍ରୁମାନଙ୍କର ବାରମ୍ବାର ଓଡ଼ିଶା ପ୍ରତି ଉପଦ୍ରବ ହେତୁ ଶ୍ରୀମନ୍ଦିର ଏଥିରୁ ବାଦ୍ ପଡ଼ିନଥିଲା । ଏଠାରେ ପୂଜା ପାଉଥିବା ପ୍ରସ୍ତର ମୂର୍ତ୍ତି ସେମାନଙ୍କ ଆକ୍ରମଣରେ ଧ୍ୱଂସ ପାଇଥିଲେ । ସେତେବେଳେ ମହାରାଜା ଦ୍ୱିତୀୟ ନରସିଂହ ଦେବ ସୁଦୂର ରେମୁଣା-କଟକ (ଅଧୁନା ବାଲେଶ୍ୱର) ଓ ଭୈରବ-କଟକ (ଅଧୁନା ମୟୂରଭଞ୍ଜ)ରେ ରହୁଥାନ୍ତି । ତାଙ୍କର ଏହି ଅନୁପସ୍ଥିତି ସମୟରେ

ଭାନୁଦେବ ହିଁ ରାଜଧାନୀ ବାରଣାସୀ କଟକରେ ରହି ରାଜ୍ୟର ଭଲମନ୍ଦ ତଦାରଖ କରିଥାନ୍ତି । ଏହି ପରିପ୍ରେକ୍ଷୀରେ ମୁସଲମାନ ସୈନ୍ୟମାନେ ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିର ଉପରକୁ ଘନ ଘନ ଆକ୍ରମଣ କରି ଶ୍ରୀମନ୍ଦିରର ଦେବଦେବୀ ବିଗ୍ରହଙ୍କୁ ନଷ୍ଟ କରିବା ସହିତ ଶ୍ରୀକ୍ଷେତ୍ର ଜନଶୂନ୍ୟ ହୋଇଥିଲା । ଶ୍ରୀମନ୍ଦିରର ସେବାୟତମାନେ ପ୍ରାଣ ଭୟରେ ଶ୍ରୀମନ୍ଦିର ଓ ଶ୍ରୀକ୍ଷେତ୍ର ପରିତ୍ୟାଗ କରି ଅନ୍ୟତ୍ର ପଳାୟନ କଲେ । ଏଭଳି ଦୁଃସମ୍ବାଦ ପାଇ ମହାରାଜା ଭାନୁଦେବ ବାରଣାସୀ କଟକରୁ କେତେକ ସୈନ୍ୟ ସାମନ୍ତ ସହିତ ଶ୍ରୀକ୍ଷେତ୍ର ଆସିଥିଲେ । ଏହି ଖବର ମଧ ଭୈରବ-କଟକରେ ପହଞ୍ଚିବାରୁ ମହାରାଜା ନରସିଂହ ଦେବ ସେ ସ୍ଥାନ ପରିବର୍ତ୍ତନ କରି ସର୍ବପ୍ରଥମେ ତାଙ୍କ ଧର୍ମଗୁରୁ ନରହରି ତୀର୍ଥଙ୍କ ପରାମର୍ଶକ୍ରମେ ଶ୍ରୀମନ୍ଦିରରେ 'ଦାରୁବ୍ରହ୍ମ' ସ୍ୱରୂପୀ ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହ ଗଠନ ପାଇଁ ବ୍ୟବସ୍ଥା କଲେ । ତତ୍‌ସହିତ ଶ୍ରୀକ୍ଷେତ୍ରରୁ ମୁସଲମାନମାନଙ୍କୁ ଶ୍ରୀକ୍ଷେତ୍ରରୁ ବିତାଡ଼ିତ କରିବା ପାଇଁ ଆଦିବାସୀ ଶବରମାନଙ୍କୁ ଯୁଦ୍ଧ କ୍ଷେତ୍ରରେ ନିଯୁକ୍ତି ଦିଆଗଲା । ଏହି ସମୟରେ ଆଦିବାସୀମାନଙ୍କ ମୁଖ୍ୟ ବାସସ୍ଥାନ ମହେନ୍ଦ୍ରଗିରିରୁ ମୂର୍ତ୍ତି ଗଠନ ପାଇଁ ନିମ୍ବକାଠ ସମୁଦ୍ର ପଥରେ ଶ୍ରୀକ୍ଷେତ୍ରକୁ ଆଣିବାର ବ୍ୟବସ୍ଥା ହେଲା । ଶବରମାନେ ଅତି ଆନନ୍ଦର ସହିତ ମହେନ୍ଦ୍ର ପର୍ବତ ଅନୁସନ୍ଧାନ କରି ଶଙ୍ଖ, ଚକ୍ର ଚିହ୍ନ ଥିବା ନିମ୍ବବୃକ୍ଷକୁ କାଟି ସେଥିରେ ପବିତ୍ର ଦାରୁଗଣ୍ଡିମାନ ପର୍ବତ ଶିଖରରୁ ଗଡ଼ାଇ ଯେଉଁ ପଥରେ ତଳକୁ ଓହ୍ଲାଇ ଥିଲେ, ସେହି ପାର୍ବତ୍ୟ ଅଞ୍ଚଳ ପଥ ବର୍ତ୍ତମାନ 'ଦାରୁବ୍ରହ୍ମ' ନାମରେ ଅଭିହିତ ଅଛି । ମହେନ୍ଦ୍ରଗିରିରୁ 'ଦାରୁବ୍ରହ୍ମ'ଙ୍କୁ ଆଣିବା ପାଇଁ ଗୁରୁ ନରହରି ତୀର୍ଥଙ୍କ ପରାମର୍ଶକ୍ରମେ ଶବରମାନେ ସିନ୍ଧୁ ପଥରେ ଦାରୁ ଗଣ୍ଡିକୁ ନୀଳାଚଳକୁ ଆଣିଥିଲେ । ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି, 'ଦାରୁବ୍ରହ୍ମ' ବାଙ୍କି ମୁହାଣଠାରେ ପହଞ୍ଚିଲା ପରେ ସେଠାରୁ ଦାରୁଗଣ୍ଡିକୁ ଆଣିବା ପାଇଁ କେହି ସମର୍ଥ ହେଲେ ନାହିଁ । ତେଣୁ ମହାରାଜାଙ୍କୁ ସ୍ୱପ୍ନରେ ମହାପ୍ରଭୁଙ୍କ ଆଜ୍ଞା ହେବାରୁ ବଶୁ ଶବରର ବଂଶଧରଙ୍କୁ ଲଗାଇ ଦାରୁବ୍ରହ୍ମ କୂଳକୁ ଅଣାଗଲା ଓ ତାଙ୍କର ବର୍ତ୍ତମାନର ବିଗ୍ରହମାନ ଗଠିତ ହେଲା । ଶ୍ରୀବିଗ୍ରହଙ୍କ ନାଭି ସ୍ଥଳରେ ଶ୍ରୀକୂର୍ମରୁ ନରସିଂହ ତୀର୍ଥ ଆଣିଥିବା ଶାଳଗ୍ରାମ ଶିଳା ସ୍ଥାପନ କରି ମୂର୍ତ୍ତିମାନଙ୍କର ନବକଳେବର ବିଧି ଆରମ୍ଭ ହେଲା ।

୧୩୦୫ ଖ୍ରୀ:ଅ:ରେ ଦ୍ୱିତୀୟ ଭାନୁଦେବଙ୍କ ସମୟରେ ଦେବାଧିଦେବ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦାରୁ ବିଗ୍ରହ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ହେବାରୁ ମହାରାଜା ଭାନୁଦେବ (ଦ୍ୱିତୀୟ)ଙ୍କଠାରେ ରାଜ୍ୟ ସମ୍ପଦ ଉତ୍ସର୍ଗ କରି ତାଙ୍କ ଦାସ ହୋଇ ରାଜ୍ୟ ପରିଚାଳନା କରିଥିଲେ । ଏହି ସମୟରେ ମହାପ୍ରଭୁ ଶ୍ରୀପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ନାମରେ ଉତ୍କଳ ଏବଂ କଳିଙ୍ଗରେ ଅଙ୍କ ପ୍ରବର୍ତ୍ତିତ ହେଲା । ସେଥିରୁ ଆରମ୍ଭ କାଳ ୧୩୦୮ ଖ୍ରୀଷ୍ଟାବ୍ଦ ହୋଇଥିବାରୁ ସେହି ବର୍ଷ ହିଁ ଶ୍ରୀମନ୍ଦିରରେ ଦାରୁବିଗ୍ରହଙ୍କ ନବକଳେବର ସର୍ବପ୍ରଥମେ ହୋଇଥିଲା । ଶ୍ରୀପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ନାମରେ ଅଙ୍କ କାଟିବା ପ୍ରଥା ଭାନୁଦେବ ମହାରାଜାଙ୍କ ଜୀବିତ କାଳ ୧୩୧୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ପ୍ରଚଳିତ ହେଲା ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ, କାଇପଦର, ଖୋର୍ଦ୍ଧା

---

# ପୁରୀ

ଇନ୍ଦୁଭୂଷଣ କର

ହେ ପୁରୀ
ଉତ୍କଳ-ଜନନୀର ତୁ ଐଶ୍ୱର୍ଯ୍ୟ ନଗରୀ
ପ୍ରେମ, ଭକ୍ତିର ଅମରାପୁରୀ ।
ତୋରି ବଡ଼ଦାଣ୍ଡରେ ଠିଆ ହୋଇ
ଆର୍ତ୍ତକଣ୍ଠରେ, ଡାକେ ଯେବେ ହାତଯୋଡ଼ି
ହେ ବଡ଼ଠାକୁର ! ହେ ଚକାଡୋଳା !
ସେବେ, ମୋ' ଅଶାନ୍ତ ହୃଦୟରୁ
ଦୁଃଖର-ବୋଝ ଯାଏ ଅପସରି ।
ତୋରି ବେଳାଭୂମିରେ ଶୋଇ
ମୁଁ ଦେଖେ ଉତ୍ତୁଙ୍ଗ ତରଙ୍ଗ,
ମଥା ପିଟୁଥାଏ,
ସ୍ନେହ ମମତାର ଜଳ ନାଚୁଥାଏ ଥେଇ ଥେଇ
ସେବେ ମୋ' ଅଶାନ୍ତ ମନରୁ
ବିଷାଦର କୁହୁଡ଼ି ଯାଏ ଅପସରି ।
ସ୍ନେହ ମମତାରେ ସିକ୍ତ, ବନ ଉପବନ
ସଭି ପ୍ରାଣୀକୁ ହସି ହସି କରୁଛି ଆଲିଙ୍ଗନ ।
ତୋରି ଶାନ୍ତ ସୁଶୀତଳ, ଝାଉଁବଣରେ
ନିରବରେ ମୁଁ ପୁଣି ଗାଉଛି ଗୀତ
ମୁକ୍ତ ବିହଙ୍ଗ ପରି ଉଡ଼ିଯାଉଛି ଦୂର ଦିଗନ୍ତ ।
ମୁଁ ଜାଣେ, ବେଶୀଦିନ ଆଉ ନାହିଁ
ତୋ' ସ୍ୱର୍ଗଦ୍ୱାରେ ମୋ' ଚିତା ଜଳିବ ଦିନେ
ତୋ'ରି କୋଳେ ମୋ' କ୍ଳାନ୍ତ ତନୁ ନିରବେ ଶୋଇବ
ଅନନ୍ତ ଶୟନେ ।
ସେଦିନ ଏ ଅଶାନ୍ତ ହୃଦୟରୁ
ଏ ଯୁଗ-ଯନ୍ତ୍ରଣା ଓ ଆତଙ୍କ ଯିବ ଅପସରି ସବୁଦିନ ।

ଭକ୍ତମଧୁ ନଗର
ଭୁବନେଶ୍ୱର-୩୦

# ଶ୍ରୀଜଗନ୍ନାଥ ସଂସ୍କୃତି ଓ ସୋନପୁର

ଡଃ ଚନ୍ଦ୍ରଭାନୁ ପଟେଲ

**ସ**ମ୍ବଲପୁର-ସୋନପୁର ଅଂଚଳରେ ପ୍ରଚଳିତ ସ୍ତମ୍ଭପୂଜାରୁ ହୁଏତ ଜଗନ୍ନାଥ ପୂଜାର ଉଦ୍ଭବ ହୋଇଥାଇପାରେ । ଯେଉଁମାନେ ଯୋଡାଖମ୍ଭ ଦେଖିଥିବେ, ସେମାନେ ହୁଏତ ବୁଝିପାରୁଥିବେ । ପରେ ଯଯାତି ଦ୍ୱିତୀୟ ଜଗନ୍ନାଥ ପୂଜାକୁ ପୁରୀ ପର୍ଯ୍ୟନ୍ତ ସଂପ୍ରସାରିତ କରିଥିବେ । ତା ଆଗରୁ ପୁରୀ ତ ପୁରୁଷୋତ୍ତମ କ୍ଷେତ୍ର ଥିଲା । ସେ ଅଂଚଳର ଲୋକେ ପୁରୀ ଆସୁଥିଲେ, କହୁଥିଲେ ପୁରସ୍ତମ ଯାଉଛୁ । ପୁରୁଷୋତ୍ତମ ଏକ ବୈଷ୍ଣବ ଦେବତା । ଜଗନ୍ନାଥ ବୌଦ୍ଧ ଦେବତା । ଅଷ୍ଟମ ଶତାବ୍ଦୀରେ ସଂବଳର ରାଜା (ଅଧୁନା ସମ୍ବଲପୁର) ଇନ୍ଦ୍ରଭୂତି ତାଙ୍କର ଜ୍ଞାନସିଦ୍ଧି ଗ୍ରନ୍ଥରେ ଜଗନ୍ନାଥଙ୍କୁ ବୁଦ୍ଧରୂପେ ବର୍ଣ୍ଣନା କରିଛନ୍ତି ।

କାଳିକା ପୁରାଣ କୁହେ ଉଡ୍ଡୀୟାନ (ସୋନପୁର-ବଉଦ ଅଂଚଳ)ର ଇଷ୍ଟ ଦେବତା ଥିଲେ ଜଗନ୍ନାଥ ଓ ବିମଳା । ଜଗନ୍ନାଥ ଏକ ତାନ୍ତ୍ରିକ ଦେବତା । ଆଉ ସୋନପୁର ଏକ ଐତିହାସିକ ତନ୍ତ୍ରପୀଠ । ଏଇଠି ଇନ୍ଦ୍ରଭୂତିଙ୍କ ଭଉଣୀ ଲକ୍ଷ୍ମୀଙ୍କରା ସହଜଯାନ ବୌଦ୍ଧଧର୍ମ ପ୍ରବର୍ତ୍ତନ କରିଥିଲେ, ଯାହାକି ପରେ ତନ୍ତ୍ରଯାନରେ ପରିଣତ ହୋଇଥିଲା । ସୋନପୁର ବଳିଯାତ୍ରାର ଭୁବନେଶ୍ୱରୀ ଯନ୍ତ୍ର ପୁରୀ ମନ୍ଦିର ପୂଜାପଦ୍ଧତିର ଏକ ଅବିଚ୍ଛେଦ୍ୟ ଅଂଗ ।

ତରଭା ଇତିବୃତ୍ତିରୁ ଜଣାଯାଏ ଯେ, ତରଭାର ଦଧିବାମନ ମୂର୍ତ୍ତି ରୂପରେ ଜଗନ୍ନାଥ ପ୍ରଥମେ ପୂଜା ପାଉଥିଲେ । ସୋନପୁର ପାଖରେ ତରଭା ଅଛି । ତୀର୍ଥଯାତ୍ରୀମାନେ ଜଗନ୍ନାଥ ସଡକରେ ଚାଲି ଚାଲି ଥକି ଗଲେ କୁଆଡେ ପ୍ରଭୁ ସ୍ୱପ୍ନରେ କୁହନ୍ତି, ପୁରୀ ଅନେକ ଦୂର । ତରଭା ଯାଅ । ଦଧିବାମନଙ୍କୁ ଦର୍ଶନ କର । ମୋ ଦର୍ଶନର ଫଳପାଇବ ।

ଖଲିଆପାଲି ପାଖ ଏକ ଡୁଙ୍ଗୁରୀରେ ଜଣେ ବାବା ରହୁଥିଲେ । ନାମ ଲେଖନକାର ବାବା । ଜଗନ୍ନାଥଙ୍କ ପରମ ଭକ୍ତ । ଥରେ ରଥଯାତ୍ରା ଦିନ ବାବା ଶୋଇଛନ୍ତି । ଧୂନି ଜଳୁଛି, ବାହାରେ ପ୍ରବଳ ବର୍ଷା । ହଠାତ୍ ବାବାଙ୍କ ଦେହ ଝାଳ ସରସର ହୋଇଗଲା । ଝାଳର ନଈ ବହିଗଲା । ଥଣ୍ଡା ପବନ ପୁଣି ଝାଳ । ଶିଷ୍ୟ ବାଳମୁକୁନ୍ଦ ପାଖରେ ବସିଥିଲେ । ବାବାଙ୍କୁ ହଲାଇ ଦେଲେ । ବାବା ବିଳିବିଳେଇ ଉଠିଲେ 'ରଥ! ରଥ!'



ବାଳମୁକୁନ୍ଦ ପଚାରିଲେ, ରଥଯାତ୍ରାର ସ୍ୱପ୍ନ ଦେଖୁଥିଲେ କି ବାବା? ନା, ରେ, ସ୍ୱପ୍ନ ନୁହଁ, ସତ୍ୟ । ରଥ ବଡଦାଣ୍ଡରେ ଅଟକି ଗଲା । କାନ୍ଧରେ ଟେକି ଦେଲି । ଚାଲିଲା । ଦେଖୁନୁ ଝାଳରେ ଜୁଡୁବୁଡୁ ହୋଇଗଲିଣି । ବଡ ବିଚିତ୍ର କଥା । ବାବା ଶୋଇଛନ୍ତି । ଅଥଚ ରଥ ଟାଣୁଛି । ଗାଁ ଲୋକେ କେତେକ ପୁରୀ ଯାଇଥିଲେ । ଫେରି କହିଲେ, ହଁ, ହଁ ଦେଖିଛୁ । ବାବା ରଥ ଟାଣୁଥିଲା ।

କୋଟସମଲାଇ ନିକଟରେ ବାଘପାଲି ଆଶ୍ରମ । ସିଦ୍ଧଯୋଗୀ, ଚନ୍ଦ୍ରମଣି ଦାସଙ୍କ ଆଶ୍ରମ । ଥରେ ସେ 'ସୁଧାସାର ଗୀତା' ଲେଖିସାରି ତାକୁ ପ୍ରଥମେ ଜଗନ୍ନାଥଙ୍କୁ ସମର୍ପଣ କରିବା ପାଇଁ ପୁରୀ ଚାଲିଲେ । ପୁରୀରେ ପଣ୍ଡାମାନେ ତାଚ୍ଛଲ୍ୟ କଲେ । ସୁଧାର ପୁଣି କି ସାର ହୋ? ଥଟ୍ଟା ପରିହାସ କଲେ ସିନା, ହେଲେ ରାଜି ହୋଇଗଲେ । ଥାଳିରେ ତାଳପତ୍ର ଖେଦା ଥୁଆହେଲା । କବାଟ ପଡିଲା । କବାଟ ଫିଟିଲା ପରେ ଦେଖାଗଲା ଥାଳିରେ ପଞ୍ଚାମୃତରେ ତାଳପତ୍ର ଭାସୁଛି ।

ଏସବୁ ବ୍ୟକ୍ତିଗତ ସ୍ତରରେ ଅଦ୍ଭୁତ, ଆଧ୍ୟାତ୍ମିକ ଅନୁଭବ ସେତେବେଳର ଯେତେବେଳେ ଜି.କେ. ଚେଷ୍ଟରଟନଙ୍କ ଭାଷାରେ ମାଛମାନେ ଉଡୁଥିଲେ, ଜଂଗଲ ଚାଲୁଥିଲା ଆଉ କଣ୍ଟାରେ ଉଦୁମ୍ବର ଫଳୁଥିଲା । କିନ୍ତୁ ସୋନପୁର ଓ ଶ୍ରୀକ୍ଷେତ୍ରର, ମହାଲିଙ୍ଗ ଓ କଳ୍ପବଟର ସଂପର୍କ ଐତିହାସିକ, ରାଜନୈତିକ ଓ ଧାର୍ମିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଥିଲା ।





ଲାଲ ରାୟ ଦେବଙ୍କ ରାଜତ୍ୱ କାଳରେ (୧୬୬୦-୮୦) ଜଗନ୍ନାଥଙ୍କୁ ସୋନପୁର ନିଆଯାଇଥିବା ଲୋକମୁଖରୁ ଶୁଣାଯାଏ । କିଭଳି ଓ କାହିଁକି ଏ ଭାରୀ ଦାରୁଦେବତାଙ୍କୁ ଏଭଳି ଏକ ଆଭ୍ୟନ୍ତରୀଣ ଅଂଚଳକୁ ନିଆଯାଇଥିଲା? ଏ ସମୟ ମୋଗଲ ଯୁଗର ସମୟ । ବୋଧହୁଏ ଆକ୍ରମଣକାରୀ ପାଇଁ ଭୌଗୋଳିକ ଦୃଷ୍ଟିରୁ ଏ ଅଂଚଳ ଦୁର୍ଗମ ଥିଲା । ଅଥବା ସାମରିକ ନିରାପତ୍ତା ଦୃଷ୍ଟିରୁ ସୋନପୁର ଅପେକ୍ଷାକୃତ ନିର୍ଭରଯୋଗ୍ୟ ଥିଲା । ତ୍ରିମୂର୍ତ୍ତିଙ୍କୁ ଖୋର୍ଦ୍ଧା-ନୟାଗଡ-ଦଶପଲ୍ଲା-ବଉଦ-ସୋନପୁର ରାସ୍ତାରେ ୨୯୦ କି:ମି: ଦୂରତ୍ୱ ଅତିକ୍ରମ କରି ନିଆଯାଇଥିଲା କିମ୍ବା ଭାର୍ଗବୀରୁ ମହାନଦୀ ଦେଇ ଜଳପଥରେ ଡଙ୍ଗାରେ ନିଆଯାଇଥିଲ, ଗଜପତି ଥିଲେ କହିଥାନ୍ତେ ।

କୋଟସମଲାଇ ନିକଟରେ ପିପଲ୍‌କଟା ଗ୍ରାମ । ଏଇଠି ଜଗନ୍ନାଥଙ୍କ ବିଷୟରେ ଏକ ଅଦ୍ଭୁତ କିମ୍ବଦନ୍ତୀ ଅଛି । ଏଇଠି ଏକ ମୁଣ୍ଡିଆ ଉପରେ ବିଶ୍ୱକର୍ମା କୁଆଡେ ଜଗନ୍ନାଥଙ୍କ ପାଇଁ ଏକ ମନ୍ଦିର ତୋଳୁଥିଲେ । ରାତି ଭିତରେ ଦେଉଳ ତୋଳା ସରିବା କଥା । କିନ୍ତୁ ବିଶ୍ୱକର୍ମାଙ୍କ ଆଦେଶ ଢିଙ୍କି ଆବାଜ୍ ଶୁଣାଯିବ ନାହିଁ । ତାହା ହୋଇ ପାରିଲା ନାହିଁ । ବୁଢୀଟିଏ ପାହାନ୍ତା ପହରରେ ଢିଙ୍କି କୁଟିବା ଆରମ୍ଭ କରିଦେଲା । ଢିକିଡି ଦୁମ୍, ଢିକିଡି ଦୁମ୍ । ମନ୍ଦିର ଅସଂପୂର୍ଣ୍ଣ ରହିଲା । ଆଉ ମୂର୍ତ୍ତି ପୁରୀକୁ ଚାଲିଗଲେ । ଏ କାହାଣୀ ପଛରେ ଜଗନ୍ନାଥଙ୍କ ପ୍ରଥମ ପୀଠର ଅବତାରଣା କରାଯାଇନି ତ?

ମହାନଦୀ କୂଳରେ କଣ୍ଟିଲୋ । ଏଇଠି କୁଆଡେ ବିଶ୍ୱାବସୁ ଶବର ଏକ ପାହାଡ ଖୋଲରେ ନୀଳମାଧବଙ୍କୁ ଗୋପନୀୟ ଭାବରେ ପୂଜା କରୁଥିଲା । ସ୍ୱପ୍ନରେ ମାଳବରାଜା ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥଙ୍କୁ ଦର୍ଶନ କରି ମନ୍ତ୍ରୀ ବିଦ୍ୟାପତିଙ୍କୁ ପଠାଇଲେ । ବିଦ୍ୟାପତି ସେ ସ୍ଥାନଟିକୁ ଠଉରାଇବା ପାଇଁ ବିଶ୍ୱାବସୁର ଦୁହିତା ଲଳିତାକୁ ବାହାହୋଇ ନୀଳମାଧବଙ୍କୁ ଠାବ କଲେ । ଆଉ ଇନ୍ଦ୍ରଦ୍ୟୁମ୍ନ ସେଇ ପ୍ରତିମାଙ୍କୁ ନେଇ ପୁରୀରେ ସ୍ଥାପନ କଲେ ।

ଦକ୍ଷିଣ ଓଡିଶାରେ କେତେକ ଶବରବହୁଳ ଅଞ୍ଚଳରେ ଜଗନ୍ନାଥଙ୍କ ଆଦିପୀଠକୁ ନେଇ ଥୋଇଲାବେଳେ, ଆଉ କେତେକ ତାକୁ ମଧ୍ୟପ୍ରଦେଶର ମହାନଦୀ କୂଳ ଶବରୀ ନାରାୟଣରେ ଖୋଜନ୍ତି । ଏହି ଶବରୀ ନାରାୟଣ ଅଞ୍ଚଳକୁ ଯଯାତି ଦ୍ୱିତୀୟଙ୍କ ପୂର୍ବ ପୁରୁଷ ଆସି ସୁବର୍ଣ୍ଣପୁର (ସୋନପୁର)ରେ ରାଜଧାନୀ ସ୍ଥାପନ କରିଥିଲେ । ପରେ ସେମାନେ ପୂର୍ବ ଓଡିଶା ଅଧିକାର କଲେ । କଥା ହେଲା ଏହି ଶବରୀ ନାରାୟଣ ଅଂଚଳରେ ମଧ୍ୟ ବିଶ୍ୱାବସୁର କାହାଣୀ ଶୁଣାଯାଏ । ଶବରୀ ନାରାୟଣଙ୍କୁ କେତେକ ସୌରୀନାରାୟଣ ବା ସୂର୍ଯ୍ୟଦେବ କହିଲାବେଳେ ଆଉ କେତେକ କହନ୍ତି ସେ ଶବର ଦେବତା । ବିଶ୍ୱାବସୁ କାହାଣୀ ମହାନଦୀ ଦେଇ ଶବରୀ ନାରାୟଣରୁ କଣ୍ଟିଲୋ ପର୍ଯ୍ୟନ୍ତ ଭାସି ଭାସି ଆସି ନାହିଁ ତ? ଏଥିରୁ କ'ଣ ସୂଚିତ ହୁଏନି ଯେ, ଜଗନ୍ନାଥ ତତ୍ତ୍ୱର ଅନ୍ତର୍ଭିଶାଳ ଏହି ବିଳାସପୁର-ସମ୍ବଲପୁର-ସୋନପୁର ଅଂଚଳରେ କେଉଁଠି ଥିଲା?

କୋଟସମଲାଇ ଗ୍ରାମବାସୀ କୁହନ୍ତି, ଜଗନ୍ନାଥଙ୍କୁ ସର୍ବ ପ୍ରଥମେ ତ୍ରିକୂଟ ପର୍ବତ ଗୁମ୍ଫାରେ ପୂଜା କରାଯାଉଥିଲା । କୁହନ୍ତି - ଏ ଦାରୁଦେବତାଙ୍କୁ କୁଆଡେ କାହିଁ ଉପରେ ଗୁମ୍ଫା ଭିତରେ ରଖାଯାଇଥିଲା । କାହିଁ ପାହାଡ ଶିଖରେ, ଯାଇ ହେବନାହିଁ, ଗୋଡ ଖସିଯିବ, ତେବେ ଏତେ ଉପରକୁ ଜଗନ୍ନାଥଙ୍କ ଭାରୀ ବିଗ୍ରହକୁ ଟେକି ନେଇ ହେଲା କିମିତି? କ'ଣ ପାହାଡ ଶିଖର ସେତେବେଳେ ସୁଗମ ଥିଲା? ପରବର୍ତ୍ତୀ ସମୟରେ ଭୂମି ସ୍ଖଳନ ବା ମୃତ୍ତିକା କ୍ଷୟ ହୋଇ ଏତେ ଅସ୍ୱାଭାବିକ ଭାବରେ ଅପ୍ରବେଶ୍ୟ ହୋଇଗଲା? ଶିକୁଳଟା ଧରି ଚନ୍ଦ୍ରକୁ ଚଢିଲା ଭଳି । ଅଥବା ଆଉ କେଉଁ ଗୁମ୍ଫାରେ ଜଗନ୍ନାଥଙ୍କୁ ରଖାଯାଇଥିଲା?

ଓଡିଶାରେ ସୋମବଂଶୀମାନଙ୍କ ଆଗମନର ବହୁ ପୂର୍ବରୁ ଜଗନ୍ନାଥ ପୂଜା ପ୍ରଚଳିତ ଥିଲା । ପ୍ରାୟ ଅଷ୍ଟମ ଶତାବ୍ଦୀ ଆଡକୁ 'ଓଡିଶାରେ ବୌଦ୍ଧଧର୍ମ'ର ସ୍ୱନାମଧନ୍ୟ ଲେଖକ ଡଃ ନବୀନ କୁମାର ସାହୁଙ୍କମତରେ ସମ୍ବଳ (ସମ୍ବଲପୁର)ର ରାଜା, ବଜ୍ରଯାନ ବୌଦ୍ଧଧର୍ମର ପ୍ରବର୍ତ୍ତକ ଇନ୍ଦ୍ରଭୂତି ସର୍ବପ୍ରଥମେ ତାଙ୍କ ଗ୍ରନ୍ଥ ଜ୍ଞାନସିଦ୍ଧିରେ ଜଗନ୍ନାଥଙ୍କୁ ସମ୍ବୋଧନ କରିଛନ୍ତି- ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜୀନବରାର୍ଚ୍ଚିତମ୍ ।

ଗଜପତିଙ୍କୁ ଠାକୁର ରାଜା କୁହାଯାଏ । ସେ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା । ଗଜପତିଙ୍କ ପ୍ରତି ଓଡିଶାରେ ବହୁତ ଭକ୍ତି । ଆଉ ଗଜପତିଙ୍କ ଇତିହାସ ଜଗନ୍ନାଥଙ୍କ ଇତିହାସ । ଥରେ କୁଆଡେ ଅନଙ୍ଗଭୀମ ଦେବ ତୃତୀୟଙ୍କୁ ଏକ ଦୁରାରୋଗ୍ୟ ବ୍ୟାଧି ହେଲା । ରାଜଯକ୍ଷ୍ମା ଅଥବା କୁଷ୍ଠ ରୋଗ । କିମ୍ବା ଗଜପତି ବ୍ରହ୍ମହତ୍ୟା ଦୋଷରେ ଲିପ୍ତ ହେଲେ । ଏଥିରୁ ରକ୍ଷା ପାଇଁ ଜଗନ୍ନାଥଙ୍କୁ ଡାକିଲେ । ଜଗନ୍ନାଥ ସ୍ୱପ୍ନରେ ଆଦେଶ ଦେଲେ, ରାଜନ୍ ! ମହାନଦୀର ଦକ୍ଷିଣ ତୀରରେ ଯୋଜନିକା ଶିବ ମନ୍ଦିର ତୋଳି ତୋଳି ଯାଅ । ରାଜା ତାହା ହିଁ କଲେ । ସୋନପୁର ନିକଟ ବିନିକାରେ ଏ ତୀର୍ଥଯାତ୍ରା ସମାପ୍ତ ହେଲା । ଏକ ସୂର୍ଯ୍ୟୋପରାଗ ଦିବସରେ ଗଜପତି ମହାନଦୀରେ ବୁଡ ପକାଇଲେ । ପାପମୁକ୍ତ ହେଲେ । ଗାଁ ଟିଏ ବସାଇଲେ, ସେଦିନଠୁ ଘାଟଟି 'ପାପକ୍ଷୟ' ନାମରେ ପ୍ରଚାରିତ ହେଲା । ଗ୍ରହଣ ଦିନ ଏଠି ହଜାର ହଜାର ଲୋକ ବୁଡ ପକାନ୍ତି । ଏ ଘଟଣାର ସ୍ମୃତି ଚାରଣ କରି ଦାମୋଦର ମିଶ୍ର ସ୍ୱର୍ଣ୍ଣପୁର ଗୁଣାଦର୍ଶଃରେ ଲେଖିଛନ୍ତି:

ପ୍ରାସୀଦ୍ ସ୍ରୀମଦନଙ୍ଗଦେବ ନୃପତିଃ ଶ୍ରୀଗଂଗବୀଂଶୋଭବଃ
ଗୌଡେଶଃ ପୁରୁଷୋତ୍ତମେ ଜନୁରଭୂତ୍ ଶ୍ରୀରୁତ୍କଳାଖଣ୍ଡଳଃ ।
ସୋ[illegible]ଂ ଦୁଷ୍ଟଗଦ ପ୍ରପୀଡିତତୟା ଗନ୍ତୁଂ ନ ଶକ୍ତସ୍ତତଃ
ରୋଗାକ୍ରାନ୍ତ ବଭୁବ ବାଣୀମପରାଂ ଶ୍ରୁତ୍ୱା ଶରୀରଂ ପୁନଃ ।





ଚିତ୍ରୋତ୍ପଳା ପୟସି ପୁଣ୍ୟମୟେ ବିଗାହ୍ୟ
ଶ୍ରୀଗଂଗବଂଶ ପ୍ରଭବୋ ନରପାଳ ମୌଳିଃ ।
ପାପକ୍ଷୟାସ୍ପଦି ସୌଖ୍ୟମବାପ ତସ୍ମାତ୍
ପାପକ୍ଷୟଞ୍ଚ ବିବୁଧାଃ ପରିକୀର୍ତ୍ତୟନ୍ତି (ପୃ.୨୮)

ସୁବର୍ଣ୍ଣମେରୁ ମନ୍ଦିର ପରିସରରେ ସନ୍ତେଶ୍ୱର ଶିବ ମନ୍ଦିର ଏକ ଯୋଜନିକା ମନ୍ଦିର । ବାହାର କାନ୍ଥରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଶୀର୍ଣ୍ଣ ପ୍ରତିମୂର୍ତ୍ତି । ପାପକ୍ଷୟ ଘାଟ ନିକଟରେ ଚରଦାର କପିଳେଶ୍ୱର ଶିବ ମନ୍ଦିର ଅନଙ୍ଗଭୀମ ଦେବଙ୍କ କୃତି ଓ କୀର୍ତ୍ତି । ଏ ମନ୍ଦିରର କାରୁକାର୍ଯ୍ୟ କୋଣାର୍କ ସହ ତୁଳନୀୟ ।

ସୁବର୍ଣ୍ଣପୁର ଅଂଚଳ ପାଇଁ ଗଂଗରାଜା ଓ କଳଚୁରୀମାନଙ୍କ ମଧ୍ୟରେ ଶହେ ବର୍ଷ ଯୁଦ୍ଧ ଚାଲିଥିଲା (୧୧୧୪-୧୨୨୦)। ଅନଙ୍ଗଭୀମ ଦେବ ତୃତୀୟ ଶେଷରେ କଳଚୁରୀମାନଙ୍କୁ ପରାସ୍ତ କଲେ । ସ୍ୱର୍ଣ୍ଣମୁଦ୍ରା ତିଆରି କରି ବାଣ୍ଟିଲେ । ଏହି ମୁଦ୍ରାରେ ଅଙ୍କୁଶ ଓ କୁଠାରର ଚିହ୍ନ । ବୃଷଭ ଓ ଅର୍ଦ୍ଧଚନ୍ଦ୍ରର ଚିହ୍ନ । ଲୋକବିଶ୍ୱାସ ଯେ, ସୁବର୍ଣ୍ଣମେରୁଙ୍କ ଆବିର୍ଭାବ ବେଳେ ଅଢେଇ ଦଣ୍ଡ ଧରି ସୋନପୁରରେ ସ୍ୱର୍ଣ୍ଣ ବୃଷ୍ଟି ହୋଇଥିଲା ଆକାଶ ମାର୍ଗରୁ ।

ପାଟଣାର ଚୌହାଣ ରାଜା ବତ୍ସରାଜ ଦେବ (୧୩୮୫-୧୪୧୦) ସୋନପୁର ଗଡରେ ଗଜପତିଙ୍କ ସହିତ ଲଢେଇ କରିଥିଲେ ହେଁ, ପୁରୁଷୋତ୍ତମ ଦେବ (୧୪୬୭-୯୭) ସୋନପୁର ଆକ୍ରମଣ କରିଥିଲେ ହେଁ ସୋନପୁର ସହିତ ଶ୍ରୀକ୍ଷେତ୍ରର ସଂପର୍କ ଅତୁଟ ଥିଲା ।

ଶଙ୍କର ଦେବ ସୁନୁପୁର କଟକର ଗଂଗ ଗଭର୍ଣ୍ଣର ବା 'ପଚ୍ଛିମ ଦେଶାଧିକାରୀ-ସାମନ୍ତ-ପଡିରାୟ-ବିଷୟପତି' ଥିଲେ ଗଂଗ ବଂଶର ଜଣେ ବାସୁଦେବ ସୁନାପୁର (ସୋନପୁର)ରେ ରାଜତ୍ୱ କରିଥିଲେ । ପାଟଣାର ଚୌହାଣ ରାଜା ହୀରାଧର ଦେବ ପୁତ୍ର ବଳରାମ ଦେବଙ୍କ ଅଧିନାୟକତ୍ୱରେ ୩୨,୦୦୦ ପଦାତିକ, ୭୦୦ ଅଶ୍ୱାରୋହୀ ଓ ୩୦ ଜଣ ଗଜାରୋହୀଙ୍କୁ ପଠାଇଥିଲେ ୧୫୬୮ ମସିହାର ମୋଗଲ ଆକ୍ରମଣ ବେଳେ ଗଜପତି ମୁକୁନ୍ଦ ଦେବଙ୍କୁ ସାହାଯ୍ୟ କରିବା ପାଇଁ । ପ୍ରାୟ ଚାରିଶହ ବର୍ଷ ପରେ ଗତ ଶତାବ୍ଦୀର ଶେଷ ଭାଗରେ ସୋନପୁର ରାଜପରିବାରର ସୂର୍ଯ୍ୟମଣି ଦେବୀ ଜଗନ୍ନାଥଙ୍କ ନିରାପତ୍ତା ଭାର ଲିଭାଇଥିଲେ । ଗଜପତି ଦିବ୍ୟସିଂହ ଦେବ ତୃତୀୟ ଯେତେବେଳେ କଳାପାଣିରେ କାଳ କାଟୁଥିଲେ ସେତେବେଳେ ଇଂରେଜ ରାଜତ୍ୱର ଦୁର୍ଦ୍ଦିନରେ ଏ ରାଣୀ ଓଡିଶା ଶାସନ କରିଥିଲେ ।

ଶ୍ରାବଣର ଚକ୍ରବୁଲା ଏକାଦଶୀ ଦିନ ଯେଉଁ ରାମଜୀ ମଠ ଜଗନ୍ନାଥଙ୍କ ପୂଜାପାର୍ବଣ ଭାର ବହନ କରେ, ସେଇ ମଠ ସୋନପୁରର ପ୍ରଥମ ଚୌହାଣ ରାଜା ମଦନ ଗୋପାଳ **(୧୬୪୦-୬୦)**ଙ୍କ ସାନଭାଇ ବଂଶୀ ଗୋପାଳ ତିଆରି କରିଥିଲେ । କେତେ ଜମି ଦରକାର? ପଚାରିଲେ ଗଜପତି । ଆଉ ବଂଶୀଗୋପାଳ ଉତ୍ତର ଦେଲେ, ଲେଙ୍ଗୁଟି ପ୍ରମାଣ । କି କଥା? ଗଜପତି ହସିଲେ । କିନ୍ତୁ ବୁଦ୍ଧିମାନ ବଂଶୀଗୋପାଳ ଯେତେବେଳେ ଲେଙ୍ଗୁଟିର ସୂତାସବୁ ଖୋଲି ଲମ୍ବାଇ ଦେଲେ, ଗଜପତି ବୁଝିଲେ ସେ ଠକିଗଲେ । ମାର୍କଣ୍ଡ ସାହିରୁ ଚୋଡଙ୍ଗ ସାହି ପର୍ଯ୍ୟନ୍ତ ସୂତା ବୁଲିଗଲା ।

ସୋନପୁର ରାଜା ପୃଥ୍ୱୀ ସିଂହ (୧୭୮୬-୧୮୪୧) ଜଗନ୍ନାଥ ମନ୍ଦିର ପରିସରରେ ଏକ ରାମସୀତା ମନ୍ଦିର ଓ ରାମଜୀ ମଠ ଭିତରେ ଏକ ରାଧାକୃଷ୍ଣ ମନ୍ଦିର ତୋଳାଇଥିଲେ । ସୋନପୁର ରାଜା ବାଘପାଲି, ଅମୁର୍ତ୍ତା ଓ ବିଦୁରପାଲି ଯଥାକ୍ରମେ ଜଗନ୍ନାଥ ବଲ୍ଲଭ ମଠ, ରାମଜୀ ମଠ ଓ ଜଗନ୍ନାଥ ମନ୍ଦିରକୁ ଦାନ କରିଥିଲେ । ଜଗମୋହନର ଚିତ୍ରିତ ଛାତ ତଳେ ବହୁଦିନ ଧରି ଏକ ବିରାଟ ଆଲୋକଝାଡ଼ ଝୁଲୁଥିବା ଲୋକ ଦେଖିଛନ୍ତି । ଏହା ସୋନପୁର ମହାରାଣୀ ପାର୍ବତୀ ଦେବୀଙ୍କ ଏକ ମହାର୍ଘ ଅବଦାନ । ଏକମାତ୍ର ପୁତ୍ର ରଘୁନାଥର ବିୟୋଗ ପରେ ମର୍ମାହତ ପୃଥ୍ୱୀ ସିଂହ ଜଗନ୍ନାଥଙ୍କ ପାଦତଳେ ତାଙ୍କ ଶିରସ୍ତ୍ରାଣ ଏବଂ ପାଟଖଣ୍ଡା ସମର୍ପଣ କରିଦେଲେ । ପୁଅଟିଏ ପାଇଁ ନେହୁରା ହେଲେ । ଆଉ ସୋନପୁରରୁ ପୁରୀ କିମ୍ବା ପୁରୀରୁ ସୋନପୁର ଜଗନ୍ନାଥଙ୍କ ଯାତ୍ରା ଆୟାସସାଧ୍ୟ ହୋଇଥିବ ସିନା ଆକସ୍ମିକ ହୋଇନଥିବ । କାରଣ ସୋନପୁର ଓ ଶ୍ରୀକ୍ଷେତ୍ର-ଏଇ ଦୁଇ ଦୂର ପଡୋଶୀଙ୍କ ମଧ୍ୟରେ ଏକ ଆଧ୍ୟାତ୍ମିକ ବନ୍ଧନ ଥିଲା । ସେଇ ଅରଣ୍ୟବେଷ୍ଟିତ ପଶ୍ଚିମ ଓଡିଶାରେ ଯେଉଁ ରାଜାମାନେ ରାଜତ୍ୱ କରୁଥିଲେ ସେମାନେ ପୁଣି ଏ ଉପକୂଳବର୍ତ୍ତୀ ଓଡିଶାରେ ଗଢିଥିଲେ ଲିଙ୍ଗରାଜ ମନ୍ଦିର, ରାଜାରାଣୀ ମନ୍ଦିର, ଜଗନ୍ନାଥ ମନ୍ଦିର । ଜଗନ୍ନାଥଙ୍କୁ ଆଧାର କରି, ତାଙ୍କ ଡୋରି ଧରି ସେମାନେ ଓଡିଶାର ଏ ଉଭୟ ଅଂଶକୁ ଏକାଠି ଧରି ରଖିଥିଲେ । ପୁରୀ ଶାସନରୁ ଯେଉଁ ବ୍ରାହ୍ମଣମାନେ ସେଇ ଅଂଚଳକୁ ଯାଇ ବସବାସ କଲେ, ସେମାନେ ଯେ କେବଳ ଆର୍ଯ୍ୟେତର ଜାତିକୁ ସଭ୍ୟତାର ସ୍ପର୍ଶ ଦେଇଥିଲେ ତା ନୁହେଁ, ସେମାନେ କାଳଜୟୀ ସାହିତ୍ୟ ବି ସୃଷ୍ଟି କରିଥିଲେ ।

ସୋନପୁର ଜିଲ୍ଲାରେ ଅନେକ ଜଗନ୍ନାଥ ମନ୍ଦିର । କିନ୍ତୁ ପ୍ରଧାନ ଜଗନ୍ନାଥ ଗୁଡ଼ୀଟି ସୋନପୁର ସହରରେ । ରାଜବାଟୀକୁ ଲାଗି । ଦୁଇଟି ଗରୁଡ ସ୍ତମ୍ଭ ଓ ଚାରୋଟି ଦ୍ୱାର ବିଶିଷ୍ଟ ଏ ଗୁଡ଼ୀ ପୁରୀ ମନ୍ଦିରର ଅନୁକରଣରେ ରାଜସିଂହଙ୍କ ଦ୍ୱାରା ନିର୍ମିତ ହୋଇଥିଲା । କିନ୍ତୁ ଏ ଜିଲ୍ଲାର ଯେ କୌଣସି ବଡ ଗାଁରେ ନିଶ୍ଚୟ ଜଗନ୍ନାଥ ଗୁଡ଼ିଟିଏ ଥିବ । କୋଟସମଲାଇ, ସୁବଳୟା, ଜାଲୋଏ, ବାଘବର, ଲଖନି, ମୃଷୁଣ୍ଡି, ବିଦୁରପାଲି, ପିତାମହୁଲ, ପାଲିଗାଁ, ବିନିକା, ମେଣ୍ଢା, ରାମପୁର, କର୍ତ୍ତଙ୍ଗ ସବୁଠି । ଆୟତନ ଅନୁସାରେ ସୋନପୁରରେ ଏତେଗୁଡିଏ ଜଗନ୍ନାଥ ଗୁଡ଼ୀ ବାସ୍ତବିକ ବିସ୍ମୟକର । ଏସବୁ ପାଇଁ କ'ଣ ସୋନପୁର ଜଗନ୍ନାଥଙ୍କ ଆଶ୍ରୟସ୍ଥଳ ରୂପରେ ବିବେଚିତ ହୋଇଥିଲା?

ସବୁ ପଥ ଜଗନ୍ନାଥଙ୍କଠି ପଡିଛି । ଜୈନଙ୍କ ଦୃଷ୍ଟିରେ ସେ ମହାଜୀନ, ବୌଦ୍ଧଙ୍କ ଆଖିରେ ସେ ବୁଦ୍ଧ, ତାଙ୍କ ନାଭିରେ ବୁଦ୍ଧଦନ୍ତ,





ବୈଷ୍ଣବଙ୍କ ଦୃଷ୍ଟିରେ ଜଗନ୍ନାଥ କୃଷ୍ଣ । ବଳଭଦ୍ର ବଳରାମ ଆଉ ସୁଭଦ୍ରା ତାଙ୍କ ଭଉଣୀ । ଏଇଠି ଶଙ୍କର, ରାମାନୁଜ, ଚୈତନ୍ୟ, ତୁଳସୀ ଦାସ, ତୁକାରାମ, ନାନକ ଆଦି ବିଭିନ୍ନ ସମ୍ପ୍ରଦାୟର ସନ୍ୟାସୀମାନେ ନୈବେଦ୍ୟ ବାଢ଼ିଛନ୍ତି । ଏହି ଜଗନ୍ନାଥଙ୍କ ପାଇଁ ଜୟଦେବଙ୍କ ଗୀତଗୋବିନ୍ଦ ଗାନ ମଧ୍ୟ ଜଗନ୍ନାଥ ମନ୍ଦିରରେ ଦ୍ୱାଦଶ ଶତାବ୍ଦୀରେ ଆରମ୍ଭ ହେଲା ।

ଶ୍ରୀକ୍ଷେତ୍ର ଭଳି ସୋନପୁର ମଧ୍ୟ ସର୍ବଧର୍ମ ସମନ୍ୱୟର କ୍ଷେତ୍ର । ଏଇଠି ଅଷ୍ଟ ବିଷ୍ଣୁ, ଅଷ୍ଟ ଶମ୍ଭୁ, ଅଷ୍ଟ ଚଣ୍ଡୀ ଅଛନ୍ତି । ଏଇଠି ସୁବର୍ଣ୍ଣମେରୁ ଓ ରାମେଶ୍ୱର ଶିବ ମନ୍ଦିରର ପ୍ରବେଶ ପଥରେ ଅନନ୍ତଶାୟୀ ବିଷ୍ଣୁ । ଏଠାକାର ରାଜା ଯଯାତି ଦ୍ୱିତୀୟ ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ତୋଳି ଦେଉଳ ଶୀର୍ଷରେ ତ୍ରିଶୂଳ ସାଥିରେ ଚକ୍ରଟିଏ ଥୋଇଗଲେ । ହାତଯୋଡ଼ି କହିଲେ: ହରିହରାୟ ନମଃ । ଏଇଠି ଯେଉଁ ଚୌହାଣ ରାଜାମାନେ ବୈଷ୍ଣବ ମନ୍ତ୍ରରେ ଦୀକ୍ଷିତ ହୁଅନ୍ତି, ଚକ୍ର ତାଙ୍କ ରାଜକୀୟ ଚିହ୍ନ ସାଜେ । ଶିବ ଓ ଦୁର୍ଗା ତାଙ୍କ ଇଷ୍ଟ ଦେବତା ସାଜନ୍ତି । ଏଇଠି ଯଯାତି ପରମ ମାହେଶ୍ୱର ଆଉ ତାଙ୍କ ଭଉଣୀ ପୃଥ୍ୱୀ ମହାଦେବୀ ପରମବୈଷ୍ଣବୀ ସାଜନ୍ତି ।

ଜଗନ୍ନାଥ ତତ୍ତ୍ୱର ଉଦ୍‌ଭବ ଏବେ ବି ରହସ୍ୟାବୃତ । ଜଗନ୍ନାଥଙ୍କୁ ସୋନପୁରରୁ ନିଆଯାଇ ହୁଏତ ପୁରୀରେ ପ୍ରତିଷ୍ଠା କରାଯାଇ ଥାଇପାରେ । କିନ୍ତୁ ଏ ବିଷୟରେ ନିର୍ଦ୍ଦିଷ୍ଟ ଭାବରେ କିଛି କୁହାଯାଇ ପାରିବ ନାହିଁ । ଗବେଷଣା ସରିନି । କିନ୍ତୁ ଜଗନ୍ନାଥଙ୍କ ଭଳି ସୋନପୁର ଯେ ସର୍ବଧର୍ମର ମହାମିଳନ ପୀଠ ଥିଲା, ଏହା ଅବସମ୍ବାଦିତ । ଏଠିକାର ଚରଦା ଓ ବୈଦ୍ୟନାଥ ମନ୍ଦିରର ମହେଶ୍ୱର, ନିଶାପାର୍ବତୀ, ହରିହର, ଗଣେଶ, ଅନନ୍ତବିଷ୍ଣୁ, କାର୍ତ୍ତିକେୟ ଓ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିରେ ଶୈବଧର୍ମ ଓ ବୈଷ୍ଣବ ଧର୍ମର ମିଳନ ଘଟିଛି । ଏଇଠି ଚୈତ୍ରକୃଷ୍ଣ ପ୍ରତିପଦା ଦିନ ଦୋଳଟିକରାରେ ଅଷ୍ଟ କୃଷ୍ଣ ଓ ଅଷ୍ଟ ଶମ୍ଭୁଙ୍କ ଭେଟ୍‌ଘାଟ୍ ହୁଏ । ହରି ହରଙ୍କ ମିଳନ ହୁଏ । ଏହି ହରିହର ମିଳନ ବଲାଙ୍ଗିର ହରିଶଙ୍କର ଓ ବଉଦର ଗନ୍ଧରାଡ଼ିରେ ହୋଇଛି । ମହାନଦୀ ଦେଇ କଣ୍ଟିଲୋ ଓ ପଦ୍ମାବତୀରେ ପୁଣି ଏ ସଂଯୋଗ ସଂଭବ ହୋଇଛି । ଯେଉଁ ଜଗନ୍ନାଥ ତତ୍ତ୍ୱରେ ଜୈନ ଧର୍ମ, ବୌଦ୍ଧ ଧର୍ମ, ଶାକ୍ତ ଧର୍ମ, ଶୈବ ଧର୍ମ ଓ ବୈଷ୍ଣବ ଧର୍ମ ସବୁ ଏକାକାର ହୋଇଯାଇଛନ୍ତି, ସେଇ ଧର୍ମ ହୁଏତ ସୋନପୁରରୁ ଉଦ୍‌ଭବ ହୋଇ ପୁରୀର ପୁରୁଷୋତ୍ତମ ତତ୍ତ୍ୱ ସହ ସାମିଲ୍ ହୋଇଯାଇଛି ।

ଅଧ୍ୟକ୍ଷ
ଓଡିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

# ସେତ ମୋର ପରମାର୍ଥ

ପଣ୍ଡିତ ଜଗନ୍ନାଥ ଶତପଥୀ

କୋଟି ହୃଦୟର ନୟନାଭିରାମ
ଜୟ ଜଗନ୍ନାଥ ସ୍ୱାମୀ
ଧନଜନ କିଛି ମାଗୁନାହିଁ ପ୍ରଭୋ
ତୁମେତ ଅନ୍ତରଯାମୀ,
ମହୋଦଧି-ତଟେ ଯୁଗ ଯୁଗ ଧରି
ବିରାଜୁଛ ଦାରୁବ୍ରହ୍ମ,
ଲୀଳାମୟ ରୂପେ ପୂଜା ପାଉଅଛ
ମର୍ତ୍ତ୍ୟେ ଶ୍ରୀପୁରୁଷୋତ୍ତମ ।
ପତିତତାରଣେ ବରଷକେ ଥରେ
ଓହ୍ଲାଅ ବଡ଼ଦାଣ୍ଡରେ,
ଭକ୍ତ ଭଗବାନ ଏକାକାର ହୋଇ
ମିଶିଯାଅ ଶ୍ରୀକ୍ଷେତ୍ରରେ ।
ଇନ୍ଦ୍ର ନୀଳମଣି ଜିଣି ତୁମ ଶୋଭା
କିଏ ହେବ ତୁମ ସରି,
କୋଟି ଜନତାର ହୃଦୟ ବଲ୍ଲଭ
ନୀଳକନ୍ଦର ବିହାରୀ ।
ବଡ଼ଦାଣ୍ଡେ ଚାଲେ ଘର୍ଘର ନାଦେ
ଆଗପଛ ତିନିରଥ,
ଭକ୍ତ କଣ୍ଠରୁ ଝରି ପଡୁଥାଏ
ଜୟ ଜୟ ଜଗନ୍ନାଥ ।

ହେ ଜଗନ୍ନିବାସ, ତୁମ ନନ୍ଦିଘୋଷ
ପ୍ରଗତିର ବାର୍ତ୍ତାବହ
ଶାନ୍ତି ମୈତ୍ରୀ ମୁକ୍ତି ସଂହତି
ଘୋଷୁଅଛି ଅହରହ ।
ରତ୍ନସିଂହାସନୁ ଧାଇଁ ଆସ ତୁମେ
ପତିତ ତାରିବା ପାଇଁ,
ବିଶ୍ୱଜନତା ହୋଇଯାଏ ସ୍ତବ୍ଧ,
ଏପରି ଦେବତା କାହିଁ ?
ବଡ଼ଦାଣ୍ଡେ ଖାଲି ମୁଣ୍ଡ ମାଳମାଳ
ନୀଳ ଊର୍ମିଳ ଶୋଭା,
ଘଣ୍ଟ ଘଣ୍ଟା ନୃତ୍ୟ କାହାଳୀ ଧ୍ୱନିରେ
ତିନିରଥ ମନଲୋଭା ।
କଞ୍ଜ ଚରଣରେ ଜଣାଏ ପ୍ରଣତି
ଆହେ ଅନାଥର ନାଥ,
ଅଶରଣ ଜନେ ବରଷୁ କରୁଣା
'ସେତ ମୋର ପରମାର୍ଥ' ।

ଚନ୍ଦ୍ରାଳୟ
ସେଲ୍‌ଟର ଛକ, କଟକ-୮





# ତୁ ବଡ଼ ଦୟାବନ୍ତ ହରି

ରାଧାନାଥ ଦାସ

ନିଜ ବାରିପଟେ ଲଗେଇଥିବା ନଡ଼ିଆଗଛ ମୂଳେ ପାଣି ଦଉ ଦଉ କେତେ କ'ଣ ଭାବି ଯାଉଥିଲା ଦନେଇ । ଶ୍ରମ ତା'ର ସାର୍ଥକ ହେଇଛି । ଲଗେଇ ଥିବା ନଡ଼ିଆ ଗଛରେ ଏଥର ପହିଲି ଫଳ ଧରିଛି । ପଇଡ଼ଗୁଡ଼ାକ ବି ପାକଳ ହେଇଗଲାଣି । କି ଲୋଭନୀୟ ହେଇଛି ସେ ପଇଡ଼ କାନ୍ଧିଟିମାନ । ଦାନାଗୁଡ଼ାକ ଯେମିତି ବଡ଼ ବଡ଼, କାନ୍ଧିଗୁଡ଼ାକ ବି ସେମିତି ଦେଖିଲା ଭଳି । ଶତ୍ରୁଟିଏ ହେଲେ ବି ଘଡ଼ିଏ ଚାହିଁ ରହିବ ସେ ଫଳନ୍ତି ନଡ଼ିଆ ଗଛଟାକୁ । ଦନେଇର ଖୁସି କହିଲେ ନ ସରେ ।

ଯେଉଁ ଦିନଠୁଁ ଦନେଇ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଦାସିଆବାଉରୀଙ୍କ ଚରିତ ଜଣେ ସାଧୁଙ୍କଠାରୁ ଶୁଣି ଦେଇଛି, ସେଇ ଦିନଠୁଁ ଶ୍ରୀଜଗନ୍ନାଥଙ୍କ ଭକ୍ତି-ସାଗରରେ ନିଜକୁ ବୁଡେଇ ଦେଇ ମହାପ୍ରଭୁଙ୍କୁ ଶ୍ରୀଫଳ ସମର୍ପଣ କରିବାର ସ୍ୱପ୍ନ ଦେଖି, ତା' ବାଡ଼ିରେ ଲଗେଇ ଦେଇଛି ନଡ଼ିଆ ଗଛଟିଏ । ମନ-ମହୋଦଧି ତା'ର ଉଦ୍‌ବେଳିତ ହୋଇ ଉଠିଛି । ଏଇ ସନ ପୁରୁଷୋତ୍ତମ ଯାଇ ରଥାରୂଢ଼ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଦର୍ଶନ କରି ସେ ତା'ର ବାରି ନଡ଼ିଆକୁ ବଡ଼ଦାଣ୍ଡରେ ସମର୍ପଣ କରିବ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ । ମନେ ମନେ ଚିନ୍ତା କରୁଥାଏ ଦନେଇ ଶ୍ରୀଗୁଣ୍ଡିଚା ଆଉ କେତେ ଦିନ ରହିଲା ବୋଲି ।

ଖରାଦିନିଆ ଉଦୁଉଦିଆ ଦି'ପ୍ରହର । ସେଇ ନଡ଼ିଆ ଗଛ ମୂଳେ ମୁଣ୍ଡରେ ଠେକୋଟିଏ ଭିଡ଼ି ଦେଇ ବସି ରହିଥାଏ ଦନେଇ ଛାଇ ଜାଗାଟିଏ ଦେଖି । ମନରେ ତା'ର ଉଙ୍କି ମାରୁଥାଏ ଅସରନ୍ତି ପ୍ରଶ୍ନ । ସନ୍ଦେହର ଅଡୁଆ ସୂତାରେ ଛନ୍ଦି ହେଇଯାଇ ଭାବୁଥାଏ ସତରେ କ'ଣ ଭାବବିନୋଦିଆ ଠାକୁରେ ତା' ବାରି ନଡ଼ିଆକୁ ଗ୍ରହଣ କରି ଭକ୍ତମାନଙ୍କ ତାଲିକାରେ ତା' ନାଆଁକୁ ଯୋଡ଼ି ଦେବେ ? ସିଏ ତ ସେମିତି କିଛି ଭଗବାନଙ୍କୁ ଟାଣୁଆ ବର ମାଗିବାକୁ ଯାଉନି । ସେ କେବଳ ଚାହିଁଛି ଭକ୍ତି ଓ ଶ୍ରଦ୍ଧାରେ ମହାପ୍ରଭୁଙ୍କୁ ପରିଶ୍ରମ କରି ଲଗେଇଥିବା ତା' ବାରି ନଡ଼ିଆରୁ କେତୋଟି ସମର୍ପଣ କରିବ ବୋଲି । ତେଣିକି ମହାପ୍ରଭୁଙ୍କର ଇଚ୍ଛା ।

ଏଇକଥା ଚିନ୍ତା କରୁ କରୁ ଦନେଇର ସ୍ତ୍ରୀ କେତେବେଳୁ ଆସି ଦନେଇ ପାଖେ ଠିଆ ହେଲାଣି, ଏକଥା ଦନେଇକି ମୋଟେ



ଜଣାନଥିଲା । ଦୁଃଖଭରା କଣ୍ଠରେ କହି ଉଠିଲା ଦନେଇ ସ୍ତ୍ରୀ - 'କୁଆଡ଼େ କିଛି କାମଧନ୍ଦା ନକରି କେବଳ ନଡ଼ିଆ ଗଛ ମୂଳେ ବସି ରହିଲେ ଭଗବାନ କେବେ ବି ସୁଦ୍ଧା ଆମ ପାଖରେ ଭାତଥାଳି ଆଣି ଥୋଇ ଦେବେନି । ତମକୁ ଖଟିବାକୁ ପଡ଼ିବ । ତମେ କିଛି କାମଧନ୍ଦା ନକରି ଘରେ ବସି ରହିବ ଆଉ ମୁଁ ଏ ରୋଗଣା ଅବସ୍ଥାରେ ପର ଘରେ ଯାଇ କେତେ ଖଟିବି କହିଲ ? ଏ ପର୍ଯ୍ୟନ୍ତ ଚାଳିଆ ଖଣ୍ଡକ ଛପର ହେଇ ପାରିଲାନି । ବରଷାରେ ସେ କୁଡ଼ିଆ ଖଣ୍ଡକ ଭୁଶୁଡ଼େଇବ ନାଁ କ'ଣ ?'

ସ୍ତ୍ରୀର କଥା ଶୁଣି ଚମକି ପଡ଼ିଲା ଦନେଇ । ସ୍ତ୍ରୀର ଟାଣ କଥାଗୁଡ଼ାକ ତା' ଦେହରେ ଛୁଞ୍ଚ ଫୋଡ଼ିଲା ପରି ଫୋଡ଼ି ହେଇ ଯାଉଥିଲା । ଧୀର ଗଳାରେ କହି ଉଠିଲା ଦନେଇ - 'ମହାପ୍ରଭୁଙ୍କୁ ଭରସା କରିଚେ । ସିଏ କ'ଣ ଆମ ଦୁଃଖ ବୁଝିବେନି ? ତାଙ୍କ ଉପରେ ମୋର ସଂପୂର୍ଣ୍ଣ ଭରସା ରହିଛି । ସଖା ସୁଦାମାଙ୍କର ଖୁଦଭଜା ମୁଠାକରେ





ମହାପ୍ରଭୁ ଯଦି ସନ୍ତୁଷ୍ଟ ହୋଇ ତାଙ୍କୁ ସକଳ ଐଶ୍ୱର୍ଯ୍ୟ ପ୍ରଦାନ କରିପାରନ୍ତି, ତେବେ ଆମ ବାରି ନଡ଼ିଆକୁ ମହାପ୍ରଭୁ ସାଦରେ ଗ୍ରହଣ କରି ଆମ ଭଙ୍ଗା କୁଡ଼ିଆର ରୂପ କାହିଁକି ବଦଳେଇ ଦେବେନି ଯେ ? ଭାବବିନୋଦିଆ ଦୀନବନ୍ଧୁ ପରା ସିଏ । ଭକ୍ତର ମନକଥା ସିଏ ସବୁ ଜାଣିପାରନ୍ତି । ମତେ ସିଏ ଯେତେ ପରଖିବେ ପରଖନ୍ତୁ ପଛେ ମୁଁ କିନ୍ତୁ ତାଙ୍କ ପ୍ରେମ ସାଗରରେ ନିଜକୁ ଭସେଇ ଦେଇ, ତାଙ୍କରି ନାମ ସଂକୀର୍ତ୍ତନରେ ମାତି ରହିବି ।' ଏତିକି କହିସାରି ଦନେଇ ମହାପ୍ରଭୁଙ୍କର ନାମ କୀର୍ତ୍ତନରେ ମଜ୍ଜି ରହିଲା । ସ୍ୱାମୀକି କିଛି ଉତ୍ତର ନଦେଇ ତଳକୁ ମୁହଁ ପୋତି ଚାଲିଗଲା ଦନେଇ ସ୍ତ୍ରୀ ।

ଠିକ୍ ଏତିକି ବେଳେ ଦନେଇର ପାଖପଡ଼ିଶା ଘର ଫଗୁଆ ଦିନ ଦି' ପ୍ରହରଟାରେ ଦନେଇ ପାଖକୁ ଦଉଡ଼ି ଦଉଡ଼ି ଆସି କହିଲା - 'ଦନେଇ ଭାଇ, ପୁଅକୁ ମୋର ପନ୍ଦର ଦିନ ହେଲା ଜର । ଯମାରୁ ଛାଡୁନି । ପାଟିକି ତା'ର କିଛି ରୁଚୁନି । ଆଶା ଛଡ଼େଇ ବସିଛି । ଡାକ୍ତରବାବୁ ଔଷଧ ଦେଇ କହିଛନ୍ତି ଯେ ପୁଅକୁ ପଇଡ଼ ପାଣି ପିଇବାକୁ ଦେବାକୁ । କ'ଣ କରିବି । ବୁଦ୍ଧିବାଟ କିଛି ଦିଶୁନି । ହାଟ ବଜାରକୁ ଯାଇ ପଇଡ଼ଟିଏ କିଣିବାକୁ ପାଖରେ ଟଙ୍କାଟିଏ ବି ନାହିଁ । ତୋ' ନଡ଼ିଆ ଗଛରେ ତ ବଡ଼ ବଡ଼ ପଇଡ଼ କାନ୍ଧି ପକେଇଛି । ଦୟାକରି ତୋ' ଗଛରୁ ଯଦି ପଇଡ଼ଗଣ୍ଡାଏ ତୋଳିକି ଦିଅନ୍ତୁ ମୋ ପୁଅ ପାଇଁ ନିଅନ୍ତି । ତୋର ଧର୍ମ ହୁଅନ୍ତା । ପୁଅଟା ମୋର ଭଲ ହୋଇଗଲେ, ତୋ' ପଇଡ଼ ବାବଦକୁ ଯାହା ପଇସା ମୁଁ ପଛରେ ଶୁଝି ଦିଅନ୍ତିନି ? ଫଗୁଆର କଥା ଶୁଣି ଦନେଇର ଛାତି ଭିତରଟା ସତେ ଯେମିତି କୋରି ହେଇଗଲା । ସିଏ ରାଗରେ ଲାଲ୍ ପଡ଼ିଯାଇ ପଇଡ଼ ଦେବନି ବୋଲି ସିଧା ସିଧା ମନା କରିଦେଇ କହିଲା, 'ତୋ ପୁଅ ଆଗ ନା ମୋ ଦିଅଁ ଆଗ ?'

ଦନେଇ ମୁହଁରୁ କେଇପଦ ନିରାଶ ବାଣୀ ଶୁଣି ଫଗୁଆ ଆଖି ଛଳ ଛଳ କରି ଦୁଃଖ ମନରେ ଦନେଇ ପାଖରୁ ଲେଉଟି ଆସିଲା ।

ମାସ କେଇଟି ପରେ ପଡ଼ିଲା ଶ୍ରୀଗୁଣ୍ଡିଚା । ଭକ୍ତମାନଙ୍କ ମେଳରେ ଶ୍ରୀକ୍ଷେତ୍ର ମୁଖରିତ ହୋଇ ଉଠିଲା । ବଡ଼ଦାଣ୍ଡରେ ତିନୋଟି ଯାକ ରଥ ଶୋଭା ପାଇଲେ ଅପୂର୍ବ ବେଶ ବିନ୍ୟାସ ଧାରଣ କରି । ରଥାରୂଢ଼ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରି ଭକ୍ତ ସମୂହ ଭକ୍ତିରେ ବିଭୋର ହୋଇ ଉଠିଲେ । ନୂଆଲୁଗା ପିନ୍ଧି ନୂଆ ବୋଝରେ ନୂଆ ଗଛରୁ ତୋଳିଥିବା ନୂଆ ନଡ଼ିଆରୁ କେତୋଟି ମୁଣ୍ଡରେ ମୁଣ୍ଡେଇ ସକାଳୁ ସକାଳୁ ବାହାରି ପଡ଼ିଲା ଦନେଇ ଶ୍ରୀକ୍ଷେତ୍ର ଅଭିମୁଖେ । ବଡ଼ଦାଣ୍ଡରେ ପହଞ୍ଚି ଯେତେବେଳେ ସେ ରଥ ତିନୋଟିକି ଦେଖି ଦେଇଛି, ଆଖିରୁ ତା'ର ଝରି ଯାଇଛି ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଭକ୍ତିର କେଇ ବୁନ୍ଦା ଲୁହ । ନଡ଼ିଆ ବୋଝଟାକୁ ତଳେ ଥୋଇ ଦେଇ ଶ୍ରୀବିଗ୍ରହମାନଙ୍କୁ ଦଣ୍ଡ ପ୍ରଣାମ ଜଣାଇବା ଉଦ୍ଦେଶ୍ୟରେ ଲମ୍ବ ହୋଇ ଶୋଇଗଲା ଦନେଇ ପବିତ୍ର ବଡ଼ଦାଣ୍ଡ ଉପରେ । ତା'ର ଆଜି ବଡ଼ ଭାଗ୍ୟ । ରଥ ଉପରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରିପାରିଛି । ଗାମୁଛାରେ ଦେହରୁ ଝାଳତକ ପୋଛି ଦେଇ ସେଇ ଜନଗହଳିରେ ଟିକିଏ ଫାଙ୍କା ଜାଗା ଦେଖି ବସି ପଡ଼ିଲା ଦନେଇ ଥକ୍କା ମେଣ୍ଟାଇବା ଉଦ୍ଦେଶ୍ୟରେ ।

କିନ୍ତୁ ଏ କ'ଣ ହେଲା ! ହଠାତ୍ ଯାତ୍ରୀମାନଙ୍କ ଭିଡ଼ ମାଡ଼ି ଆସିଲା ଦନେଇ ଆଡ଼କୁ ଠିକ୍ ଢେଉ ମାଡ଼ି ଆସିଲାପରି । ମୁହୂର୍ତ୍ତକ ମଧ୍ୟରେ ସବୁ କିଛି ଓଲଟପାଲଟ ହୋଇଗଲା । ଏତେବଡ଼ ଜନସମୁଦ୍ର ଭିତରେ ତା' ନଡ଼ିଆ ବୋଝଟା କୁଆଡ଼େ କାହିଁ ହଜିଗଲା । ଏତେବଡ଼ ଗହଳି ଭିତରେ ଦନେଇ ନଡ଼ିଆ ବୋଝଟାକୁ ଖୋଜୁ ଥିଲା ସତ, କିନ୍ତୁ ସେ ନଡ଼ିଆଭରା ବୋଝଟିକୁ ଆଉ ଠାବ କରିପାରିଲାନି । ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଯେତେବେଳେ ତା' ପାଖ ଦେଇ ଘୋର ଘର୍ଘର ନାଦରେ ବଡ଼ଦାଣ୍ଡରେ ଆଗକୁ ଆଗକୁ ଗଡ଼ି ଗଡ଼ି ଯାଉଥାଏ, ଦନେଇ ଆଉ କୋହ ସମ୍ଭାଳି ନପାରି ଅବୋଧ ଶିଶୁଟି ପରି କାନ୍ଦି ଉଠିଲା । ଅଭିମାନ ଭରା କଣ୍ଠରେ ରଥାରୂଢ଼ ମହାପ୍ରଭୁଙ୍କୁ ଲକ୍ଷ୍ୟ କରି କହିଲା - 'ହେ ଚକାଡ଼ୋଳା ଆପଣଙ୍କୁ ଶ୍ରୀଫଳ ଅର୍ପଣ କରିବି ବୋଲି ଜୀବନର ପ୍ରାୟ ଅଧାଅଧି ସମୟ କେବଳ ନଡ଼ିଆ ଗଛ ସେବାରେ ହିଁ ବିତେଇ ଦେଇଛି । ତଥାପି ଏ ଅକିଞ୍ଚନ ପ୍ରତି ଆପଣଙ୍କର କୃପା ହେଲାନି ମହାବାହୁ । କେଉଁ ଅପରାଧ ପାଇଁ ମୋ' ପ୍ରତି ଏ ଅବିଚାର କରାଗଲା, ତାହା ମତେ ଚେତାଇ ଦିଅନ୍ତୁ ପ୍ରଭୁ, ଏତିକି ମୋର ପ୍ରାର୍ଥନା ।'

ତିନୋଟିଯାକ ରଥ ଲାଗିଲା ଯାଇ ଶ୍ରୀଗୁଣ୍ଡିଚା ମନ୍ଦିର ନିକଟରେ । ଜନଗହଳି ବଡ଼ଦାଣ୍ଡରୁ କ୍ରମେ କ୍ରମେ କମି କମି ଆସୁଥାଏ । ଘନେଇ ଆସୁଥାଏ ରାତି । ଦିନସାରା ପେଟରେ ଆହାର ପଡ଼ିନି ବୋଲି ଥକି ପଡ଼ିଥିଲା ଦନେଇ । ଶରଧା ବାଲିରେ ଅଣଆଡ଼ିଆ ଦେଖି ଗାମୁଛାଟାକୁ ପାରି, ତା' କଙ୍କାଳସାର ଦେହଟାକୁ ତା'ରି ଉପରେ ଗଡ଼େଇ ଦେଇ କେତେବେଳେ ସେ ନିଦ୍ରା ଦେବୀଙ୍କ କୋଳରେ ଆଶ୍ରୟ ନେଇ ସାରିଲାଣି ସେ କଥା ତାକୁ ମୋଟେ ଜଣାନଥିଲା । ବଡ଼ଦାଣ୍ଡର ଖୋଲେଇ ପବନରେ, ଶରଧାବାଲି ଉପରେ ଗାଢ଼ ନିଦରେ ଶୋଇପଡ଼ି ସ୍ୱପ୍ନ ଦେଖିଲା ଦନେଇ, କେହି ଜଣେ ଅପରିଚିତ ଲୋକ ହଜି ଯାଇଥିବା ଖାଲି ବୋଝଟିକୁ ଧରି ତା' ପାଖକୁ ଚାଲି ଚାଲି ଆସୁଛି । ଲୋକଟିକୁ ଦେଖି ଆଶ୍ଚର୍ଯ୍ୟ ହେଲା ଦନେଇ । ଲୋକଟି ଦନେଇକି ଦେଖି ମୁରୁକି ହସହସି କହିଲା - 'ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ମୁଁ ତମକୁ ଭଲ ଭାବେ ଚିହ୍ନିଛି । ତମେ ବଡ଼ କ୍ଳାନ୍ତ ଜଣାପଡୁଛ । ତମେ ଆଗ ଉଠ ମୁଁ ଆଣିଥିବା ଦିବ୍ୟ ଭୋଜନକୁ ଗ୍ରହଣ କର ।' ଆହୁରି ଆଶ୍ଚର୍ଯ୍ୟ ହେଲା ଦନେଇ । ମନେ ମନେ ଭାବି ନେଲା ଯେ- ଏତେବଡ଼ ଗହଳିରେ ହଜି ଯାଇଥିବା ଏ ନୂଆ ବୋଝଟିକୁ ଇଏ କେମିତି ପାଇଲା ? ଏ ବୋଝରୁ ନଡ଼ିଆତକ ଗଲା କୁଆଡ଼େ ? ଏହା ଆଉ ମହାପ୍ରଭୁଙ୍କର ମାୟା ନୁହେଁ ତ ? ଉତ୍ତର ଦେଲା ଦନେଇ - 'ମୁଁ ଶପଥ ନେଇଛି ଭାଇ ଯେପର୍ଯ୍ୟନ୍ତ ମହାପ୍ରଭୁଙ୍କୁ ମୋ' ବାରି ନଡ଼ିଆକୁ ସମର୍ପଣ ନକରିଛି, ସେପର୍ଯ୍ୟନ୍ତ ମୁଁ ଜଳସୁଦ୍ଧା ସ୍ପର୍ଶ କରିବି ନାହିଁ ।' ଅଳ୍ପ ହସି ହସି ଲୋକଟି





ପୁଣି କହି ଉଠିଲା - 'ତମେ ଯେଉଁ ଦିନଠାରୁ ଭଗବାନଙ୍କୁ ତମର ପ୍ରିୟ ପଦାର୍ଥ ଅର୍ପଣ କରିବ ବୋଲି ମନସ୍ଥ କରିସାରିଛ, ସେହି ଦିନଠୁଁ ଭଗବାନ ତମ ଉପରେ ସନ୍ତୁଷ୍ଟ ହୋଇସାରିଛନ୍ତି ।'

ଲୋକଟିର ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲା ଦନେଇ ଠିକ୍ ଯେମିତି ଅର୍ଜ୍ଜୁନ ଚାହିଁ ରହିଥିଲେ ଭଗବାନ ଶ୍ରୀକୃଷ୍ଣ ତାଙ୍କୁ ଗୀତାର ମର୍ମବାଣୀ ବୁଝାଉଥିବା ବେଳେ । ଆଖିରୁ ତା'ର ବହି ଚାଲିଥିଲା ଭକ୍ତିର ଅବାରିତ ଅଶ୍ରୁଧାରା । ଯେତେବେଳେ ନୂଆ ବୋଝଟି ଭିତରକୁ ଆଖି ପକେଇଦିଏ ଦନେଇ ଆଶ୍ଚର୍ଯ୍ୟର ସୀମା ତା'ର ରହିଲା ନାହିଁ । ତା' ନୂଆ ବୋଝ ଭିତରେ ଥିଲା ଦେବ ଦୁର୍ଲ୍ଲଭ ଶ୍ରୀମହାପ୍ରସାଦ । ଅନ୍ନ, ଡାଲି, ବେସର, ମହୁରର ଏକ ଅପୂର୍ବ ସମାହାର । ଭାବବିହ୍ୱଳ କଣ୍ଠରେ କହି ଉଠିଲା ଦନେଇ - 'ମୋର ମନସ୍କାମନା ତେବେ ପୂରଣ ହେଲାନି କାହିଁକି ? ମହାପ୍ରଭୁଙ୍କୁ ମୁଁ ମୋର ବାରି ନଡ଼ିଆକୁ ସମର୍ପଣ କରିପାରିଲି ନାହିଁ ଯେ । ମୋର ଅପରାଧ କ'ଣ ?' ଲୋକଟି ମୁରୁକି ହସି ହସି ପୁଣି କହିଲା - 'ଶ୍ରୀଜଗନ୍ନାଥଙ୍କ ପ୍ରତି ତମର ଭକ୍ତି ପ୍ରବଳ ଏହା ନିଃସନ୍ଦେହରେ କୁହାଯାଇପାରେ । କିନ୍ତୁ ନରରୂପୀ ନାରାୟଣ ଯେତେବେଳେ 'ଫଗୁଆ' ରୂପରେ ତମ ବାଡ଼ିକି ନିଜେ ଯାଇଥିଲେ ତମ ପାଖରୁ କେତୋଟି ପଇଡ଼ ଆଣି ସେ ଜରୁଆ ପିଲାଟିର ତୃଷା ନିବାରଣ ଉଦ୍ଦେଶ୍ୟରେ, ତମେ ତାଙ୍କୁ ଖାଲି ହାତରେ ସେଦିନ ଫେରାଇ ଦେଇଥିଲ । ତମେ ଏକଥା ମଧ୍ୟ ସଂପୂର୍ଣ୍ଣ ରୂପେ ଭୁଲି ଯାଇଥିଲ ଯେ ମହାପ୍ରଭୁ ଅବସ୍ଥାନ କରିଥାନ୍ତି ସକଳ ଆତ୍ମାରେ । ତମେ ସେଦିନ ସେ ଗରିବ ଲୋକଟିର ଜରୁଆ ପୁଅଟିର ପଇଡ଼ ପାଣି ପିଇବାର ଜରୁରୀ ଆବଶ୍ୟକତାକୁ ଠିକ୍ ରୂପେ ଅନୁଭବ କରି ପାରିନଥିଲ । କିନ୍ତୁ ପରମଭକ୍ତ ଦାସିଆ ବାଉରୀଙ୍କର ନିଷ୍କାମ ଭକ୍ତି ଓ ସକଳ ଆତ୍ମାରେ ପରଂବ୍ରହ୍ମଙ୍କର ଦିବ୍ୟସତ୍ତା ନିହିତ ଅଛି ବୋଲି ଅନୁଭବ କରିପାରିଥିବାରୁ ଅନ୍ୟ ହାତରେ ପଠେଇଥିବା ଶ୍ରୀଫଳକୁ ମହାପ୍ରଭୁ ଶୂନ୍ୟରୁ ଶ୍ରୀଭୁଜ ପ୍ରସାରି ନେଇଯାଇଥିଲେ । ସେଇଥିପାଇଁ ମହାପ୍ରଭୁ ଅଭିମାନରେ ତମେ ଆଣିଥିବା ଶ୍ରୀଫଳଗୁଡ଼ିକୁ କପଟ କରି ତମ ପାଖରୁ ଅନ୍ତର୍ହିତ କରାଇନେଇ, ତମ ଭକ୍ତିରେ ସନ୍ତୁଷ୍ଟ ହୋଇ ତମ ପାଖକୁ ତମରି ବୋଝରେ ଏ ମହାପ୍ରସାଦ ପଠାଇ ଦେଇଛନ୍ତି । ତମେ ଏହାକୁ ସାଦରେ ଗ୍ରହଣ କର ।' ଲୋକଟିର ଏ ପ୍ରକାର ଭାବଗର୍ଭକ ଅମୃତବାଣୀ ଶ୍ରବଣ କରି ଦନେଇ ଆଉ କୋହ ସମ୍ବରଣ କରିନପାରି ବଡ଼ପାଟିରେ କହି ଉଠିଲା - 'ଆପଣ କ'ଣ ତା'ହେଲେ ସେଇ ଠାକୁର ଯିଏକି ସେଦିନ ଫଗୁଆ ରୂପରେ ଦର୍ଶନ ଦେଇ ଅଳି କରିଥିଲେ କେଇଟା ପଇଡ଼ ପାଇଁ । ଆଉ ଆଜି ଦର୍ଶନ ଦେଇଛନ୍ତି ଅନ୍ୟ ଏକ ରୂପରେ ଏ ବଡ଼ ଦାଣ୍ଡରେ । ଧନ୍ୟ ପ୍ରଭୁ ଧନ୍ୟ ଆପଣଙ୍କର ଏ ଲୀଳା । ନଡ଼ିଆଗଛ ଲଗେଇବା ତା'ହେଲେ ମୋର ସାର୍ଥକ ହେଇଛି । ମୁଁ ସେଦିନ ଆପଣଙ୍କୁ ଚିହ୍ନି ନପାରି ବଡ଼ ଅପରାଧ କରିଛି ପ୍ରଭୁ ମତେ ଆପଣ କ୍ଷମା କରି ଦିଅନ୍ତୁ ।' ଶ୍ରୀକ୍ଷେତ୍ର ଆକାଶରୁ କ୍ରମେ କ୍ରମେ ଅପସରି ଯାଉଥାଏ ରାତି ।

ଲୋକଟି ତରତର ହେଉଥାଏ ଦନେଇ ପାଖରୁ ଖୁବ୍ ଶୀଘ୍ର ବିଦାୟ ନେଇ ଚାଲିଯିବା ପାଇଁ । ଲୋକଟି ବିଦାୟ ନେଇ ଗଲାବେଳକୁ ସେ ଏତିକିମାତ୍ର କହି ଦେଇଗଲା - 'ଶୁଣ ଦନେଇ - ତମ ସ୍ତ୍ରୀ ତମକୁ ସେଦିନ ଉଚିତ୍ କଥା କହିସାରିଛନ୍ତି । ତମକୁ ଏଣିକି ପରିଶ୍ରମ କରିବାକୁ ପଡ଼ିବ ନିଜର ଅନ୍ନ ସଂସ୍ଥାନ ପାଇଁ । ନଡ଼ିଆଗଛ ପ୍ରତି ତମର ଯଦି ଏତେ ଶ୍ରଦ୍ଧା ଅଛି, ତେବେ ତମ ବାଡ଼ିପଟେ ଖାଲି ପଡ଼ିଥିବା ଜମିରେ ବହୁ ସଂଖ୍ୟାରେ ନଡ଼ିଆଗଛ ଲଗାଇ, ସେମାନଙ୍କର ଯତ୍ନ ନେଇ ସେଥିରୁ ଫଳ ଉତ୍ପନ୍ନ କରି ତମର ପରିବାର ଭରଣପୋଷଣ କର ।' ଏତିକି କହି ଦନେଇର ମଥାକୁ ଆଉଁସି ବଡ଼ଦାଣ୍ଡରେ ସେ ଅନ୍ଧାର ରାତିରେ ଲୋକଟି କେଉଁଠି ହଜିଗଲା ।

ରାତି ପାହି ସକାଳ ହେଲା । ଦନେଇର ନିଦ ହଠାତ୍ ଭାଙ୍ଗିଗଲା । ସେ ଆଖି ମଳିମଳି ଯେତେବେଳେ ଉଠି ବସିଲା, ତା' ଚାରିପାଖ ମହକି ଯାଉଥିଲା ଶ୍ରୀମହାପ୍ରସାଦ, ତୁଳସୀ, ଚନ୍ଦନ ଓ କର୍ପୂର ମହକରେ । ରଥାରୂଢ଼ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ପୁଣିଥରେ ସାଷ୍ଟାଙ୍ଗେ ପ୍ରଣିପାତ କରି ମନେ ମନେ କହି ହେଉଥିଲା ଦନେଇ ସତରେ କେଡ଼େ ଭାବ ବିନୋଦିଆ ଦିଅଁଟିଏ କାଳିଆ !

ଦନେଇ ଶ୍ରୀକ୍ଷେତ୍ରରୁ ଫେରି ଲଗେଇ ଦେଇଛି ତା' ବାଡ଼ିପଟେ ଖାଲି ପଡ଼ିଥିବା ପଡ଼ିଆ ଭୂଇଁରେ ଅନେକ ନଡ଼ିଆଗଛ । ମାତ୍ର କେତୋଟି ବର୍ଷ ଭିତରେ ମହାପ୍ରଭୁଙ୍କ ଆଶୀର୍ବାଦରେ ସେହି ଗଛମାନଙ୍କରେ ଖୁନ୍ଦି ହୋଇଯାଇଛି ଲୋଭନୀୟ ପଇଡ଼ କାନ୍ଧି ସବୁ । ନଡ଼ିଆ ଗଛମାନଙ୍କରୁ ପଇଡ଼ଗୁଡ଼ିକ ତୋଳି, ରାସ୍ତା ପାର୍ଶ୍ୱର ବୃକ୍ଷଛାୟାରେ ବସି ବାଟୋଇମାନଙ୍କୁ ଗୋଟିଗୋଟି କରି ପଇଡ଼ କାଟି ବିକି ଚାଲିଛି ଦନେଇ । ନରନାରାୟଣମାନଙ୍କର ସେବା କରି ତା'ର ଆଉ ଅର୍ଥର ଅଭାବ ରହିନି । ଭଲରେ ଚଳିଛି । ସେଇବାଟେ ଯାଉ ଯାଉ ଗରିବ ଲୋକଟିଏ ଯଦି ଶୋଷରେ ଆତୁର ହୋଇ ତାକୁ ପଇଡ଼ଟିଏ ମାଗେ ପିଇବାକୁ, ସିଏ ତାକୁ ବିନା ମୂଲ୍ୟରେ ପଇଡ଼ଟିଏ କାଟି ତା'ରି ହାତରେ ଧରେଇ ଦିଏ । କାରଣ ସିଏ ଭଲ ଭାବେ ଜାଣିଥିଲା ଯେ -

'ତୁ ବଡ଼ ଦୟାବନ୍ତ ହରି<br>
ସକଳ ଘଟେ ଅଛୁ ପୂରି<br>
ତୋତେ ଚିହ୍ନିବା ବଡ଼ କଷ୍ଟ<br>
ନାନାଦି ରୂପେ ତୁ ପ୍ରକଟ ।'

ଆଠଗଡ଼<br>
କଟକ









# ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା

ନୀଳାମ୍ବର ନନ୍ଦ

**ସ୍କ**ନ୍ଦ ପୁରାଣର ଉତ୍କଳ ଖଣ୍ଡରେ ବର୍ଣ୍ଣିତ ଅଛି, ଏକଦା ଋଷି ଜୈମିନୀ ମୁନିମାନଙ୍କୁ କହିଥିଲେ - 'ସୃଷ୍ଟି ରଚନା କରିବା ପରେ, ଜୀବଜଗତ କୃତ କର୍ମ ଫଳରେ ତ୍ରିତାପ ଭୋଗ କରିଥିବାରୁ ବ୍ରହ୍ମା ବ୍ୟସ୍ତ ହେଲେ । ତେଣୁ ସେ ଭଗବାନ ବିଷ୍ଣୁଙ୍କୁ ଏହି ତାପରୁ ସହଜରେ ମୁକ୍ତିଲାଭ କରିବାର ଉପାୟ ବିଷୟରେ ପ୍ରଶ୍ନ କରିଥିଲେ । ଭଗବାନ୍ ବିଷ୍ଣୁ କହିଲେ - 'ଏକାମ୍ର କାନନଠାରୁ ଦକ୍ଷିଣ ଦିଗରେ ମହୋଦଧି ପର୍ଯ୍ୟନ୍ତ ସ୍ଥାନ ମହାର୍ଘ୍ୟ ତୀର୍ଥ ଅଟେ । ତନ୍ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ସର୍ବଶ୍ରେଷ୍ଠ ଅଟେ । ସେଠାରେ ମୁଁ ପ୍ରଳୟ ସମୟରେ ମଧ୍ୟ ଅବସ୍ଥାନ କରେ । ମତେ ସମସ୍ତେ ନୀଳାଦ୍ରିରେ ଦର୍ଶନ କରି ପାପ ତାପ ମୁକ୍ତ ହୋଇ ଅପବର୍ଗ ଲାଭ କରନ୍ତି । ହେ ପିତାମହ ! ତୁମେ ସେଠାକୁ ଯାଇ ମତେ ଦର୍ଶନ କର ।'

ଉକ୍ତ ପୁରାଣରେ ବର୍ଣ୍ଣନା କରାଯାଇଛି - ସତ୍ୟଯୁଗରେ ସୂର୍ଯ୍ୟବଂଶୀୟ ରାଜା ଇନ୍ଦ୍ରଦ୍ୟୁମ୍ନ କଠୋର ତପସ୍ୟା ଓ ଅଶ୍ୱମେଧ ଯଜ୍ଞ କରି ଭଗବାନ ବିଷ୍ଣୁଙ୍କୁ ଦାରୁବ୍ରହ୍ମ ରୂପେ ଲାଭ କରିଥିଲେ । ଏହାଙ୍କ ମହିମା ଅବର୍ଣ୍ଣନୀୟ । ସହସ୍ର ଅଶ୍ୱମେଧ ଯଜ୍ଞର ପୂର୍ଣ୍ଣାହୂତି ଦିନ ସମୁଦ୍ରରେ ଦାରୁବ୍ରହ୍ମ ଭାସି ଉଠିଥିଲେ । ସେହି ଦ୍ରୁମରୂପୀ ବ୍ରହ୍ମଙ୍କୁ ଦର୍ଶନ କରି ଚତୁର୍ଦ୍ଦିଗ ଆନନ୍ଦ ଉଦ୍ଦୀପନାରେ ଭରପୂର ହୋଇ ଯାଇଥିଲା । ଉପରୋକ୍ତ ପବିତ୍ର ଦାରୁକୁ ଆଣି ଯଜ୍ଞ ବେଦୀ, ଆଡ଼ପ ମଣ୍ଡପରେ ରଖାଗଲା । ସେହି ଅପୌରୁଷେୟ ଦାରୁ ସ୍ୱୟଂ ସ୍ୱୀୟ ପ୍ରତିମୂର୍ତ୍ତି ନିର୍ମାଣ କରାଇଥିଲେ । ଦାରୁବ୍ରହ୍ମ ରୂପେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ପ୍ରଥମେ ଉକ୍ତ ଯଜ୍ଞବେଦୀ ବା ଆଡ଼ପ ମଣ୍ଡପରେ ଦର୍ଶନ ଦେଇଥିବାରୁ ସେହି ମଣ୍ଡପର ଅନ୍ୟ ନାମ ମହାବେଦୀ ହୋଇଛି ।

ତଦନୁଯାୟୀ ପ୍ରଥମେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ଗୁଣ୍ଡିଚା ମଣ୍ଡପରେ ଯଜ୍ଞାନୁଷ୍ଠାନ ପରେ ପ୍ରତିଷ୍ଠିତ ହୋଇଥିଲେ । ସେହି କାରଣରୁ ପ୍ରତିବର୍ଷ ଶ୍ରୀଜଗନ୍ନାଥ ନିଜର ଜନକପୁରୀ ନାମକ ଗୁଣ୍ଡିଚା ମନ୍ଦିରକୁ ରଥରେ ଆସି ଯଜ୍ଞ ବେଦୀରେ ସପ୍ତଦିନ ଧରି ଅବସ୍ଥାନ କରନ୍ତି । ଗୁଣ୍ଡିଚା ମନ୍ଦିରକୁ ରଥରେ ଆସିବାକୁ ଗୁଣ୍ଡିଚାଯାତ୍ରା ଓ ରଥରେ ନୀଳାଦ୍ରିକୁ ଫେରିବାକୁ ବାହୁଡ଼ା ଯାତ୍ରା କହନ୍ତି । ଗୁଣ୍ଡିଚା ମଣ୍ଡପରେ ଶ୍ରୀଜଗନ୍ନାଥ ଦେବ ସ୍ୱଜନ ପରିବୃତ୍ତ ହୋଇ ଅବସ୍ଥାନ କରୁଥିବା ଲୀଳାକୁ ମହାବେଦୀ ମହୋତ୍ସବ କହନ୍ତି । ନୀଳାଦ୍ରିରେ ଶ୍ରୀଜଗନ୍ନାଥଙ୍କ ଅଜସ୍ର ବାର ଦର୍ଶନର ଫଳଠାରୁ ଗୁଣ୍ଡିଚା ମଣ୍ଡପରେ ଏକଦିନ ଦର୍ଶନର ମାହାତ୍ମ୍ୟକୁ ବିଭିନ୍ନ ଶାସ୍ତ୍ରରେ ଅଧିକ ଦୁର୍ଲ୍ଲଭ ରୂପେ ବର୍ଣ୍ଣନା କରାଯାଇଛି ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ବିଷୟରେ ସର୍ବପ୍ରାଚୀନ 'ବ୍ରହ୍ମ ପୁରାଣ'ରେ ଯଥାର୍ଥରେ ଉଲ୍ଲେଖ ଅଛି -

'ଗୁଣ୍ଡିଚା ମଣ୍ଡପଂ ଯାନ୍ତଂ
ଯେ ପଶ୍ୟନ୍ତି ରଥେ ସ୍ଥିତଂ ।
କୃଷ୍ଣଂ ବଳଂ ସୁଭଦ୍ରାଂଚ
ତେ ଯାନି ଭବନଂ ହରେଃ ।'

ଅର୍ଥ- ରଥରେ ଗୁଣ୍ଡିଚା ମଣ୍ଡପକୁ ଯାତ୍ରା କରୁଥିବା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନକାରୀମାନେ ଦର୍ଶନ କରି ଶ୍ରୀହରିଙ୍କ ଭବନକୁ ଯାଇଥା'ନ୍ତି ।

ସେହି ରଥ ଯାତ୍ରାକୁ ଘୋଷ ଯାତ୍ରା ମଧ୍ୟ କୁହାଯାଏ -

'ଆଷାଢ଼ସ୍ୟ ମଳେ ପକ୍ଷେ ଦ୍ୱିତୀୟା ପୁଷ୍ୟ ସଂ ଯୁତେ
ଚରାଚର ହିତାର୍ଥାୟ ଘୋଷ ଯାତ୍ରା ବିଧୀୟତେ ।'

ଅର୍ଥାତ୍- ଆଷାଢ଼ ମାସର ଶୁକ୍ଳପକ୍ଷ ପୁଷ୍ୟା ନକ୍ଷତ୍ର ଯୁକ୍ତ ଦ୍ୱିତୀୟାରେ ଚରାଚର ଜଗତର ହିତାର୍ଥେ ଶ୍ରୀଜଗନ୍ନାଥଙ୍କର ଘୋଷଯାତ୍ରା କର୍ତ୍ତବ୍ୟ ।

ଶ୍ରୀଜଗନ୍ନାଥ ମନ୍ଦିରସ୍ଥ ମୁକ୍ତି ମଣ୍ଡପ ସଭା ଦ୍ୱାରା ସଂକଳିତ 'ବାମଦେବ ସଂହିତା'ରେ ଉଲ୍ଲେଖ ଅଛି -

'ଯଜ୍ଞୋତ୍ସବଂ ଦେବ ଗଣୈଶ୍ଚ ଯୁକ୍ତଂ
ଯାନ୍ତଂ ପ୍ରଭୁଂ ଯେରପ୍ୟବଲୋକୟନ୍ତି ।
ପଦଂହି ବିଷ୍ଣୋଃ ସତତଂ ଲଭନ୍ତେ
ଯଦ୍ଧାମ ଗତ୍ୱାନ ପୁନର୍ଭବାୟ ।''

ଅର୍ଥ- ଦେବଗଣଙ୍କ ସହିତ ଯଜ୍ଞୋତ୍ସବ ବା ରଥ ଯାତ୍ରାରେ ଯାଉଥିବା ମହାପ୍ରଭୁ ଜଗନ୍ନାଥଙ୍କୁ ଯେଉଁମାନେ ଦର୍ଶନ କରନ୍ତି, ସେମାନେ ଭଗବାନ ବିଷ୍ଣୁଙ୍କର ପରମଧାମକୁ ଗମନ କରନ୍ତି । ସେମାନଙ୍କର ପୃଥିବୀକୁ ପୁନର୍ବାର ଆଗମନ ହୁଏ ନାହିଁ ।

ଉପରୋକ୍ତ ବର୍ଣ୍ଣନାରେ ଶାସ୍ତ୍ରୀୟ ଓ ପୌରାଣିକ ଦୃଷ୍ଟିକୋଣରୁ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ମାହାତ୍ମ୍ୟର ସଂକ୍ଷିପ୍ତ ସୂଚନା ଦିଆଯାଇଛି ।

ଦାର୍ଶନିକ ଦୃଷ୍ଟିକୋଣରୁ ବିଚାର କଲେ କଠୋପନିଷଦର ନିମ୍ନଲିଖିତ ଶ୍ଳୋକରେ ରୂପକ-ଆକାରରେ ସୂଚିତ ହୋଇଛି -

'ଆତ୍ମାନଂ ରଥିନଂ ବିଦ୍ଧି
ଶରୀରଂ ରଥମେବତୁ ।
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି
ମନଃ ପଗ୍ରହ ମେବଚ ।'

ଅର୍ଥାତ୍ - ଆତ୍ମାକୁ ରଥର ଅଧିଷ୍ଠିତ ଦେବତା ରୂପେ ଜାଣ । ଶରୀରକୁ ରଥ, ବୁଦ୍ଧିକୁ ସାରଥୀ ଓ ମନକୁ ପ୍ରଗ୍ରହ ରୂପେ ଜାଣ । ଅର୍ଥାତ୍ ମନ, ବୁଦ୍ଧିକୁ ନିୟନ୍ତ୍ରଣ କରି ଶରୀର ଯାତ୍ରା କର ।

ସେହି ଉପନିଷଦରେ ଅନ୍ୟତ୍ର ଅଛି - 'ପ୍ରଣବ ବ୍ରହ୍ମ, ଶର ଆତ୍ମା, ବ୍ରହ୍ମ ତାହାର ଲକ୍ଷ୍ୟ ଅଟେ । ଅପ୍ରମତ୍ତ ହୋଇ ଲକ୍ଷ୍ୟ ଭେଦ କରି, ଶରବତ୍ ତନ୍ମୟ ହୋଇ ଯାଅ ।'

ବିଭିନ୍ନ ଟୀକାକାରମାନେ ଉପରୋକ୍ତ ଦାର୍ଶନିକ ତତ୍ତ୍ୱକୁ ବ୍ୟାଖ୍ୟାନ କରି କହିଛନ୍ତି - 'ଅଙ୍ଗୁଷ୍ଠମାତ୍ର ପ୍ରଣବବ୍ରହ୍ମକୁ ବାମନ ରୂପେ ପ୍ରତୀକ ଭାବରେ ଶରୀର ରଥରେ ଅବସ୍ଥାନ କରୁଥିବାର ଜାଣି ଜୀବ ଆତ୍ମ-ଦର୍ଶନ କରି କୃତାର୍ଥ ହୁଏ ।'

ପରିଶେଷରେ ଭାରତୀୟ ସଂସ୍କୃତି ଓ ପରମ୍ପରାରେ ଚାଲି ଆସିଥିବା ରଥ ବିଷୟରେ କିଛି ସୂଚନା ଦିଆଯାଉଛି । ରାମାୟଣ ଓ ମହାଭାରତରେ ଭଗବାନ ଶ୍ରୀରାମ ଓ ଶ୍ରୀକୃଷ୍ଣ ରଥରେ ବସି ଯାତ୍ରା କରିଥିବାର ବର୍ଣ୍ଣନା ରହିଛି । ଭଗବାନଙ୍କୁ କେବଳ ଅର୍ଜୁନଙ୍କ ରଥର ଚାଳକ ନ ଭାବି ସମଗ୍ର ମାନବ ସମାଜର ଜୀବନ ଯାତ୍ରାର ଚାଳକ ରୂପେ ଗ୍ରହଣ କରି ଜଗନ୍ମୟ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଦର୍ଶନ କରି ଜୀବନ ସାର୍ଥକ ହେଉ ।

ଆଧୁନିକ ଐତିହାସିକମାନେ ବହୁ ଦିଗରୁ ଆଲୋଚନା କରି ମତବ୍ୟକ୍ତ କରିଛନ୍ତି - ତୃତୀୟ ଅନଙ୍ଗ ଭୀମ ଦେବ ଶ୍ରୀମନ୍ଦିରରେ ୧୨୩୦ ଖ୍ରୀଷ୍ଟାବ୍ଦରେ ତ୍ରିମୂର୍ତ୍ତିଙ୍କୁ ପ୍ରତିଷ୍ଠା କରିଥିଲେ । ତାଙ୍କ ପରେ ପ୍ରଥମ ନରସିଂହ ଦେବ ମଧ୍ୟ ଦାରୁ ବିଗ୍ରହମାନଙ୍କ ପୂଜା ଅର୍ଚ୍ଚନା ଓ ଶବରମାନଙ୍କ ସାହାଯ୍ୟ ବହିଃ ଶତ୍ରୁମାନଙ୍କ ଆକ୍ରମଣକୁ ପ୍ରତିରୋଧ କରିଥିଲେ । ତେଣୁ ସେମାନଙ୍କ ମତରେ, ସେହି ସମୟରୁ ଦାରୁବିଗ୍ରହମାନଙ୍କୁ ନେଇ ରଥଯାତ୍ରା ପ୍ରଚଳିତ ହେଲା । ଚିନ୍ତାଶୀଳ ବିଦ୍ୱାନମାନେ ଏହି ମତର ପ୍ରମାଣ ସ୍ୱରୂପ ରଥଯାତ୍ରାରେ ପୁରାତନ ଶବରମାନଙ୍କର ବଂଶଧରମାନଙ୍କର ମୁଖ୍ୟ ଭୂମିକାକୁ ଲକ୍ଷ୍ୟ କରି ବିଚାର ବିମର୍ଷ କରୁଅଛନ୍ତି । ଯାହା ହେଉ, ପ୍ରାଚୀନ ପୌରାଣିକ ମତବାଦର ଭିତ୍ତିଭୂମିରେ ବିଭିନ୍ନ ସମୟରେ ଏହି ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା ପୁନଃ ପ୍ରଚଳିତ ହେବା ସମୀଚୀନ ମନେହୁଏ । ଉତ୍କଳୀୟ ପରମ୍ପରାରେ ସମାଜରେ, ସତ୍ୟ, ଧର୍ମ, ନ୍ୟାୟ, ଐକ୍ୟ, ଶାନ୍ତି ଓ ପ୍ରେମ ପ୍ରଭୃତି ଦିବ୍ୟ ମହନୀୟ ଆଦର୍ଶ ପ୍ରତିଷ୍ଠାର ବାର୍ତ୍ତା ଘୋଷଣା କରି, ଶ୍ରୀଜଗନ୍ନାଥ ବିଶ୍ୱରେ ରଥଯାତ୍ରା କରୁଥିବାରୁ ଏହାକୁ ଘୋଷଯାତ୍ରା କହନ୍ତି । ବିଶ୍ୱକବି ରବୀନ୍ଦ୍ର ନାଥ ଯଥାର୍ଥରେ କହିଛନ୍ତି -

'ରଥଯାତ୍ରା ଲୋକାରଣ୍ୟ ମହାଧୂମଧାମ ।
ଭକ୍ତେରା ଲୁଟାଏ ପଥେ କରିଛେ ପ୍ରଣାମ ।'

ମହାଯୋଗୀ ଶ୍ରୀ ଅରବିନ୍ଦ କହିଛନ୍ତି - 'କେହି ଜଗନ୍ନାଥଙ୍କ ରଥର ସ୍ୱରୂପ ଓ ଆଦର୍ଶ ବିଷୟରେ ଜାଣି ନାହାନ୍ତି । ତାହା ଜଗତରେ ସେ ସ୍ୱୟଂ ପ୍ରକାଶ କରନ୍ତି । ଜଗନ୍ନାଥଙ୍କ ରଥର ପ୍ରକୃତ ନାମ ସମଷ୍ଟି ବା ସଂଘ ଶକ୍ତି । ଏହା ଜଗତର ଜନଗଣଙ୍କ ଆନନ୍ଦ ଓ ସହଯୋଗରେ ନିଜ ନିଜ ଆତ୍ମାରେ ତଥା ପରମେଶ୍ୱରଙ୍କ ସହିତ ମିଳିତ ହେବାର ଏକ ଦିବ୍ୟ ଯାତ୍ରା ।'

ଭକ୍ତବତ୍ସଳ ଜଗନ୍ନାଥଙ୍କ ରଥଯାତ୍ରାକୁ ଭକ୍ତମାନେ ପତିତପାବନ ଯାତ୍ରା ରୂପେ କହିଛନ୍ତି । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ -

'ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳା ଯାର ।
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ।'

ଭକ୍ତ ବଳରାମ ଦାସ ରଥଯାତ୍ରା ଦିନ ରଥ ଉପରେ ଚଢ଼ି ନ ପାରିବାରୁ ବାଙ୍କି ମୁହାଣ ପାଖରେ ବାଲି ରଥ ପ୍ରସ୍ତୁତ କରିଥିଲେ । ଭକ୍ତି ତଦ୍‌ଗତ କଣ୍ଠରେ ସେ ଗାଇଥିଲେ -

'ଜଗନ୍ନାଥଙ୍କର ବାଲି ରଥ
ଦିଶୁଛି କେଡ଼େ ଶୋଭାବନ୍ତ ।
ଭକ୍ତି ପୁଷ୍ପରେ ଏ ନିର୍ମିତ
ଭାବେ ଅଛନ୍ତି ଜଗନ୍ନାଥ ।'

କଥିତ ଅଛି, ଜଗନ୍ନାଥଙ୍କ କୃପାବଳରେ ଭକ୍ତ ବଳରାମଙ୍କୁ ତତ୍କାଳୀନ ଗଜପତି ସାଦରେ ନନ୍ଦିଘୋଷ ରଥକୁ ଆମନ୍ତ୍ରଣ କରି ନେଇଥିଲେ । ସେହିପରି ଭକ୍ତ ସାଲବେଗ ମଧ୍ୟ ଆବେଗ ଭରା କଣ୍ଠରେ ପ୍ରାର୍ଥନା କରିବାରୁ ଶ୍ରୀଜଗନ୍ନାଥ ରଥ ଯାତ୍ରା ଦିନ ବଡ଼ଦାଣ୍ଡରେ ରଥ ଅଟକାଇ ଭକ୍ତକୁ ଅପେକ୍ଷା କରିଥିଲେ । ସେହି ଦିନରୁ ବଳଗଣ୍ଡିଠାରେ ଶ୍ରୀଜଗନ୍ନାଥଙ୍କ ରଥ ଅଟକି ଥାଏ ।

ବଙ୍ଗଳାର ବିଶିଷ୍ଟ ବୈଷ୍ଣବ ରାଧାରମଣ ଦେବ ସୁଦୂର ବୃନ୍ଦାବନରୁ ରଥରେ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଧାଇଁ ଆସିଥିଲେ । ଜଗନ୍ନାଥଙ୍କ ରଥ ତାଙ୍କ ଆଗମନକୁ ଅପେକ୍ଷା କରି ରହିଯାଇଥାଏ । ରାଧାରମଣ ଆସି ରଥ ଦଉଡ଼ା ଛୁଇଁ ଭକ୍ତିଭରା କଣ୍ଠରେ ଗାଇଥିଲେ -

'ଆସିଛେ କାଳିଆ ହଳିୟା ଦୋଲିୟା
ରସମୟ ଗୁଣଧାମ ।
ଚରଣେ ନୂପୁର ବାଜିଛେ ମଧୁର
ନବୀନ ସୁନ୍ଦର ଠାମ ।'

କଥିତ ଅଛି ଯେ ଏହାପରେ ରଥ ଘର୍ଘର ନାଦରେ ଚାଲି ଯାଇଥିଲା । ଏହିପରି ବହୁ ଭକ୍ତଙ୍କ ଜୀବନରେ ରଥଯାତ୍ରାର ମହିମା ପ୍ରତ୍ୟକ୍ଷ ଭାବରେ ଦେଖାଯାଇଛି । ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ କୋଟି କୋଟି ପ୍ରଣାମ ।

ପ୍ଲଟ ନଂ.-୨୦୦୦
ମହତାବ୍ ରୋଡ୍, ଭୁବନେଶ୍ୱର-୨

# ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା

ଡକ୍ଟର ସୀମାଚଳ ପଣ୍ଡା

ସୁଖ ଦୁଃଖମୟ ପରିଦୃଶ୍ୟମାନ ସଂସାରରେ ପ୍ରତ୍ୟେକ ପ୍ରାଣୀ ସୁଖମାତ୍ର ଆଶା କରେ । ଏହି ସାଂସାରିକ ସୁଖପ୍ରାପ୍ତି ପାଇଁ ଅନେକ ମାର୍ଗ ପରିକଳ୍ପିତ ହୋଇଥିଲେ ମଧ ପ୍ରାଚୀନ ମୁନିଋଷି ତଥା ସମାଜ ସଂସ୍କାରକଗଣ ସାଂସାରିକ ସୁଖ ସହିତ ଈଶ୍ୱରୀୟ ସୁଖ ସନ୍ଧାନ ନିମନ୍ତେ ନାନାବିଧ ମହୋତ୍ସବର ବ୍ୟବସ୍ଥା ବିଧାନ କରିଛନ୍ତି । ପରବର୍ତ୍ତୀ କାଳରେ ଏହି ଉତ୍ସବମାନ ଭଗବାନଙ୍କ ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇଯିବାରୁ ଏହାର ଆଧ୍ୟାତ୍ମିକ ମହତ୍ତ୍ୱ ଅବର୍ଣ୍ଣନୀୟ ହୋଇପାରିଛି । ବିଶ୍ୱପ୍ରସିଦ୍ଧ ଶ୍ରୀକ୍ଷେତ୍ର ଧାମସ୍ଥ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ସେବାପୂଜା ନୀତି ସହିତ ଅନେକ ଯାତ୍ରା ଉତ୍ସବର ଅପୂର୍ବ ସମନ୍ୱୟ ଏହି ପରମ୍ପରାର ମହନୀୟତା ପ୍ରତିପାଦନ କରୁଛି । ଶ୍ରୀଜଗନ୍ନାଥ ମନ୍ଦିରରେ 'ବାର ମାସରେ ତେରଯାତ୍ରା' ହୁଏ ବୋଲି ଲୋକମୁଖରେ ପ୍ରଚଳିତ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଅର୍ଥାତ୍ ମର୍ତ୍ତ୍ୟବୈକୁଣ୍ଠ ରୂପେ କଥିତ ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ଲୀଳା ବର୍ଷସାରା ନିରନ୍ତର ଭାବରେ ଅନୁଷ୍ଠିତ ହୋଇଥାଏ । ଏହା ଦ୍ୱାରା ଧର୍ମପରାୟଣ ମନୁଷ୍ୟ ସମାଜରେ ଅନାୟାସରେ ସୁସ୍ଥ ଧର୍ମଧାରା ଦ୍ୱାରା ସାମାଜିକ ଶାନ୍ତି, ସଦ୍‌ଭାବ ଓ ସଂହତିର ପ୍ରତିଷ୍ଠା ସମ୍ଭବ ହୋଇପାରୁଛି । ଏଣୁ ଆଜିର ଅତ୍ୟାଧୁନିକ ବିଶ୍ୱ ସମୁଦାୟ ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରତି ସତତ ଆକୃଷ୍ଟ ହେବାର ଲକ୍ଷ୍ୟ କରାଯାଏ । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କର ଅନୁଷ୍ଠିତ ହେଉଥିବା ବିବିଧ ଯାତ୍ରାମାନଙ୍କରେ ବିଧିବ୍ୟବସ୍ଥା ସଂପର୍କରେ ଆଲୋଚନା କରିବା ପୂର୍ବରୁ 'ଯାତ୍ରା' ଶବ୍ଦର ବ୍ୟୁତ୍ପତ୍ତି ବିଷୟରେ ଅବଗତ ହେବା ଆବଶ୍ୟକ ମନେହୁଏ ।

ସଂସ୍କୃତ ଭାଷାରେ 'ଯାତ୍ରା' ଶବ୍ଦଟି ଅନେକାର୍ଥକ ଅଟେ । ଗମନାର୍ଥକ 'ଯା' ଧାତୁରୁ 'ତ୍ର' ପ୍ରତ୍ୟୟ ହୋଇ ସ୍ତ୍ରୀଲିଙ୍ଗରେ ନିଷ୍ପନ୍ନ ଯାତ୍ରା ଶବ୍ଦଟି ଗମନାର୍ଥକ, ଉତ୍ସବାର୍ଥକ, ଜୀବନ ନିର୍ବାହାର୍ଥକ, ଲୋକ ବ୍ୟବହାରାର୍ଥକ, ଲୋକ ପରମ୍ପରାର୍ଥକ ବୋଲି ଭାଷାକୋଷରେ ଉଲ୍ଲିଖିତ ଅଛି । ପ୍ରସଙ୍ଗବଶତଃ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ଦ୍ୱାଦଶ ସଂଖ୍ୟକ ଉତ୍ସବକୁ ବୁଝାଇଥାଏ ।

ପରମ ରହସ୍ୟମୟ ବିଶ୍ୱଦେବତା ଜଗନ୍ନାଥଙ୍କ ମହିମା ବ୍ରହ୍ମ ପୁରାଣ, ପଦ୍ମ ପୁରାଣ, ନୀଳାଦ୍ରି ମହୋଦୟ, ଯାତ୍ରା ଭାଗବତ, କପିଳ



ସଂହିତାଦି ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଥିଲେ ବି ବ୍ୟାସ ଦେବ ରଚିତ ସ୍କନ୍ଦ ପୁରାଣର ଦ୍ୱିତୀୟ ଖଣ୍ଡସ୍ଥ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନା ପ୍ରସଙ୍ଗ ଅତି ମାର୍ମିକ ଅଟେ । ମହାପ୍ରଭୁ ଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ବର୍ଣ୍ଣନ ଏହାର ଅନ୍ତର୍ଭୁକ୍ତ । ସ୍କନ୍ଦ ବା କାର୍ତ୍ତିକେୟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ମହିମାକୁ ମୁଖ୍ୟତଃ ପ୍ରଥମେ ପୁରାଣ ମାଧ୍ୟମରେ ପ୍ରଚାର ଆରମ୍ଭ କରିଥିବାରୁ ଏହି ପୁରାଣର ନାମ ସ୍କନ୍ଦ ପୁରାଣ ହୋଇଅଛି । ବିଶ୍ୱର ବିଭିନ୍ନ ବିଚିତ୍ର ରହସ୍ୟମୟ ତୀର୍ଥସ୍ଥାନ ଭ୍ରମଣ କରି ପରମାତ୍ମା ଜଗନ୍ନାଥଙ୍କ ବ୍ୟାପକତାକୁ ସାକ୍ଷାତ ଅନୁଭବ କରି ଏହାକୁ ପ୍ରଚାର କରିବା ପାଇଁ କୃତସଂକଳ୍ପ ସ୍କନ୍ଦଙ୍କ ମୁଖରୁ ସିଦ୍ଧ ମୁନିଗଣ ଓ ଦେବଗଣ ଏହି କଥା ଶ୍ରବଣ କରିଥିଲେ ।

ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଏହି ଦ୍ୱାଦଶ ଯାତ୍ରାମାନଙ୍କର ନାମ ଯଥା- ମହାଜ୍ୟୈଷ୍ଠୀ, ରଥ, ଶୟନ, ପାର୍ଶ୍ୱପରିବର୍ତ୍ତନ, ଉତ୍‌ଥାପନ, ପ୍ରାବରଣ, ପୁଷ୍ୟାଭିଷେକ, ଦୋଳ, ଦମନକ, ଚନ୍ଦନ, ଦକ୍ଷିଣାୟନ ଓ ଉତ୍ତରାୟଣ ।[୧] ଏହି ଯାତ୍ରାଗୁଡ଼ିକର କାଳ ନିର୍ଦ୍ଧାରଣ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ହୋଇଥାଏ ।[୨] ଉକ୍ତ ଯାତ୍ରା ଦର୍ଶନ କରିବା ପାଇଁ ଭକ୍ତମାନେ ବିଭିନ୍ନ ସ୍ଥାନରୁ ଆସିଥା'ନ୍ତି । ଏହାଦ୍ୱାରା ମନୁଷ୍ୟ ଅଶେଷ ପୁଣ୍ୟଲାଭ କରିଥାଏ ।[୩]

ପ୍ରଥମତଃ ଶ୍ରୀଜଗନ୍ନାଥଙ୍କର ସ୍ନାନୋତ୍ସବ ଅନୁଷ୍ଠିତ ହୁଏ । ଏହାକୁ ଦେବସ୍ନାନଯାତ୍ରା ବୋଲି କୁହାଯାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ତିଥିରେ ଏହି ଯାତ୍ରା ହୋଇଥାଏ ।[୪] ଶ୍ରୀଜଗନ୍ନାଥ ମନ୍ଦିରରେ ଥିବା ସ୍ନାନବେଦୀକୁ ତିନି ଠାକୁର ସୁଦର୍ଶନଙ୍କ ସହ ସେବକମାନଙ୍କ ଦ୍ୱାରା ଆନୀତ ହୁଅନ୍ତି । ଘଣ୍ଟଘଣ୍ଟା ଶବ୍ଦରେ ଗଗନପବନ ପ୍ରକମ୍ପିତ ହୋଇଥାଏ । ହରିବୋଲ,





ହୁଳହୁଳି ଧ୍ୱନି ସହ ଠାକୁର ସ୍ନାନବେଦୀକୁ ବିଜେ କରିବା ପରେ ୧୦୮ କୁମ୍ଭ ଜଳରେ ସ୍ନାନ କରିଥା'ନ୍ତି । ସ୍ନାନ ସମାପନ ପରେ ପ୍ରଭୁଙ୍କର ହାତୀବେଶ ଅନୁଷ୍ଠିତ ହୁଏ । କିମ୍ବଦନ୍ତୀ ଅନୁସାରେ ଦାକ୍ଷିଣାତ୍ୟର ପରମ ନୈଷ୍ଠିକ ପଣ୍ଡିତ ଗଣପତି ଭଟ୍ଟଙ୍କର ମନୋବାଞ୍ଛା ପୂର୍ଣ୍ଣ କରିବା ପାଇଁ ଜଗନ୍ନାଥ ଏହି ବେଶ ଧାରଣ କରିଥିଲେ ।

ଏହାପରେ ପୃଥିବୀ ବିଖ୍ୟାତ ଗୁଣ୍ଡିଚାଯାତ୍ରା ଆରମ୍ଭ ହୋଇଥାଏ । ଉକ୍ତ ଯାତ୍ରାର ଉଦ୍ଦେଶ୍ୟ ଏହି ଯେ ଆଚାଣ୍ଡାଳ ବ୍ରାହ୍ମଣ ଜାତି-ଧର୍ମ-ନିର୍ବିଶେଷରେ ସମସ୍ତେ ମହାପ୍ରଭୁଙ୍କୁ ବଡ଼ଦାଣ୍ଡରେ ରଥ ଉପରେ ଦର୍ଶନ କରିବା ସହ ଅଶେଷ ପୁଣ୍ୟଲାଭ କରିଥା'ନ୍ତି । ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ପୁଷ୍ୟାନାମକ ନକ୍ଷତ୍ରରେ ଏହି ଯାତ୍ରା ଅନୁଷ୍ଠିତ ହୁଏ ।[୫] ଏହା ନବଦିନାତ୍ମକ ଯାତ୍ରା ନାମରେ ମଧ୍ୟ[୬] ପ୍ରସିଦ୍ଧ । ଏଥିରେ ବହୁଭକ୍ତ ଯୋଗଦାନ କରି ପୁରୁଷୋତ୍ତମଙ୍କୁ ସାକ୍ଷାତ ଦର୍ଶନ କରିବା ପୂର୍ବକ ମୁକ୍ତିଲାଭ କରିଥା'ନ୍ତି । ଏହି ଯାତ୍ରା ବିଧାନ ପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ଆଜ୍ଞା ଦିଆଯାଇଥିଲା ।[୭] ସେ ରାଜା ହିଁ ଏହି ଯାତ୍ରାର ଶୁଭାରମ୍ଭକାରୀ । ଶ୍ରୀମନ୍ଦିରର ସିଂହଦ୍ୱାରଠାରୁ ତିନି କି.ମି. ଦୂରରେ ଥିବା ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଠାକୁର ରଥରେ ଯାତ୍ରା କରିଥା'ନ୍ତି । ତିନି ଠାକୁରଙ୍କ ପାଇଁ ତିନୋଟି ରଥ ନିର୍ମାଣ ହୋଇଥାଏ । ବିଭିନ୍ନ ପାର୍ଶ୍ୱଦେବତା ମଧ୍ୟ ଏହି ରଥରେ ଉପବେଶନ କରିଥା'ନ୍ତି । ଭକ୍ତମାନେ ମହାଆନନ୍ଦରେ ଏହି ରଥ ତିନୋଟିକୁ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ହାତରେ ଭିଡ଼ି ନେଇଥା'ନ୍ତି । ସ୍ନାନୋତ୍ସବ ଓ ରଥୋତ୍ସବରେ ସ୍ୱୟଂ ଜୀଉମାନେ ବିଜେ କରିଥିବା ବେଳେ ଅନ୍ୟାନ୍ୟ ଯାତ୍ରାମାନଙ୍କରେ ତାଙ୍କର ଚଳନ୍ତି ପ୍ରତିମା ବିଜେ କରିଥା'ନ୍ତି । ଦ୍ୱାଦଶଯାତ୍ରାମାନଙ୍କ ମଧ୍ୟରେ ରଥଯାତ୍ରା ଶ୍ରେଷ୍ଠଯାତ୍ରା ରୂପରେ ପରିଚିତ ଅଟେ । ଏହାର ଦର୍ଶନରେ ଅଶେଷ ପୁଣ୍ୟାର୍ଜନ ହୋଇଥାଏ ।[୮]

ରଥଯାତ୍ରା ପରେ ଜଗନ୍ନାଥଙ୍କ ଶୟନୋତ୍ସବ ଅନୁଷ୍ଠିତ ହୁଏ । ଆଷାଢ଼ ଶୁକ୍ଳ ଏକାଦଶୀ ତିଥିରେ ଏହା ପାଳିତ ହୋଇଥାଏ ।[୯] ଏହାକୁ ହରିଶୟନ ଉତ୍ସବ କୁହାଯାଏ । ସ୍କନ୍ଦପୁରାଣ ଅନୁସାରେ ବର୍ଷରେ ଚାରିମାସ ବିଷ୍ଣୁଙ୍କର ଶୟନ ନିର୍ଦ୍ଦିଷ୍ଟ ଥିବାରୁ ଆଷାଢ଼ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ହରିଙ୍କର ଶୟନକାଳ ଭାବେ ପାଳନ କରାଯାଏ । ଶ୍ରୀଜୀଉଙ୍କର ବଡ଼ସିଂହାର ଭୋଗ ପରେ ଭଣ୍ଡାରଘରୁ ତିନିମୂର୍ତ୍ତି ଶୟନ ଠାକୁର ତିନିବାଡ଼କୁ ବିଜେ କରନ୍ତି । ବଡ଼ ବାଡ଼ର ଶୟନ ଠାକୁର ବାସୁଦେବ, ମଝିବାଡ଼ର ଭୁବନେଶ୍ୱରୀ ଓ ଶ୍ରୀଜଗନ୍ନାଥଙ୍କ ବାଡ଼ର ଶ୍ରୀନାରାୟଣ-ଏହି ତିନିଠାକୁର ବିଜେ ହୋଇ ଆସି ତିନିବାଡ଼ରେ ଶ୍ରୀଅଙ୍ଗକୁ ଲାଗି ହେଲେ ମହାସ୍ନାନ ବଢ଼େ । ତିନି ଠାକୁର ହାତରେ ବିଜେ ହୋଇ ସାତପାହାଚ ଓ ଜଗମୋହନ ଦେଇ ଭଣ୍ଡାରଘର ଦ୍ୱାର ନିକଟକୁ ଯା'ନ୍ତି । ଶ୍ରୀଜୀଉମାନେ ଏହି ସମୟରେ ରଥ ଉପରେ ଥା'ନ୍ତି । ଶୟନ ଘରେ ପୂର୍ବରୁ ପେଡ଼ା, ତାଟ ଶେଯ ପ୍ରସ୍ତୁତ ହୋଇଥାଏ । ଠାକୁରମାନେ ଏଥିରେ ଶୟନ କରନ୍ତି । ପ୍ରାର୍ଥନା ଓ ବନ୍ଦାପନା[୧୦] ପରେ ପେଡ଼ି ବନ୍ଦ କରାଯାଏ । ପେଡ଼ା ଉପରେ ଖୋଳ ପକାଯାଏ । ଏସବୁ ବିଧି ସରିବା ପରେ ସମସ୍ତେ ବାହାରକୁ ଆସିଲେ ଶୟନ ଘରଦ୍ୱାର ମଦନମୋହନଙ୍କ ମୁଦରେ ମୁଦି ଦିଆଯାଇ ବନ୍ଦ କରାଯାଏ । ଏହି ଯାତ୍ରା ଦର୍ଶନରେ ଭକ୍ତମାନେ ଅସୀମ ପୁଣ୍ୟ ଲାଭ କରନ୍ତି । ଏହି ଚାରିମାସ ଶ୍ରୀକ୍ଷେତ୍ରରେ ଅବସ୍ଥାନ, ବ୍ରତପାଳନ, ତୀର୍ଥସ୍ଥାନ ଓ ଭଗବଦ୍ ଦର୍ଶନ ଅତୀବ ପୁଣ୍ୟପ୍ରଦ ।[୧୧] ଏହାକୁ ଚାତୁର୍ମାସ୍ୟ କହନ୍ତି ।

ଏହାପରେ ପ୍ରଭୁଙ୍କର ପାର୍ଶ୍ୱପରିବର୍ତ୍ତନ ଭାଦ୍ର ଶୁକ୍ଳ ଏକାଦଶୀ ତିଥିରେ ଅନୁଷ୍ଠିତ ହୋଇଥାଏ ।[୧୨] ଆଷାଢ଼ ଶୁକ୍ଳ ଏକାଦଶୀରେ ଶାୟିତ ତିନିମୂର୍ତ୍ତିଙ୍କର ଏହିଦିନ ପାର୍ଶ୍ୱ ପରିବର୍ତ୍ତନ (ଦକ୍ଷିଣ ଦିଗକୁ ରଖିଥିବା ମୁଖର ଉତ୍ତର ଦିଗକୁ ଆନୟନ) ହୋଇଥାଏ ।[୧୩]

କାର୍ତ୍ତିକ ଶୁକ୍ଳ ଏକାଦଶୀ ତିଥିରେ ପ୍ରଭୁଙ୍କର ଉତ୍‌ଥାପନ ଉତ୍ସବ ପରିପାଳିତ ହୁଏ ।[୧୪] ଏହି ଦିନ ସକାଳଧୂପ ସରିବା ପରେ ତିନିବାଡ଼ର ବନ୍ଦାପନା ବଢ଼ି ଏକାଦଶୀ ନୀତି ସହ ଦୈନନ୍ଦିନ କ୍ରମରେ ବଡ଼ସିଂହାର ଭୋଗ ସରିଥାଏ । ସେବକମାନେ ଖଟଶେଯ ଘର ଭିତରକୁ ଯାଇ ଶୟନ ପେଡ଼ି ମୁଦ ଭାଙ୍ଗି ଠାକୁରମାନଙ୍କୁ ବିଧିପୂର୍ବକ ପ୍ରାର୍ଥନା କରି ଉତ୍‌ଥାପନ ଉତ୍ସବ ପାଳନ କରିଥା'ନ୍ତି । ଚଳନ୍ତି ବିଗ୍ରହମାନଙ୍କଠାରେ ଏହି ନୀତି ସବୁ ଆରୋପିତ ହୋଇଥିଲେ ମଧ୍ୟ ଶ୍ରୀଜୀଉଙ୍କର ଏହା ସାକ୍ଷାତ ଉତ୍ସବ । ଏଥିପାଇଁ ରତ୍ନସିଂହାସନର ଦେବ ବିଗ୍ରହମାନଙ୍କଠାରେ ବିଧିବିଧାନ ଅନୁଷ୍ଠିତ ହେବା ପରେ ଶୟନ ଗୃହରେ ଆବଶ୍ୟକୀୟ ବିଧିପାଳିତ ହୁଏ ।

ମାର୍ଗଶିରମାସର ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ଭଗବାନଙ୍କର ପ୍ରାବରଣ (ଓଢ଼ଣ) ଉତ୍ସବ ଅନୁଷ୍ଠିତ ହୁଏ ।[୧୫] ମାର୍ଗଶିର ମାସରୁ ଶୀତର ଆରମ୍ଭ ହେଉଥିବାରୁ ଏଥିରୁ ରକ୍ଷା ପାଇବା ପାଇଁ ଭଗବାନଙ୍କୁ ଶୀତ ନିବାରକ ବସ୍ତ୍ର ଆବରଣ ଦିଆଯାଏ । ତେଣୁ ଏହାର ନାମକରଣ ଏପରି ହୋଇଅଛି ।

ପୌଷମାସ ପୂର୍ଣ୍ଣିମା ତିଥିରେ ଭଗବାନ ପୁରୁଷୋତ୍ତମଙ୍କର ପୁଷ୍ୟାଭିଷେକ ଯାତ୍ରା ଅନୁଷ୍ଠିତ ହୋଇଥାଏ ।[୧୬] ଏଥିରେ ବିବିଧ ବିଧିବିଧାନ ସହ ଭଗବାନଙ୍କର ଶ୍ରୀରାମ ବେଶ ଅନୁଷ୍ଠିତ ହୁଏ ।

ଫାଲଗୁନ ଶୁକ୍ଳ ଦଶମୀ ତିଥିରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଦୋଳଯାତ୍ରା ଆରମ୍ଭ ହୋଇଥାଏ ।[୧୭] ଏହାର ନିର୍ଦ୍ଦିଷ୍ଟ ତିଥି ଫାଲଗୁନ ପୂର୍ଣ୍ଣିମା । ଶ୍ରୀଜୀଉଙ୍କର ଚନ୍ଦନଯାତ୍ରା ସାତଦିନ ଧରି ଅନୁଷ୍ଠିତ ହୁଏ । ପୂର୍ଣ୍ଣିମାର ପାଞ୍ଚ ଦିନପୂର୍ବରୁ ଏହି ଯାତ୍ରା ଆରମ୍ଭ ହୋଇ ପୂର୍ଣ୍ଣିମା ପରଦିନ (ପ୍ରତିପଦ୍ ତିଥିରେ) ସମାପ୍ତ ହୁଏ । ଏହି ଯାତ୍ରାରେ ଲୋକମାନେ ପରସ୍ପର ଅବିର ନିକ୍ଷେପ କରି ମୈତ୍ରୀ ଭାବର ପରିଚୟ ପ୍ରଦାନ କରିଥା'ନ୍ତି । ଲୋକାନୁଗ୍ରହ ପାଇଁ ଦୋଳଗୋବିନ୍ଦ ଦୋଳାରୋହଣ ପୂର୍ବକ କ୍ରୀଡ଼ା କରିଥା'ନ୍ତି । ଏହି ଦୋଳୋତ୍ସବକୁ ସାକାର କରିବା ପାଇଁ ଶ୍ରୀମନ୍ଦିରର ଅତି ନିକଟରେ ଦୋଳମଣ୍ଡପ ନିର୍ମିତ ହୋଇଅଛି ।

ଦମନକ ଯାତ୍ରା ଦ୍ୱାଦଶ ଯାତ୍ରା ମଧ୍ୟରେ ଅନ୍ୟତମ । ଦମନକର ଅର୍ଥ ଦଁଅଣା । ଏହି ଦଁଅଣାଲାଗି ଉତ୍ସବ ଚୈତ୍ର ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ପାଳିତ ହୁଏ ।[୧୮] କୃଷ୍ଣତୁଳସୀ, ଶୁକ୍ଳ ତୁଳସୀ, କର୍ପୂରକାନ୍ତି (ଦୁର୍ଲ୍ଲଭା), ରାମ ତୁଳସୀ, ବର୍ବରୀ ତୁଳସୀ (ନାଣ୍ଡବଗୁଲି), ଫଣୀଟ୍ଜ (ମରୁଅ), ଦମନକ (ଦଁଅଣା) ଭେଦରେ ତୁଳସୀ ସାତପ୍ରକାର ହୋଇଥିବାରୁ ଓ ଭଗବାନ ତୁଳସୀ ପ୍ରିୟ ହେତୁ ତୁଳସୀ ବିଷୟରେ ଜଳନ୍ଧର ଉପାଖ୍ୟାନ ପରି ଦଁଅଣା ବିଷୟରେ ପୌରାଣିକ ଉପାଖ୍ୟାନ ଅଛି । ଦମନକ ଅସୁର ପ୍ରତି ଭଗବାନ ପ୍ରୀତ ହେବାରୁ ପୃଥିବୀରେ ବୃକ୍ଷ ରୂପରେ ସେ ଜାତ ହୋଇଥିଲେ ।[୧୯] ତାଙ୍କ ସ୍ମୃତି ସଦୃଶ ଏହି ଉତ୍ସବ ଅନୁଷ୍ଠିତ ହୋଇଥାଏ । ଚଳନ୍ତି ପ୍ରତିମା ରାତ୍ରିରେ ଜଗନ୍ନାଥ ବଲ୍ଲଭ ମଠ ଆସି ଦମନକ ନେଇଥା'ନ୍ତି । ତାହା ଜୀଉଙ୍କୁ ସମର୍ପଣ କରାଯାଏ । ଯେଉଁମାନେ ଏହି ଉତ୍ସବ ଦର୍ଶନ କରନ୍ତି ଓ ଦଁଅଣା ପ୍ରସାଦ ଭକ୍ଷଣ କରନ୍ତି, ସେମାନଙ୍କର ପୁଣ୍ୟ ହେବା ସହ ସମସ୍ତ ରୋଗ ଦୂର ହୁଏ । ଏହାକୁ ଯେ ମସ୍ତକରେ ଧାରଣ କରନ୍ତି ସେମାନେ ସର୍ବତ୍ର ବିଜୟୀ ହୁଅନ୍ତି ।

ବୈଶାଖ ମାସର ଅକ୍ଷୟ ତୃତୀୟା ଦିନଠାରୁ ଆରମ୍ଭ କରି ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥି ପର୍ଯ୍ୟନ୍ତ ୨୧ ଦିନ ବ୍ୟାପୀ ଭଗବାନଙ୍କର ଚନ୍ଦନଯାତ୍ରା ଅନୁଷ୍ଠିତ ହୁଏ । ଅସହ୍ୟ ଗ୍ରୀଷ୍ମତାପରୁ ରକ୍ଷା ପାଇବା ପାଇଁ ଭଗବାନ ନରେନ୍ଦ୍ର ପୁଷ୍କରିଣୀରେ ଜଳକ୍ରୀଡ଼ା କରିଥା'ନ୍ତି । ଶ୍ରୀମନ୍ଦିରଠାରୁ ପ୍ରାୟତଃ ଏକ କି.ମି. ଦୂରରେ ଥିବା ନରେନ୍ଦ୍ର ପୁଷ୍କରିଣୀରେ ଭଗବାନଙ୍କ ପ୍ରତିନିଧି ରୂପେ ଚଳନ୍ତି ପ୍ରତିମା ଲକ୍ଷ୍ମୀ-ସରସ୍ୱତୀଙ୍କ ସହ ଚାପ ଖେଳିବା ପାଇଁ ଆସିଥା'ନ୍ତି ।

ଉତ୍ତରାୟଣ ଯାତ୍ରା ଦ୍ୱାଦଶ ଯାତ୍ରାର ଅନ୍ତର୍ଗତ । ସୂର୍ଯ୍ୟ ଧନୁରାଶି ପରିତ୍ୟାଗ କରି ମକର ରାଶିକୁ ଗଲାବେଳେ ଘଟୁଥିବା ସଂକ୍ରମଣକୁ ଉତ୍ତରାୟଣ ସଂକ୍ରାନ୍ତି କୁହାଯାଏ । ଏହି ସଂକ୍ରମଣ କାଳରେ ଶ୍ରୀଜୀଉଙ୍କର ଉତ୍ସବ ହୋଇଥାଏ । ଏହି ଦିନ ମକର ଚାଉଳ ଭୋଗ ବଢ଼ିଥାଏ ଓ ମକର ବେଢ଼ା ଉତ୍ସବ ମଧ୍ୟ ବିଧିପୂର୍ବକ ଅନୁଷ୍ଠିତ ହୁଏ । ଶ୍ରୀଜୀଉଙ୍କ ଉଦ୍ଦେଶ୍ୟରେ ଅର୍ପିତ ହେଉଥିବା ମକରାନ୍ନ ଅତୀବ ସ୍ୱାଦୁଯୁକ୍ତ ଓ ଉପଭୋଗ୍ୟ ହୋଇଥାଏ ।

ମହାପ୍ରଭୁଙ୍କର ଦକ୍ଷିଣାୟନ ଯାତ୍ରା କର୍କଟ ସଂକ୍ରାନ୍ତି ଦିବସରେ ଅନୁଷ୍ଠିତ ହୋଇଥାଏ । ଏଥିରେ ମଧ୍ୟ ସଂକ୍ରାନ୍ତି ବିଧିପୂର୍ବକ ବିଶେଷ ବନ୍ଦାପନା କାର୍ଯ୍ୟ ଅନୁଷ୍ଠିତ ହୋଇଥାଏ ।

ଶ୍ରୀଜଗନ୍ନାଥଙ୍କ ପ୍ରସିଦ୍ଧ ଦ୍ୱାଦଶ ଯାତ୍ରା ବ୍ୟତୀତ ବହୁ ଉପଯାତ୍ରା ଓ ପର୍ବଯାତ୍ରା ବିଧିପୂର୍ବକ ଶ୍ରୀମନ୍ଦିରରେ ପାଳିତ ହେଉଥିବାରୁ ବର୍ଷସାରା ଭକ୍ତମାନେ ଶ୍ରୀକ୍ଷେତ୍ର ପରିଦର୍ଶନରେ ଆକୃଷ୍ଟ ହୋଇ ଅସୀମ ପୁଣ୍ୟ ଲାଭ କରିବା ସହ ଶ୍ରୀକ୍ଷେତ୍ରକୁ ଆନନ୍ଦ ମୁଖରିତ କରିଥା'ନ୍ତି ।

**ପାଦଟୀକା :**

୧. ଦ୍ୱାଦଶୈତାଃ ମହାଯାତ୍ରାଃ ଗୁଣ୍ଡିଚାଦ୍ୟାସ୍ତୁ ପାବନାଃ । ସ୍କ.ପୁ.-୨.୪୬.୩୯

୨. ଜ୍ୟୋତିଃଶାସ୍ତ୍ରୋଦିତୈର୍ମନ୍ତ୍ରୈଃ ଦୈବଜ୍ଞ ବିଧିଚୋଦିତୈଃ
ତତୋ ମାଙ୍ଗଲ୍ୟ ନେପଥ୍ୟ ବିଧାନମୁପଚକ୍ରମେ ।
ସ୍କ.ପୁ.-୨.୧୧.୩୫

୩. ଗୁଣ୍ଡିଚାଦ୍ୟାସ୍ତୁ ଯା ଯାତ୍ରା ବିଷ୍ଣୋର୍ଦ୍ୱାଦଶକୀର୍ତ୍ତିତାଃ
ତାସାଂ ଦର୍ଶନଜଂ ପୁଣ୍ୟଂ ବ୍ରତେନାନେବ ଲଭ୍ୟତେ ।
ସ୍କ.ପୁ. ୨.୪୪.୩୪

୪. ଏବଂ ସଲୀଳଂ ଭଗବାନ୍ ଜନ୍ମଜ୍ୟୈଷ୍ଠାଭିଷେଚୟନ୍
ଜ୍ୟୈଷ୍ଠଜନ୍ମଦିନେ ସ୍ନାନଂ ହରେର୍ଯଦବଲୋକିତମ୍ । ସ୍କ.ପୁ.

୫. ଆଷାଢ଼ସ୍ୟ ସିତେ ପକ୍ଷେ ଦ୍ୱିତୀୟା ପୁଷ୍ୟସଂଯୁତା
ଅରୁଣୋଦୟବେଳାୟାଂ ତସ୍ୟାଂ ଦେବଂ ପ୍ରପୂଜୟେତ୍ ।
ସ୍କ.ପୁ.-୨.୩୩.୩୫

୬. ପୁରାବିଦଃ ବଦନ୍ତ୍ୟେତାଂ ଯାତ୍ରା ନବଦିନାଧିକାଂ
ଏଷା ତ୍ର୍ୟବୟନା ଯାତ୍ରା ସଂପୂର୍ଣ୍ଣାଯୈରୁପାସିତା
ସ୍କ.ପୁ.-୨.୩୩.୩୭
ଦିନାନି ନବ ଯାସ୍ୟାମି ତଥା ତସ୍ମାଦିହାଗତଃ ।
ସ୍କ.ପୁ.-୨.୩୩.୩୭

୭. ଇନ୍ଦ୍ରଦ୍ୟୁମ୍ନକ୍ଷିତିଭୁଜଂ ଯଥାଜ୍ଞାସୀଃପୁରାବିଭୋ
ବିଜୟସ୍ୱ ରଥେନାଥ ଗୁଣ୍ଡିଚାମଣ୍ଡପଂ ପ୍ରତି ।
ସ୍କ.ପୁ.-୨.୩୩.୩୭

୮. ମହାବେଦୀ ବ୍ରଜନ୍ତଂ ତଂ ରଥସ୍ଥଂ ପୁରୁଷୋତ୍ତମଂ
ବଳଭଦ୍ରଂ ସୁଭଦ୍ରାଂ ଚ ଜନ୍ମକୋଟି ଶତୋଦ୍ଭବଂ
ଦୃଷ୍ଟ୍ୱା ପାପଂ ନାଶୟତି ନାତ୍ରକାର୍ଯ୍ୟବିଚାରଣା
ପଶ୍ୟନ୍ତି ଯେ ରଥେଯାନ୍ତଂ ଦାରୁବ୍ରହ୍ମ ସନାତନଂ
ପଦେ ପଦେଶ୍ୱମେଧସ୍ୟ ଫଳଂ ତେଷାଂ ପ୍ରକୀର୍ତ୍ତିତମ୍ ।
ସ୍କ.ପୁ.-୨.୩୩.୫୯

୯. କୁର୍ଯ୍ୟାଦନ୍ୟନବା କୁର୍ଯ୍ୟାଜନ୍ମ ସାଫଲ୍ୟମୃଚ୍ଛତି
ଆଷାଢ଼ ଶୁକ୍ଳୈକାଦଶ୍ୟାଂ କୁର୍ଯ୍ୟାଦ୍ ସ୍ୱାପମହୋତ୍ସବମ୍ ।
ସ୍କ.ପୁ.-୨.୩୬.୧୭

୧୦. ଏହ୍ୟେହି ଶୟନାଗାରଂ ସୁଖମତ୍ର ସ୍ୱପ ପ୍ରଭୋ
ଇତି ସଂପ୍ରାର୍ଥ୍ୟ ଦେବେଶଂ ସ୍ୱାପୟେଦ୍ ପୁରୁଷୋତ୍ତମମ୍
ସୁଦୃଢ଼ଂ ବନ୍ଧୟେଦ୍ ଦ୍ୱାରଂ ବିଷ୍ଣୋଃ ଶୟନବେଶ୍ମନଃ
ସ୍ୱାପୟିତ୍ୱା ଜଗନ୍ନାଥଂ ଲଭତେ ସୁଖମୁତ୍ତମମ୍ ।
ସ୍କ.ପୁ.-୨.୩୬.୩୦

୧୧. ଅଷ୍ଟମାସ ନିବାସେନ ଦୃଷ୍ଟ୍ୱା ବିଷ୍ଣୁଂ ଦିନେ ଦିନେ
ଯଦାପ୍ନୋତି ଫଳଂ ତଦ୍ଧି ଚାତୁର୍ମାସ୍ୟାଦିନୈକତଃ

ଚତୁର୍ମାସ୍ୟାନିବାରେନ କ୍ଷେତ୍ରେ ଶ୍ରୀପୁରୁଷୋତ୍ତମେ
ପୁରୁଷୋତ୍ତମେବସତି ସର୍ବଦୁଃଖବିବର୍ଜିତଃ

ସ୍କ.ପୁ.-୨.୩୬.୧୧

୧୨. ଅତଃ ପରଂ ପ୍ରବକ୍ଷ୍ୟାମି ପାର୍ଶ୍ୱସ୍ୟ ପରିବର୍ତ୍ତନମ୍
ଶାୟିତସ୍ୟ ଜଗଦ୍‌ଭର୍ତ୍ତୁଃ ପରିବର୍ତ୍ତୟିତୁଂ ଯୁଗମ୍
ନଭସ୍ୟ ବିମଳେ ପକ୍ଷେ ସଂପ୍ରାପ୍ତେ ହରିବାସରେ ।

ସ୍କ.ପୁ.-୨.୩୭.୧

୧୩. ପ୍ରଣମ୍ୟ ଭକ୍ତ୍ୟା ତତ୍ପାଦୌ ଗୁହ୍ୟୋପନିଷଦୈଃ ସ୍ତୁବନ୍
ମନ୍ତ୍ରଂ ଚେମଂ ପଠନ୍‌ଦେବଂ ସ୍ୱାପୟେଦ୍ ଉତ୍ତରାମୁଖମ୍ ।

ସ୍କ.ପୁ.-୨.୩୯.୧୯

୧୪. ବ୍ରତେନ ତେନୈବ ନୟେଦ୍ ଯାବଦେକାଦଶୀସିତା
ତସ୍ୟାମୁତ୍‌ଥାପୟେଦ୍ ଦେବଂ ସୁଷୁପ୍ତଂ ଜଗଦୀଶ୍ୱରମ୍ ।

ସ୍କ.ପୁ.୨.୩୯.୩୫

୧୫. ମାର୍ଗଶୀର୍ଷେ ସିତେ ପକ୍ଷେ ଷଷ୍ଠ୍ୟାଂ ପ୍ରାବରଣୋତ୍ସବମ୍
କୃତ୍ୱା ଦୃଷ୍ଟ୍ୱା ନୋ ଭକ୍ତ୍ୟା ବୈଷ୍ଣବଂ ଲୋକମାପ୍ନୁୟାତ୍ ।

ସ୍କ.ପୁ.-୨.୪୦.୦୧

୧୬. ପୁଷ୍ୟସ୍ନାନୋତ୍ସବଂ ବକ୍ଷ୍ୟେ ଯଥୋକ୍ତଂ ବ୍ରହ୍ମଣା ପୁରା
ପୁଷ୍ୟର୍କ୍ଷେଣ ଚ ସଂଯୁକ୍ତା ପୌର୍ଣ୍ଣମାସୀ ଯଦା ଭବେତ୍
ପୌଷମାସି ତଥଶ କୁର୍ଯ୍ୟାଦ୍ ପୁଷ୍ୟସ୍ନାନୋତ୍ସବଂ ହରେଃ ।

ସ୍କ.ପୁ.-୨.୪୧.୦୧

୧୭. ଫାଲଗୁନେ ମାସି କୁର୍ବୀତ ଦୋଳାରୋହଣମୁତ୍ତମମ୍
ଯତ୍ର କ୍ରୀଡ଼ତି ଗୋବିନ୍ଦୋ ଲୋକାନୁଗ୍ରହଣାୟବୈ ।

ସ୍କ.ପୁ.-୨.୪୩.୦୧

୧୮. ଚତୁର୍ଦ୍ଦଶୀ ଚ କର୍ତ୍ତବ୍ୟା ତ୍ରୟୋଦଶ୍ୟାଂ ଯୁତା ସଦା
ଭଗବତ୍ ପରିତୋଷାର୍ଥ୍ୟଂ କାର୍ଯ୍ୟଂ ଦମନକାର୍ପଣମ୍ ।

୧୯. ପୁରାନିଶୀତଥେ ବିଭୁଃ ବର୍ଭଜ ଦମନାସୁରମ୍
ଭକ୍ତ୍ୟାଲେଭେ ପରାଂ ପ୍ରୀତିଂ ତଦ୍‌ଗୋତ୍‌ଥଂଚ ତଦ୍‌ତୃଣାମ୍ ।

ସ୍କ.ପୁ.-୨.୪.୫

ପୁରାଯତ୍ କଥିତଂ ବିପ୍ରାସ୍ତୃଣଂ ଦମନକାହ୍ୱୟମ୍ ।

ସ୍କ.ପୁ.-୨.୪୫.୪

ବରିଷ୍ଠ ଅଧ୍ୟାପକ, ସଂସ୍କୃତ ବିଭାଗ
ସରକାରୀ (କ) ମହାବିଦ୍ୟାଳୟ, ସୁନ୍ଦରଗଡ଼

# ରଥେ ଦେଖିଯିବି କଳାବାମନ

ଓମ୍ ପ୍ରକାଶ ମହାପାତ୍ର



ରଥେ ଦେଖିଯିବି କଳାବାମନ,
ଯିବିରେ ଯିବି ମୁଁ କରିଛି ମନ ।
ଏସନ ଆଷାଢ଼ ଦ୍ୱିତୀୟା ଦିନ,
ରଥେ ଦରଶନେ ଧୋଇବ ମନ ॥

ଟାହିଆ ହଲାଇ ଜଗା ଆସିବ,
ବାଇଶି ପାହାଚେ ପହଣ୍ଡି ହେବ ।
ତିନି ରଥ ବଡ଼ଦାଣ୍ଡେ ଲାଗିବ,
ଭାଇ-ଭଉଣୀ ସଂଗତେ ଯାତରା ଯିବ ॥

ଚାରେ ଚଢ଼ିଯିବ ରଥ ଉପର,
ବଡ଼ଦାଣ୍ଡେ ବଡ଼ରଥ ତାହାର ।
ଦେଖିବି କାଳିଆ ଯେ ବାରମ୍ବାର,
ଚକା ଆଖିରେ ଲାଗିବ ନଜର ॥

ବଡ଼ ବଗୁଲିଆ ନଟଖଟିଆ ନାଗର,
ବିଚିତ୍ର ଲୀଳା ଖେଳା ଭକତ ସାଙ୍ଗର ।
କାହାକୁ ରାଜେନ୍ଦ୍ର କାହାକୁ ଫକୀର,
ଚଣ୍ଡାଳ ବେଶରେ ରଜା ରଥ ଉପର ॥

ଜଗତରେ ନାହିଁ ଏପରି ଠାକୁର,
ଷାଠିଏ ପଉଟି ଭୋଜନ ତା'ର ।
ରୋଗେ ପଡ଼ିଯାଏ ସେ ଅନବସର,
ଦରଶନ ମିଳେ ଅଲାରନାଥ ମନ୍ଦିର ॥

ଇଚ୍ଛାମୟ ! ତୁମେ ତ ଲଗାଅ ଡୋରି,
ଭକତ ପ୍ରେମେ ପାଗଳ ହେ ହରି ।
କରି ବିନି ଡେରି, ଯିବି ବଡ଼ଦାଣ୍ଡେ ତୁମରି,
ଚକାଡ଼ୋଳା ହରି, ରହୁଛି-ଏତିକି ମିନତି କରି ॥



ଲେଖା ନିୟନ୍ତ୍ରକ
ରାଜଭବନ, ଭୁବନେଶ୍ୱର

# ଶ୍ରୀମନ୍ଦିରର ଦୁଇବେଢ଼ା ଓ ବେଢ଼ା ପ୍ରାଚୀର

ଡକ୍ଟର ସରୋଜ କୁମାର ପଣ୍ଡା

**ସା**ଧାରଣ ଅର୍ଥରେ ଯାହା ବେଢ଼େଇ ହୋଇ ରହିଥାଏ, ତାହାକୁ 'ବେଢ଼ା' କୁହାଯାଏ । ଶ୍ରୀମନ୍ଦିରରେ ଦୁଇଟି ବେଢ଼ା ରହିଛି - ଭିତର ବେଢ଼ା ଓ ବାହାର ବେଢ଼ା । ମୁଖ୍ୟ ମନ୍ଦିରଠାରୁ କୂର୍ମ ପାଚେରୀ ପର୍ଯ୍ୟନ୍ତ ପ୍ରାୟ ୧୦୦ ଫୁଟ ବ୍ୟାସାର୍ଦ୍ଧ ପରିମିତ ଅଞ୍ଚଳ ଭିତର ବେଢ଼ା (କୂର୍ମ ବେଢ଼ା) ଭାବେ ପରିଚିତ ଥିବାବେଳେ କୂର୍ମ ପାଚେରୀରୁ ମେଘନାଦ ପ୍ରାଚୀର ପର୍ଯ୍ୟନ୍ତ ଚତୁଃପାର୍ଶ୍ୱରେ ପ୍ରାୟ ୧୫୦ ଫୁଟ ବ୍ୟବଧାନରେ ଥିବା ସ୍ଥାନକୁ ବାହାର ବେଢ଼ା କୁହାଯାଏ । ଭିତର ବେଢ଼ାର ପ୍ରାଚୀର କୂର୍ମ ବା କଇଁଛ ଆକୃତିର ହୋଇଥିବାରୁ, ଏହା କୂର୍ମ ପ୍ରାଚୀର ନାମରେ ନାମିତ । କେତେକଙ୍କ ମତରେ ଶ୍ରୀମନ୍ଦିର ନିର୍ମାଣ ପାଇଁ ପଥର ବୋହି ବୋହି କୂର୍ମ ହୋଇଯାଇଥିବା ଶ୍ରମିକଙ୍କ ସ୍ମୃତିରେ ଏହି ବେଢ଼ାର ଏପରି ନାମକରଣ ହୋଇଛି । ସେହିଭଳି ବରୁଣ ରାଜା ସମୁଦ୍ରଙ୍କ (ଯାହାଙ୍କ ଅନ୍ୟନାମ ମେଘନାଦ) ଗୁରୁ ଗମ୍ଭୀର ନିନାଦରୁ ଶ୍ରୀମନ୍ଦିର ଚତୁଃପାର୍ଶ୍ୱ ପରିବେଶକୁ ଶାନ୍ତ ରଖିବାକୁ ମେଘନାଦ ପ୍ରାଚୀର ନିର୍ମାଣ କରାଯାଇଛି ବୋଲି କେତେକ ମତ ଦିଅନ୍ତି ।

ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ର ଦେବ ଖ୍ରୀ: ୧୪୪୮ରେ ମେଘନାଦ ପ୍ରାଚୀରର ନିର୍ମାଣ କରାଇଥିବା ମାଦଳା ପାଞ୍ଜିରୁ ଜଣାଯାଏ । ଏହାର ବହୁପୂର୍ବରୁ, ଏପରିକି ଶ୍ରୀମନ୍ଦିର ନିର୍ମାଣ ସମୟରେ କୂର୍ମ ବେଢ଼ା ପ୍ରାଚୀର ଯେ ନିର୍ମିତ ହୋଇଛି, ଏହା ବିନା ଦ୍ୱିଧାରେ କୁହାଯାଇପାରେ ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ମତାନୁଯାୟୀ ବଡ଼ଦାଣ୍ଡରୁ କୂର୍ମବେଢ଼ାର ଚଟାଣ ପ୍ରାୟ ୨୦ ଫୁଟ ଉଚ୍ଚ ଏବଂ ଏହାର ସୀମାରେ ୨୦ ଫୁଟ ଉଚ୍ଚର ଏକ ପ୍ରାଚୀର ରହିଛି । ଏହି ପ୍ରାଚୀରର କାନ୍ଥ ପୂର୍ବ ଓ ପଶ୍ଚିମ ପଟେ ୩୧୫ ଫୁଟ ଲମ୍ବିଥିବାବେଳେ ଉତ୍ତର ଓ ଦକ୍ଷିଣ ପଟେ ଏହାର ଲମ୍ବ ୪୨୦ ଫୁଟ । ପ୍ରାଚୀରଟିର ଓସାର ପ୍ରାୟ ୧୬ ଫୁଟ । ଶାଣ ପଥରରେ ନିର୍ମିତ ଏ ପ୍ରାଚୀର ଶୀର୍ଷରେ ତୀର ଆକୃତିର ଗାଙ୍ଗଲା ସବୁ ରହିଛି । ପ୍ରାଚୀରରେ ଛଅଟି ଦ୍ୱାର ରହିଛି । ମେଘନାଦ ପ୍ରାଚୀରର ଦ୍ୱାର ଭଳି ସିଧାରେ ଚାରିଦ୍ୱାର, ଆଗ୍ନେୟ କୋଣ (ପୂର୍ବ-ଦକ୍ଷିଣ) ରୋଷ ଘରକୁ ଏକ ଦ୍ୱାର ଓ ଐଶାନ କୋଣ (ପୂର୍ବ-ଉତ୍ତର)



ଆନନ୍ଦ ବଜାରକୁ ଅନ୍ୟ ଏକ ଦ୍ୱାର ରହିଛି । ଐଶାନ କୋଣ ଦ୍ୱାରବାଟେ ଶ୍ରୀଜୀଉମାନେ ସ୍ନାନପୂର୍ଣ୍ଣିମା ଓ ଗୁଣ୍ଡିଚା-ବାହୁଡ଼ା ଯାତ୍ରାରେ ଯାତାୟାତ କରନ୍ତି । ବିଭିନ୍ନ ରୀତିନୀତିରେ ମନ୍ଦିରର ଚଳନ୍ତି ପ୍ରତିମାମାନେ ମଧ୍ୟ ଏହି ଦ୍ୱାର ଦେଇ ପଦାକୁ ଯାଆନ୍ତି । ଭିତର ଦ୍ୱାରଗୁଡ଼ିକ ମଧ୍ୟରୁ ସୂକ୍ଷ୍ମ ଭାସ୍କର୍ଯ୍ୟରେ ସୁଶୋଭିତ ସୁନ୍ଦର ଦ୍ୱାରଟି ହେଉଛି ପୂର୍ବଦ୍ୱାର, ଯାହାକି ସିଂହଦ୍ୱାର ସିଧା ବାଇଶ ପାବଚ୍ଛ ଉପରେ ବିଦ୍ୟମାନ । ଗବେଷକ ଶରତଚନ୍ଦ୍ର ଏହି ଦ୍ୱାରକୁ 'କୂର୍ମବେଢ଼ା ଦ୍ୱାର' ବୋଲି ଅବିହିତ କରିଛନ୍ତି । କାରଣ ଏହି ଦ୍ୱାରର ସମ୍ମୁଖ ଭାଗରେ ବାଇଶ ପାବଚ୍ଛ ଉପରେ ବ୍ରାହ୍ମଣମାନଙ୍କ ଦ୍ୱାରା ଶ୍ରାଦ୍ଧ କର୍ମ କରାଯାଇଥାଏ । କର୍ମଦ୍ୱାରରୁ ଅପଭ୍ରଂଶ ହୋଇ ଏହା କୂର୍ମଦ୍ୱାର ହୋଇଛି । କୂର୍ମବେଢ଼ା ଉତ୍ତରପଟ ଦ୍ୱାର ଦୁଇପାର୍ଶ୍ୱରେ ଶୋଭା ପାଉଛି ଦୁଇଟି ବୃହତ୍‌କାୟ ହସ୍ତୀ ବିଗ୍ରହ । ଏକଦା ଏହି ଭିତର ବେଢ଼ାର ଦ୍ୱାରଗୁଡ଼ିକ ଶ୍ରୀମନ୍ଦିରର ପ୍ରଧାନ ଦ୍ୱାର ଥିଲାବୋଲି ଐତିହାସିକମାନେ ମତ ଦିଅନ୍ତି ।

କୂର୍ମବେଢ଼ା ମଧ୍ୟରେ ରହିଥିବା ଦେବାଦେବୀ ଓ ଆସ୍ଥାନଗୁଡ଼ିକ ହେଉଛି - ବେଢ଼ାର ରକ୍ଷକ ଅଗ୍ନେଶ୍ୱର ମହାଦେବ, ସତ୍ୟନାରାୟଣ, ଶ୍ରୀକୃଷ୍ଣ, ରାଧାକୃଷ୍ଣ, ହରିହର, କଳ୍ପବଟ, ବଟଗଣେଶ, ବାଟମଙ୍ଗଳା, ଇନ୍ଦ୍ର, ବଟଜଗନ୍ନାଥ, ଅନନ୍ତବାସୁଦେବ, ଦିଗପାଳ, ସୂର୍ଯ୍ୟନାରାୟଣ, କର୍ଣ୍ଣାମଚଣ୍ଡୀ, ମୁକ୍ତିମଣ୍ଡପ, ପୁରୁଣା ରୋଷଘର, ନୃସିଂହ, ମଦନମୋହନ, ଜଳକ୍ରୀଡ଼ା ମଣ୍ଡପ, ରୋହିଣୀ କୁଣ୍ଡ, ଗଣେଶ, ବିମଳା, ଭଣ୍ଡଗଣେଶ,

ସରସ୍ୱତୀ, ଭଦ୍ରକାଳୀ, ନୀଳମାଧବ, ଲକ୍ଷ୍ମୀ, ସୂର୍ଯ୍ୟ ନାରାୟଣ, ନବଗ୍ରହ, ପାତାଳେଶ୍ୱର, ପାଦପଦ୍ମ, ଏକାଦଶୀ ଦେବୀ । ଏହାବ୍ୟତୀତ ଭିତର ବେଢ଼ା ମଧରେ ଅନ୍ୟକେତେକ ମନ୍ଦିର ଓ ମଣ୍ଡପ ମଧ୍ୟ ଦୃଷ୍ଟିଗୋଚର ହୋଇଥାଏ । ସେଗୁଡ଼ିକ ହେଲା - କଳ୍ପ ଗଣେଶ ମନ୍ଦିର, ସର୍ବ ମଙ୍ଗଳା ମନ୍ଦିର, ପଞ୍ଚୁପାଣ୍ଡବ ମନ୍ଦିର, ମହାବକ୍ରେଶ୍ୱର ମନ୍ଦିର, ସୂର୍ଯ୍ୟଯନ୍ତ୍ର ମନ୍ଦିର, କ୍ଷେତ୍ରପାଳ ମନ୍ଦିର, ଯୋଗେଶ୍ୱର ମନ୍ଦିର, ସାକ୍ଷୀଗୋପାଳ ମନ୍ଦିର, କ୍ଷୀରଚୋରା ଗୋପୀନାଥ ମନ୍ଦିର, ପଞ୍ଚଶକ୍ତି ମନ୍ଦିର, ଲକ୍ଷ୍ମୀନାରାୟଣ ମନ୍ଦିର, ଚନ୍ଦ୍ର ମନ୍ଦିର, ଗୋପୀନାଥ ଓ ରାମଚନ୍ଦ୍ର ମନ୍ଦିର, ସାରୀ ଦେଉଳ, ଶ୍ରୀଚୈତନ୍ୟଦେବ ମନ୍ଦିର, ଭୋଗମଣ୍ଡପ ମନ୍ଦିର, ଶିଖର ନିଶା ମନ୍ଦିର, ଦେବସଭା ମଣ୍ଡପ, ମଦନମୋହନ ମନ୍ଦିର (ଦକ୍ଷିଣ ଘର), ମାର୍ଜନା ମଣ୍ଡପ, ନାଭିକଟା ମଣ୍ଡପ ଇତ୍ୟାଦି । ଷଷ୍ଠ ଶତାବ୍ଦୀର ଆକ୍ରମଣକାରୀ ରକ୍ତବାହୁଠାରୁ ଆରମ୍ଭ କରି ଅଷ୍ଟାଦଶ ଶତାବ୍ଦୀର ସୁଜାଉଦ୍ଦିନ ପର୍ଯ୍ୟନ୍ତ ଯେଉଁମାନେ ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରିଛନ୍ତି, କେହି ହେଲେ କୂର୍ମ ପ୍ରାଚୀର ନଷ୍ଟ କରିବାକୁ ସମର୍ଥ ହୋଇନାହାନ୍ତି । ଏହି ପ୍ରାଚୀର ଶହ ଶହ ବର୍ଷ ଦଣ୍ଡାୟମାନ ରହି ଶ୍ରୀମନ୍ଦିରକୁ ସୁରକ୍ଷିତ ରଖିଛି । ସେହିଭଳି କୂର୍ମବେଢ଼ା ମଧ ନିଜ ବକ୍ଷରେ ଅନେକ ଦେବାଦେବୀଙ୍କୁ ସ୍ଥାନ ଦେଇ ଶ୍ରୀକ୍ଷେତ୍ରରେ ମହିମା ବୃଦ୍ଧି କରିଆସିଛି ।

କୂର୍ମବେଢ଼ା ପ୍ରାଚୀର ଓ ମେଘନାଦ ପ୍ରାଚୀରର ମଧବର୍ତ୍ତୀ ଭୂମିଭାଗ ସମତଳ ନୁହେଁ । ଏହାକ୍ରମେ ଗଡ଼ାଣିଆ । ଏଣୁ ଦୁଇ ପ୍ରାଚୀର ମଧରେ ରହିଛି ଧାଡ଼ି ଧାଡ଼ି ପାବଚ୍ଛ । ପୁନଶ୍ଚ ଦୁଇ ପ୍ରାଚୀର ମଧରେ ବ୍ୟବଧାନ ଚାରିଦିଗରେ ସମାନ ନୁହେଁ । ପୂର୍ବ, ଉତ୍ତର ଓ ଦକ୍ଷିଣ ଦିଗରେ ଏହି ବ୍ୟବଧାନ ପ୍ରାୟ ସମାନ ଥିଲେ ହେଁ ପଶ୍ଚିମରେ ଏହା ଊଣା ଥିବା ଜଣାଯାଏ ।

ଶ୍ରୀମନ୍ଦିରର ବାହ୍ୟ ପ୍ରାଚୀର (ମେଘନାଦ ପ୍ରାଚୀର)ର ଉଚ୍ଚତା ୨୨ ଫୁଟ । କେତେକ ସ୍ଥାନରେ ଏହା ଫୁଟେ ଦୁଇ ଫୁଟ କମ୍ ଅଧିକ । ପ୍ରାଚୀରର ଶୀର୍ଷଭାଗରେ ଦୁଇ ଫୁଟ ଉଚ୍ଚର ସୁରମ୍ୟ ଗାଙ୍ଗଲାଗୁଡ଼ିକ ଶୋଭା ପାଉଛି । ଏହି ପ୍ରାଚୀରର ପୂର୍ବପଟ କାନ୍ଥ ୬୪୪ ଫୁଟ ପର୍ଯ୍ୟନ୍ତ ଲମ୍ବିଥିବା ବେଳେ ଦକ୍ଷିଣ ପଟେ ଏହାର ଦୈର୍ଘ୍ୟ ୬୬୫ ଫୁଟ । ପ୍ରାଚୀରଟିର ଓସାର ୭ ଫୁଟ । ଏହି ପ୍ରାଚୀରର ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦିଗରେ ଥିବା ପ୍ରବେଶ ଦ୍ୱାରଗୁଡ଼ିକ ଯଥାକ୍ରମେ ସିଂହଦ୍ୱାର, ବ୍ୟାଘ୍ରଦ୍ୱାର, ହସ୍ତୀଦ୍ୱାର ଓ ଅଶ୍ୱଦ୍ୱାର ନାମରେ ପରିଚିତ । ଧର୍ମ, ଅର୍ଥ, କାମ ଓ ମୋକ୍ଷ ପାଇଁ ଏହି ଚାରିଦ୍ୱାର ଅଭିପ୍ରେତ ବୋଲି କେହି କେହି କହନ୍ତି । ସିଂହଦ୍ୱାର ଦେଇ ଅଗଣିତ ଜଗନ୍ନାଥ ଦର୍ଶନାର୍ଥୀ ଶ୍ରୀମନ୍ଦିରରେ ପ୍ରବେଶ କରିଥାନ୍ତି । ଏହି ଦ୍ୱାର ଦେଇ ଶଙ୍କର, ଶ୍ରୀଚୈତନ୍ୟ, ରାମାନୁଜ, ନାନକ, କବୀର, ତୁଳସୀ ଦାସ ପ୍ରଭୃତି ମନ୍ଦିରରେ ପ୍ରବେଶ କରିଥିବାର ନଜିର ରହିଛି । ସେହିପରି ତାନ୍ତ୍ରିକମାନେ ସାଧାରଣତଃ ଦକ୍ଷିଣଦ୍ୱାର ଦେଇ ଶ୍ରୀମନ୍ଦିରରେ ପ୍ରବେଶ କରିଥାନ୍ତି । ତେବେ ଏହି ଚାରିଦ୍ୱାର ଏକ ସମୟରେ ନିର୍ମିତ ହୋଇ ନଥିବା ଜଣାଯାଏ । ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି ଯେ, ଗଜପତି ଦିବ୍ୟସିଂହ ଦେବ (ଖ୍ରୀ:୧୭୯୩-୧୭୯୮) ପଶ୍ଚିମଦ୍ୱାର ନିର୍ମାଣ କରାଇଥିଲେ । ପରେ ପଞ୍ଜାବର ଶିଖ୍‌ରାଜା ରଣଜିତ୍ ସିଂହ ଖ୍ରୀ:୧୮୪୮ରେ ଏହି ଦ୍ୱାରର ତୋରଣ ମନ୍ଦିର ନିର୍ମିତ ହୋଇ ନଥିବାର ଦେଖି, ଏହାର ତୋରଣ ମନ୍ଦିର ନିର୍ମାଣ କରାଇଥିଲେ । ତୋରଣ ମନ୍ଦିର ନିର୍ମାଣ ସମ୍ବନ୍ଧରେ ପଶ୍ଚିମଦ୍ୱାରର ଏକ ଶିଳାଲେଖରେ ମଧ ଉଲ୍ଲେଖ ଅଛି ।

ଶ୍ରୀମନ୍ଦିରର ବାହାର ବେଢ଼ାରେ କେତେକ ଦେବାଦେବୀ ମନ୍ଦିର ତଥା ମଣ୍ଡପ ଦୃଷ୍ଟିଗୋଚର ହୋଇଥାଏ । ଦେବାଦେବୀଙ୍କ ମଧରେ ପୂର୍ବଦ୍ୱାର ନିକଟସ୍ଥ କାଶୀ ବିଶ୍ୱନାଥ, ଦକ୍ଷିଣଦ୍ୱାର ନିକଟସ୍ଥ ରାମଚନ୍ଦ୍ର, ଶ୍ରୀଚୈତନ୍ୟ (ଷଡ଼ଭୁଜ), ବୁଢ଼ୀମା, ହନୁମାନ (ବରାଭୟ), ନୃସିଂହ, ପଶ୍ଚିମଦ୍ୱାର ନିକଟସ୍ଥ ଚତୁର୍ଦ୍ଧାମ ମନ୍ଦିର ଏବଂ ଉତ୍ତର ଦ୍ୱାର ନିକଟସ୍ଥ ଉତ୍ତରାୟଣୀ, ଶୀତଳା, ଝାଡ଼େଶ୍ୱରୀ, ତ୍ରିଶକ୍ତି ଓ ଈଶାନେଶ୍ୱର ଶମ୍ଭୁଙ୍କ ମନ୍ଦିରଗୁଡ଼ିକ ପ୍ରଧାନ । ସେହିପରି ଚାହାଣୀ ମଣ୍ଡପ, ରୋଷଘର, ଅଳକା ବାଟିକା (ପୁଷ୍ପ ଉଦ୍ୟାନ), ନୀଳାଦ୍ରି ବିହାର, କୋଇଲି ବୈକୁଣ୍ଠ, ଆନନ୍ଦ ବଜାର, ଦେବସ୍ନାନ ମଣ୍ଡପ, ଭେଟ ମଣ୍ଡପ ଆଦି ପବିତ୍ର ସ୍ଥାନଗୁଡ଼ିକ ବାହାର ବେଢ଼ାକୁ ମଣ୍ଡନ କରିଥାଏ । ସର୍ବୋପରି ମେଘନାଦ ପ୍ରାଚୀର ମନ୍ଦିର ସମୂହକୁ ବ୍ୟାପ୍ତ କରି ସୁରକ୍ଷାବଳୟ ସୃଷ୍ଟି କରିଥାଏ ।

ଅଧ୍ୟକ୍ଷ
ଗାଦିବ୍ରହ୍ମ କଲେଜ, ଡେଲାଙ୍ଗ







# ପ୍ରାଚୀନ ଗୀତିକବିତାରେ ଜଗନ୍ନାଥଙ୍କ ବିଭିନ୍ନ 'ଯାତ'

ଡକ୍ଟର ଦେବାଶିଷ ପାତ୍ର



**ଜ**ଗନ୍ନାଥ ହିଁ ସକଳ ସୃଷ୍ଟିର ଆଧାର । ତାଙ୍କରି ଇଙ୍ଗିତରେ ସମଗ୍ର ବ୍ରହ୍ମାଣ୍ଡ ଆତଯାତ । ସେ ହିଁ କେତେବେଳେ ହର୍ଷ ଉଲ୍ଲାସରେ ଭରା ମଣିଷର ମୁହଁ ତ କେତେବେଳେ ନିର୍ଯାତିତ ଆଖିର ଲୁହ । ତେଣୁ ସେ ଅନନ୍ୟ । ଯାହାଙ୍କୁ ନେଇ ଗୋଟିଏ ଜାତିର ପରମ୍ପରା ଓ ସଂସ୍କୃତି ଋଦ୍ଧିମନ୍ତ । ସେହି ପରମ ପୁରୁଷ ଆମ ଦୃଷ୍ଟିରେ ଲକ୍ଷ୍ମୀବନ୍ତ, ଜନ୍ମରହିତ, ଗର୍ବଗଂଜନକାରୀ, ନିର୍ବିକଳ୍ପ ଓ ଅନାଥର ନାଥ । ଅନ୍ୟ ଦିଗରେ ସେ ଶୈବର ଶିବ, ଶାକ୍ତର ଶକ୍ତି, ବୌଦ୍ଧର ବୁଦ୍ଧ, ଜୈନର ଜୀନ ଏବଂ ସର୍ବୋପରି ବିଷ୍ଣୁମୟ । ଯାହାଙ୍କୁ କେନ୍ଦ୍ରକରି ଉତ୍କଳର ବହୁ ପର୍ବପର୍ବାଣି ପାଳିତ । ବିଶେଷ କରି ଶ୍ରୀମନ୍ଦିରରେ ପାଳିତ ତେର ଗୋଟି ଯାତ୍ରାର ନାୟକ ମଧ୍ୟ ସେହି ଆରାଧ୍ୟ ପୁରୁଷ ।

ଶ୍ରୀମନ୍ଦିରର ଦୈନିକ ପୂଜାର୍ଚ୍ଚନା, ଷୋଡ଼ଶ ଉପଚାର, ତିନିଧୂପ, ପାଞ୍ଚ ଅବକାଶ ବ୍ୟତିରେକ ତେର ଯାତ୍ରା ମଧ୍ୟ ପାଳିତ ହୋଇଥାଏ । ସେ ସମସ୍ତ ହେଉଛି ସ୍ନାନଯାତ୍ରା, ଗୁଣ୍ଡିଚାଯାତ୍ରା, ଶୟନ, ଉତ୍ତରାୟଣ, ଦକ୍ଷିଣାୟନ, ପାର୍ଶ୍ୱପରିବର୍ତ୍ତନ, ଉତ୍‌ଥାପନ, ପାର୍ବଣ, ପୁଷ୍ୟାଭିଷେକ ଦୋଳ, ଦମନକ, ଚଳନ ଓ ନୀଳାଦ୍ରି ମହୋତ୍ସବ । ସେଥିମଧ୍ୟରୁ ରଥଯାତ୍ରା, ଚନ୍ଦନଯାତ୍ରା, ସ୍ନାନଯାତ୍ରା ଓ ଦୋଳଯାତ୍ରା ମୁଖ୍ୟ ଅଟେ । ଏହି ଯାତ ସାଧାରଣ ଜନଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ଜଗନ୍ନାଥଙ୍କ ଏହି ଯାତ୍ରାର ପ୍ରଖ୍ୟାପନ ଗୀତିକବିଙ୍କ ଲେଖନୀରୁ ଝରିଆସିଛି ପ୍ରାଚୀନତର ସମୟରୁ । ଗାୟନ ଶୈଳୀର ଉନ୍ନତ ପରମ୍ପରାକୁ ଆଖି ଆଗରେ ରଖି ସୃଷ୍ଟି ହୋଇଛି ଜଗନ୍ନାଥ କୈନ୍ଦ୍ରିକ ଭଜନ ଓ ଜଣାଣ । ତେଣୁ ସେ ସମସ୍ତ ଗୀତିକବିତାର ଆଲୋଚନା କାଳରେ ଆମେ ଜାଣିପାରିବା ଜଗନ୍ନାଥଙ୍କ ପ୍ରଖ୍ୟାତ ଯାତ ସଂପର୍କରେ ।

**ଚନ୍ଦନଯାତ୍ରା :** ଓଡ଼ିଆ ନବବର୍ଷ ସହିତ ଋତୁଚକ୍ରର ପରିବର୍ତ୍ତନରେ ଧରାପୃଷ୍ଠକୁ ଓହ୍ଲାଇ ଆସେ ଗ୍ରୀଷ୍ମ । ଖରାର ଟାଣପଣରେ ଗମ୍ଭୀରି ଭିତରେ ଥିବା ତିନିଠାକୁର ବାହାରନ୍ତି ଚନ୍ଦନ ଯାତରେ । ବୈଶାଖର ଶୁକ୍ଳପକ୍ଷ ତୃତୀୟାଠାରୁ ଏହି ଯାତ୍ରା ଏକୋଇଶ ଦିନ ଧରି ଅନୁଷ୍ଠିତ ହୁଏ । ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ମଦନମୋହନ ଲକ୍ଷ୍ମୀଙ୍କ ସହିତ ପାଲିଙ୍କିରେ ଚଢ଼ି ନରେନ୍ଦ୍ର ପୋଖରୀରେ ବିଜେ ହୁଅନ୍ତି । ପ୍ରଭୁ ଚାପ ଖେଳି ସେଠାରେ ଭକ୍ତଙ୍କ ସହିତ କରନ୍ତି ଜଳକ୍ରୀଡ଼ା । କବି ଦାମୋଦର ଅତି ମନୋରମ ଭାବରେ ଏହି ଦୃଶ୍ୟ ବର୍ଣ୍ଣନା କରିଛନ୍ତି ତାଙ୍କ କବିତାରେ -

'ଏ ପରା ଚନ୍ଦନ ଯାତ ଗୋ ମିତ  
ନନ୍ଦ ନନ୍ଦନଙ୍କ ବିଧିମତ  
ଶତ ଶତ ବାଳୀ ଘେନି ବନମାଳି  
ବିହରୁଛନ୍ତି କାଳିନ୍ଦୀ ସ୍ରୋତ ।'

ପଦ୍ୟାବଳୀ ସାହିତ୍ୟର ଶ୍ରେଷ୍ଠ କବି ବନମାଳୀ ତାଙ୍କ ଚଉପଦୀରେ ସହଚରୀଙ୍କ ଗହଣରେ ବାଙ୍କ ଚାହାଣୀ ଢାଳି ମନ୍ଦ ମନ୍ଦ ହସି ହସି ଝୁଲି ଝୁଲି ଚାପ କ୍ରୀଡ଼ା ପାଇଁ ଯାଉଥିବା ଜଗନ୍ନାଥଙ୍କ ବେଶ୍ ବର୍ଣ୍ଣନା କରିଛନ୍ତି । ନରେନ୍ଦ୍ର ପୋଖରୀକୁ କ୍ଷୀର ସାଗର ସହିତ, ଚାପକୁ ମନ୍ଦର ପର୍ବତ ସହିତ ଓ ମଦନମୋହନଙ୍କୁ ମୋହିନୀକନ୍ୟା ସହିତ ତୁଳନା କରି ଅସାଧାରଣ କବିତ୍ୱର ପରିଚୟ ଦେଇଛନ୍ତି -

'ମୋ ମନ କହୁଛି  
ନରେନ୍ଦ୍ର ସର ଏ ନୁହେଁ କ୍ଷୀର ସାଗର  
ଚାପ ଛଳେ ବଳେ ପକାଇ  
ମନ୍ଦର ମନ୍ଥିଲ କି ନନ୍ଦ କିଶୋର ।'

କବି ଦୀନକୃଷ୍ଣଙ୍କ କବିତାରେ ବାହୁଡ଼ା ବିଜୟ ପୂର୍ବରୁ ଶ୍ରୀଜଗନ୍ନାଥଙ୍କ ଚନ୍ଦନ ଯାତ୍ରା ହେଉଥିବାର ବର୍ଣ୍ଣନା ମଧ୍ୟ ରହିଛି -

'ନୀଳାଦ୍ରି ମଣ୍ଡନ,  
ଜଳକେଳି ସାରି ବାହୁଡ଼ା ବିଜୟେ  
କଲ ଧୀରେ ଅବଧାନ ।'

**ସ୍ନାନଯାତ୍ରା :** ଜଗନ୍ନାଥଙ୍କର ଏହି ସ୍ନାନଯାତ୍ରା ଜ୍ୟେଷ୍ଠପୂର୍ଣ୍ଣିମା ଦିନ ଅନୁଷ୍ଠିତ ହୋଇଥାଏ । ସେହିଦିନ ତିନିଠାକୁରଙ୍କୁ ସ୍ନାନବେଦୀ ନିକଟକୁ ଅଣାଯାଇ





ତାଙ୍କ ଉପରେ କଳସରେ ପାଣି ଢଳାଯାଏ । ଏହା ପରଠାରୁ ତିନିଠାକୁର ଅଣସର ଘରେ ରହନ୍ତି । ସାଧାରଣ ଦର୍ଶନ ଦିଅନ୍ତି ନାହିଁ । ଏହି ସ୍ନାନଯାତ୍ରା ଦିନ ସ୍ନାନ ପାଇଁ ବିଜେ କରୁଥିବା ତିନିଠାକୁରଙ୍କୁ ହାତୀବେଶ କରାଯାଇଥାଏ । ଜଗନ୍ନାଥଙ୍କର ସେହି ଜଗତଜିତା ବେଶକୁ ବନମାଳୀ ଦାସ ତାଙ୍କ ପଦାବଳୀରେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି -

'ଚନ୍ଦନ ପଲଙ୍କେ ହାତୀ ହୋଇଅଛି
ଚାଲିବା ଛଟକେ ହାତୀ ପଡୁଅଛି ଢଳି
କି ସୁନ୍ଦର ହୋଇ ହାତୀ ଚାଲେ ମୟମତ୍ତା
ଚଉଦ ଭୁବନେ ହାତୀ ଅଟଇ କରତା ।'

କବି ପୁରୁଷୋତ୍ତମ ଜଗନ୍ନାଥଙ୍କର ହାତୀବେଶକୁ ଦେଖି ତାଙ୍କୁ 'କାଳିଆ ହାତୀ', 'ବୃଷାଳ ହାତୀ' ବୋଲି ସମ୍ବୋଧନ କରିଛନ୍ତି । କବି ସାଲବେଗ ଜଗନ୍ନାଥଙ୍କର ସ୍ନାନମଣ୍ଡପରେ ସ୍ନାନ କରୁଥିବା ଦୃଶ୍ୟକୁ ଅତ୍ୟନ୍ତ ମନୋରମ ଭାବରେ ବର୍ଣ୍ଣନା କରିଛନ୍ତି -

'ଶଙ୍ଖ ଘଣ୍ଟା କାଂସୀ ମଧୁର ଦୁନ୍ଦୁଭୀ ବାଜନ୍ତି
ସେବକ ପଡ଼ିଆରି ତାରଭ ତାହାଙ୍କୁ ମାଖନ୍ତି ।'

**ରଥଯାତ୍ରା :** ସ୍ନାନ ପୂର୍ଣ୍ଣିମା ପରେ ତିନି ଠାକୁର ଅଣସର ଘରେ ରହିବା ପରେ ନବଯୌବନ ଦର୍ଶନ ଦିଅନ୍ତି ଏବଂ ମାଉସୀ ମା' ଘରକୁ ବୁଲି ବାହାରନ୍ତି ରଥଯାତ୍ରାରେ । ଶେଷରେ ପ୍ରତୀକ୍ଷାର ଅବସାନ ଘଟାଇ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ସୁଭଦ୍ରା ତିନିରଥରେ ବିଜେ କରନ୍ତି । ଘଣ୍ଟା, ମୃଦଙ୍ଗ, ହୁଳହୁଳି ହରିବୋଲରେ ଫାଟି ପଡ଼େ ବଡ଼ଦାଣ୍ଡ । ଧୀରେ ଧୀରେ ଆଗେଇ ଚାଲେ ରଥ ଜନ ସମୁଦ୍ର ଭିତରେ । ସୁବର୍ଣ୍ଣ କଳସ ଉପରେ ଫରଫର ହେଇ ଉଡ଼େ ନେତ । ଆତ୍ମହରା ହୋଇ ଭକ୍ତ ଗାଇ ଉଠେ ଜଗନ୍ନାଥ ଗୀତିକା । ଏହିଭଳି ଏକ ଯାତ୍ରାର ମହନୀୟତା କବି ଜଗନ୍ନାଥ ଦାସଙ୍କ କବିତାରେ ମୁଖରିତ -

'ସାଜେଣି ହୋଇଛି ତିନିରଥ, ପାଟପଟନୀରେ ମଣ୍ଡିନେଇ
ସୁବର୍ଣ୍ଣ କଳସ ଉପରେ ବିରାଜ, ଫରଫର ଉଡ଼େ ବାନାନେତ ।'

ଦ୍ୱିଜ ଦାମୋଦରଙ୍କ ଚଉପଦୀରେ ରହିଛି ରଥ ମାର୍ଜନର ବର୍ଣ୍ଣନା । ତା' ସହିତ ଡାହୁକ ଡାକରା ପରମ୍ପରା ମଧ୍ୟ କବି ସୂଚନା ମାଧ୍ୟମରେ ପ୍ରଦାନ କରିଛନ୍ତି ।

'ସ୍ୱର୍ଣ୍ଣ ମାର୍ଜନୀ କର, ଧରିଣ ନୃପବର
ଚାଲନ୍ତି ଧୀରେ ଧୀରେ ସିଞ୍ଚି ପନୀର ନୀର ।
ଦେଖ ଦେଖ ପଙ୍କଦାକ୍ଷୀ, ବେତ୍ର ଧରି ଡାହୁକ
ଉଚ୍ଚସ୍ୱରେ ଡାକୁଛନ୍ତି ଚିତ୍ତ ହୁଏ ପୁଲକ ।'

ଭକ୍ତକବି ସାଲବେଗଙ୍କର 'କାଳିଆ ଧନ ତୋଲାଗି ଯାଉ ଏ ଜୀବନ' ଗୀତିକାରେ ନନ୍ଦିଘୋଷ ରଥରେ ବିଜେ କରିଥିବା ଠାକୁରଙ୍କ ମନଲୋଭା ବେଶର ବର୍ଣ୍ଣନା ହୋଇଛି । ଖରା ବାଜି ଶ୍ରୀଅଙ୍ଗରୁ ଝାଳବୋହି ପଡୁଛି ଅଥଚ ଭକ୍ତଙ୍କୁ ଦର୍ଶନ ଦେବା ପାଇଁ ରଥରେ ପ୍ରଭୁ ବିଜେ କରିଛନ୍ତି -

'କାଳିଆ କାଳିଆ ତ୍ରିପଣ୍ଡ କାଳିଆ ପିନ୍ଧିଛି ଝୀନପଟନୀ
କାଳିଆ ଅଙ୍ଗରୁ ବହେ ଶ୍ରମ ଝାଳ କାଳିନ୍ଦୀ ନଦୀର ପାଣି
ନନ୍ଦିଘୋଷ ରଥେ ବସିଛି କାଳିଆ ଜଗତ ମୋହିବା ପାଇଁ
ହରି ହରିବୋଲ ଶବଦ ଶୁଭୁଛି ମନରେ ଆନନ୍ଦ ହୋଇ ।'

ଏହି ରଥଯାତ୍ରାକୁ ଦେଖିବା ପାଇଁ ବିରହିଣୀ ଗୋପାଙ୍ଗନାମାନେ ଇଚ୍ଛା ପ୍ରକଟ କରିଛନ୍ତି । ମାତ୍ର ବର୍ଷାକାଳରେ ଶ୍ରୀକ୍ଷେତ୍ରକୁ ଆସି ରଥଯାତ୍ରା ଦେଖିବାକୁ ଭରସା କରିପାରିନାହାନ୍ତି । ତେଣୁ ଜଗନ୍ନାଥଙ୍କ ନିକଟକୁ ଚିଟାଉ ଲେଖିଛନ୍ତି ଗୋପପୁରକୁ ଫେରି ଆସିବା ପାଇଁ । ଆରତ ଦାଶଙ୍କ ଗୀତି କବିତାରେ ତାହା ସ୍ପଷ୍ଟ ଭାବରେ ଅନୁମିତ -

'ଆସ ସଂଗାତ, ଗୁଣ୍ଡିଚା ଯାତ
ଦେଖିଯିବା ପରା ସହି ଗୋ
ବରଷା ଦେଖି ଭରସା ପାଉନି
ସହଜେ ଆଷାଢ଼ ମାସ ଗୋ ।'

ଏତଦ୍‌ବ୍ୟତୀତ କବି ଗୌରଚନ୍ଦ୍ର, ଉପେନ୍ଦ୍ର ଭଂଜ, ବିଶ୍ୱନାଥ ଖୁଣ୍ଟିଆ, ହାଡ଼ିଦାସ, ଦୁର୍ଲ୍ଲଭ ଦାସ ପ୍ରଭୃତିଙ୍କ କବିତାରେ ଖୁବ୍ ସୁନ୍ଦର ଭାବରେ ରଥଯାତ୍ରାର ବର୍ଣ୍ଣନା ରହିଛି ।

**ଦୋଳଯାତ୍ରା :** ଫଗୁଣ ମାସ ଧରାପୃଷ୍ଠ ଛୁଉଁ ଛୁଉଁ ପ୍ରସିଦ୍ଧ ପର୍ବ ଦୋଳଯାତ୍ରା ପାଇଁ ମର୍ତ୍ତ୍ୟବାସୀ ଲାଗିପଡ଼ନ୍ତି । ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ଆରମ୍ଭ ହୋଇ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏହି ପର୍ବ ପାଳନ କରାଯାଇଥାଏ । ଏହି ସମୟରେ ଶ୍ରୀମନ୍ଦିରରେ ପୁଷ୍ୟାଭିଷେକ ଓ ଦୋଳପର୍ବ ଜାକଜମକରେ ପାଳିତ ହୁଏ । ଭକ୍ତଙ୍କ ଗହଳରେ ପ୍ରଭୁ ଦୋଳବେଦୀରେ ବିଜେ କରନ୍ତି । କବି ରଘୁ ଅରକ୍ଷିତ ଭକ୍ତି ଭାବରେ ଦୋଳର ଅନୁପମ ଦୃଶ୍ୟକୁ ଧରି ରଖିଛନ୍ତି -

'ପୁଷ୍ପ ଘେନି ଯିବା ଗୋ ସଜନୀ ଦେଖିବା ବସନ୍ତ ଚାଚେରୀ
ରାଧାକୃଷ୍ଣ ଦୋଳି ଖେଳୁଛନ୍ତି ଉଡ଼ଇ କର୍ପୂର ଦୋଳି ଗୋ
ବଣର ମଲ୍ଲୀ ମାଳତୀ ସେବତୀ ବିବିଧ କୁସୁମେ ଗଭା
ଦକ୍ଷିଣ ମୂରତି ହୋଇ ଯଦୁପତି ଦୋଳ ମଣ୍ଡପରେ ଉଭା ଗୋ ।'

ଏହି ଚାରି ଯାତ ବ୍ୟତୀତ ଜଗନ୍ନାଥଙ୍କ ଅନ୍ୟାନ୍ୟ ଯାତକୁ ନେଇ ଆମ ଓଡ଼ିଆ ପଦାବଳୀ ସାହିତ୍ୟ ଋଦ୍ଧିମନ୍ତ । ଯାହାର ବଳୟରେ ଜଗନ୍ନାଥଙ୍କ ଉପାସକ ଯୁଗ ଯୁଗ ଧରି ସାହିତ୍ୟ, ସମାଜ ଓ ସଂସ୍କୃତିକୁ ପ୍ରଭାବିତ କରିଆସିଛି । ସାହିତ୍ୟର ବଳିଷ୍ଠ ବିଭାଗ ପ୍ରାଚୀନ ଗୀତିକବିତାରୁ ଅନେକ ଆଜି ବିଲୁପ୍ତ । ତଥାପି ଯେତିକି ଆମର ଦୃଷ୍ଟିଗୋଚର ହୁଏ, ସେଥିରେ ଜଗନ୍ନାଥଙ୍କ ପ୍ରଭାବ ଯେ ବଳିଷ୍ଠ ଏଥିରେ ଦ୍ୱିମତ ହେବାର ନାହିଁ ।

ଓଡ଼ିଆ ଅଧ୍ୟାପକ
ସରକାରୀ ବିଜ୍ଞାନ ମହାବିଦ୍ୟାଳୟ, ମାଲକାନଗିରି

# ଶ୍ରୀଜଗନ୍ନାଥଙ୍କ ଲୀଳାକ୍ଷେତ୍ର :
# ଚିଲିକାର ଚକାନାସୀ

ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର

**ଶ୍ରୀ**ମନ୍ଦିର ପ୍ରଶାସନ ପକ୍ଷରୁ ନିକଟରେ ଏକ ଉଚ୍ଚ ପ୍ରତିନିଧି ଦଳ ମୁଖ୍ୟ ପ୍ରଶାସକ ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ରଙ୍କ ନେତୃତ୍ୱରେ ଶ୍ରୀବିଗ୍ରହମାନଙ୍କ ଲୀଳାସ୍ଥଳୀ ଚିଲିକାର ବିଭିନ୍ନ ସ୍ଥାନ ପରିଦର୍ଶନ କରି ତଥ୍ୟ ସଂଗ୍ରହ କରିଛନ୍ତି । ଦିନେ ଅପରୂପା ଚିଲିକା ଥିଲା ଶ୍ରୀମହାପ୍ରଭୁଙ୍କ ବିଗ୍ରହ ସୁରକ୍ଷାର ଅଭେଦ୍ୟ ଦୁର୍ଗ । ଶ୍ରୀବିଗ୍ରହମାନଙ୍କୁ ୮ଥର ଚିଲିକାକୁ ଏବଂ ଚିଲିକା ମଧ୍ୟଦେଇ ଅନ୍ୟ ସ୍ଥାନକୁ ସ୍ଥାନାନ୍ତର କରାଯାଇଥିଲା । ୫ ଥର ଚିଲିକା ମଧ୍ୟକୁ ସ୍ଥାନାନ୍ତର କରାଯାଇଥିଲା ।



ମାଦଳାପାଞ୍ଜି ବର୍ଣ୍ଣିତ ମହିଷା ବରହମ୍ପୁରକୁ ପରିଦର୍ଶନକାରୀ ଦଳ 'ସାତପଡ଼ା' ଘାଟ ଦେଇ ଯାଇଥିଲେ । ବାସ୍ତବରେ ଏହି ସ୍ଥାନକୁ ୧୬୧୧ ମସିହାରେ ଶ୍ରୀବିଗ୍ରହମାନଙ୍କୁ କଲ୍ୟାଣମଲ୍ଲର ପ୍ରଥମ ଆକ୍ରମଣ ସମୟରେ ସ୍ଥାନାନ୍ତର କରାଯାଇ ଥିଲା । ସେତେବେଳେ ଗଜପତି ଥିଲେ ଶ୍ରୀପୁରୁଷୋତ୍ତମ ଦେବ । 'ମାଦଳା' ବର୍ଣ୍ଣିତ 'ମହିଷା' ଶବ୍ଦ ସଠିକ୍ ମନେହୁଏ । କାରଣ ପ୍ରଥମେ ଏହି ସ୍ଥାନ 'ମହିଷା' ନାମରେ ପରିଚିତ ଥିଲା । ମହିଷାର ସ୍ଥଳଭାଗର ଦକ୍ଷିଣପାର୍ଶ୍ୱ 'ନାସୀ'କୁ ଅର୍ଥାତ୍ ଶେଷ ଭାଗକୁ ଶ୍ରୀବିଗ୍ରହମାନଙ୍କୁ ସ୍ଥାନାନ୍ତର କରାଯାଇଥିଲା । ଉକ୍ତ 'ନାସୀ'ର ଶେଷ ଭାଗ ପରେ ଚିଲିକାର ଜଳଭାଗ ରହିଅଛି । ଜଳରାଶିର ଅପରପାର୍ଶ୍ୱରେ 'ରାଜହଂସ' ଜଙ୍ଗଲର ପଶ୍ଚିମପାର୍ଶ୍ୱ ରହିଅଛି ।

ଶ୍ରୀବିଗ୍ରହମାନେ ସ୍ଥାନାନ୍ତର ହେବାପରେ ଏଠାକାର ଲୋକେ 'ଦାରୁବ୍ରହ୍ମ' ଆସିଥିବାରୁ ଗୁପ୍ତରେ ରହିଥିବା ସ୍ଥାନକୁ 'ବ୍ରହ୍ମପୁର' (ବ୍ରହ୍ମ ରହିଥିବାପୁର) ବୋଲି କହିବାରୁ ଏବେ ପାଖାପାଖି ୪୦୦ ବର୍ଷ ପରେ ସେହି ଅଞ୍ଚଳ ବ୍ରହ୍ମପୁର ବା ବରହମ୍ପୁର ନାମରେ ପ୍ରସିଦ୍ଧିଲାଭ କରିଅଛି । ବରହମ୍ପୁର ନାମରେ ଏକ ସ୍ୱତନ୍ତ୍ର ଜନବସତି ସୃଷ୍ଟି ହୋଇ ସାରିଛି । ବରହମ୍ପୁରଠାରୁ ଉତ୍ତର ଦିଗକୁ ସ୍ଥଳଭାଗରେ ୩ କି.ମି. ଗଲେ 'ମହିଷା' ଗ୍ରାମ ରହିଛି ।

କାଳକ୍ରମେ ଶ୍ରୀବିଗ୍ରହମାନେ ଗୁପ୍ତରେ ରହିଥିବା ସ୍ଥାନ 'ମହିଷାନାସୀ' ପରିବର୍ତ୍ତେ 'ଚକାନାସୀ' ଭାବରେ ପରିଚିତ ହୋଇଅଛି । ଶ୍ରୀବିଗ୍ରହଙ୍କୁ 'ଚକା' ଉପରେ ବିଜେ କରାଯାଇଥିବାରୁ ତାହା ଚକାନାସୀ ଭାବରେ ପ୍ରସିଦ୍ଧିଲାଭ କରିଅଛି । ତାହା ବର୍ତ୍ତମାନ ବରହମ୍ପୁର ଜନବସତିଠାରୁ ଦକ୍ଷିଣ ଦିଗକୁ ୨ କି.ମି. ପରେ ଅବସ୍ଥିତ । ଚକାନାସୀର ପରବର୍ତ୍ତୀ ନାମ 'ଖଟିନାସୀ' ଭାବରେ ମଧ ପ୍ରସିଦ୍ଧ । ମହିଷାର ଉତ୍ତର ଦିଗ ସ୍ଥଳ ଭାଗର ଶେଷ ନାସୀଟି 'ସିପିନାସୀ' ଭାବରେ ପରିଚିତ ।

୧୬୧୧ ମସିହା ଜୁନ ମାସଠାରୁ ୧୬୧୨ ମସିହା ମଇ ମାସ ପର୍ଯ୍ୟନ୍ତ ହାରାହାରି ଏକବର୍ଷ ଶ୍ରୀବିଗ୍ରହମାନେ ଏଠାରେ ଗୁପ୍ତରେ ରହିଥିଲେ । କଲ୍ୟାଣମଲ୍ଲର ଦ୍ୱିତୀୟ ଆକ୍ରମଣର 'ଗୋଳ' ଶୁଣି ଶ୍ରୀବିଗ୍ରହମାନଙ୍କୁ ଚିଲିକାର 'ଗୁରୁବାଇ' ଦ୍ୱୀପ ସାମନାରେ ଚାପରେ ବିଜେ କରାଯାଇଥିଲା । ସେତେବେଳେ ଚକାନାସୀରୁ ସିପିନାସୀକୁ ସ୍ଥଳ ଭାଗରେ ଶ୍ରୀବିଗ୍ରହମାନଙ୍କୁ ନିଆଯାଇଥିବାରୁ ଏହି ଅଞ୍ଚଳରେ ଏକ ପ୍ରାଚୀନ ଲୋକୋକ୍ତି ରହିଛି ଯେ-

ଚକାନାସୀରୁ ସିପିନାସୀ
ଦିଅଁ ପଳାଇଲେ ରଥରେ ବସି ।

ବୋଧହୁଏ ସ୍ଥଳପଥରେ ସାମୟିକ ଭାବରେ ଚକ ସଂଯୁକ୍ତ କରାଯାଇ ରଥାକୃତି ଯାନରେ ଶ୍ରୀବିଗ୍ରହମାନଙ୍କୁ ନିଆଯାଇଥିଲା । ଯଦି





ଏହା ସମ୍ଭବ ହୋଇଥିବ ତେବେ ତତ୍କାଳୀନ ଶ୍ରୀବିଗ୍ରହମାନଙ୍କ ଆକୃତି ନିଶ୍ଚିତ ବଡ଼ଥିବ ।

ପାରିକୁଦ ଇତିହାସ (ଲେଖକ- ସ୍ୱର୍ଗତଃ ଡାକ୍ତର ରାଧାଚରଣ ପଣ୍ଡା)ର ଉଲ୍ଲେଖ ଅନୁଯାୟୀ ଚକାନାସୀଠାରେ ମୁଗୁନିପଥରର ୩ଟି ଚକା ରହିଥିଲା । ବର୍ତ୍ତମାନ ସେଠାରେ ବିରାଜିତ ଖୋଦିତ ୩ଟି ପ୍ରସ୍ତର ମଧ୍ୟରୁ ମଝି ବଡ଼ପ୍ରସ୍ତରର ଧାରରେ ନବଗ୍ରହଙ୍କ ବିଗ୍ରହ ଖୋଦିତ ହୋଇଅଛି । ନିକଟସ୍ଥ ଘନ କଣ୍ଟାବୁଦା ମଧ୍ୟରେ ଶ୍ରୀବିଗ୍ରହମାନେ ବିଜେ କରିଥିବା ଚକା ୩ଟି ବାଲିରେ ପୋତି ହୋଇପଡ଼ିଛି ବୋଲି ଗ୍ରାମବାସୀମାନଙ୍କର ମତ ।

ଉକ୍ତ ସ୍ଥାନର ଉତ୍ତର ଦିଗକୁ ୧୦୦ ଫୁଟ ଦୂରରେ ଏକ ପ୍ରାଚୀନ କୂପ ରହିଛି । ମାଟି ନନ୍ଦ ନିର୍ମିତ କୂପଟି ପରବର୍ତ୍ତୀ ସମୟରେ ପଥର ନନ୍ଦରେ ପରିଣତ କରାଯାଇଛି । ସ୍ୱର୍ଗତଃ ଡାକ୍ତର ରାଧାଚରଣ ପଣ୍ଡା ପୂର୍ବେ ଏଠାରେ 'ଜଗତି'ଟିଏ ଥିଲା ବୋଲି ଉଲ୍ଲେଖ କରିଛନ୍ତି । ନିକଟସ୍ଥ କୂପରୁ ମଧୁରଜଳ ଆଣି ଶ୍ରୀମହାପ୍ରଭୁଙ୍କ ଉପାସନାରେ ବ୍ୟବହୃତ ହେଉଥିଲା । ବର୍ତ୍ତମାନ ବିରାଜିତ ନବଗ୍ରହ ଖୋଦିତ ପ୍ରସ୍ତରଟି ଉକ୍ତ 'ଜଗତି'ର ଅଂଶବିଶେଷ ହୋଇପାରେ ।

ଚକାନାସୀର ପୂର୍ବଦିଗରେ ମଧ୍ୟ ରହିଛି ଚିଲିକାର ଜଳରାଶି । ଜଳରାଶି ପରେ ସେହି ଦିଗରେ 'ଚଉବରସାଧୁ'ଙ୍କ ଆଶ୍ରମ । ଚଉବର ସ୍ୱାମୀ ଶ୍ରୀମହାପ୍ରଭୁ ଚକାନାସୀରେ ଥିବାବେଳେ ପ୍ରତିଦିନ ଜଳପଥରେ ଆସି ଦର୍ଶନ କରୁଥିବାର ପ୍ରବାଦ ରହିଛି । ଶ୍ରୀମହାପ୍ରଭୁଙ୍କ ଉପାସନାରେ ସହାୟତା ପାଇଁ ଅନେକ 'କମା' ବ୍ରାହ୍ମଣ ଉକ୍ତ ନାସୀରେ ରହୁଥିଲେ । ଉକ୍ତ ଅଞ୍ଚଳ ଖୋଳିଲେ ପ୍ରଚୁର ଖପରା, କଉଡ଼ି ଓ ଭଙ୍ଗା ମାଠିଆ ବାହରିଥିବାର ପ୍ରମାଣ ରହିଅଛି । ଥରେ ଗୋଟିଏ 'ସୁନାମୋହର' ମିଳିଥିଲା । ଏଥିରୁ ଅନୁମିତ ହୁଏ ଶ୍ରୀମହାପ୍ରଭୁଙ୍କୁ ଏଠାରେ ଅନ୍ନଭୋଗ ଲାଗିହେଉ ଥିଲା । ଶ୍ରୀମହାପ୍ରଭୁ ସେଠାରୁ ଯିବାପରେ 'ଜଗତି'ରେ ଶ୍ରୀବିଷ୍ଣୁଙ୍କ ବିଗ୍ରହ 'ସ୍ମୃତି ବିଗ୍ରହ' ରୂପେ ପୂଜିତ ହେଉଥିଲେ । 'ଜଗତି'ଟି ପ୍ରାକୃତିକ ବିପର୍ଯ୍ୟୟରେ ନଷ୍ଟ ହୋଇଯିବା ପରେ ଉକ୍ତ ସ୍ମୃତି ବିଗ୍ରହ ମହିଷାଠାରେ ଥିବା ସର୍ବେଶ୍ୱର ମହାଦେବଙ୍କ ମନ୍ଦିରରେ ପୂଜିତ ହେଉଛନ୍ତି ।

ଗବେଷଣା ଅଧିକାରୀ
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ
ଶ୍ରୀବିହାର, ପୁରୀ-୭୫୨୦୦୩

---



# ଦୁଃଖୀଜନ ବନ୍ଧୁ

ବିଜୟ ଲକ୍ଷ୍ମୀ ରାୟ

ଦୁଃଖୀଜନ ବନ୍ଧୁ ହେ ଚକାଆଖିଆ ଆହା ମୋ' କରୁଣା ସିନ୍ଧୁ
ଆହେ ଦୟାମୟ ଅନନ୍ତ ଅବ୍ୟୟ କୃପା ପାରାବାର ସିନ୍ଧୁ ।
ହେ ଚକାନୟନ ବ୍ରଜ ସୁନ୍ଦର ହେ ପତିତପାବନ ହରି
ପତିତମାନଙ୍କୁ ଉଦ୍ଧାରିବା ପାଇଁ ଯାତ ହେଉଛି ତୁମରି ।
ରତ୍ନ ସିଂହାସନୁ ଓହ୍ଲାଇ ଆସିଛ ପତିତ ତାରିବା ପାଇଁ
ମୋ' ପରି ପତିତ ଏ ସଂସାରେ ନାହିଁ କର ମୋତେ ପ୍ରଭୁ ତ୍ରାହି ।
ଚାହିଆ ହଲାଇ ମତ୍ତଗଜଠାଣି ଦିଶେ କି ସୁନ୍ଦର ଶୋଭା
କରୁଣା ସାଗର ହେ ଭକ୍ତ ବତ୍ସଳ ବଡ଼ ଦାଣ୍ଡେ ହେଲ ଉଭା ।
ରଥ ପରେ ବିଜେ ଭାଇ ଭଗ୍ନି ସଙ୍ଗେ ଆହା ମୋ କଳା କହ୍ନେଇ
ରଥର ନିନାଦେ କମ୍ପେ ତିନିଲୋକ ଉଚ୍ଛୁଳି ପଡ଼ଇ ମହୀ ।
ଭାବ ବିନୋଦିଆ ଭାବଗ୍ରାହୀ ତୁମେ ଭାବକୁ ନିକଟେ ଥାଉ
ଏତିକି ମିନତି କରେ ହେ ଶ୍ରୀପତି, ଶ୍ରୀଚରଣେ ମନ ଥାଉ ।।





ପ୍ଲଟ ନଂ-୬ କେ
ଚିନ୍ତାମଣିଶ୍ୱର, ଭୁବନେଶ୍ୱର







# ସମୟ ଚକ୍ରରେ ରଥଯାତ୍ରା

ପୀତାମ୍ବର ପ୍ରଧାନୀ

ପୁରୀର ରଥଯାତ୍ରାର ଅନୁକରଣରେ ବିଭିନ୍ନ ସ୍ଥାନରେ ରଥଯାତ୍ରା ହୁଏ । ଏହି ରଥଯାତ୍ରାର ବିଧିମାନ ବିଭିନ୍ନ ପୁରାଣପାଠରେ ବର୍ଣ୍ଣିତ ହୋଇଛି । ପୁରୀ କ୍ଷେତ୍ର ମାହାତ୍ମ୍ୟ ବା ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ବା ନୀଳାଚଳ ମାହାତ୍ମ୍ୟ ଆକାରରେ ପୁରାତନ ପୋଥି ପୁରାଣରେ ଏହା ବର୍ଣ୍ଣିତ ହୋଇଅଛି । ଆଉ କେତୋଟି ସମ୍ପୃତ ଗ୍ରନ୍ଥ ତାଳପତ୍ର ପୋଥି ଆକାରରେ ରହିଥିବା କଥା ଶୁଣିବାକୁ ମିଳେ । ସେଗୁଡ଼ିକ ପ୍ରକାଶିତ ହୋଇ ନଥିବା ଦୃଷ୍ଟିରୁ ସେଗୁଡ଼ିକର କାଳ ନିର୍ଣ୍ଣୟ ହୋଇନାହିଁ ।

ରଥଯାତ୍ରାର ସମୟ ଉତ୍କଳ ଖଣ୍ଡ ସ୍କନ୍ଦ ପୁରାଣରେ ଏପରି ଦିଆଯାଇଛି ।

ଯସ୍ୟାଃ ସଂକୀର୍ତ୍ତନ ଦେବ ନର ପାପାତ୍ ପ୍ରମୁଚ୍ୟତେ<br>
ମାଘ ମାସସ୍ୟ ପଂଚମ୍ୟାଂ ମଷ୍ଟମ୍ୟା ଚୈତ୍ର ଶୁକ୍ଳକୋ<br>
ଏତେ କାଳାଃ ପ୍ରଶସ୍ତାହି ଗୁଣ୍ଡିଚାଶ୍ୟା ମହୋତ୍ସବେ<br>
ବିଶେଷ ନ୍ୱେଷ ଆଷାଢ଼ ଦ୍ୱିତୀୟା ପୁଷ୍ୟସଂଯୁତା ।

ବାହୁଡ଼ା ଗୁଣ୍ଡିଚା ସମୟରେ ଏକାଦଶୀ ଦିନ ମହାପ୍ରଭୁଙ୍କ ରଥ ଉପରେ ଶ୍ରୀ ଅଧରକୁ ପାଇବା ପର୍ଯ୍ୟନ୍ତ, ଉଚ୍ଚଥିବା ତୁମ୍ବଭଳିଆ ୩ଟି ମାଟି ହାଣ୍ଡିରେ ପୂଜାପଣ୍ଡାମାନେ ପଣା ରଖନ୍ତି । ପଞ୍ଚମୋପଚାରରେ ପୂଜା କରନ୍ତି ଓ ପଣା ଭୋଗ କରନ୍ତି । ଏହାକୁ ଅଧର ପଣା କୁହାଯାଏ ।

ରଥଯାତ୍ରାର ୩ଟି ତିଥିରୁ ସର୍ବୋତ୍କୃଷ୍ଟ ତିଥିରେ ଜଗନ୍ନାଥଙ୍କ ରଥଯାତ୍ରା ହେଉଛି । ଅନ୍ୟ ଦୁଇଟି ତିଥି କୋଣାର୍କ ଓ ଭୁବନେଶ୍ୱରଠାରେ ହେଉଛି । କୋଣାର୍କରେ ମାଘ ଶୁକ୍ଳ ପଞ୍ଚମୀ (ଶ୍ରୀପଞ୍ଚମୀ ଦିନ) ବୋଧ ହୁଏ କୋଣାର୍କରେ ପୂର୍ବେ ସୂର୍ଯ୍ୟଦେବଙ୍କର ରଥଯାତ୍ରା ହେଉଥିଲା । ଚୈତ୍ର ଶୁକ୍ଳ ଅଷ୍ଟମୀ (ଅଶୋକାଷ୍ଟମୀ) ଦିନ ଭୁବନେଶ୍ୱରରେ ମହାପ୍ରଭୁ ଲିଙ୍ଗରାଜଙ୍କର ରଥଯାତ୍ରା ହୁଏ ।

ଖଣ୍ଡଗିରିରେ ମଧ ରଥଯାତ୍ରା ହେଉଥିବାର ଶୁଣାଯାଏ । ଅବଶ୍ୟ ଏହା ପ୍ରାଚୀନକାଳରୁ ଚଳି ଆସୁଛି କି ନାହିଁ ତାହା ଜାଣିବାର ଉପାୟ ନାହିଁ । ଅନନ୍ତ ବାସୁଦେବ ଓ କିଶୋରୀଙ୍କ ଚିହ୍ନ ଦ୍ୱୟ ମିଶି ଖଣ୍ଡିଗିରି ଶିଖରରେ ବିରାଜମାନ କରୁଥିଲେ । ଫଳହାରୀ ନାମକ ଏକ ସନ୍ନ୍ୟାସୀ ଶିଖରରେ ପୂଜା କରୁଥିଲେ ।

ଅଷ୍ଟମୀ ଶୁକ୍ଳ ଦ୍ୱିତୀୟାଠାରୁ ଦଶମୀ ଯାଏଁ ରଥଯାତ୍ରା ହେଉଥିଲା । ଓଡ଼ିଶା ଚାରିକ୍ଷେତ୍ର ମଧ୍ୟରୁ ଅନ୍ୟତମ ବିରଜାକ୍ଷେତ୍ରରେ ଦଶହରା ବେଳେ ରଥଯାତ୍ରା ହୁଏ । ଏଥିରୁ ଓଡ଼ିଶାର ଶଙ୍ଖକ୍ଷେତ୍ର, ଚକ୍ରକ୍ଷେତ୍ର, ଗଦାକ୍ଷେତ୍ର ଓ ପଦ୍ମକ୍ଷେତ୍ର ଯଥା - ଶ୍ରୀକ୍ଷେତ୍ରପୁରୀ, ଭୁବନେଶ୍ୱର, ଯାଜପୁର ଓ କୋଣାର୍କରେ ଶାସ୍ତ୍ରମତେ ପବିତ୍ର ଦିନମାନଙ୍କରେ ରଥଯାତ୍ରା ହେଉଥିବାର ପ୍ରମାଣ ମିଳେ ।

ନିର୍ଗ୍ରନ୍ଥ (ବନ୍ଧନମୁକ୍ତ) ଜୈନମାନଙ୍କର ଚୈତ୍ୟ ଯାତ୍ରା ରଥଯାତ୍ରା ରୂପେ ପରିଚିତ । ଖଣ୍ଡିଗିରି ଭାରତବର୍ଷର ଏକ ପୁରାତନ ଜୈନପୀଠ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରୁ ପାଶ୍ୱନାଥ ଏଠାରେ ପୂଜା ପାଉଥିଲେ । ଷଷ୍ଠ ଶତାବ୍ଦୀରେ ଜୈନ ଧର୍ମ ପ୍ରଚାରକ ମହାବୀର ଭାରତରେ ଜୈନଧର୍ମ ପ୍ରଚାର କରିଥିଲେ । ଜୈନ କଳିଙ୍ଗ ସମ୍ରାଟ ଖାରବେଳ ମହାଭାରତ ଯୁଗର ଚେତୁଭଦ୍ରଙ୍କ ବଂଶଧର ଓ ଚେତୁଭଦ୍ରଙ୍କ ନିୟକାଠର ରଥ ବ୍ୟବହାର କରୁଥିଲେ । କେତେକ ଖଣ୍ଡଗିରି ରଥଯାତ୍ରାକୁ ଏକ ପୁରାତନ ରଥଯାତ୍ରା ବୋଲି ଧରିଥାନ୍ତି ।

ନେପାଳରେ ରଥଯାତ୍ରା ବିଭିନ୍ନ ସଂପ୍ରଦାୟର ଅଧିବାସୀମାନେ ପାଳନ କରନ୍ତି । ବୈଶାଖ ପ୍ରଥମ ଓ ଦ୍ୱିତୀୟ ଦିନରେ ନେପାଳର ରାଜଧାନୀରେ ରଥଯାତ୍ରା ହୁଏ । ଦୁଇଟି ରଥରେ ଭୈରବ ଓ ଭୈରବୀଙ୍କୁ ବସାଇ ସହରର ନାନା ସ୍ଥାନ ବୁଲାଇ ରାଜପ୍ରାସାଦକୁ ଅଣାଯାଏ । ଏଠାରୁ ଆଉ ଗୋଟିଏ ରଥରେ ଲିଙ୍ଗକୁ ବସାଇ ତିନିରଥକୁ ଟଣାଯାଏ । ଦୁଇ ରଥଟଣାକୁ ଭୈରବ ଯାତ୍ରା ଓ ତୃତୀୟ ରଥଟଣାକୁ ଲିଙ୍ଗଯାତ୍ରା କୁହାଯାଏ ।





ନେପାଳରେ ମଧ୍ୟ କୁମାରୀ ରଥଯାତ୍ରା ହୋଇଥାଏ । ଏଥିରେ ସାତ ବର୍ଷର ଏକ କୁମାରୀ ଓ ଦୁଇଜଣ ବାଳକ ବଛା ହୋଇଆସି ରଥଯାତ୍ରା ହୁଏ ।

ବୌଦ୍ଧମାନଙ୍କର ମତ୍ସେନ୍ଦ୍ର ଯାତ୍ରାରେ ହିନ୍ଦୁ ଓ ବୌଦ୍ଧମାନେ ଯୋଗ ଦିଅନ୍ତି । ଏହି ଉତ୍ସବ ଚୈତ୍ର ମାସରେ ହୁଏ । ନେପାଳର ବୌଦ୍ଧ ରଥଯାତ୍ରା ବିଷୟରେ ଓସତ୍ ଫିସଡ଼ି କହନ୍ତି, ଏହା ପୁରୀର ରଥଯାତ୍ରାର ଅନୁକରଣ ।

ବର୍ତ୍ତମାନ ସାରା ବିଶ୍ୱରେ ଇସ୍‌କନ୍ ଆୟୋଜିତ ରଥଯାତ୍ରା - ଏସିଆ, ଇଉରୋପ, ଉତ୍ତର ଓ ଦକ୍ଷିଣ ଆମେରିକା, ଅଷ୍ଟ୍ରେଲିଆ ଏବଂ ଆଫ୍ରିକା ମହାଦେଶରେ ପୁରୀ ମନ୍ଦିର ରଥଯାତ୍ରା ପରି ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ହୁଏ । ଏହା ନବଦିନ ଯାତ୍ରା ପରି ହୋଇଥାଏ । ପୂର୍ବେ ସିସିରି ଦ୍ୱୀପରେ ରଥଯାତ୍ରା ହୋଇଥିଲା । ଏହା ପୁରୀ ରଥଯାତ୍ରା ପରି ହେଉଥିଲା । ଦାନ ଦେବଙ୍କର ଶ୍ରୀତ୍ୟର୍ଥେ ଏହି ରଥଯାତ୍ରା ହୁଏ ।

ପୂର୍ବେ ଉଜ୍ଜୟନୀ ନଗରୀରେ ତୀର୍ଥନୀରଂଜନ ସ୍ୱାମୀଙ୍କ ମୂର୍ତ୍ତିକୁ ରଥରେ ବସାଇ ନଗର ପ୍ରଦକ୍ଷିତ କରାଯାଉଥିଲା । ଏହି ରଥଯାତ୍ରା ଚୈତ୍ୟ ପର୍ବର ଶେଷ ଭାଗରେ ଆରମ୍ଭ ହୁଏ ।

ବୌଦ୍ଧ ରଥଯାତ୍ରା ଚୀନ ପରିବ୍ରାଜକ ଫାହିୟାନ ଭାରତରେ ଦେଖିଥିଲେ । ସେ ପଞ୍ଚମ ଶତାବ୍ଦୀରେ ପାଟଳୀପୁତ୍ରର ରଥଯାତ୍ରାର ଯେଉଁ ବର୍ଣ୍ଣନା କରିଅଛନ୍ତି, ସେଥିରେ ସେ ବର୍ଣ୍ଣନା କରିଛନ୍ତି ଯେ ପ୍ରତିବର୍ଷ ଦ୍ୱିତୀୟ ମାସର ଅଷ୍ଟମ ଦିନରେ ସେମାନେ ମୂର୍ତ୍ତିମାନଙ୍କର ଏକ ଶୋଭାଯାତ୍ରା ବାହାର କରନ୍ତି । ଚାରିଚକ ଥିବା ରଥ ତିଆରି କରି ତା' ଉପରେ ବାଉଁଶର ଏକ ପାଞ୍ଚତାଲା ଶାଳା କରନ୍ତି । ଚାରିପଟେ ଚାରୋଟି ବୁଦ୍ଧ ମୂର୍ତ୍ତି ରହନ୍ତି । ପ୍ରତ୍ୟେକ ମୂର୍ତ୍ତିର ଦୁଇପାର୍ଶ୍ୱରେ ପ୍ରାୟ ୨ଟି ବୋଧିସତ୍ତ୍ୱର ମୂର୍ତ୍ତି ରଖନ୍ତି । ବିଭିନ୍ନ ଆକାରର ୨୦ଟି ରଥ କରନ୍ତି । ବ୍ରାହ୍ମଣମାନେ ସହର ଭିତରୁ ବୌଦ୍ଧମାନଙ୍କୁ ନିମନ୍ତ୍ରଣ କରନ୍ତି । ସମଗ୍ର ରାତ୍ର ପ୍ରଦୀପ ଜାଳି ସଂଗୀତାଳାପ ଓ ପୂଜାଦି କରନ୍ତି । ଏହି ଯାତ୍ରାର ବିଶେଷତ୍ୱ ହେଉଛି ଏହା ଯେ, ବ୍ରାହ୍ମଣମାନେ ବୌଦ୍ଧମାନଙ୍କୁ ଏହି ଉତ୍ସବକୁ ନିମନ୍ତ୍ରଣ କରି ଆଣନ୍ତି । ଅନ୍ୟ ରାଜ୍ୟରେ ମଧ୍ୟ ଏପରି ହେଉଥିଲା ବୋଲି ଫାହିୟାନ ମତ ଦେଇଛନ୍ତି ।

ମଧ୍ୟ ଏସିଆର କୋଟାନ ଅଞ୍ଚଳରେ ପ୍ରସିଦ୍ଧ ଫାହିୟାନ ବୌଦ୍ଧ ତ୍ରିରତ୍ନର ଏକ ରଥଯାତ୍ରା ଦେଖିଥିଲେ । ସହରର ପ୍ରାୟ ୧/୩ ମାଇଲ ଦୂରରେ ୩୦ ହାତ ମନ୍ଦିରର ଉଚ୍ଚ ଏକ ରଥ ତିଆରି କଲେ । ଏହି ରଥରେ ରତ୍ନକୁ ରଖିଲେ । ରଥ ସୁସଜ୍ଜିତ କରି ପ୍ରଧାନ ପ୍ରତିକୃତିଟି ରଥର ମଧ୍ୟ ସ୍ଥାନରେ ଠିଆ ହୋଇ ରହିଲେ ଦୁଇ ବୋଧିସତ୍ତ୍ୱ ପାଖରେ ଦଣ୍ଡାୟମାନ ହୋଇ ରହିଲାପରି ଦେଖାଗଲେ ।

ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ ବଂଗୋଜରେ ରଥଯାତ୍ରା ହେଉଥିବା କଥା ଲେଖିଛନ୍ତି । ଏସବୁ ଯେ ବୌଦ୍ଧ ରଥଯାତ୍ରା ତାହା ନିଶ୍ଚିତ ଭାବରେ କହି ହେଉନାହିଁ ।

ବର୍ତ୍ତମାନ ସୁଦ୍ଧା ସିଂହଳରେ ବୁଦ୍ଧ ଦେବଙ୍କ ଦନ୍ତର ରଥଯାତ୍ରା ପ୍ରତିବର୍ଷ ହେଉଛି । ଫାହିୟାନଙ୍କ ଲେଖାରୁ ଜଣାଯାଏ ଯେ, ପାଟଳିପୁତ୍ରର ରଥଯାତ୍ରା ବର୍ଷର ଦ୍ୱିତୀୟ ମାସର ଅଷ୍ଟମୀ ଦିବସରେ ହୁଏ ଏବଂ କୋଟାନର ରଥଯାତ୍ରା ଚତୁର୍ଥ ମାସର ଦ୍ୱିତୀୟ ଦିନରେ ଆରମ୍ଭ ହୋଇ ୧୪ ଦିନରେ ଶେଷ ହୁଏ । ପାଟଳୀପୁତ୍ରର ରଥଯାତ୍ରାର ଦିନକୁ ପେଂକି (ଚୀନ) ରାଜଦରବାରର ପତ୍ରିକାରେ ବୁଦ୍ଧଙ୍କ ପବିତ୍ର ଜନ୍ମ ଦିନ ବୋଲି ଲେଖାଅଛି । ଚୀନ୍ ଦେଶର ଗଣନାନୁସାରେ ପାଟଳୀ ପୁତ୍ରର ରଥଯାତ୍ରା ଚୈତ୍ର ଶୁକ୍ଳ ଅଷ୍ଟମୀଦିନ ଆରମ୍ଭ ଓ କୋଟାନର ରଥଯାତ୍ରା ଜ୍ୟେଷ୍ଠ ଶୁକ୍ଳ ପ୍ରତିପଦା ଦିନ ଆରମ୍ଭ ହୁଏ । କିନ୍ତୁ ବୈଶାଖ ପୂର୍ଣ୍ଣିମାଦିନ ବୁଦ୍ଧଙ୍କର ଜନ୍ମଦିନ । ଏଥିରୁ ଜଣାଯାଉଛି ବୌଦ୍ଧ ରଥଯାତ୍ରା ବୁଦ୍ଧଦେବଙ୍କ ଜନ୍ମ ଦିବସରେ ସ୍ମାରକ ନୁହେଁ । ବିଭିନ୍ନ ଦେଶର ବିଭିନ୍ନ ରୁଚିର ଅବଲମ୍ବନ କରି ବୌଦ୍ଧ ରଥଯାତ୍ରା ହେଉଥିବା ସମ୍ଭବ । ତାହା ନହେଲେ ରଥଯାତ୍ରାମାନଙ୍କର ଦିନରେ ଏତେ ପ୍ରଭେଦ ଦେଖାଯାଉନାହିଁ ।

ହଣ୍ଟର ସାହେବ କହିଛନ୍ତି ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ବୋଧହୁଏ ପୂର୍ବେ ବୌଦ୍ଧମାନଙ୍କ ଦନ୍ତ ଉତ୍ସବର ଏକ ବିଶେଷ ଅନୁକୃତି ଥିଲା । ଅବଶ୍ୟ ପରେ ହଣ୍ଟର ସାହେବ ଏହି ମତର ସମର୍ଥନରେ ବୌଦ୍ଧମାନଙ୍କର ଜାପାନରେ ତ୍ରିରତ୍ନର ପ୍ରଚଳିତ ଥିବା ରଥଯାତ୍ରା ବିଷୟରେ ଉଲ୍ଲେଖ କରିଛନ୍ତି ଏବଂ ଜଗନ୍ନାଥଙ୍କ ପାଖରେ ଥିବା ଅନ୍ୟ ଦୁଇ ମୂର୍ତ୍ତି ସଦୃଶ ବୁଦ୍ଧଦେବଙ୍କର ପାଖରେ ଥିବା ମୂର୍ତ୍ତିରେ ସାଦୃଶ ଦେଖାଇଛନ୍ତି । ଫାହିୟାନଙ୍କ ଦନ୍ତ ଉତ୍ସବ ବର୍ଣ୍ଣନା ସହିତ ଜଗନ୍ନାଥଙ୍କର ରଥଯାତ୍ରାର ମେଳଥିବା ପ୍ରସଙ୍ଗ ମଧ୍ୟ ଉତ୍‌ଥାପନ କରିଛନ୍ତି ।

ଫର୍ଗୁସନ ସାହେବ ଫାହିୟାନଙ୍କର ଦନ୍ତୋତ୍ସବ ବର୍ଣ୍ଣନା ସହିତ ଜଗନ୍ନାଥଙ୍କର ରଥଯାତ୍ରାର ପୂର୍ଣ୍ଣ ସାଦୃଶ୍ୟ ରହିଛି ବୋଲି ଅନୁମାନ କରି ଜଗନ୍ନାଥଙ୍କର ରଥଯାତ୍ରାକୁ ବୌଦ୍ଧ ଦନ୍ତୋତ୍ସବର ଏକ ନକଲ ବୋଲି ମତବ୍ୟକ୍ତ କରିଛନ୍ତି ।

ପ୍ରତିବର୍ଷ ବୁଦ୍ଧଦେବଙ୍କ ବୁଦ୍ଧତ୍ୱ ପ୍ରାପ୍ତି ଦିନ (ପୂର୍ଣ୍ଣମୀ ଦିନ) ବୌଦ୍ଧମାନେ ବୁଦ୍ଧଦେବଙ୍କର ଦେହାବଶେଷକୁ ରଥରେ ରଖି ରଥଯାତ୍ରା କରନ୍ତି ବୋଲି ହୁଏନ୍‌ସାଂ ସପ୍ତମ ଶତାବ୍ଦୀରେ ଲେଖିଛନ୍ତି । ସେ ମଧ୍ୟ ଏ ରଥଯାତ୍ରା ଦେଖିଥିଲେ ।

ଦାକ୍ଷିଣାତ୍ୟରେ ଗୁଣ୍ଡିଚାଙ୍କ ପ୍ରତୀକ ରୂପେ ଖଣ୍ଡେ କାଠକୁ ପୂଜା କରାଯାଉଥିବାର କେହି କେହି କହନ୍ତି । କେତେକ ସ୍ଥାନରେ ଇନ୍ଦ୍ରଦ୍ୟୁମ୍ନ ପୂଜା ମଧ୍ୟ ହୁଏ । ଜଗନ୍ନାଥ ଦାରୁବ୍ରହ୍ମ ଥିବାରୁ ପୁରୀର ରଥଯାତ୍ରାନୁସାରେ ଏହି ଉତ୍ସବର ପ୍ରଚଳନ ହୋଇଥିବା ହିଁ ଅନୁମାନ କରାଯାଇଛି । ଭାରତବର୍ଷରେ ଶ୍ରୀଜଗନ୍ନାଥଙ୍କ ଅନୁକରଣରେ ରଥଯାତ୍ରା ହେଉଛି । ଦାକ୍ଷିଣାତ୍ୟରେ ଏହି ଉତ୍ସବକୁ ଇନ୍ଦ୍ରଦ୍ୟୁମ୍ନ ମହୋତ୍ସବ ମଧ୍ୟ କହନ୍ତି । ଏଥିରେ ମଧ୍ୟ ଖଣ୍ଡେ କାଠକୁ ଖଣ୍ଡେ ଦୂର ବୋହି ନେବାର ପ୍ରଥା ଥିବା ଜଣାଯାଏ ।

ଓଡ଼ିଶାରେ ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପତ୍ନୀଙ୍କ ନାମ ଗୁଣ୍ଡିଚା ଦେବୀ ଏବଂ ଏହି ମହାଯାତ୍ରାଟି ଗୁଣ୍ଡିଚା ଦେବୀଙ୍କ ନାମ ଅନୁସାରେ ହୋଇଛି ।

ଏଲ୍.ବି.-୧୩୮
ବଡ଼ଗଡ଼ ବ୍ରିଟ୍ କଲୋନୀ, ଭୁବନେଶ୍ୱର





# ଜନ୍ମ ମହାବେଦୀ ମହୋତ୍ସବ

ବିରଞ୍ଚି ନାରାୟଣ ପାଣିଗ୍ରାହୀ

**ଜ୍ୟେଷ୍ଠ** ପୂର୍ଣ୍ଣମୀରେ ସ୍ନାନଯାତ୍ରା ଓ ଗଜାନନ ବେଶ ପରେ ପନ୍ଦର ଦିନ ପାଇଁ ଅଣସର ଗୃହରେ ଗୁପ୍ତନୀତି ପାଇଁ ରହିବା ପରେ ଆଷାଢ଼ ଶୁକ୍ଳ ପ୍ରତିପଦା ଦିନ ନେତ୍ରୋତ୍ସବ ପାଳିତ ହୋଇ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ମହାମହିମ ଶାଳିନୀ ରଥଯାତ୍ରା ଅନୁଷ୍ଠିତ ହୁଏ । ପତିତଜନଙ୍କୁ ପାବନ କରି ଜଗତର କଲ୍ୟାଣ କରିବା ନିମିତ୍ତ ଶ୍ରୀଜଗନ୍ନାଥ, ଅଗ୍ରଜ ବଳଭଦ୍ର, ଭଗ୍ନୀ ସୁଭଦ୍ରାଙ୍କ ସହିତ ରଥାରୂଢ଼ ହୋଇ ଜନ୍ମ ମହାବେଦୀ ଗୁଣ୍ଡିଚା ଗୃହକୁ ଯାତ୍ରା କରନ୍ତି । ନଅ ଦିନ ପରେ ଆଷାଢ଼ ଶୁକ୍ଳ ଦଶମୀ ଦିନ ରଥାରୂଢ଼ ହୋଇ ଆଡ଼ପ ମଣ୍ଡପରୁ ଶ୍ରୀମନ୍ଦିରକୁ ବାହୁଡ଼ି ଆସନ୍ତି । ଏହାକୁ ବାହୁଡା ଯାତ୍ରା କିମ୍ବା ଦକ୍ଷିଣାଭିମୁଖୀ ରଥଯାତ୍ରା ବୋଲି କୁହାଯାଏ । ଏଇ ନବଦିନ ବ୍ୟାପୀ ମହୋତ୍ସବ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା, ଶ୍ରୀଗୁଣ୍ଡିଚା ଯାତ୍ରା, ନବଦିନାତ୍ମକ ଯାତ୍ରା, ଘୋଷ ଯାତ୍ରା, ପତିତପାବନ ଯାତ୍ରା, ଜନ୍ମ ମହାବେଦୀ ଯାତ୍ରା, ଅନ୍ତର୍ବେଦୀ ଯାତ୍ରା, ଜନକପୁରୀ ଯାତ୍ରା ଓ ଆଡପ ଯାତ୍ରା ରୂପେ ଖ୍ୟାତି ଲାଭ କରିଛି । ସମସ୍ତ ଯାତ୍ରା ମହୋତ୍ସବରେ ଜୀଉମାନଙ୍କର ଚଳନ୍ତି ପ୍ରତିମା ବିଜେ ହେଉଥିବାବେଳେ କେବଳ ସ୍ନାନ ଓ ଗୁଣ୍ଡିଚା ଯାତ୍ରା ଦୁଇଟିରେ ସ୍ୱୟଂ ଜୀଉମାନେ ବିଜେ ହୁଅନ୍ତି । କବି ସମ୍ରାଟ ଉପେନ୍ଦ୍ର ଭଂଜ ଲେଖିଛନ୍ତି -

'ସ୍ନାନ ଗୁଣ୍ଡିଚାଏ ବେନୀ, ସ୍ୱୟଂ ଲୀଳା ଯାର,
ପତିତ ପାବନ ଅର୍ଥେ ପ୍ରାସାଦୁଁ ବାହାର ।'

ଗୁଣ୍ଡିଚା ଯାତ୍ରା, ଆଡ଼ପ ଅବସ୍ଥାନ ଓ ବାହୁଡା ଯାତ୍ରା ହେଉଛି ସମ୍ପୂର୍ଣ୍ଣ ରଥଯାତ୍ରାର ତିନୋଟି ପର୍ଯ୍ୟାୟ ମାତ୍ର । ରଥଯାତ୍ରା ମହୋତ୍ସବର ମହନୀୟତା ଓ ପାଳନ ବିଧି ମୁଖ୍ୟତଃ ବ୍ରହ୍ମପୁରାଣ, ସ୍କନ୍ଦ ପୁରାଣ, ନୀଳାଦ୍ରି ମହୋଦୟ, କପିଳ ସଂହିତା, ଯାତ୍ରା ଭାଗବତ, ଇନ୍ଦ୍ର ନୀଳମଣି, ବାମଦେବ ସଂହିତା, ପଦ୍ମପୁରାଣ, ଜଗନ୍ନାଥ ପୁରାଣ, ନାରଦ ପୁରାଣ, ଶାରଦା ପୁରାଣ ଓ ଚୈତନ୍ୟ ଚରିତାମୃତ ପ୍ରଭୃତିରେ ବର୍ଣ୍ଣନା କରାଯାଇଛି ।

ଶ୍ରୀଗୁଣ୍ଡିଚା ଯାତ୍ରାରେ ରଥାରୂଢ଼ ଜୀଉମାନଙ୍କୁ ନେଇ ରଥତ୍ରୟ ଉତ୍ତରାଭିମୁଖୀ ହୋଇ ଗୁଣ୍ଡିଚା ଗୃହକୁ ଯାତ୍ରା କରନ୍ତି । ଆଡପ ମଣ୍ଡପରେ ସପ୍ତଦିବସ ବ୍ୟାପି ଅବସ୍ଥାନ ପରେ ତାଳଧ୍ୱଜ, ଦେବଦଳନ ଓ ନନ୍ଦିଘୋଷ ରଥତ୍ରୟ ଦକ୍ଷିଣାଭିମୁଖୀ ହୋଇ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଶାସ୍ତ୍ରରେ ଅଛି,



'ଯାତାୟାତ ଦ୍ୱୟୋ ମଧ୍ୟେ ସପ୍ତାହେ ମଣ୍ଡପେ ସ୍ଥିତ ।'

ଶ୍ରୀଗୁଣ୍ଡିଚା ଗୃହ ହେଉଛି ଜୀଉମାନଙ୍କର ଜନ୍ମ ସ୍ଥଳୀ ବା ଜନ୍ମପୀଠ । ଏହାକୁ ଜନ୍ମ ମହାବେଦୀ, ଅନ୍ତର୍ବେଦୀ, ଜନକପୁରୀ, ନୃସିଂହକ୍ଷେତ୍ର, ଆଡ଼ପ ମଣ୍ଡପ, ରାସମଣ୍ଡପ, ଜନ୍ମ ମଣ୍ଡପ, ଯଜ୍ଞ ମଣ୍ଡପ ରୂପେ ଅଭିହିତ କରାଯାଇଛି । ସ୍କନ୍ଦ ପୁରାଣରେ ଅଛି -

'ନୀଳାଦ୍ରୌ ଦଶବର୍ଷାଣୀ, ଗୁଣ୍ଡିଚା ମଣ୍ଡପେ ଦିନେ
ଦିବାତି ଦର୍ଶନଂ ପୁଣ୍ୟଂ, ରାତୌ ଦଶଗୁଣ ଭବେତ୍ ।।'

ଅର୍ଥାତ୍ ନୀଳାଦ୍ରିରେ ଦଶ ବର୍ଷର ଦର୍ଶନ ଫଳ ଗୁଣ୍ଡିଚା ମଣ୍ଡପରେ ଗୋଟିଏ ଦିନର ଦର୍ଶନ ଫଳ ସହିତ ସମାନ । ଦିବସର ଦର୍ଶନ ଫଳ ଅପେକ୍ଷା ରାତ୍ରି ଦର୍ଶନର ଫଳ ଦଶଗୁଣ ଅଧିକ । ସ୍କନ୍ଦ ପୁରାଣରେ ଅଛି -

'ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ, ପ୍ରତିଜ୍ଞାନଂ ଦ୍ୱିଜୋତ୍ତମାଃ,
ନାତ ଶ୍ରେୟଂ ପ୍ରଦୋ ବିଷ୍ଣୁରୁତ୍ସବ ଶାସ୍ତ୍ର ସମ୍ମତଃ ।।'

ଅର୍ଥାତ୍ ସ୍ୱୟଂ ଜଗନ୍ନାଥ ତ୍ରିବାର ସତ୍ୟ କରିବା ସଂଗେ ସଂଗେ ପ୍ରତିଜ୍ଞା କରି କହିଛନ୍ତି ଯେ, ବିଷ୍ଣୁ ଉତ୍ସବମାନଙ୍କ ମଧ୍ୟରେ ମହାବେଦୀ ମହୋତ୍ସବ ହେଉଛି ଶ୍ରେୟସ୍କର । କାରଣ ଏଥିରେ ସ୍ୱୟଂ ବିଷ୍ଣୁ ରଥରେ ବିହାର କରିଥାଆନ୍ତି । ରଥତ୍ରୟ ଗୁଣ୍ଡିଚା ମନ୍ଦିରର ପାଟ ଅଗଣାରେ ପହଞ୍ଚିବା ପରେ ପରେ ଜୀଉମାନଙ୍କର ମହାସ୍ନାନ, ସର୍ବାଙ୍ଗ ବେଶ ହେବା ପରେ ଶୁଖିଲା ଭୋଗ ହୁଏ । ସନ୍ଧ୍ୟା ଆଳତୀ, ସନ୍ଧ୍ୟା ଧୂପ, ଚନ୍ଦନ ଲାଗି, ବଡ଼ସିଂହାର ବେଶ ଓ ଭୋଗ ସମାପ୍ତ ହେବା ପରେ




ପହୁଡ଼ ଆଳତୀ ହୋଇ ଶ୍ରୀମୁଖ ଖଣ୍ଡୁଆରେ ଆବରଣ ହେବା ପରେ ରଥର ସାମନା ଦରଜା ବନ୍ଦ କରାଯାଏ । ଜୀଉମାନେ ରଥ ଉପରେ ଥିବାବେଳେ ଶୁଖିଲା ଭୋଗ ଲାଗି ହୁଏ । ଚୈତନ୍ୟ-ପଛିମାନଙ୍କ ଦ୍ୱାରା ଆଡ଼ପ ମଣ୍ଡପ ପରିଷ୍କାର କରାଯାଇ ଜଳଧୌତ କରାଯାଏ । ଏହାକୁ 'ଗୁଣ୍ଡିଚା ମାର୍ଜନ' କୁହାଯାଏ ।

ଆଷାଢ଼ ଶୁକ୍ଳ ତୃତୀୟା ଦିନ ସମସ୍ତ ନୀତି ବଢ଼ିସାରିବା ପରେ ସନ୍ଧ୍ୟାରେ ଆଡ଼ପ ବିଜେ ପହଣ୍ଡି ହୁଏ । ପ୍ରଥମେ ମଦନମୋହନ ରାମକୃଷ୍ଣଙ୍କୁ ହାତରେ ବିଜେ କରାଇ ଗୁଣ୍ଡିଚା ମହାବେଦୀ ସିଂହାସନର ଅଗ୍ନିକୋଣରେ ମଦନମୋହନଙ୍କୁ ଏବଂ ଭଣ୍ଡାରଘରର ସିଂହାସନରେ ରାମକୃଷ୍ଣଙ୍କୁ ବିଜେ କରାଇ ଜୀଉମାନଙ୍କୁ ଚାରମାଳ ଉପରେ ଟାହିଆ ଲାଗି କରାଇ ଗୋଟି ପହଣ୍ଡିରେ ଆଣି ଗୁଣ୍ଡିଚା ଘର ସିଂହାସନରେ ବିଜେ କରାଯାଇ ରଢା ପଡ଼େ । ମହାସ୍ନାନ କରାଯାଇ ସର୍ବାଙ୍ଗ ଲାଗିହୁଏ । ବଡ଼ ଓଡ଼ିଆ ମଠ ତରଫରୁ ଯୋଗାଯାଇଥିବା 'ସୁନା ଗୋସେଇଁ' ଚନ୍ଦନ ମାର୍ଜନ କରାଯାଏ । ଗୁଣ୍ଡିଚା ମଣ୍ଡପଠାରେ ଜୀଉମାନେ ସପ୍ତାହ ବ୍ୟାପୀ ଅବସ୍ଥାନ କାଳରେ ଧ୍ୱଜ ପୂଜା ହୁଏ । ବଳଭଦ୍ରଙ୍କର ତାଳଧ୍ୱଜ ରଥର ଲଙ୍ଗଳ ଧ୍ୱଜ, ମା ସୁଭଦ୍ରାଙ୍କର ଦର୍ପଦଳନ ରଥର ପଦ୍ମଧ୍ୱଜ ଓ ଜଗନ୍ନାଥଙ୍କ ନନ୍ଦିଘୋଷ ରଥର ଗରୁଡ଼ଧ୍ୱଜ ବା ତାର୍କ୍ଷଧ୍ୱଜଙ୍କୁ ପ୍ରତ୍ୟହ ପୂଜା ଓ ଭୋଗ କରାଯିବା ସଂଗେ ସଂଗେ ରଥର ପାର୍ଶ୍ୱ ଦେବାଦେବୀମାନଙ୍କୁ ମଧ୍ୟ ପୂଜା ଓ ଭୋଗ ଦିଆଯାଏ । ରଥରେ କୌଣସି ଅଶୁଭ ବିବେଚିତ ପକ୍ଷୀ ବସିଲେ ସଂଗେ ସଂଗେ ରଥକୁ ମହାସ୍ନାନ କରାଯାଏ । ରଥକୁ ରକ୍ଷା କରିବା ପାଇଁ ଦିଗପାଳମାନଙ୍କୁ ପାୟସବଳୀ ଏବଂ ଭୂତ ପିଶାଚମାନଙ୍କୁ ଅନ୍ନବଳୀ ଦିଆଯାଏ । ନୀଳାଦ୍ରି ମହୋଦୟରେ ଅଛି -

'ତତ୍ ସପ୍ତମ ଦିନ ମାରଭ୍ୟ, ଧ୍ୱଜ ପୂଜା ବିଧିୟତେ,
ରଥେଷ୍ଟୁ-କୁଛିତା-ଜୀବା ନିର୍ବେଶେଷୁ ଯଥାନୃପ ।।'

ଶୁକ୍ଳ ଚତୁର୍ଥୀ ଠାରୁ ଶୁକ୍ଳ ନବମୀ ପର୍ଯ୍ୟନ୍ତ ଛଅ ଦିନ ଗୁଣ୍ଡିଚା ମନ୍ଦିରରେ ଅନ୍ନ ମହାପ୍ରସାଦ ପ୍ରସ୍ତୁତ ହୁଏ । ଏଥିପାଇଁ ଏକ 'ରୋଷଘର' ଅଛି । ରୋଷଘରେ ମୋଟ ୨୦୩ ଗୋଟି ଚୁଲି ମଧ୍ୟରୁ ୧୩୮ ଗୋଟି ଅନ୍ନ ଚୁଲି, ୫୧ ଗୋଟି ଅହିଆ ଚୁଲି ଓ ୧୪ ଗୋଟି ପିଠା ଚୁଲି ଅଛି । ଭୋଗ ପ୍ରସ୍ତୁତ ହୋଇସାରିବା ପରେ ନୀତି ଅନୁସାରେ ଜୀଉମାନଙ୍କୁ ନୈବେଦ୍ୟ ଦିଆଯିବା ପରେ ଗର୍ଭଗୃହ ବା ବିମାନଗୃହ ସଂଲଗ୍ନ ଜଗମୋହନରେ ଏକ ସ୍ତମ୍ଭରେ ବିମଳାଙ୍କ ସ୍ଥିତି କଳ୍ପନା କରାଯାଇଥିବାରୁ ସେଠାରେ ପ୍ରଥମେ ନୈବେଦ୍ୟ ସମର୍ପିତ ହୁଏ । ମାତ୍ର ଗୁଣ୍ଡିଚା ମନ୍ଦିର ଯଜ୍ଞବେଦୀ ହୋଇଥିବାରୁ ଏଠାରେ ବିମଳା ସମର୍ପଣ ସେତେଟା ପରିଗୃହିତ ହୋଇନଥାଏ । ଶ୍ରୀମନ୍ଦିରସ୍ଥିତ ବିମଳା ମନ୍ଦିରକୁ ଥାଳିଏ ଅନ୍ନଭୋଗ ପଠାଯାଇ ସାରିବା ପରେ ପରିବେଷଣ ଇତ୍ୟାଦି ଆରମ୍ଭ ହୁଏ ।

ଆଡ଼ପ ଅବସ୍ଥାନ କାଳରେ ପର୍ବଦିନମାନଙ୍କରେ ଜୀଉଙ୍କୁ ରାଇ-ଦାମୋଦର ବେଶ କରାଯାଏ । ସାତଦିନ ଆଡ଼ପ ଅବସ୍ଥାନ ମଧ୍ୟରୁ ତୃତୀୟା, ଚତୁର୍ଥୀ ଓ ପଞ୍ଚମୀ ତିନିଦିନ ସାଧାରଣ ପୂଜା ଓ ନୀତି ହୋଇଥାଏ । ଚତୁର୍ଥ ବା ମଧ୍ୟମ ଦିବସରେ ଅର୍ଥାତ୍ ଶୁକ୍ଳ ଷଷ୍ଠୀ ଦିନ ହେରାପଞ୍ଚମୀ ପର୍ବ ପାଳିତ ହୁଏ । ଆଡ଼ପ ଅବସ୍ଥାନର ଏହା ପ୍ରଧାନ ପର୍ବ । ଶୁକ୍ଳ ଷଷ୍ଠୀତିଥିର ଉତ୍ସବକୁ ହେରାପଞ୍ଚମୀ, ହେରାଗୋବ କିମ୍ବା ଲକ୍ଷ୍ମୀ ବିଜୟ ଉତ୍ସବ ବୋଲି କୁହାଯାଏ । ହେରାପଞ୍ଚମୀ ଦିନ ଲକ୍ଷ୍ମୀଙ୍କର ଗୁପ୍ତଯାତ୍ରା ଦିବସରେ ସେ ଶ୍ରୀଜଗନ୍ନାଥଙ୍କୁ ଏକାନ୍ତ ଦର୍ଶନ କରନ୍ତି । ବାମଦେବ ସଂହିତାରେ ଅଛି-

'ଦ୍ୱିତୀୟା ପଞ୍ଚମ ଦିନେ ତୟାଯାତ୍ରା କୃତ ପ୍ରୀୟେ,
ଧବଂସା ବୀକ୍ଷିତୁ ତତ୍ର ଗୁପ୍ତଯାତ୍ରା କୃତା ତୟା ।'

ପୂର୍ବଦିନର ପଞ୍ଚମୀ ତିଥି ସହିତ ଏହାର କୌଣସି ସମ୍ପର୍କ ନଥାଏ । ହେରାପଞ୍ଚମୀ ଦିନ ଶ୍ରୀମନ୍ଦିରର ଭଣ୍ଡାର ଘରେ ଥିବା ଲକ୍ଷ୍ମୀ ଠାକୁରାଣୀଙ୍କର ମାଜଣା ବଢ଼ିସାରି ବନକ ଲାଗି ପରେ ପାଟ ଅଳଙ୍କାର ଇତ୍ୟାଦି ଲାଗି ହୋଇ ପନ୍ତି ଭୋଗ ପରେ ବଟ ମୂଳେ ରଖାଯାଇଥିବା ପାଲିଙ୍କିରେ ବିଜେ ହୁଅନ୍ତି । ଘଣ୍ଟ, ଘଣ୍ଟା କାହାଳୀ ଛତ୍ର ଇତ୍ୟାଦି ସହ ସେବକ ଓ ଦେବଦାସୀ ଗହଣରେ ମହା ଆଡ଼ମ୍ବର ପଟୁଆରରେ ଲକ୍ଷ୍ମୀଙ୍କର ପାଲିଙ୍କି ଗୁଣ୍ଡିଚା ମଣ୍ଡପ ପାଟ ଅଗଣାରେ ଥିବା ରଥ ନିକଟରେ ପହଞ୍ଚିବା ପରେ ପ୍ରସାଦ ଲାଗି ବନ୍ଦାପନା, ଆଳଟ ଚାମର ନୀତି ହୋଇ ଘଷା ବିଡ଼ିଆ ଓ ଦହିପଟି ଲାଗିହୁଏ । ଏ ସମୟ ମଧ୍ୟରେ ଆଡ଼ପ ମଣ୍ଡପରେ ଜୀଉମାନଙ୍କର ମଧ୍ୟାହ୍ନ ଧୂପ ନୀତି ଶେଷ ହୋଇଥାଏ । ସନ୍ଧ୍ୟା ଧୂପ ଉଠି ପୂଜା ବସିଥିବା ସମୟରେ ଲକ୍ଷ୍ମୀଙ୍କୁ ଆଡ଼ପ ମଣ୍ଡପ ଜଗମୋହନର ଜୟ-ବିଜୟ ଦ୍ୱାରକୁ ଅଣାଯାଏ । ଅଭିମାନିନୀ ମହାଲକ୍ଷ୍ମୀଙ୍କର ପ୍ରାଣପ୍ରିୟ ଶ୍ରୀଜଗନ୍ନାଥଙ୍କୁ ଏକାନ୍ତ ଦର୍ଶନ କରିବା ପରେ ଶ୍ରୀମନ୍ଦିରକୁ ପ୍ରଭୁ ଚଞ୍ଚଳ ପ୍ରତ୍ୟାବର୍ତ୍ତନ କରିବାର ଆଶ୍ୱାସନା ସୂଚକ ଶ୍ରୀଅଙ୍ଗରୁ ଆଜ୍ଞାମାଳ ଆସି ଲକ୍ଷ୍ମୀଙ୍କୁ ଦିଆଯିବା ପରେ ନାକଚଣା ଦ୍ୱାର ଦେଇ ଲକ୍ଷ୍ମୀଙ୍କର ବିମାନ ନନ୍ଦିଘୋଷ ରଥ ନିକଟକୁ ଆସି, ରଥର ଖଣ୍ଡିଏ କାଠ ଭାଙ୍ଗି ଦେଇ ହେରା ଗୋହିରୀ ସାହି ଦେଇ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥାଏ । ଉତ୍କଳ ଦାମ୍ପତ୍ୟ ଜୀବନର ଏହା ଏକ ପ୍ରତିଫଳନ ମାତ୍ର । ଆଡ଼ପ ଅବସ୍ଥାନର ଶେଷ ତିନି ଦିନକୁ ଅର୍ଥାତ୍ ସପ୍ତମୀ, ଅଷ୍ଟମୀ ଓ ନବମୀ ଦିନକୁ 'ମହାରାସୋତ୍ସବ' ବା 'ଇନ୍ଦ୍ରଦ୍ୟୁମ୍ନ ମହୋତ୍ସବ' କୁହାଯାଏ । ଏହି ତିନିଦିନରେ ପ୍ରତ୍ୟହ ରାସ ହୁଏ । ଜଗନ୍ନାଥଙ୍କର କାର୍ତ୍ତିକ ମାସରେ ଶରତ ରାସ, ଫାଲଗୁନ ମାସରେ ବସନ୍ତ ରାସ ଓ ଆଷାଢ଼ ମାସରେ ଶ୍ରୀଗୁଣ୍ଡିଚା ମନ୍ଦିରରେ ମହାରାସ ବା ପ୍ରାବୃଟ ରାସ ପାଳିତ ହୁଏ । ଅଷ୍ଟମୀ ଦିନ ଶ୍ରୀଜଗନ୍ନାଥଙ୍କର ଆଜ୍ଞାମାଳ ରଥ ଉପରେ ପହଞ୍ଚିବା ପରେ ପାଟ ଅଗଣାରେ ରଥ ତିନିଗୋଟିକୁ ଦକ୍ଷିଣାମୁଖୀ ବା ଦକ୍ଷିଣ ମୋଡ଼ କରାଯାଏ । ପ୍ରଥମେ ସୁଭଦ୍ରାଙ୍କର - ଦର୍ପଦଳନ ରଥ, ତାପରେ ବଳଭଦ୍ରଙ୍କର ତାଳଧ୍ୱଜ ରଥ ଓ ଶେଷରେ ଜଗନ୍ନାଥଙ୍କର ନନ୍ଦିଘୋଷ ରଥ ଦକ୍ଷିଣାମୁଖୀ କରାଯାଇ ନାକଚଣା ଦ୍ୱାର ନିକଟରେ ରଖାଯାଏ । ମାତ୍ର ଶ୍ରୀଗୁଣ୍ଡିଚା ରଥଯାତ୍ରାର ପୂର୍ବଦିନ ରଥଖଳାଠାରୁ





ଶ୍ରୀମନ୍ଦିର ସିଂହଦ୍ୱାର ନିକଟକୁ ପ୍ରଥମେ ଜଗନ୍ନାଥଙ୍କ ନନ୍ଦିଘୋଷ ରଥ, ତାପରେ ସୁଭଦ୍ରାଙ୍କ ଦର୍ପଦଳନ ରଥ ଓ ଶେଷରେ ବଳଭଦ୍ରଙ୍କ ତାଳଧ୍ୱଜ ରଥ ଅଣାଯାଇଥାଏ । ରଥଯାତ୍ରା ଦିନ ପ୍ରଥମେ ବଳଭଦ୍ରଙ୍କର ତାଳଧ୍ୱଜ ରଥ, ତାପରେ ସୁଭ୍ରଦାଙ୍କ ଦର୍ପଦଳନ ରଥ ଓ ଶେଷରେ ଶ୍ରୀଜଗନ୍ନାଥଙ୍କର ନନ୍ଦିଘୋଷ ରଥ ଟଣାଯାଇଥାଏ । ନବମୀ ଦିନ ଜୀଉଙ୍କର ନବଦିନାନ୍ତ ଦର୍ଶନ ବା ସନ୍ଧ୍ୟାଦର୍ଶନ ଅନୁଷ୍ଠିତ ହୁଏ । ଏହା ଅତ୍ୟନ୍ତ ମହିମାମୟ ଦିବସ ରୂପେ ବିବେଚନା କରାଯାଏ । ଆଡ଼ପ ମଣ୍ଡପରେ ନବମୀ ତିଥିର ସନ୍ଧ୍ୟାଦର୍ଶନରେ ଅଶେଷ ପୁଣ୍ୟଫଳ ମିଳେ । ରାମାନନ୍ଦ ଆଡ଼ପ ମଣ୍ଡପରେ ଶ୍ରୀଜଗନ୍ନାଥଙ୍କୁ ରାମ ରୂପରେ ଏହି ନବମୀ ସନ୍ଧ୍ୟାରେ ଦର୍ଶନ କରିଥିଲେ ।

ଶୁକ୍ଳ ଦଶମୀ ତିଥିରେ ଜୀଉମାନେ ଦକ୍ଷିଣାମୁଖୀ ରଥରେ ବାହୁଡା ଯାତ୍ରା କରିଥାଆନ୍ତି । ପୂର୍ବଦିନ ନବମୀ ରାତ୍ରିରୁ ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ ହୋଇଥାଏ । ଗୁଣ୍ଡିଚା ରଥଯାତ୍ରା ଦିନ ଶ୍ରୀମନ୍ଦିରରେ ଜୀଉମାନଙ୍କର କେବଳ ମଙ୍ଗଳାରୋପଣ କରାଯାଏ ମାତ୍ର ରାଜନୀତି ବନ୍ଦାପନା ହୁଏ ନାହିଁ, କିନ୍ତୁ ଆଡ଼ପ ମଣ୍ଡପରେ ଉଭୟ ମଙ୍ଗଳାରୋପଣ ଓ ରାଜନୀତି ବନ୍ଦାପନା ହେଉଥିବାରୁ ଗୁଣ୍ଡିଚା ଯାତ୍ରା ଅପେକ୍ଷା ଆଡପ ଗୃହର ବାହୁଡା ଦଶମୀ ଯାତ୍ରା ଅତ୍ୟନ୍ତ ପୁଣ୍ୟ ପ୍ରଦାନକାରୀ ଦିବସ । ସମସ୍ତ ନୀତି ପରେ ଜୀଉମାନଙ୍କୁ ଧାଡି ପହଣ୍ଡିରେ ରଥ ଉପରକୁ ନିଆଯାଏ । ଜୀଉମାନେ ସିଂହାସନରୁ ରଥ ଉପରକୁ ଆସିଲେ ଧାଡ଼ି ପହଣ୍ଡିରେ ଓ ରଥ ଉପରୁ ସିଂହାସନକୁ ଗଲେ ଗୋଟି ପହଣ୍ଡିରେ ବିଜେ କରନ୍ତି । ଗଜପତି ମହାରାଜାଙ୍କ ଛେରାପହଁରା ପରେ ଦକ୍ଷିଣାଭିମୁଖୀ ଯାତ୍ରା ବା ବାହୁଡା ଯାତ୍ରା ଆରମ୍ଭ ହୋଇ ପ୍ରଥମେ ବଳଭଦ୍ରଙ୍କ ତାଳଧ୍ୱଜ ରଥ, ତାପରେ ସୁଭଦ୍ରାଙ୍କ ଦେବଦଳନ ରଥ ଓ ଶେଷରେ ଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଟଣାହୋଇ ବଡ଼ଦାଣ୍ଡରେ ଶ୍ରୀମନ୍ଦିର ଆଡକୁ ଗଡ଼ି ଚାଲେ । ମାଉସୀମା କିମ୍ବା ଅର୍ଦ୍ଧାଶିନୀ ଦେବୀ ହେଉଛନ୍ତି ଜଗନ୍ନାଥଙ୍କ ମାଉସୀ ମା' । ତେଣୁ ବଡ଼ଦାଣ୍ଡରେ ମାଉସୀ ମାଆଙ୍କ ମନ୍ଦିର ନିକଟରେ ଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଅଟକି ଥାଏ । ଏଠାରେ ମାଉସୀ ମାଆଙ୍କର ପୋଡ଼ପିଠା ଲାଗି ହୋଇ ସାରିବାପରେ ନନ୍ଦିଘୋଷ ରଥ ପୁଣି ଘୋର ଘର୍ଘର ନାଦରେ ବଡ଼ଦାଣ୍ଡରେ ଗଡ଼ି ଚାଲେ । ବଳଭଦ୍ରଙ୍କ ତାଳଧ୍ୱଜ ଓ ସୁଭଦ୍ରାଙ୍କ ଦେବଦଳନ ରଥ ସିଂହଦ୍ୱାର ନିକଟରେ ପହଞ୍ଚିବା ପରେ ଜଗନ୍ନାଥଙ୍କର ନନ୍ଦିଘୋଷ ରଥ ରାଜନଅର ନିକଟରେ ଅଟକିଥାଏ । ବିମାନ ବଡୁମାନେ ଲକ୍ଷ୍ମୀଙ୍କୁ ଆଣି ସିଂହଦ୍ୱାର ଉତ୍ତର ପାର୍ଶ୍ୱସ୍ଥିତ ଚାହାଣି ମଣ୍ଡପରେ ରହି ଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଆଡକୁ ମୁହଁ କରାଇଥାଆନ୍ତି । ଗଜପତି ମହାରାଜାଙ୍କର ଆମନ୍ତ୍ରଣ ପାଇବା ପରେ ଲକ୍ଷ୍ମୀଙ୍କୁ ଶ୍ରୀନଅର ନିକଟରେ ଥିବା ଜଗନ୍ନାଥଙ୍କ  ରଥ ନିକଟକୁ ନିଆଯାଏ । ଗଜପତି ମହାରାଜା ଲକ୍ଷ୍ମୀନାରାୟଣ ଭେଟ କରାନ୍ତି । ଶ୍ରୀଜଗନ୍ନାଥଙ୍କର ବନ୍ଦାପନା ପରେ ଲକ୍ଷ୍ମୀଙ୍କୁ ନନ୍ଦିଘୋଷ ରଥ ଚାରିପାଖରେ ପରିକ୍ରମା କରାଇ ଶ୍ରୀମନ୍ଦିରକୁ ପ୍ରତ୍ୟାଗମନ କରନ୍ତି । ଏହାପରେ ନନ୍ଦିଘୋଷ ରଥ ସିଂହଦ୍ୱାର ନିକଟକୁ ଆସିଥାଏ । ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ରଥ ଉପରେ ଜୀଉମାନଙ୍କର ସୁନାବେଶ ହୁଏ । ଜୀଉମାନଙ୍କର ସୁବର୍ଣ୍ଣ ପୟର, ଭୁଜ, ମୁକୁଟ, ଆୟୁଧ, କଣ୍ଠମାଳ ଇତ୍ୟାଦି ଆଭୂଷଣ କରାଯାଇ ମନୋମୁଗ୍‌ଧକର ବେଶ କରାଯାଇଥାଏ । ଦ୍ୱାଦଶୀ ଦିନ ରଥ ଉପରେ ଅଧରପଣା ନୀତି ଅନୁଷ୍ଠିତ ହଏ । ବାରଗୋଟି ତୁମ୍ବାକୃତି ମାଟିପାତ୍ରରେ ତିନି ଜୀଉଙ୍କୁ ପ୍ରତ୍ୟେକ ତିନିଗୋଟି ଲେଖାଏଁ, ଜଗନ୍ନାଥଙ୍କ ନିକଟରେ ମଦନମୋହନଙ୍କୁ ଗୋଟିଏ ଓ ବଳଭଦ୍ରଙ୍କ ନିକଟରେ ରାମ-କୃଷ୍ଣଙ୍କୁ ଦୁଇଟି ପଣା ହାଣ୍ଡି ଦିଆଯାଏ । ତାଳଧ୍ୱଜ ରଥରେ ପାଞ୍ଚଗୋଟି, ନନ୍ଦିଘୋଷ ରଥରେ ଚାରିଗୋଟି, ଦେବଦଳନ ରଥରେ ତିନିଗୋଟି ଏପରି ବାରଗୋଟି ପଣା ହାଣ୍ଡି ଲାଗି କରାଯିବା ପରେ ସେଗୁଡ଼ିକୁ ଅନ୍ୟାନ୍ୟ ଦେବାଦେବୀଙ୍କ ଉଦ୍ଦେଶ୍ୟରେ ରଥ ଉପରେ ଢ଼ାଳି ଦିଆଯାଏ । ରଥ ଉପରେ ଜୀଉମାନଙ୍କର ଏହା ଅଧର ପଣା ନୀତି । ଦ୍ୱାଦଶୀ ଦିନ ମହାଜନଙ୍କ ହସ୍ତରେ ଲକ୍ଷ୍ମୀଙ୍କୁ ବିଜେ କରାଇ ଦେବଦାସୀମାନଙ୍କ ସହିତ ସିଂହଦ୍ୱାରର ଦକ୍ଷିଣରେ ଥିବା ଭେଟମଣ୍ଡପରେ ଥାଇ ଜଗନ୍ନାଥଙ୍କ ଭେଟ କରାନ୍ତି । ଶ୍ରୀଜଗନ୍ନାଥ ଓ ଲକ୍ଷ୍ମୀଙ୍କ ଭେଟ ପରେ ଉଭୟଙ୍କୁ ସ୍ୱ ସ୍ୱ ସ୍ଥାନରେ ଏକ ସମୟରେ ଆଳତୀ କରାଯାଏ । ଲକ୍ଷ୍ମୀ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଗରୁଡ଼ ସ୍ତମ୍ଭ ନିକଟରେ ଜୀଉମାନଙ୍କୁ ଦକ୍ଷିଣାମୁଖୀ କରାଇ ବନ୍ଦାପନା କରାଯାଏ । ତାହାପରେ ନୀଳାଦ୍ରି ବିଜୟ ଉତ୍ସବ ଆରମ୍ଭ ହୁଏ । ଗୋଟି ପହଣ୍ଡିରେ ସୁଦର୍ଶନ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଆଣି ରତ୍ନ ସିଂହାସନରେ ବିଜେ କରାଇବା ପରେ ଲକ୍ଷ୍ମୀଙ୍କର ସେବିକାମାନେ ଜୟ ବିଜୟ ଦ୍ୱାରକୁ ଭିତର ପାଖରୁ ବନ୍ଦ କରିଦିଅନ୍ତି । ଜଗନ୍ନାଥଙ୍କୁ ଆଣି ସେବକମାନେ ଜୟବିଜୟ ଦ୍ୱାର ନିକଟରେ ପହଞ୍ଚିବା ପରେ ବନ୍ଦ କରାଯାଇଥିବା ଦ୍ୱାର ନ ଖୋଲିବାରୁ ଭିତରେ ଥିବା ଲକ୍ଷ୍ମୀଙ୍କ ସେବିକାମାନଙ୍କ ସହ ବାହାରେ ଥିବା ଜଗନ୍ନାଥଙ୍କ ସେବକମାନଙ୍କ ମଧ୍ୟରେ ବଚନିକା ହୁଏ । ସାଧାରଣତଃ ଲକ୍ଷ୍ମୀ ନାରାୟଣ କଳି ରୂପେ ଏହା ଅଭିହିତ କରାଯାଇଛି । ଏହାପରେ ଦ୍ୱାର ଖୋଲିଯାଏ । ଜଗନ୍ନାଥ ଭଣ୍ଡାରଘର ନିକଟରେ ପହଞ୍ଚିବା ପରେ ଉତ୍ତରାମୁଖୀ ହୋଇ ଓ ଲକ୍ଷ୍ମୀ ଦକ୍ଷିଣାମୁଖୀ ହୋଇ ପରସ୍ପର ସମ୍ମୁଖରେ ବସି ଥାଆନ୍ତି । ପୂର୍ବରୁ ରୁକ୍ମିଣୀ ବିବାହଠାରୁ ଫିଟାଯାଇନଥିବା ଗଣ୍ଠିଆଳ ଫିଟାଯାଏ । ଜଗନ୍ନାଥଙ୍କ ତରଫରୁ ଲକ୍ଷ୍ମୀଙ୍କୁ ରସଗୋଲା ଭୋଗ ଲାଗି ହୁଏ । ଶ୍ରୀମନ୍ଦିରରେ କେବଳ ଏହି ଗୋଟିଏ ଦିନ ରସଗୋଲା ଭୋଗ ହୁଏ । ଏହାପରେ ଶ୍ରୀଜଗନ୍ନାଥ ରତ୍ନସିଂହାସନକୁ ବିଜେ କରନ୍ତି । ବିଷ୍ଣୁ ମହୋତ୍ସବ ରଥଯାତ୍ରାର ପରିସମାପ୍ତି ହୁଏ । ଦକ୍ଷିଣାମୁଖୀ ରଥଯାତ୍ରାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନ କଲେ ବୈକୁଣ୍ଠ ପ୍ରାପ୍ତି ହୁଏ । ସ୍କନ୍ଦ ପୁରାଣରେ ଅଛି,

ନୀଳାଚଳ ସମୟାନ୍ତଂ ରଥସ୍ଥ ଦକ୍ଷିଣାମୁଖମ୍
ଯେ ପଶ୍ୟନ୍ତି ହୃଷିକେଶଂ, ସୁଭଦ୍ରା, ଲଙ୍ଗଳାୟୁଧମ୍ ।
କାଳ କଳ୍ପତରୁଂ ପୁଂସାଂ, ଦର୍ଶନାଦେବ ମୁକ୍ତିଦମ୍,
ତେ ବ୍ରଜନ୍ତି ମହାତ୍ମାନୋ, ବୈକୁଣ୍ଠ ଭବନଂ ହରେ।।

ଘର ନଂ - ୱାନ ଏଫ
ଭରଷା ପ୍ଲାଜା - ମହତାବ ରୋଡ଼
ପୁରୁଣା ଭୁବନେଶ୍ୱର-୭୫୧୦୦୨

# ଅନବସରରେ ଅଲାରନାଥ



‘ଜଗଦାନନ୍ଦ କନ୍ଦାୟ ପ୍ରଣତାର୍ତ୍ତି ହରାୟଚ ।
ନୀଳାଚଳ ନିବାସାୟ ଜଗନ୍ନାଥାୟତେ ନମଃ ॥’

କୃଷ୍ଣପ୍ରିୟା ଦାସ

**ବ**ହୁ ବର୍ଷ ପୂର୍ବେ ଦାକ୍ଷିଣାତ୍ୟରେ ଆଲବନ୍ଦରାଚାର୍ଯ୍ୟ ନାମରେ ଜଣେ ବେଦବିଜ୍ଞ, ଶାସ୍ତ୍ରଜ୍ଞ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କର ଅନେକ ପୈତୃକ ସମ୍ପତ୍ତି ଥିଲା । ପିତା, ପିତାମହ କାଳରୁ ଗୁରୁକୁଳ ପ୍ରଥା ଚଳିଆସୁଥିବା ହେତୁ, ଆଲବନ୍ଦରାଚାର୍ଯ୍ୟ ମଧ୍ୟ ସେହି ଗୁରୁକୁଳର ଜଣେ ଉଚ୍ଚକୋଟୀର ଶିକ୍ଷକ ଭାବେ, ଶିଷ୍ୟମାନଙ୍କୁ ବିନାମୂଲ୍ୟରେ ଶିକ୍ଷାଦାନ କରୁଥାଆନ୍ତି । ଯେଉଁ ଶିଷ୍ୟମାନେ ଦୂରଦୂରାନ୍ତରୁ ଆସିଥାନ୍ତି, ଆଚାର୍ଯ୍ୟେ ସେମାନଙ୍କ ରହିବା, ଖାଇବା ଇତ୍ୟାଦିର ସୁବନ୍ଦୋବସ୍ତ କରାଇ ସ୍ୱାସ୍ଥ୍ୟର ଯତ୍ନ ପାଇଁ ମଧ୍ୟ ବୈଦ୍ୟାଚାର ବା ଔଷଧାଳୟର ବ୍ୟବସ୍ଥା କରିଥାନ୍ତି ।

ପିଲାଦିନରୁ ହିଁ ତାଙ୍କର ସଂସାର ଆଶକ୍ତି ତୁଟି ଯାଇଥିଲା । କାରଣ ଅତି କମ୍ ବୟସରୁ ସେ ପିତା, ମାତାଙ୍କୁ ହରାଇ, ମରଣଶୀଳ ଜଗତକୁ ତୁଚ୍ଛ ମନେ କରୁଥିଲେ । ପରୋପକାର ଥିଲା ତାଙ୍କର ଏକମାତ୍ର ଦୀକ୍ଷା । ଗାଁ ଗୋଟାକର ଭଲ, ମନ୍ଦ ବୁଝିବା ହେଲା ପ୍ରଧାନ କାର୍ଯ୍ୟ । ତେଣୁ ଲୋକମାନଙ୍କ ମନ ତାଙ୍କ ପାଇଁ ଅସୀମ ଶ୍ରଦ୍ଧା ଓ ଭକ୍ତିରେ ପୁରୀ ଉଠୁଥାଏ । ଯାହାର ଯେଉଁ କାର୍ଯ୍ୟ ହୁଏ, ଆଗରୁ ଆଚାର୍ଯ୍ୟଙ୍କ ଅନୁମତି ବା ଅନୁମୋଦନ ଦରକାର ପଡ଼େ । କହିବାକୁ ଗଲେ ସମସ୍ତେ ତାଙ୍କୁ ଦେବତୁଲ୍ୟ ଭକ୍ତି କରନ୍ତି ।

ଚାହୁଁ ଚାହୁଁ ସମୟ ଗଡ଼ି ଚାଲିଲା । ଯୁବକ ଆଲ୍‌ବନ୍ଦରାଙ୍କଠାରେ ପରିଣତ ବୟସର ଛାପ ପଡ଼ିଲାଣି । ଏଥର ବାହ୍ୟ ଜଗତରୁ ବିଦାୟ ନେବାକୁ ପଡ଼ିବ । ତାଙ୍କର ସବୁଠାରୁ ବୁଦ୍ଧିମାନ ଶ୍ରେଷ୍ଠ ଶିଷ୍ୟ ‘ସୁବ୍ରମନ୍ୟମ୍’ ହାତରେ ସମସ୍ତ ଭାର ଅର୍ପଣ କରି ଶ୍ରୀପୁରୁଷୋତ୍ତମ କ୍ଷେତ୍ରାଭିମୁଖୀ ହେବାକୁ ଲାଗିଲେ । ଛୋଟ ବେଳୁ ହିଁ ଶ୍ରୀଜଗନ୍ନାଥଙ୍କ ପ୍ରତି ଅଗାଧ ଭକ୍ତି ଥିଲା । ଆଉ ଅନ୍ତିମ ସମୟକୁ ତାଙ୍କରି ଶରଣା ଗତି ଛଡ଼ା କ’ଣ କରନ୍ତେ ? ଭଗବାନ ତ ଶ୍ରୀମୁଖରେ ଭକ୍ତହିତ ନିମନ୍ତେ ଶ୍ରୀମଦ୍ ଭଗବଦ୍ ଗୀତାରେ ଶୁଣାଇଛନ୍ତି-

‘ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂବ୍ରଜ,
ଅହଂ ତ୍ୱା ସର୍ବପାପେଭ୍ୟାଃ ମୋକ୍ଷୟିଷ୍ୟାମି ମା ଶୁଚଃ ।’

ପଛରେ ପଡ଼ି ରହିଲା, ତାଙ୍କର ଜନ୍ମଭୂମି, କର୍ମଭୂମି, ସ୍ୱର୍ଗାଦପି ଗରୀୟସୀ ପବିତ୍ର ‘ତ୍ରିଭେନ୍ଦ୍ରମ୍’ । ସମସ୍ତ ଗ୍ରାମବାସୀଙ୍କୁ ଶୋକାକୁଳ ଅବସ୍ଥାରେ ଛାଡ଼ିଦେଇ, ଏକମାତ୍ର ଶ୍ରୀଜଗନ୍ନାଥଙ୍କ ଦର୍ଶନକୁ ପ୍ରାଧାନ୍ୟ ଦେଇ ପଥ ଚାଲୁଥିଲେ ।

‘ଦୀପରେ ଦୀପ ଲଗାଇଲେ । ତେଜ ଯେସନେ ସମତୁଲେ ।’

ସେ’ତ ଦୀପରେ ଅନେକ ଦୀପ ଜାଳି ଦେଇଆସିଛନ୍ତି, ଆଉ ଚିନ୍ତା କ’ଣ ? ଶିଷ୍ୟମାନଙ୍କ ଦ୍ୱାରା ତାଙ୍କର ସମସ୍ତ ଇଚ୍ଛାପୂରଣ ହୋଇପାରିବ । ଗ୍ରାମବାସୀ ପୂର୍ବଭଳି ସୁଖ, ଶାନ୍ତିରେ ଦିନ ବିତାଇ ଧର୍ମପଥକୁ ଅନୁସରଣ କରିବେ । ଏଥର ସେ ନିଶ୍ଚିନ୍ତ ମନରେ, ସତ୍ୟ ସ୍ୱରୂପଙ୍କ ଦର୍ଶନ କରି ଅନିତ୍ୟ ସଂସାର ମଧ୍ୟରୁ ଉଦ୍ଧାର ଲାଭ କରିବେ ନିଶ୍ଚୟ ।

ଏପରି ଅନେକ ଦୃଢ଼ୋକ୍ତିପୂର୍ଣ୍ଣ ବିଶ୍ୱାସ ନେଇ, ସେ ଯେତେବେଳେ ଶ୍ରୀମନ୍ଦିରରେ ପ୍ରବେଶ କରନ୍ତି ଶ୍ରୀଜୀଉଙ୍କ ଦ୍ୱାର ଅବରୋଧ କରାଯାଇ ଗୁପ୍ତ ପୂଜାର ଆୟୋଜନ ଚାଲିଛି । ସେ ଉଦ୍‌ବିଗ୍ନ ହୋଇ ସେବକମାନଙ୍କୁ କାରଣ ପଚାରି ବସିଲେ । ସେବକେ ତାଙ୍କୁ ବୁଝାଇ ଦେଲେ, ‘ଜ୍ୟେଷ୍ଠ ପୂର୍ଣ୍ଣିମା ପରଠାରୁ, ଆଷାଢ଼ ଶୁକ୍ଳ ପ୍ରତିପଦ ପର୍ଯ୍ୟନ୍ତ ଠାକୁରେ ଅନବସର ସେବା ଗ୍ରହଣ କରି ଅନବସର ପିଣ୍ଡିରେ ବିରାଜମାନ

ହୋଇଥାନ୍ତି । ଏହି ପନ୍ଦରଦିନ କେବଳ ତାଙ୍କ ଆଦି ସେବକ ଶବରମାନେ ଶାବରୀ ପଦ୍ଧତିରେ ପୂଜା, ଉପାସନା କରି ସନ୍ତୁଷ୍ଟ କରାଇଥାନ୍ତି । ଏହା ଅତ୍ୟନ୍ତ ଗୋପନୀୟ ସେବା ।

ଶ୍ରୀଜଗନ୍ନାଥଙ୍କ ବାରମାସରେ ତେର ପର୍ବ ମଧ୍ୟରୁ ଦେବସ୍ନାନ ପୂର୍ଣ୍ଣିମା ବିଶେଷ ଗୁରୁତ୍ୱପୂର୍ଣ୍ଣ । ତେଣୁ ସ୍କନ୍ଦ ପୁରାଣରେ କୁହାଯାଇଛି -

'ଅରୂପଂ ବା ସ୍ୱରୂପଂ ବା ନ ପଶ୍ୟେତ୍ ପଞ୍ଚଦଶାହନି ।'

ଆପଣ ସେ ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ । ଅପେକ୍ଷାର ଫଳ ଖୁବ୍ ମଧୁର ଆଜ୍ଞା ! କାରଣ, ଉଭା ଅମାବାସ୍ୟାର ନବ ଯୌବନ ଦର୍ଶନ କଲା ପରେ ଶ୍ରୀଗୁଣ୍ଡିଚାର ମହାଆଡ଼ମ୍ବର, ଶ୍ରୀଜଗନ୍ନାଥଙ୍କ ମହାସମନ୍ୱୟର ଯାତ୍ରା ।

ଆଲ୍‌ବନ୍ଦରାଚାର୍ଯ୍ୟଙ୍କ ମୁଣ୍ଡରେ ସତେ ଯେମିତି ବଜ୍ରପାତ ହୋଇଗଲା । ହେ ଜଗନ୍ନାଥ ! ଏହା ଶୁଣିବାକୁ କ'ଣ ମୁଁ ଆସି ଅଛି ? ଏପରି ଯଦି ଇଚ୍ଛା ଥିଲା, ହେ ଇଚ୍ଛାମୟ ! ତେବେ ଏତେ ଦୀର୍ଘ ପଥ ଚଲାଇ ଆଣୁଥିଲ କାହିଁକି ? ଦର୍ଶନ ବିନା ବଞ୍ଚିବି କେମିତି ? ଘର ଛାଡ଼ି ଆସିବା ବେଳେ ସତ୍ୟ କରିଥିଲି, ଶ୍ରୀକ୍ଷେତ୍ରରେ ପ୍ରଥମେ ତବ ଦର୍ଶନ, ତାପରେ ଜଳ ଗ୍ରହଣ । ଦର୍ଶନତ ମିଳିଲାନି ... ଦିନେ ଅଧେ ନୁହେଁ ଦୀର୍ଘ ପନ୍ଦର ଦିନ ... ।

ଲୁହ କୋହର ଭାରାକାନ୍ତ ମନ ନେଇ ସମୁଦ୍ର କୂଳେ କୂଳେ ଚାଲିଥାଆନ୍ତି ପଣ୍ଡିତେ ! ମନ ଗହନରେ ଏକମାତ୍ର ଅଦର୍ଶନର ହାହାକାର । ଦକ୍ଷିଣ ଦିଗକୁ ଅବଲୋକନ କରି କହୁଥାନ୍ତି, ହେ ନିର୍ଦ୍ଦୟ ! ତୁମେ ଆହୁରି ନିଷ୍ଠୁର ହୋଇଯାଅ । ଯେପରି ମରଣ ପଣ ମୋର ସତ୍ୟ ହୋଇଯାଏ । ହେ ଛଳାଧିଶ ! ତୁମ ଛଳନା ଜଗତରେ କାହାକୁ ଅବିଦିତ ଅଛି ? ଗୁପ୍ତ ପୂଜାର ଆଳ ଦେଖାଇ, ଭାବିଛ ମୋତେ ଖୁଆଇ ପିଆଇ ପନ୍ଦର ଦିନ ଅଟକାଇବା ପରେ ଦର୍ଶନ ଦେବ ! କଦାପି ନୁହେଁ । ଯଦିଓ ଜ୍ୱର ହୋଇଛି, ମୁଁ କ'ଣ ତୁମ ସେବକ ନୁହଁ ? ସେବା ଅଧିକାର ମୋ' ପାଇଁ ମନା କାହିଁକି ? ଦର୍ଶନ ସେବାରୁ ଯଦି ବଞ୍ଚିତ ତା' ହେଲେ ଜୀବନଟା ରହିବ କାହିଁକି ? ଅସୁମାରୀ ପ୍ରଶ୍ନରେ ଶରବିଦ୍ଧ ମନ ହୃଦୟ ଆନ୍ଦୋଳିତ । ଛାତି ଭିତରୁ କୋହ ଉଠି ଆସୁଛି ।

ମୁଁ ଭୁଲିବାର ନୁହେଁ ପ୍ରଭୁ ! ଦୁନିଆ ଜାଣୁ, ବିନା ଦର୍ଶନରେ ଜଣେ ଭକ୍ତ ପ୍ରାଣ ବିସର୍ଜନ କରିବା ପାଇଁ ବାଧ ହୋଇଛି । ଦୟାସାଗରଙ୍କ ଦୟାକୁ ସମସ୍ତେ ବୁଝନ୍ତୁ । ରାତ୍ରୀ ମାଡ଼ି ଆସୁଥାଏ, ସେ ଚାଲୁଥାନ୍ତି ସାଗର ଅଭିମୁଖେ । ହଠାତ୍ ଦେଖିଲେ, ମର୍କଟ ସଦୃଶ୍ୟ, ଜଣେ ବଳଶାଳୀ ବ୍ୟକ୍ତି ତାଙ୍କ ପଛେ ଚାଲିଛନ୍ତି । ଅନେକ ବେଳୁ ଅନୁମାନ ଥିଲେ ମଧ, ଧ୍ୟାନ ଦେଇନଥିଲେ । ମୃତ୍ୟୁ ଚିନ୍ତା ତାଙ୍କୁ ଅନ୍ୟ ଆଡ଼କୁ ଆକର୍ଷିତ କରାଇ ପାରିନଥିଲା । ମହାତ୍ମା ଜଣକ ନିକଟରୁ ନିକଟ ହେବା ଦେଖି ପଚାରିଲେ ... 'ଆପଣ କିଏ ? ଏତେ ରାତିରେ ମୋ ପିଛା ଧରିଛନ୍ତି କାହିଁକି ? ଆପଣ ଜଣେ ସିଦ୍ଧ ପୁରୁଷ ପରି ଜଣାଯାଉଛନ୍ତି । ମୋ ପରି ଗୋଟାଏ ପାପାତ୍ମା ପଛରେ ପଡ଼ି ଲାଭ ପାଇବେ କ'ଣ ? ଯାଆନ୍ତୁ, ଫେରିଯାଆନ୍ତୁ । ଆପଣଙ୍କ ପାଇଁ ମୁଁ ମୋର ସତ୍ୟ ଭ୍ରଷ୍ଟ ହେବାକୁ ଚାହୁଁ ନାହିଁ ।'

ବାସ୍ତବରେ ମହାତ୍ମା ଜଣକ ଅନ୍ୟ କେହି ନଥିଲେ, ସ୍ୱର୍ଗଦ୍ୱାରର ରକ୍ଷକ ବୀର ହନୁମାନ ! ସେ ନିଜର ପରିଚୟ ପ୍ରଦାନ କରି ଚିରାଚରିତ ଅନବସର ନୀତି ସଂପର୍କରେ ଅନେକ ତଥ୍ୟ ପ୍ରଦାନ କରି କହିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କ ଆଦେଶ ନେଇ ଆସିଥିବା ଜଣାଇ କହିଲେ -

ମହାପ୍ରଭୁ ଅସୁସ୍ଥ ଅଛନ୍ତି, ସେ' ଇଚ୍ଛା ପ୍ରକାଶ କରିଛନ୍ତି, ତୁମେ ତାଙ୍କର ଭକ୍ତ ହୋଇ ମରଣପଣ ପରିତ୍ୟାଗ ପୂର୍ବକ ଦିନ ପନ୍ଦରଟା ଅପେକ୍ଷା କର, ଦର୍ଶନ ପାଇବ ।

ମହାପ୍ରଭୁଙ୍କ ଆଜ୍ଞା ! ଆପଣଙ୍କ ଦ୍ୱାରା କୁହାଇବାମାନେ ? ମୁଁ କ'ଣ ତାଙ୍କର କେହି ନୁହେଁ । ସତ୍ୟ ସନ୍ଧାନରେ ବାହାରିଛି ଯେତେବେଳେ, ଦର୍ଶନ ଅଥବା ମୃତ୍ୟୁ । ଦୁଇଟାରୁ ଗୋଟାଏ ହିଁ କାମନା । ଆପଣ ସତ କହୁଛନ୍ତି, ଛଳନା କରୁଛନ୍ତି, ମୋର ବିଶ୍ୱାସ ହେଉନାହିଁ ।

ଦେଖନ୍ତୁ .. ମୁଁ ଆଦୌ ଛଳନା କରୁ ନାହିଁ । କେବଳ ପ୍ରଭୁ ଆଦେଶ ପାଳନ କରିଛି । ତେଣିକି ତୁମ ଭାଗ୍ୟ । ମୋ କର୍ତ୍ତବ୍ୟ ମୁଁ କରିସାରିଛି । ଏତିକି କହି ସେ ଅନ୍ତର୍ଦ୍ଧାନ ହୋଇଗଲେ ।

ହଠାତ୍ ଗୋଟିଏ ବିଦ୍ୟୁତ୍‌ର ଝଲକରେ ଝଲକି ପଡ଼ିଥିଲା ପଣ୍ଡିତଙ୍କ ଆଖି ଦୁଇଟା । ସହସା ସେ ଦକ୍ଷିଣରୁ ପଶ୍ଚିମ ଦିଗକୁ ଘୂରିଯାଇ, ଦ୍ରୁତ ପଦକ୍ଷେପରେ ଆଗେଇ ଚାଲିଲେ । ଚାଲୁ ଚାଲୁ ଅଜାଣତରେ ପ୍ରଭାତ ହେବାର ସୂଚନା ମିଳିଲା । ସେତେବେଳକୁ ସମୁଦ୍ର ରହିଯାଇଥିଲା ଅନେକ ଦୂରରେ । ଚୈତନ୍ୟ ଫେରି ଆସିଲା ... ଆଲ୍‌ବନ୍ଦର ଦୁଃଖରେ ମ୍ରିୟମାଣ ହୋଇ, ବିଳାପ କରୁଥିଲେ -

ଲୁହ ପୋଛି ପୋଛି, ନିକଟସ୍ଥ ପୁଷ୍କରିଣୀ ଆଡ଼କୁ ଦୃଷ୍ଟି ଦିଅନ୍ତି ତ, ଆଶ୍ଚର୍ଯ୍ୟର କଥା ପ୍ରଭୁ ସ୍ୱୟଂ ନାରାୟଣ, ନବୀନ ନିରଦ କାନ୍ତି, ଚତୁର୍ଭୁଜରେ, ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରି ଦଣ୍ଡାୟମାନ ହୋଇଅଛନ୍ତି । ସେ ବାରମ୍ବାର ଆଖି ମକଚି ଚାହିଁ, ଶିହରୀ ଉଠିଲେ - ପ୍ରଭୁଙ୍କର ଯେ' କି ବିମର୍ଷ ରୂପ ! ଯବାଧର ପାଣ୍ଡୁର ବର୍ଣ୍ଣଧାରଣ କରିଛି । ବେଶ, ଭୂଷା, ଇତଃସ୍ତତ, ତନୁ ତନିମା ଅବଶ, ବିଷର୍ଣ୍ଣ । ସତେ ଯେପରି, ଜ୍ୱର, ବ୍ୟାଧି ପ୍ରପୀଡ଼ିତ ଭାବଗ୍ରାହୀ । ଭକ୍ତର ପ୍ରାଣ ରକ୍ଷା ପାଇଁ ଏତେ କ୍ଲେଶ ସହି ସେ ଆବିର୍ଭାବ ହୋଇଅଛନ୍ତି । ନଦେଖି ନଦେଖି ଶେଷରେ ଏଇୟା ଦେଖିବାକୁ ଥିଲା ? ହେ କରୁଣାମୟ ମୋର ଅସୀମ ଅପରାଧକୁ କ୍ଷମା କରିଦିଅ । ଆପଣଙ୍କ ଆଜ୍ଞା ଅବଜ୍ଞାନ କରି ପରମଭକ୍ତ ମଶାଣିଆ ମହାବୀରଙ୍କୁ ମଧ ଉପେକ୍ଷା କରିଥିବା ହୃଦୟଟା ଫାଟି ନଯାଇ ରହିଛି କାହିଁକି? ଘୋର ଅପରାଧ, ମହାପାତକରୁ ପରିତ୍ରାଣ ପାଇବି କିପରି ? ସେ ପ୍ରଭୁଙ୍କ ପାଦପଦ୍ମରେ





ମସ୍ତକ ପାତି ଦେଇ କହିଲେ, ଚକ୍ରରେ ଛେଦନ କରନ୍ତୁ ପ୍ରଭୁ ! ଏହା ହିଁ, ପାପର ପ୍ରାୟଶ୍ଚିତ ।

ଉଠ ଭକ୍ତ ! ତୁମେ ପବିତ୍ର, ସ୍ୱଚ୍ଛ ଓ ନିର୍ମଳ । ତୁମକୁ କଦାପି ପାପ ସ୍ପର୍ଶ କରିନପାରେ, ତା' ନ ହୋଇଥିଲେ, ମୋତେ ଏତେ ବାଟ କିଏ ଟାଣି ଆଣିଥାନ୍ତା ? ତୁମ ଏକାନ୍ତ ଭକ୍ତିରେ ମୁଁ ସମ୍ପୂର୍ଣ୍ଣ ଆନନ୍ଦ ଲାଭ କରିଛି । ଏଥର ତୁମ ଅଭିଳାଷ ବ୍ୟକ୍ତ କର ।

ହେ ଭାବଗ୍ରାହୀ ! ଏ ଅକିଞ୍ଚନ ପ୍ରତି ଆପଣଙ୍କର ଯଦି ଏତେ କରୁଣା, ତା'ହେଲେ ଏହି ସ୍ଥାନରେ ଏହି ରୂପରେ ସବୁଦିନ ପାଇଁ ବିରାଜମାନ କରନ୍ତୁ । ଶ୍ରୀଜଗନ୍ନାଥଙ୍କ ଅନବସର, ଅଦର୍ଶନ ଆଉ ଭକ୍ତମାନଙ୍କୁ ନିରାଶ ନକରି, ଆପଣଙ୍କ ଦର୍ଶନରେ, ସାମ୍ୟ ଫଳ ପ୍ରଦାନ କରୁ । ସେହି ପନ୍ଦର ଦିନ ଏଠାରେ ବସିଯାଉ ଭକ୍ତମାନଙ୍କ ବିପଣୀ ।

ଶ୍ରୀବିଷ୍ଣୁ ! ଭଗବାନ ! ତଥାସ୍ତୁ କରି ଅନ୍ତର୍ଦ୍ଧାନ ହୋଇଗଲେ । ସେଠାରେ ତାଙ୍କ ପାଷାଣ ପ୍ରତିମା ଦଣ୍ଡାୟମାନ ହୋଇ ରହିଥିବା ପଣ୍ଡିତଙ୍କୁ ବିସ୍ମୟ କରାଇଦେଲା । ଭକ୍ତର ଭଗବାନ ! ଭକ୍ତପାଇ ତ ସ୍ୱହସ୍ତରେ ଶଂଖ, ଚକ୍ର ଧାରଣ କରିଅଛନ୍ତି । ତେଣୁ ଭକ୍ତ ପାଇଁ ସେ ସବୁକିଛି କରିପାରିବେ ।

ସେହିଦିନଠାରୁ ପୁରୀ ନିକଟସ୍ଥ ବ୍ରହ୍ମଗିରିଠାରେ, ଅଲବନ୍ଧାରନାମ ମହାପ୍ରଭୁଙ୍କ ଦର୍ଶନ ପାଇଁ ଅନବସର ପନ୍ଦର ଦିନ ଭିଡ଼ ଲାଗେ । ଏହି ଦର୍ଶନ ଶ୍ରୀଜଗନ୍ନାଥଙ୍କ ଦର୍ଶନ ସହିତ ସମତୁଲ୍ୟ ଅଟେ ।

ସବୁଠାରୁ ବିଶେଷ ଆକର୍ଷଣ ହେଉଛି, ଅଲାରନାଥଙ୍କ କ୍ଷିରି । ଏହା ଉପରେ ଏକ ସୁନ୍ଦର କିମ୍ବଦନ୍ତୀ ଶୁଣାଯାଏ । 'ଦିନେ ପୂଜକ ମହାଶୟ ତୀର୍ଥ ପର୍ଯ୍ୟଟନରେ ଯିବାକୁ ମନସ୍ଥ କରି ପୁଅକୁ କହିଲେ ଠାକୁରଙ୍କୁ ସେବା କରିବୁ । ସବୁଦିନେ କ୍ଷିରି ଭୋଗ ଲଗାଉଥିବୁ । ମୁଁ ଅଳ୍ପଦିନ ଭିତରେ ଫେରିଆସିବି । ପ୍ରଭୁଙ୍କ କାର୍ଯ୍ୟରେ ଅବହେଳା କରିବୁ ନାହିଁ ।'

ପୁଅ ବାପାଙ୍କ କହିବା ଅନୁସାରେ ଠାକୁରଙ୍କ ନୀତି ବଢ଼ାଇ, ଚାଉଳରେ କ୍ଷିରି ରାନ୍ଧି, ପରସି ଦେଇ କହେ -

'ଆସହେ ଠାକୁରେ କ୍ଷିରି ବଢ଼ା ହେଲା
ଖାଇ ଦିଅ ଆନନ୍ଦରେ
ପୂଜାର ବିଧାନ କି ମନ୍ତ୍ର କି ନାମ
ପଶୁନାହିଁ ମୋ ପାଟିରେ ।।'

ପିଲାଟିର ନିଷ୍କପଟ ଭାବ ଭଙ୍ଗୀରେ ଭଗବାନ ସନ୍ତୁଷ୍ଟ ହୋଇ, କ୍ଷିରିତକ ଚଳୁ କରି ଦିଅନ୍ତି । ଏହିପରି କିଛି ଦିନ କଟିଗଲା । ଦିନେ ମା' ପଚାରିଲେ ପୁଅରେ, ତୁ କ'ଣ ଘରକୁ ଖାଲି ହାତରେ ଫେରୁଛୁ । ପ୍ରସାଦ ଆଣୁନୁ ।

ପୁଅ କହିଲା ପ୍ରସାଦ ଆଣିବି କ'ଣ ? ସବୁତକ ତ ଠାକୁରଙ୍କୁ ନିଅଣ୍ଟ । ବଳିଲେ ସିନା ଆଣନ୍ତି । ମା' ଆଶ୍ଚର୍ଯ୍ୟରେ ଆଖି ଖୋଷି ପକାଇଲେ । କିଛି ଦିନ ପରେ ବ୍ରାହ୍ମଣ ଆସି ପଚାରିଲେ, ପୁଅ ଠିକ୍ ସେ ପୂଜା କରିଛୁ ତ ? ବ୍ରାହ୍ମଣୀ ପୁଅ କଥା ଯେମିତି କହିଛନ୍ତି, ପୂଜକଙ୍କ କ୍ରୋଧର ସୀମା ରହିଲା ନାହିଁ । ସେ' ଲୁଚି ରହି ଦେଖିବାକୁ ଚେଷ୍ଟା କଲେ ।

ପୁଅ ସଯତ୍ନରେ କ୍ଷିରି ପାତ୍ରଟି ଥୋଇ ଦେଇ ପୂର୍ବଭଳି ପ୍ରାର୍ଥନା କରି କବାଟ ଆଉଜେଇ ଆଣି ବାହାରକୁ ଚାଲିଗଲା । ପୂଜକ ଅତି ସନ୍ତର୍ପଣରେ କବାଟ ଫାଙ୍କରେ ଦେଖନ୍ତେ, ମହାପ୍ରଭୁ କ୍ଷିରି ପୁଳାକ ତର ତର ହୋଇ ପାଟିକି ନେଉ ନେଉ ଗୋଡ଼ ଛାତିରେ ପଡ଼ି ଫୋଟକା ହୋଇଗଲା ।

ହାହାକାର କରି ମୁଣ୍ଡ ପିଟି ଦେଲେ ବ୍ରାହ୍ମଣ ! ଶୂନ୍ୟବାଣୀ ହେଲା । 'ଉଠ ପୂଜକେ ଥୟଧର । ତୁମ ପୁତ୍ରର ସରଳ ଆମନ୍ତ୍ରଣରେ ମୁଁ ବଶ ହୋଇଯାଉଥିଲି । ତା' ହାତରନ୍ଧା କ୍ଷିରିର ଅପୂର୍ବ ସ୍ୱାଦ ଆମ୍ବହରା କରୁଥିଲା ଯେପରି । ତା'ର ନିଷ୍କପଟ କଥା କେଇପଦ ମୋତେ ଶ୍ଲୋକ ପରି ମନେ ହେଉଥିଲା । ତା' ଚଳଚଞ୍ଚଳ ପଣିଆରେ ଅଧିର ହୋଇ ଉଠୁଥିଲି ମୁଁ ।'

ସେହିଦିନଠାରୁ ଅଲାରନାଥ କ୍ଷିରି ସୁପ୍ରସିଦ୍ଧ ହୋଇଆସୁଛି । ଦର୍ଶନାର୍ଥୀମାନେ ଦର୍ଶନ ସାରି କ୍ଷିରି ଭୋଗ ନଖାଇବା ପର୍ଯ୍ୟନ୍ତ ଘର ମୁହାଁ ହୋଇନଥାନ୍ତି । ଆବାଳ-ବୃଦ୍ଧ-ବନିତା ବର୍ଷକୁ ଥରେ ହେଲେ ବି ଦର୍ଶନ କରି କ୍ଷିରି ଖାଇବାକୁ ଆଶାପୋଷଣ କରି ଅପେକ୍ଷା କରିଥାନ୍ତି । ସ୍ୱାଦ ତ ଶ୍ରଦ୍ଧାରେ, ଭକ୍ତିରେ -

'ମନ୍ତ୍ର ହୀନ କ୍ରିୟହୀନ, ଭାବମୂଳ ସଦାର୍ଚ୍ଚନେ ।
ପରା ପୂଜେତି ଜ୍ଞେୟା ଚ ନିତ୍ୟାନନ୍ଦ ପ୍ରଦାଂ ଶୁଭମ୍ ।।'

ଭକ୍ତପ୍ରିୟ ମାଧବ ! କେବଳ ଭକ୍ତିରେ ସନ୍ତୁଷ୍ଟ ହୋଇ, ଭକ୍ତର ଇଚ୍ଛା ପୂରଣ କରାଇଥାନ୍ତି । ଭକ୍ତ ଯେମିତି କହୁ, ଯେମିତି ଦେଉ ସବୁଥିରେ ସନ୍ତୁଷ୍ଟ । ନହେଲେ କି ଭକ୍ତ ନାମର ଟେକରଖି, ଆଲବନ୍ଦାର ନାଥ ନାମରେ ଛତିଟେକାଇଥାନ୍ତେ ! ବର୍ତ୍ତମାନ ସେହି ନାମ ଅପଭ୍ରଂଶ ହୋଇ, ଆଲ୍‌ବେଲନାଥ ବା ଅଲାରନାଥ ନାମରେ ସୁପ୍ରସିଦ୍ଧ ।







# ଶ୍ରୀମନ୍ଦିରର ମଣୋହି ନୀତିରେ ମୃଣ୍ମୟ ପାତ୍ର

ଯୋଗାଚାର୍ଯ୍ୟ ଡଃ ରମାକାନ୍ତ କର

**ବି**ଶ୍ୱ ଦରବାରରେ ଶ୍ରୀଜଗନ୍ନାଥ ସଂସ୍କୃତିର ସ୍ଥାନ ସ୍ୱତନ୍ତ୍ର । ଶ୍ରୀଜଗନ୍ନାଥ ମନ୍ଦିର ବା ଶ୍ରୀମନ୍ଦିରର ନୀତିରୀତି ସର୍ବଭାରତୀୟ ସ୍ତରରେ ଥିବା ବିଭିନ୍ନ ମନ୍ଦିର ନୀତି ଅପେକ୍ଷା ଭିନ୍ନ ଓ ଏଥିରେ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥାଏ । ଏଣୁ ଏହାକୁ ଅନ୍ୟ ମନ୍ଦିର ନୀତିରୀତି ସହିତ ତୁଳନା କରାଯାଇ ନପାରେ । ହିନ୍ଦୁମାନଙ୍କର ଏହି ଶ୍ରୀଜଗନ୍ନାଥ ପୀଠ ସର୍ବଶ୍ରେଷ୍ଠ ଭାବରେ ସର୍ବସ୍ୱୀକୃତ । ଏହାର ଐତିହ୍ୟ ଓ ପରମ୍ପରା ବହୁପ୍ରାଚୀନ ଓ ଏହା ଗବେଷଣା ସାପେକ୍ଷ ।



ଶ୍ରୀମନ୍ଦିରର ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଇନ୍ଦ୍ରଦ୍ୟୁମ୍ନ, ଚୋଳଗଙ୍ଗ ଦେବ ଓ ଶେଷରାଜା ଦ୍ୱାଦଶ ଶତାବ୍ଦୀର ଗଙ୍ଗବଂଶର ରାଜା ଶ୍ରୀଅନଙ୍ଗ ଭୀମଦେବ ଏହି ତିନିରାଜାଙ୍କ ଅମଳରେ ଶ୍ରୀମନ୍ଦିର ନିର୍ମାଣ କାର୍ଯ୍ୟ କରାଯାଇଥିଲା । ସର୍ବପ୍ରଥମେ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ନିର୍ମିତ ଶ୍ରୀମନ୍ଦିର ଅବସାନ ହେବା ପରେ ଦ୍ୱିତୀୟ ଥର ରାଜା ଚୋଡ଼ଗଙ୍ଗ ଦେବ ଶ୍ରୀମନ୍ଦିରର ଭିତ୍ତିପ୍ରସ୍ତର ସ୍ଥାପନ କରି ମନ୍ଦିର ଗଠନର ଅର୍ଦ୍ଧେକ କରି ସାରିଥିଲେ । ତାଙ୍କର ମୃତ୍ୟୁ ବେଳକୁ ମନ୍ଦିରର କାର୍ଯ୍ୟ ପ୍ରାୟ ଅଧାଅଧି ସରି ଯାଇଥିଲା । ପରବର୍ତ୍ତୀ ରାଜା ଅନଙ୍ଗଭୀମ ଦେବ ଶ୍ରୀମନ୍ଦିର କାର୍ଯ୍ୟକୁ ତ୍ୱରାନ୍ୱିତ କରି ସମାପ୍ତ କରିଥିଲେ ଓ ଶ୍ରୀମନ୍ଦିର ନୀତିରେ ବାଳଭୋଗ ମଣୋହି ହେବା ବଦଳରେ ଅନ୍ନଭୋଗ ମଣୋହି କରିବାର ବିଧି ପ୍ରଚଳିତ ହୋଇଥିଲା । ଶ୍ରୀମନ୍ଦିରରେ ଅନେକ ନୀତି, ରୀତି, ପର୍ବପର୍ବାଣି, ଯାନିଯାତ୍ରା, ଛତିଶା ନିଯୋଗ ଓ ମଣୋହି ନୀତିରେ ମହାପ୍ରସାଦ ଅନ୍ନଭୋଗ ଆଦି ପ୍ରଚଳିତ ହୋଇଥିବାର ଜଣାଯାଏ । 'କୁରାଳ ପୁରାଣ'ର ପୃଷ୍ଠା ଓଲଟାଇଲେ ଜଣାଯାଏ ଯେ, ଜୀଉମାନେ ନିଜର ପ୍ରତିଷ୍ଠା ସମୟରୁ ହିଁ ନିଜର କ୍ଷୁଧା ଓ ତୃଷ୍ଣାକୁ ଦୂରେଇବା ପାଇଁ ବିଭିନ୍ନ ଧାତୁ ନିର୍ମିତ ପାତ୍ର ଅପେକ୍ଷା ମୃଣ୍ମୟ ବା ମାଟି ନିର୍ମିତ ପାତ୍ର ଉପରେ ଗୁରୁତ୍ୱପ୍ରଦାନ କରିଥା'ନ୍ତି ।

ଶ୍ରୀମନ୍ଦିର ମଧ୍ୟରେ ମନ୍ଦିରର ନୀତି ଓ ରୀତି ଅନୁସାରେ ଯେଉଁ ଦିନଠାରୁ ମହାପ୍ରସାଦ ବା ଅନ୍ନଭୋଗ ମଣୋହି ହେବାର ବ୍ୟବସ୍ଥା ପ୍ରଚଳିତ ହେଲା, ତା' ପରଠାରୁ ହିଁ ମୃଣ୍ମୟ ବା ମାଟିପାତ୍ରର ଆବଶ୍ୟକତା ଅନୁଭୂତ ହେଲା । ମନ୍ଦିରର ଇତିହାସରୁ ଜଣାଯାଏ, ପ୍ରାୟ ତ୍ରୟୋଦଶ ଶତାବ୍ଦୀର ପ୍ରାରମ୍ଭରେ ଅର୍ଥାତ୍ ୧୨୩୦ ଖ୍ରୀଷ୍ଟାବ୍ଦ ପରେ ଶ୍ରୀମନ୍ଦିରରେ ଅନ୍ନଭୋଗର ପ୍ରଚଳନ ହୋଇଥିଲା । ସେହି ଅନ୍ନଭୋଗ ବା ସଙ୍କୁଡ଼ି ଭୋଗ ମଣୋହି ହେବା ପରଠାରୁ ଶ୍ରୀମନ୍ଦିରରେ ମୃଣ୍ମୟ ପାତ୍ରର ପ୍ରଚଳନ ସମ୍ଭବ ହୋଇଥିଲା । ଛତିଶା ନିଯୋଗ ମଧ୍ୟରେ ମୃଣ୍ମୟ ପାତ୍ର ନିର୍ମାଣ କରୁଥିବା କାରିଗର ବା କୁମ୍ଭକାର ନିଯୋଗ ସ୍ଥାନ ପାଇଲା ଓ ଶ୍ରୀମନ୍ଦିରରେ କୁମ୍ଭକାର ସେବାର ପ୍ରଚଳନ ହେଲା ।

ଶ୍ରୀମନ୍ଦିରର ସ୍ୱତ୍ତ୍ୱଲିପି ଅନୁଯାୟୀ କୁମ୍ଭକାରମାନେ ଦୈନିକ ଶ୍ରୀଜୀଉଙ୍କ ନୀତିରେ ତଥା ବିଭିନ୍ନ ବିଧିରେ ବ୍ୟବହାର୍ଯ୍ୟ ମାଟିପାତ୍ର ଶ୍ରୀମନ୍ଦିରକୁ ଯୋଗାଣ ଆରମ୍ଭ କଲେ । ଏଥିନିମନ୍ତେ ପ୍ରତ୍ୟହ ଚାରିବୋଝ ମାଟି ନିର୍ମିତ ମୃଣ୍ମୟ ପାତ୍ର ଶ୍ରୀମନ୍ଦିରକୁ କୁମ୍ଭକାରମାନଙ୍କୁ ଯୋଗାଇବାକୁ





ପଡ଼ିଲା । ଏପରି ଏକ ସମୟ ଆସିଲା, ଯେତେବେଳେ କି କୁମ୍ଭକାର ସେବାୟତମାନେ ଶ୍ରୀମନ୍ଦିର ପ୍ରଶାସନକୁ ସ୍ୱତ୍ୱଲିପି ମୁତାବକ ଆବଶ୍ୟକୀୟ ମୃଣ୍ମୟ ପାତ୍ର ଯୋଗାଣ ନକରି ପାରିବାରୁ ସେମାନଙ୍କୁ ମନ୍ଦିର ପ୍ରଶାସନ ସେବାରୁ ଉଚ୍ଛେଦ କଲେ । ଫଳରେ ଶ୍ରୀମନ୍ଦିରରେ ନୀତି ପାଇଁ ଆବଶ୍ୟକୀୟ ମୃଣ୍ମୟ ପାତ୍ର ଅନ୍ୟ ବାହାର କୁମ୍ଭକାରମାନଙ୍କଠାରୁ କ୍ରୟ କରିବାକୁ ପଡ଼ିଲା । ଜୀଉଙ୍କ ଦୈନନ୍ଦିନ ସେବାରେ ୪୦ଟି ହାଣ୍ଡି-କୁଡୁଆ, ୧୯୫ଟି ଅଙ୍ଗବାସ ଓଳି, ୬ଟି ତାଡ଼, ୨ଟି ପାହାନ୍ତି, ୧ଟି ଅଧା, ୨୪ଟି ପୁଳିସରା, ୨୧ଟି ଟିପେଇ ହାଣ୍ଡି, ୮୧ଟି ସାନପୁଳି ସରା, ୬୦ଟି ବଡ଼ା, ୧୪ଟି କଟାସରା, ୨୪ଟି ନମାଳି ଓ ପ୍ରତିଦିନ ପହୁଡ଼ ସମୟରେ ଦ୍ୱାର ସିଲ୍ କରିବା ଓ ମୁଦ ଦେବା ପାଇଁ ମୁଦୁଲି ଓ ମୁଦ୍ରା ସେବାୟତଙ୍କୁ କୁମ୍ଭକାର ମେଞ୍ଚାଏ ବନମାଟି ଯୋଗାଉଥିବାର ପରମ୍ପରା ପ୍ରଚଳିତ ଥିଲା । ଏହା ବ୍ୟତୀତ ସ୍ୱତନ୍ତ୍ର ଦିବସ ଯଥା- ସାତପୁରି ଅମାବାସ୍ୟାରେ ଏକ ସ୍ୱତନ୍ତ୍ର ଶୈଳୀରେ ସାତପୁରି ତାଡ଼ ଓ ରଥଯାତ୍ରା ବାହୁଡ଼ା ରଥରେ ଜୀଉଙ୍କର ରଥ ଉପରେ ଥିବା ଅଧର ଭଙ୍ଗା ନୀତିରେ ଆବଶ୍ୟକୀୟ ସ୍ୱତନ୍ତ୍ର ଧରଣର ଅଧର ହାଣ୍ଡି କୁମ୍ଭକାରମାନେ ଯୋଗାଉଥିଲେ ।

ଅଦ୍ୟାବଧି ଜୀଉମାନଙ୍କର ସେବାପୂଜାରେ କ୍ରମଶଃ ମୃଣ୍ମୟ ପାତ୍ରଗୁଡ଼ିକର ଆବଶ୍ୟକତା ବୃଦ୍ଧି ପାଇଛି । ଶ୍ରୀମନ୍ଦିରରେ ଛପନ ପଉଟି ଭୋଗର ପରିମାଣ ବୃଦ୍ଧି ହେତୁ ମୃଣ୍ମୟ ପାତ୍ରଗୁଡ଼ିକର ଆବଶ୍ୟକତା ଖୁବ୍ ବଢ଼ିଯାଇଛି । ଏହି ମୃଣ୍ମୟ ପାତ୍ରଗୁଡ଼ିକୁ କୁମ୍ଭକାର ସେବାୟତମାନେ ଯୋଗାଇ ନ ପାରୁଥିବାରୁ କୁମ୍ଭାରପଡ଼ାସ୍ଥିତ କୁମ୍ଭକାରମାନେ ବ୍ୟବସାୟିକ ଭିତ୍ତିରେ ବହୁକାଳରୁ ଆଜି ପର୍ଯ୍ୟନ୍ତ ଶ୍ରୀମନ୍ଦିରକୁ ଯୋଗାଇ ଆସୁଛନ୍ତି ।

ଶ୍ରୀମନ୍ଦିରରେ ବ୍ୟବହୃତ ହେଉଥିବା ମୃଣ୍ମୟପାତ୍ରଗୁଡ଼ିକ ମଧ୍ୟରେ ପାଞ୍ଚ ପ୍ରକାରର ତାଡ଼ (ପାହାନ୍ତି, ସାତପୁରୀ, ନରସିଂହନାଥିଆ, ଅଧା ତାଡ଼ିଆ ବା ଚାଟି, ଚଉଠା ବା ସାତପୁରୀ ଚାଟି), ଛଅ ପ୍ରକାର ହାଣ୍ଡି (ବାଇହାଣ୍ଡି, ଟିପେଇ ହାଣ୍ଡି, ଅଧର ହାଣ୍ଡି, ସମାଧି, ଦାସିଆ, ଏମାର) । ଛଅ ପ୍ରକାର କୁଡୁଆ (ବଡ଼ମଠ, ସାନମଠ, ନମ୍ବରି, ଧଳା ବା ଢ଼ଳା, ଥାଳି, କଳା ବା ଭାତ), ଛଅ ପ୍ରକାର ଓଳି (ପଖାଳ ବା ବଡ଼, ଅଙ୍ଗବାସ ବା ଅଙ୍ଗାଂଶ, ଚକ, ପାଇକିଆ, ସୁମୋ ଓ ମୁଗ), ଚାରି ପ୍ରକାର ସରା (ବଡ଼, ପୁଳି, ପାଳି, ମଝାଳ) ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ କେତେ ପ୍ରକାର ଆଟିକା, ପଲମ ଓ ଦୀପ-ଦୀପାଳି ଇତ୍ୟାଦି ବ୍ୟବହୃତ ହୋଇଥାଏ । ଦିଅଁଙ୍କ ଚଢ଼େଇ ନେଦା ଭୋଗ ଲାଗୁଥିବା ତାଡ଼କୁ ମଧ୍ୟ 'ଚଢ଼େଇନେଦା ତାଡ଼' ବୋଲି କୁହାଯାଏ ।

ଏହି ମୃଣ୍ମୟ ପାତ୍ରର ଆବଶ୍ୟକତାକୁ ଦୃଷ୍ଟିରେ ରଖି ପୁରୀବାସୀମାନେ ମଧ୍ୟ ମୃଣ୍ମୟ ପାତ୍ରରେ ପାଣି ପିଇବା, ଚା' ପିଇବା ଇତ୍ୟାଦି ପ୍ରତି ଆଗ୍ରହ ପ୍ରକାଶ କରିଥାନ୍ତି । ଶ୍ରୀମନ୍ଦିରରେ ମଣୋହି ନୀତିରେ ମୃଣ୍ମୟ ପାତ୍ରର ଆବଶ୍ୟକତା ଅପରିହାର୍ଯ୍ୟ ।

ବରିଷ୍ଠ ସଂସ୍କୃତ ଶିକ୍ଷକ
ପୁରୀ ଜିଲ୍ଲା ସ୍କୁଲ, ପୁରୀ-୨



# ମର୍ତ୍ତ୍ୟ ବୈକୁଣ୍ଠରେ ପହଡ଼ ନୀତି - ଅଲୌକିକତାର ଅନୁଭବ

ରମେଶ ପ୍ରସାଦ ସିଂହ



**ଆ**ମର ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ତେତିଶି କୋଟି ଦେବତା, ଯକ୍ଷ, ଗନ୍ଧର୍ବ, କିନ୍ନର ଓ ମାନବଙ୍କର ଧ୍ୟାନର ଆଧାର ତ୍ରିଲୋକନାଥ ମହାପ୍ରଭୁ ଶ୍ରୀବିଷ୍ଣୁ ଗୋଲକ ଧାମ ବା ବୈକୁଣ୍ଠରେ ନିବାସ କରନ୍ତି । ସୃଷ୍ଟିର ଆଧାର ଶ୍ରୀବିଷ୍ଣୁଙ୍କଠାରୁ ସଚରାଚର ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ଏବଂ ଏହାର ଲାଳନପାଳନ ଭାର ମଧ୍ୟ ତାଙ୍କ ଉପରେ ନ୍ୟସ୍ତ । ଶାସ୍ତ୍ରାନୁଯାୟୀ, ନିର୍ଲିପ୍ତ ଭାବରେ ସପ୍ତ ସାଗର ବେଷ୍ଟିତ ବୈକୁଣ୍ଠ ଲୋକର କ୍ଷୀର ସାଗରରେ ମହାଅନନ୍ତ ନାଗଙ୍କ କୋମଳ ଶଯ୍ୟାରେ ଧ୍ୟାନ ମୁଦ୍ରାରେ ଶୟନ କରି ସମସ୍ତ ବିଶ୍ୱର ପରିଚାଳନାରେ ସେ ନିମଗ୍ନ । ମହାପ୍ରଭୁ ଶ୍ରୀବିଷ୍ଣୁଙ୍କର ଇଚ୍ଛା ବିନା ବୈକୁଣ୍ଠରେ ଉପସ୍ଥିତ ହେବା ଅସମ୍ଭବ । ସେହି ଦିବ୍ୟଧାମରେ କେବଳ ମହାଲକ୍ଷ୍ମୀ, ମହାସରସ୍ୱତୀ, ଶ୍ରୀବ୍ରହ୍ମା, ଶ୍ରୀମହେଶ, ଶ୍ରୀନାରଦ, ଦେବରାଜ ଇନ୍ଦ୍ର, ଦଶ ଦିଗପାଳ, ସପ୍ତଋଷି, ସନକ ଆଦି ଚତୁଃ ଋଷିପୁତ୍ର ଓ ଗରୁଡ଼ ଆଦି ଦେବତା ଉପସ୍ଥିତି ହେବାର ଅଧିକାରପ୍ରାପ୍ତ, ତାହା ପୁଣି ଭଗବାନ ଶ୍ରୀବିଷ୍ଣୁଙ୍କ ଇଚ୍ଛାନୁସାରେ ସ୍ୱତନ୍ତ୍ର ଅନୁମତିପ୍ରାପ୍ତ ହେବାପରେ ତାଙ୍କର ସ୍ୱତନ୍ତ୍ର ସେବାର ଅଧିକାର ନେଇ । ଅହରହ ସେବାରେ ଲିପ୍ତ ରହି ମଧ୍ୟ ଦେବାଦେବୀମାନେ ଶ୍ରୀବିଷ୍ଣୁଙ୍କର ଆଦି ଅନ୍ତ ବିଷୟରେ ଅଜ୍ଞ ।

ବିଭିନ୍ନ ପୁରାଣଶାସ୍ତ୍ରରେ ବର୍ଣ୍ଣିତ, ସକଳ ଜଗତର ଆଧାର, ତେତିଶି କୋଟି ଦେବାଦେବୀଙ୍କର ଅଗ୍ରପୂଜ୍ୟ, ସକଳ ଲୋକ ବନ୍ଦିତ ଶ୍ରୀବିଷ୍ଣୁ ଯେତେବେଳେ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କର ନିଷ୍କାମ ଭକ୍ତି ଓ ସାଧୁ ସ୍ୱଭାବରେ ସନ୍ତୁଷ୍ଟ ହୋଇ ମହାରାଜାଙ୍କର ବିନୀତ ଅନୁରୋଧକୁ ଏଡାଇ ନପାରି ଶ୍ରୀକ୍ଷେତ୍ର ଧାମର ନୂତନ ଭାବରେ ନିର୍ମିତ ଶ୍ରୀମନ୍ଦିରରେ ସବୁଦିନ ପାଇଁ ନିବାସ କରିବାକୁ ବରପ୍ରଦାନ କଲେ ସେତେବେଳେ ଦେବାଦେବୀଙ୍କ ମଧ୍ୟରେ ଭାଳେଣୀ ପଡ଼ିଗଲା । ସବୁଦିନପାଇଁ ସତରେ କ'ଣ ସେମାନେ ମହାପ୍ରଭୁଙ୍କ ଅଙ୍ଗ ସେବାରୁ ବଞ୍ଚିତ ହେବେ ? ଦେବତାମାନଙ୍କ ମନକଥା ଜାଣିପାରି ଶ୍ରୀବିଷ୍ଣୁ ସ୍ମିତ ହସି ସେମାନଙ୍କୁ ସାନ୍ତ୍ୱନା ପ୍ରଦାନ କଲେ । ଦେବାଦେବୀମାନେ ମଧ୍ୟ ମହୋଦଧି କୂଳରେ ଶ୍ରୀମନ୍ଦିରରେ ପୃଥିବୀବାସୀଙ୍କ ସହ ଶ୍ରୀବିଷ୍ଣୁଙ୍କର ସେବାର ଅଧିକାରପ୍ରାପ୍ତ ହେବେ ବୋଲି ମହାପ୍ରଭୁ ପ୍ରତିଶ୍ରୁତି ଦେଲେ । ବୈକୁଣ୍ଠରେ ପ୍ରାପ୍ତ ସେବାର ସମସ୍ତ ସୁବିଧା ଧରାପୃଷ୍ଠରେ ଶ୍ରୀମନ୍ଦିରରେ ପ୍ରାପ୍ତ ହେବ ବୋଲି ଜାଣି ଦେବତାମାନେ ଆଶ୍ୱସ୍ତ ହେଲେ । ସେହିଦିନୁ ଶ୍ରୀକ୍ଷେତ୍ରସ୍ଥ ଶ୍ରୀମନ୍ଦିର ମର୍ତ୍ତ୍ୟ ବୈକୁଣ୍ଠ ଭାବରେ ଜଗତରେ ବିଖ୍ୟାତ ହେଲା । ଏଠାରେ କେବଳ ଦେବତା ବା ମାନବ ନୁହେଁ, ଋଷି, ମୁନି, ଯକ୍ଷ, ଗନ୍ଧର୍ବ, କିନ୍ନରମାନଙ୍କୁ ଭଗବାନ ଶ୍ରୀବିଷ୍ଣୁଙ୍କର ସେବାର ମାହାର୍ଘ୍ୟ ସୁଯୋଗ ତଥା ଅଧିକାର ପ୍ରାପ୍ତ ହେଲା । ଦେବଭୂମି ଭାରତବର୍ଷରେ ଭିନ୍ନ ଭିନ୍ନ ଯୁଗରେ ପ୍ରତିଷ୍ଠିତ ଚାରିଧାମ ମଧ୍ୟରେ ଶ୍ରୀକ୍ଷେତ୍ର ବା ମର୍ତ୍ତ୍ୟ ବୈକୁଣ୍ଠ ଶ୍ରେଷ୍ଠ ଧାମ ଭାବରେ ବିଖ୍ୟାତ ହେଲା । ସେହିଦିନୁ .. କେଉଁ ଅନାଦି କାଳରୁ ପୁରୀ ଶ୍ରୀମନ୍ଦିର ମଧ୍ୟରେ ବିଭିନ୍ନ ପାରମ୍ପରିକ ସେବାପୂଜା ଓ ନୀତି ବେଳେ ଦେବାଦେବୀଙ୍କର ଉପସ୍ଥିତି ତଥା ଅଲୌକିକତାର ଅନୁଭବ ବେଳେ ବେଳେ ଭକ୍ତ ତଥା ସେବକମାନଙ୍କୁ ଭାବବିହ୍ୱଳ ତଥା ବାହ୍ୟ ଜ୍ଞାନ ଶୂନ୍ୟ କରିଦିଏ ।

ପରଂବ୍ରହ୍ମ ମହାବିଷ୍ଣୁ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଚତୁର୍ଦ୍ଧାମୂର୍ତ୍ତି ସ୍ୱରୂପ ନେଇ ଶ୍ରୀମନ୍ଦିରରେ ଅବସ୍ଥାନ କଲା ଦିନଠାରୁ ଭକ୍ତ ନିଜକୁ ସେବକ ଭାବରେ ପରିଚୟ ଦେଇ ଜଣେ ଆତ୍ମୀୟ ଭାବରେ ସାତ୍ତ୍ୱିକ ତଥା ରାଜସିକ ଭାବରେ ତାଙ୍କୁ ସେବାପୂଜା କରିଆସିଛି । ନିଜର ଜୀବନଚର୍ଯ୍ୟାର ସମାନ୍ତରାଳରେ ଭଗବାନ ଶ୍ରୀଜଗନ୍ନାଥଙ୍କର ଦୈନନ୍ଦିନ




ନିତ୍ୟକର୍ମକୁ ନିଜର ସେବା ଭାବରେ ଗ୍ରହଣ କରି ଏକ ବଳିଷ୍ଠ ପରମ୍ପରା ସୃଷ୍ଟି କରିଛି । ଏହି ସେବା ବ୍ରାହ୍ମ ମୁହୂର୍ତ୍ତର ଦ୍ୱାରଫିଟାଠାରୁ ଆରମ୍ଭ ହୋଇ ତା' ପରଦିନ ସକାଳ ଦେବନୀତି ପର୍ଯ୍ୟନ୍ତ ଚାଲୁ ରହିଥାଏ । ଦ୍ୱାରଫିଟା ପରେ କ୍ରମାନ୍ୱୟରେ ମଙ୍ଗଳ ଆଳତୀ, ଅବକାଶ, ମଇଲମ ଓ ବେଶ, ସାହାଣ ମେଲା, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ଗୋପାଳ ବଲ୍ଲଭ, ସକାଳ ଧୂପ, ଭୋଗ ମଣ୍ଡପ, ମଧ୍ୟାହ୍ନ ଧୂପ, ମଇଲମ ଓ ବେଶ, ମଧ୍ୟାହ୍ନ ପହୁଡ଼, ଦ୍ୱାରଫିଟା, ସନ୍ଧ୍ୟା ଆଳତୀ, ସନ୍ଧ୍ୟା ଧୂପ, ଚନ୍ଦନ ଲାଗି, ବଡ଼ସିଂହାର, ବଡ଼ସିଂହାର ଭୋଗ ଓ ପହୁଡ଼ ନୀତି ଆଦି ପାଳନ କରାଯାଏ । ଆବଶ୍ୟକତା ଦୃଷ୍ଟିରୁ ଏହି ସବୁ ନୀତିର ଗୁରୁତ୍ୱ ଥିବାବେଳେ ରାଜ ରାଜେଶ୍ୱର ଦେବାଧିଦେବ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଚନ୍ଦନଲାଗି, ବଡ଼ସିଂହାର ଓ ପହଡ଼ ନୀତିର ସ୍ୱାତନ୍ତ୍ୟତା ରହିଛି । ସାଧାରଣତଃ ବିଳମ୍ବିତ ରାତ୍ରିରେ ସମ୍ପାଦିତ ହେଉଥିବାରୁ ସମସ୍ତ ଭକ୍ତଙ୍କର ଭାଗ୍ୟରେ ଏହି ନୀତି ଦର୍ଶନର ସୁଯୋଗ ଜୁଟେ ନାହିଁ । ତା' ଛଡ଼ା ମହାପ୍ରଭୁଙ୍କର ପାରମ୍ପରିକ ଢଙ୍ଗରେ ଅନେକ ଦିନ ଅଧିକ ନୀତି ସମ୍ପାଦିତ ହେଉଥିବାରୁ ଅର୍ଦ୍ଧରାତ୍ର ବା ବିଳମ୍ବିତ ରାତ୍ର ପର୍ଯ୍ୟନ୍ତ ରହି ଏହି ଅପୂର୍ବ ନୀତି ଦର୍ଶନର ସୁଯୋଗ ଭକ୍ତମାନେ ପାଆନ୍ତି ନାହିଁ । କିନ୍ତୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଏହି ପହୁଡ଼ ବା ଶୟନ ନୀତି ଦର୍ଶନରେ ମନୁଷ୍ୟର ମୋକ୍ଷ ପ୍ରାପ୍ତି ହୁଏ ବୋଲି ଭକ୍ତମାନଙ୍କ ମନରେ ବିଶ୍ୱାସ ।

ପ୍ରତିଦିନ ସନ୍ଧ୍ୟାଧୂପ ବା ସନ୍ଧ୍ୟା ମଣୋହି ପରେ ସର୍ବସାଧାରଣ ଦର୍ଶନ ହୁଏ । ମଇଲମ ବା ବେଶ ଉଲାଗି ପରେ ମଧ ରାତ୍ର ସମୟରେ ଠାକୁରଙ୍କର ଶ୍ରୀଅଙ୍ଗରେ ଚନ୍ଦନ ଲାଗି ନୀତି ଅନୁଷ୍ଠିତ ହୁଏ । ଏହି ସମୟରେ ରତ୍ନ ସିଂହାସନ ତଳେ ପାଳିଆ ଖୁଣ୍ଟିଆ ବେତ ବାଡ଼େଇ ମଣିମା ... ମଣିମା ... ଡାକଦେବା ସହ ଉଚ୍ଚସ୍ୱରରେ ଭଗବାନଙ୍କର ନିକଟରେ ପାରମ୍ପରିକ ରୀତିରେ ଗୁଣଗାନ କରନ୍ତି । ମଣିମା ମଣିମା ଡାକ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ଭକ୍ତର ମନକୁ ଭାବାବେଗରେ ଉଲ୍ଲସିତ କରେ । ସେ ସାମାଜିକ ମୋହମାୟାରୁ ଊର୍ଦ୍ଧ୍ୱକୁ ଉଠିଯାଇ ଭଗବତ ସତ୍ତାର ଆଭାସ ପାଏ । ବଡ଼ସିଂହାର ବେଶ ସାଧାରଣତଃ ଚନ୍ଦନଲାଗି ବେଶ ପରେ ହୁଏ । ଏହି ବେଶ୍ ଅତ୍ୟନ୍ତ କମନୀୟ ବେଶ । ଏହି ପରିବେଶରେ ଶ୍ରୀବିଗ୍ରହମାନଙ୍କୁ ଗୀତଗୋବିନ୍ଦ ଖଣ୍ଡୁଆ ପାଟବସ୍ତ୍ର ସହ ମୁଣ୍ଡରେ ତୁଳସୀ ବିଣ୍ଡା ବା ଚୂଳ, ମକର କୁଣ୍ଡଳ, ନାକୁଆସୀ ବା ନାକଚଣା ଓ ଗୁଣା, ମୁଣ୍ଡରେ ପୁଷ୍ପ ତିଳକ, ମଥାରେ ପୁଷ୍ପ ଅଳକା, ହାତରେ କରପଲ୍ଲବ, ମୁଣ୍ଡରେ ଚନ୍ଦ୍ରିକା, ଓଠତଳେ ଅଧରମାଳ, ହୃଦୟରେ ହୃଦପଦକ ତଥା ଶ୍ରୀପୟର ଭଳି ଆପାଦ ଲମ୍ବିତ ମାଳ ପ୍ରଭୃତି ସୁବାସିତ ପୁଷ୍ପର ଅଳଙ୍କାର ମାନ ଲାଗି ହୁଏ । ମହାପ୍ରଭୁଙ୍କର ଏହି ବେଶ ସିଂହାରୀ ସେବକମାନେ ଅତ୍ୟନ୍ତ ଯତ୍ନର ସହ ସମ୍ପାଦନ କରନ୍ତି । ତା'ଛଡ଼ା ମହାପ୍ରଭୁ ଶ୍ରୀଜଗନ୍ନାଥ ଦେବାଧିଦେବ ଏବଂ ସକଳ ଗ୍ରହ ଦେବତାଙ୍କ ପୂଜ୍ୟ ହୋଇଥିବାରୁ ସପ୍ତାହବ୍ୟାପୀ ସପ୍ତରଙ୍ଗର ବସ୍ତ୍ର ଯଥା- ରବିବାର-ଲାଲରଙ୍ଗ ବସ୍ତ୍ର, ସୋମବାର-କଳାଛିଟ ମିଶା ଶୁକ୍ଳରଙ୍ଗ ବସ୍ତ୍ର, ମଙ୍ଗଳବାର-ପାଞ୍ଚରଙ୍ଗ ମିଶା ବସ୍ତ୍ର, ବୁଧବାର-ନୀଳରଙ୍ଗ ବସ୍ତ୍ର, ଗୁରୁବାର-ହଳଦିଆ ରଙ୍ଗ ବସ୍ତ୍ର, ଶୁକ୍ରବାର-ଧଳାରଙ୍ଗ ବସ୍ତ୍ର ଏବଂ ଶନିବାର-କଳାରଙ୍ଗର ବସ୍ତ୍ର ଲାଗି ହୁଅନ୍ତି । ଶୀତ ଦିନରେ ବଡ଼ସିଂହାରରେ ଏହି ସବୁରଙ୍ଗର ଶୀତବସ୍ତ୍ର ବା ଘୋଡ଼ ମହାପ୍ରଭୁମାନେ ଲାଗି ହୁଅନ୍ତି । ସେଥିପାଇଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଗ୍ରହ ରୂପୀ ଜନାର୍ଦ୍ଦନ ବୋଲି ପାରମ୍ପରିକ ଭାବରେ ସମ୍ବୋଧନ କରାଯାଏ । ସିଂହାରୀ ସେବକ ତ୍ରୟ ତିନିବାଡ଼ (ତିନି ଠାକୁର)ଙ୍କର ବଡ଼ସିଂହାର ବେଶ ସମାପନ କଲା ପରେ ରତ୍ନ ସିଂହାସନକୁ ହାତରେ ପରିଷ୍କାର କରି ମହାପ୍ରଭୁମାନଙ୍କୁ ପ୍ରଣିପାତ କରି ନିଜର ଦୋଷାଦୋଷର କ୍ଷମାଭିକ୍ଷା କରି ସିଂହାସନ ତଳକୁ ଓହ୍ଲାଇ ଆସନ୍ତି । ତା'ପରେ ରତ୍ନ ସିଂହାସନ ତଳ ପୋଖରିଆରେ ପାଣି ପଡ଼େ ବା ଧୁଆ ହୁଏ । ସଙ୍ଗେ ସଙ୍ଗେ ପ୍ରତିହାରୀ ସେବକ କଳାହାଟ ଦୁଆର ସାମ୍ନାରେ ଏକ ପତଳା ଲୁଗା ଟାଣନ୍ତି । ଯାହାକୁ ଟେରା କୁହାଯାଏ । ସେହିପରି ଏକ ଟେରା ଭିତର କାଠପାଖରେ ମଧ ଟଣାଯାଏ । ଟେରାର ବିଶେଷତ୍ୱ ହେଲା, କଳାହାଟ ଦ୍ୱାର ଟେରା ଟଣାଗଲେ ଠାକୁରମାନଙ୍କ ଅଧର ବା ଓଠ ଦେଖାଯାଏ ନାହିଁ । ତା'ପରେ ପ୍ରତିହାରୀ ସେବକଙ୍କର ସୁରକ୍ଷାରେ ରୋଷଶାଳାରୁ ବଡ଼ସିଂହାର ଭୋଗ ରତ୍ନ ସିଂହାସନ ନିକଟକୁ ଆସେ, ଯାହାକି 'ବଡ଼ସିଂହାର ଭୋଗ ଡକା' ହେବା କୁହାଯାଏ । ସେଠାରେ ନିୟୋଜିତ ସେବକଙ୍କର ତତ୍ତ୍ୱାବଧାନରେ ପାରମ୍ପରିକ ରୀତିରେ ଭୋଗ ବଢ଼ାଯାଏ । ଏହି ଭୋଗରେ ଦହି ପଖାଳ, ଘିଅ ପଖାଳ, କଦଳୀ ବଡ଼ା, ଅନ୍ୟାନ୍ୟ ପିଠା, କାଞ୍ଜି, ଖିରି, ଛପନ ଭୋଗ, ଘସା ଜଳ ଇତ୍ୟାଦି ଦ୍ରବ୍ୟ ଲାଗେ । ଭୋଗ ବଢ଼ା ହେବା ପରେ ତିନିବାଡ଼ରେ ତିନି ପୂଜାପଣ୍ଡା ତିନି ଠାକୁରଙ୍କୁ ପଞ୍ଚ ଉପଚାର ପୂଜା ମାଧମରେ ମଣୋହି ଆରମ୍ଭ କରନ୍ତି । ସେହି ସମୟରେ ଶ୍ରୀମନ୍ଦିର ପାର୍ଶ୍ୱରେ ଥିବା ବଡ଼ଛତା ମଠର ଜଣେ ସୁଦର୍ଶନ ସାଧୁ ଓ ତାଙ୍କର ସହଯୋଗୀମାନଙ୍କ ସହ ମଠ ତରଫରୁ ଯୋଗାଇ ଦିଆଯାଇଥିବା ପଖଉଜ, ଗିନି ଓ ଝାଞ୍ଜ ସହ ପାରମ୍ପରିକ ରୀତିରେ କୀର୍ତ୍ତନ ନିମନ୍ତେ ଜୟ ବିଜୟ ଦ୍ୱାର ନିକଟରେ ମହାପ୍ରଭୁଙ୍କ ସମ୍ମୁଖରେ ବସି ରହିଥାନ୍ତି । ପୂଜାପଣ୍ଡାମାନଙ୍କ ପୂଜା ଘଣ୍ଟିର ପ୍ରଥମ ଶବ୍ଦ ଶୁଣିବା ସଂଗେସଂଗେ ସେମାନେ ଭାବପ୍ରବଣ ହୋଇ ପାରମ୍ପରିକ କୀର୍ତ୍ତନ ଆରମ୍ଭ କରନ୍ତି (ଏହି କୀର୍ତ୍ତନ ବା ଭଜନ ଶହ ଶହ ବର୍ଷ ଧରି ମହାପ୍ରଭୁଙ୍କର ଏକ ନିର୍ଦ୍ଦିଷ୍ଟ ନୀତି ସମୟରେ ଗାନ କରାଯାଉଥିବାରୁ ତାହା ଅନ୍ୟ ସ୍ଥାନରେ ଗାନ କରିବା ନିଷେଧ ଓ ସମ୍ପୂର୍ଣ୍ଣ ପ୍ରକାଶ କରିବା ମଧ ନିଷେଧ) ବଡ଼ସିଂହାର ଭୋଗ ଆରମ୍ଭ ହେଲାକ୍ଷଣି, 'ରଜନୀ ବହୁତ ଗୟେ, ମେରେ ୟାରେ ...' କୀର୍ତ୍ତନ ଗାନ କରାଯାଏ । ଏହି ଭଜନରେ ଭଗବାନଙ୍କୁ ରାତ୍ରୀ ବହୁତ ହୋଇଗଲାଣି, ଶୀଘ୍ର ଶୀଘ୍ର ଆସି କାମସାରି, ରାତ୍ରି ଭୋଜନ ସମାପନ କରିବାକୁ ଅନୁରୋଧ କରାଯାଏ । ଏହା ଏକ ବାତ୍ସଲ୍ୟ ମମତାପୂର୍ଣ୍ଣ କୀର୍ତ୍ତନ । ଏହି ଭଜନ ଗାନ ପରେ ପରେ ଟେରା ପଡ଼ିଯାଏ ବା କଳାହାଟ ଦୁଆର ବନ୍ଦ ହୋଇ ଭୋଗ ଲାଗେ । ଏହି ନୀତି ପରେ କଳାହାଟ ଦୁଆର ଖୋଲିବା ପରେ ପୂଜାପଣ୍ଡାମାନେ





ଭୋଗରେ ଲାଗିଥିବା ପ୍ରସାଦ, ପୁଷ୍ପ ଓ ତୁଳସୀ, ଚନ୍ଦନ ଓ ଆଳତୀ ବିଭିନ୍ନ ଦେବାଦେବୀଙ୍କୁ ସମର୍ପଣ କରି କରି ଜୟ ବିଜୟ ଦ୍ୱାର ଦେଇ ଚାଲିଯା'ନ୍ତି । ଏହା ପରେ ରତ୍ନ ସିଂହାସନ ତଳ ବା ପୋଖରିଆ ଧୂଆ ହୋଇ ପରିଷ୍କାର ହୁଏ । ପରେ ପରେ ପାଳିଆ ସେବକମାନେ ଠାକୁରମାନଙ୍କର ରତ୍ନପଲଙ୍କକୁ ରତ୍ନ ସିଂହାସନ ତଳକୁ ବୋହି ନିଅନ୍ତି । ସେହି ସମୟରେ ଜୟ ବିଜୟ ଦ୍ୱାର ନିକଟରେ ଅପେକ୍ଷା କରିଥିବା କୀର୍ତ୍ତନ ମଣ୍ଡଳୀ ଗାଇ ଉଠନ୍ତି 'ପହୁଡ଼େ ବଳଭଦ୍ର ଦେବ, ଅନନ୍ତ କୋଳେ ଗୋବିନ୍ଦ ...' (ବାର ଅନୁସାରେ ଅଦଳବଦଳ କରି ତିନି ଗୋଟି କୀର୍ତ୍ତନ ଗାନ କରାଯାଏ) । ପଲଙ୍କ ବିଜେ ପରେ ଭଣ୍ଡାର ଘରୁ ଶୟନ ଠାକୁର ବା ଅର୍ଦ୍ଧନାରୀଶ୍ୱର (ଅଧା ବିଷ୍ଣୁ ଅଧା ମହାଲକ୍ଷ୍ମୀ)ଙ୍କୁ ଛତ୍ରସହ ରତ୍ନ ସିଂହାସନକୁ ବିଜେ କରାଯାଏ । ସେଠାକୁ ଠାକୁରମାନଙ୍କୁ ସୁବାସିତ ଜଳ ଓ ବିଡ଼ିଆ ମଣୋହି ହେବାପରେ ସିଂହାରୀ ସେବକମାନଙ୍କ ଦ୍ୱାରା ଯଥାରୀତି ଆଳତୀ ସମାପନ ହୁଏ । ଏହି ଆଳତୀ ସମୟରେ ବିଜେ କାହାଳୀ ବାଜି ଉଠେ ଓ ହରିବୋଲ ହୁଳହୁଳି ଶବ୍ଦରେ ଶ୍ରୀମନ୍ଦିର ପ୍ରକମ୍ପିତ ହୋଇଉଠେ । ଏହି ଆରତୀ ବା ଆଳତୀ ଦର୍ଶନରେ ସମସ୍ତ ବିଷାଦ ଦୂରେଇ ଯିବା ସହ ମନରେ ଅପାର ଶାନ୍ତି ଲାଭ ହୁଏ ।

ତା'ପରେ ଆରମ୍ଭ ହୁଏ ପହଡ଼ ନୀତିର ଶେଷ ପର୍ବ - ମଣିମା ମଣିମା ଡାକ ଓ ବିଜେ କାହାଳୀ ଶବ୍ଦରେ ଶ୍ରୀମନ୍ଦିରର ଗର୍ଭଗୃହ ପ୍ରତିଧ୍ୱନିତ ହୋଇଉଠେ । ବିଜେ କାହାଳୀ ଓ ଛତ୍ରସହ ଶୟନ ଠାକୁର ଜୟ ବିଜୟ ଦ୍ୱାରଠାରେ ଡମ୍ବରୁ ଭଳି ଦୃଶ୍ୟମାନ ବେତ ଓ ପାଟବସ୍ତ୍ର ନିର୍ମିତ ସିଂହାସନ ଉପରେ ବିଜେ କରନ୍ତି ଓ ଭକ୍ତମାନଙ୍କୁ କିଛିକ୍ଷଣ ଦର୍ଶନ ଦିଅନ୍ତି । ତା'ପରେ ବଡ଼ବାଡ଼ର (ବଡ଼ଠାକୁରଙ୍କର) ସିଂହାରୀ ସେବକ ଶୟନ ଠାକୁରଙ୍କୁ ପରମ୍ପରା ଅନୁଯାୟୀ ଖୁଆମଣ୍ଡା ଓ ପଇଡ଼ ଅର୍ପଣ କରି ମଣୋହି ସମାପନ କରନ୍ତି । ସେ ସମୟରେ କୀର୍ତ୍ତନ ମଣ୍ଡଳୀର ପୁରୋଧା ଶ୍ମଶ୍ରୁଧାରୀ ବାବାଜୀ ଜଣଙ୍କ ଶୂନ୍ୟକୁ ମୁଖ କରି ତନ୍ମୟ ଭାବରେ ଗାଇ ଉଠନ୍ତି 'ପୁରୁଷୋତ୍ତମ ପ୍ରଭୁ ... ତ୍ରିଭୁବନ ସେବା .. ମଣିମା ମଣିମା ..' ଏବଂ ତାଙ୍କର ପାଳି ଧରି କୀର୍ତ୍ତନ ମଣ୍ଡଳୀ ତନ୍ମୟ ହୋଇପଡ଼ନ୍ତି । ଠିକ୍ ସେହି ସମୟରେ ଶୟନ ଠାକୁରଙ୍କର କର୍ପୂର ଆଳତୀ ଓ ପିଷ୍ଟକ ଆଳତୀ ସମାପନ ହୁଏ ଏବଂ ସୁବାସିତ ଧବଳ ପୁଷ୍ପ ଶୂନ୍ୟରୁ ଶୟନ ଠାକୁରଙ୍କ ଉପରେ ବୃଷ୍ଟି ହୁଏ । ଅଲୌକିକ ଅନୁଭବ ଭିତରେ ମହାପ୍ରଭୁମାନେ ରତ୍ନସିଂହାସନ ଉପରୁ ରତ୍ନ ପଲଙ୍କରେ ବିଜେ କରିଯାନ୍ତି, ମନ୍ଦିରର ଗର୍ଭଗୃହ ହଠାତ୍ ସମ୍ପୂର୍ଣ୍ଣ ଅନ୍ଧାର ହୋଇଯାଏ ଏବଂ ଶୟନ ଦେବତା ଭଣ୍ଡାର ଘରକୁ ଲେଉଟି ଯାଆନ୍ତି । ଏସବୁ ଘଟଣା ଏପରି ଘଟେ ଯେ, ଭକ୍ତର ମନ ଓ ଦେହରେ ଶିହରଣ ଓ ରୋମାଞ୍ଚ ସୃଷ୍ଟି ହୁଏ । ପ୍ରବାଦ ଅଛି ଯେ, ଅତୀତରେ ମହାପ୍ରଭୁଙ୍କର ଏହି ସେବାରେ ଯୋଗ ଦେବାକୁ ଆସି ଲଙ୍କାର ରାଜା ବିଭୀଷଣ ଓ ଦେବରାଜ ଇନ୍ଦ୍ରଙ୍କୁ ପ୍ରଭୁଙ୍କର ସେବକମାନଙ୍କ ହାତରେ ଧରାପଡ଼ି ନିଜର ଅଙ୍ଗ ଅଳଙ୍କାର ଓ ଶକ୍ତି ପ୍ରଦାନ କରିବାକୁ ପଡ଼ିଥିଲା । ଆଜିକାଲିର ଅତ୍ୟାଧୁନିକ ଯୁଗରେ ମଧ ଏହି ନୀତି ସମ୍ପାଦନ ସମୟରେ ଅନେକ ଦୀପ୍ତିମନ୍ତ ଅଲୌକିକ ଆଭାଧାରୀ ଭକ୍ତଙ୍କୁ ଦେଖିବାକୁ ମିଳେ, ଯାହା ମନରେ ସମ୍ୟକ୍ ଆଶା ଓ ସନ୍ଦେହ ସୃଷ୍ଟି କରେ, 'ଏ ଜଣେ ମହାପୁରୁଷ ବା ଦେବତା ନୁହନ୍ତି ତ ?'

ଶେଷରେ ଶ୍ମଶ୍ରୁଧାରୀ ସାଧୁଙ୍କର ନେତୃତ୍ୱରେ ଅପେକ୍ଷା କରିଥିବା କୀର୍ତ୍ତନ ମଣ୍ଡଳୀ କଳାହାଟ ଦ୍ୱାର ବା ରତ୍ନସିଂହାସନ ପାଖ ଭିତର ଦ୍ୱାର ବନ୍ଦ ହେବା କ୍ଷଣି ଶେଷ ପହଡ଼ କୀର୍ତ୍ତନ 'ଚାଲ ସଖୀ ଶୋଯେ, ଅବଧ କିଶୋର ...' ଗାନ କରି କରି ପଣ୍ଡାଦ୍ୱାର ଦେଇ ବାଇଶି ପାହାଚରୁ ଓହ୍ଲାଇ ସିଂହଦ୍ୱାର ଆଡ଼କୁ ପ୍ରସ୍ଥାନ କଲାବେଳେ ସନ୍ଧ୍ୟାଧୂପ ପରେ ସିଂହଦ୍ୱାରର ଅଧା ବନ୍ଦ ହୋଇ ଯାଇଥିବା ଦ୍ୱାର କୀର୍ତ୍ତନ ମଣ୍ଡଳୀ ଆସିବା କ୍ଷଣି ସମ୍ପୂର୍ଣ୍ଣ ଖୋଲିଯାଏ । ସଂକୀର୍ତ୍ତନ ମଣ୍ଡଳୀ ଗୁମୁଟିର ପତିତପାବନ ମନ୍ଦିର ପାର ହେବା କ୍ଷଣି ପତିତପାବନ ମନ୍ଦିରର ଦ୍ୱାର ବନ୍ଦ ହୋଇଯାଏ ଏବଂ ସିଂହଦ୍ୱାର ନିକଟରେ ସଂକୀର୍ତ୍ତନ ଶେଷ ହେବା କ୍ଷଣି ସିଂହଦ୍ୱାର ସମ୍ପୂର୍ଣ୍ଣ ବନ୍ଦ ହୋଇଯାଏ, କେବଳ ଗଳା ଦ୍ୱାରଟି ଖୋଲା ରହେ ଓ ଶ୍ରୀମନ୍ଦିର ଭିତରର ଶୋଦ୍ଧ (ଖାଲି) କରାଯାଏ ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଏହି ପହଡ଼ ନୀତି ଦୈନନ୍ଦିନ ନୀତି ମଧ୍ୟରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ନୀତି ଦର୍ଶନ ସମୟରେ ଭକ୍ତର ମନପ୍ରାଣ ଉଲ୍ଲସିତ ହେବା ସହ ବେଳେ ବେଳେ ଅଲୌକିକତାର ଅନୁଭବ ମଧ ହୁଏ । ଭକ୍ତର ମନ ଭଗବତ ସତ୍ତାର ପ୍ରତ୍ୟକ୍ଷ ଆଭାସ ପାଏ । ତା'ର ମାନବ ଜୀବନ ଧନ୍ୟ ହୋଇଯାଏ ଓ ଆତ୍ମାର ବୈକୁଣ୍ଠ ପ୍ରାପ୍ତି ହୁଏ ।

ଆଡ଼ଭୋକେଟ
ଦାଣ୍ଡିମାଳ ସାହି, ପୁରୀ



# ପୁରୁଷୋତ୍ତମ ଧାମେ ଶ୍ରୀପୁରୁଷୋତ୍ତମ

ବସନ୍ତ କୁମାର ଦେବ



ଭାରତବର୍ଷର ପୂର୍ବରେ ପୁରୁଷୋତ୍ତମ ବା ଜଗନ୍ନାଥ ଧାମ, ପଶ୍ଚିମରେ ଦ୍ୱାରକା ଧାମ, ଉତ୍ତରରେ ବଦ୍ରିନାଥ ଧାମ ଏବଂ ଦକ୍ଷିଣରେ ରାମେଶ୍ୱର ଧାମ ଅବସ୍ଥିତ । ଯୁଗ ଅନୁଯାୟୀ ସତ୍ୟ ଯୁଗରେ ବଦ୍ରିନାଥ, ତ୍ରେତୟା ଯୁଗରେ ରାମନାଥ, ଦ୍ୱାପର ଯୁଗରେ ଦ୍ୱାରକା ନାଥ ଏବଂ କଳିଯୁଗରେ ଜଗନ୍ନାଥ । ମହାପ୍ରଭୁଙ୍କର ବଦ୍ରିକାରେ ସ୍ନାନ, ଦ୍ୱାରକାରେ ଶୃଙ୍ଗାର, ରାମେଶ୍ୱରରେ ଶୟନ ଏବଂ ପୁରୁଷୋତ୍ତମ ଧାମରେ ସେ ଭୋଜନ କରନ୍ତି । ବଦ୍ରିନାଥ ଧାମ ଉତ୍ତରପ୍ରଦେଶର ହିମାଳୟ ପାଦଦେଶରେ ଅବସ୍ଥିତ । ଏହି କ୍ଷେତ୍ରରେ ଭଗବାନ ବିଷ୍ଣୁ ନାରାୟଣ ରୂପରେ ମା' ଲକ୍ଷ୍ମୀଙ୍କ ସହିତ ବିଦ୍ୟମାନ । ରାମନାଥ ଧାମ ତାମିଲନାଡୁରେ ଅବସ୍ଥିତ, ଏଠାରେ ଭଗବାନ ବିଷ୍ଣୁ ତଥା ଶ୍ରୀରାମଚନ୍ଦ୍ର ମା' ସୀତାଙ୍କ ସହିତ ବିଦ୍ୟମାନ । ଦ୍ୱାରକା ଧାମ ଗୁଜରାଟରେ ଅବସ୍ଥିତ । ଏହି କ୍ଷେତ୍ରରେ ଭଗବାନ ଶ୍ରୀକୃଷ୍ଣ ମା' ରୁକ୍ମିଣୀଙ୍କ ସହିତ ବିରାଜମାନ କରିଛନ୍ତି । ଶ୍ରୀପୁରୁଷୋତ୍ତମ ଧାମ ଓଡ଼ିଶାର ପୂର୍ବ ଉପକୂଳରେ ଅବସ୍ଥିତ । ଏଠାରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଅଗ୍ରଜ ବଳଭଦ୍ର ଏବଂ ଭଗିନୀ ସୁଭଦ୍ରାଙ୍କ ସହିତ ବିଦ୍ୟମାନ ।

ଜଗନ୍ନାଥ ଧାମର ଅନେକ ନାମକରଣ କରାଯାଇଛି, ଯଥା- ଶ୍ରୀକ୍ଷେତ୍ର, ଶଙ୍ଖକ୍ଷେତ୍ର, ଦଶାବତାର କ୍ଷେତ୍ର, ଭୌମକ୍ଷେତ୍ର, ଦିବ୍ୟକ୍ଷେତ୍ର, ଉଡ୍ଡୀୟାନ କ୍ଷେତ୍ର, ଯାମନିକ କ୍ଷେତ୍ର, ନୀଳାଚଳ କ୍ଷେତ୍ର, ବ୍ରହ୍ମକ୍ଷେତ୍ର, ଅନ୍ନକ୍ଷେତ୍ର, ମୋକ୍ଷକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ର, ନୀଳାଦ୍ରି ନୀଳଗିରି, ନୀଳକନ୍ଦର, ନୀଳଶୈଳ, ମର୍ତ୍ତ୍ୟବୈକୁଣ୍ଠ ଓ କୁଶସ୍ଥଳୀ । ଏହି କ୍ଷେତ୍ରର ମାହାତ୍ମ୍ୟ ବ୍ରହ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ସ୍କନ୍ଦପୁରାଣ, ନୀଳାଦ୍ରି ମହୋଦୟ, ବାମଦେବ ସଂହିତା, ପଦ୍ମପୁରାଣ ଆଦି ଶାସ୍ତ୍ରମାନଙ୍କରେ ବିଶେଷ ଭାବେ ବର୍ଣ୍ଣନା କରାଯାଇଛି । ସ୍କନ୍ଦପୁରାଣ ଅନୁଯାୟୀ ଏ କ୍ଷେତ୍ରର ନାମ ପୁରୁଷୋତ୍ତମ ଏବଂ ଦେବତାଙ୍କ ନାମ ପୁରୁଷୋତ୍ତମ ହୋଇଥିବାରୁ ଏହି ପୁରୁଷୋତ୍ତମ ଧାମକୁ ଶ୍ରେଷ୍ଠ ଧାମ ରୂପେ ବିବେଚନା କରାଯାଇଛି । ଏହାଛଡ଼ା ଶ୍ରୀପୁରୁଷୋତ୍ତମ ସର୍ବଦା ଏହି ଧାମରେ ଅନ୍ନବ୍ୟଞ୍ଜନ ଭୋଜନ କରୁଥିବାରୁ ଏହି ଧାମକୁ ମଧ୍ୟ ଶ୍ରେଷ୍ଠ ଧାମ ରୂପେ ବିବେଚନା କରାଯାଏ । ଏ କ୍ଷେତ୍ର ଭକ୍ତମାନଙ୍କର ଅତିପ୍ରିୟ । ଏହାର ଆୟତନ ଦଶଯୋଜନ ଏବଂ ଉର୍ଦ୍ଧ୍ୱତା ଅର୍ଦ୍ଧଯୋଜନ ବୋଲି କପିଳସଂହିତାରେ ଉଲ୍ଲେଖ ଅଛି । ଦଶଯୋଜନ ଅର୍ଥାତ୍ ୮୪ କ୍ରୋଶ ପରିବ୍ୟାପ୍ତ । ଏହି କ୍ଷେତ୍ରକୁ ତଥା ପଦବ୍ରଜରେ ୮୪ କ୍ରୋଶ ପରିକ୍ରମା କଲେ ଅନନ୍ତ ଜନ୍ମର ପାପକ୍ଷୟ ହୁଏ ଏବଂ ଏହା ଶହେଥର ବିଶ୍ୱ ବ୍ରହ୍ମାଣ୍ଡ ପରିକ୍ରମା ସହିତ ସମାନ । ରଥଯାତ୍ରା ସମୟରେ ଏହି ପୁରୁଷୋତ୍ତମ କ୍ଷେତ୍ରରେ ଗୋଟିଏ ପାଦ ପରିକ୍ରମା କଲେ ଗୋଟିଏ ଅଶ୍ୱମେଧ ଯଜ୍ଞର ଫଳ ମିଳିଥାଏ । ବିଶେଷତଃ ମାର୍ଗଶିର ମାସ କୃଷ୍ଣ ପଞ୍ଚମୀ ତିଥିରେ ଏହି କ୍ଷେତ୍ର ପରିକ୍ରମା କଲେ ପୁଣ୍ୟଫଳ ମିଳିଥାଏ ବୋଲି ଇନ୍ଦ୍ର ନୀଳମଣି, ନୀଳାଦ୍ରି ମହୋଦୟ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ଏହି ତିଥିରେ ପଞ୍ଚଜନ୍ୟ ଶଙ୍ଖ ଆବିର୍ଭାବ ହୋଇଥିବାରୁ ଶଙ୍ଖ କ୍ଷେତ୍ର ପରିକ୍ରମା କଲେ ଚତୁଃଧାମ ପରିକ୍ରମାର ପୁଣ୍ୟଫଳ ମିଳିଥାଏ ବୋଲି ବିଶ୍ୱାସ ରହିଛି । ଏ କ୍ଷେତ୍ରର ସମସ୍ତ ପ୍ରାଣୀ ଚତୁର୍ଭୁଜ ସ୍ୱରୂପ ବୋଲି ପଦ୍ମପୁରାଣରେ ବର୍ଣ୍ଣନା କରାଯାଇଛି ।

ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ତେତ୍ରିଶ କୋଟି ଦେବାଦେବୀ ଏଠାରେ ବିରାଜମାନ କରିଥିବାରୁ ଏ କ୍ଷେତ୍ରର ନାମ ପୁରୀ । ଏତଦ୍‌ବ୍ୟତୀତ ଭଗବାନ ଶ୍ରୀପୁରୁଷୋତ୍ତମ ଏଠାରେ ସମସ୍ତଙ୍କ ଘଟରେ ପୂରି ରହିଥିବାରୁ





ଏହାକୁ ପୁରୀ କୁହାଯାଏ । ଏହି କ୍ଷେତ୍ରରେ ସୁଖ, ଶାନ୍ତି, ଆନନ୍ଦ, ମୋକ୍ଷ ଆଦି ସମସ୍ତ ପ୍ରାପ୍ତି ହୋଇଥାଏ ବୋଲି ଏହାକୁ ମଧ୍ୟ ପୁରୀ କୁହାଯାଏ ।

ପୁରୁଷୋତ୍ତମ ଧାମକୁ ଗୋପ୍ୟପୁରୀ ମଧ୍ୟ କୁହାଯାଏ । ଶ୍ରୀପୁରୁଷୋତ୍ତମ ହେଉଛନ୍ତି ଶ୍ରୀକୃଷ୍ଣ । ଶ୍ରୀଚୈତନ୍ୟ ଏହା ଉପଲବ୍ଧି କରି ଅଠରବର୍ଷ ଗମ୍ଭୀରାପୀଠରେ ଅବସ୍ଥାନ କରିଥିଲେ । ପୁରୁଷୋତ୍ତମ କ୍ଷେତ୍ର ହେଉଛି ସର୍ବଶ୍ରେଷ୍ଠ ପାବନ କ୍ଷେତ୍ର । ଏଠାରେ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ତୀର୍ଥର ପୁଣ୍ୟଫଳ ମିଳିଥାଏ । ଦେବଲୋକ, ନାଗଲୋକ ଓ ମର୍ତ୍ତ୍ୟଲୋକଙ୍କ ନିମନ୍ତେ ଏ କ୍ଷେତ୍ର ଦୁର୍ଲଭ । ଏ କ୍ଷେତ୍ର ଜ୍ଞାନ, ଭକ୍ତି, ଭୋଗ, କର୍ମ, ମୋକ୍ଷ କ୍ଷେତ୍ର ରୂପେ ପ୍ରସିଦ୍ଧ ହୋଇଥିବାରୁ ଏହାକୁ ଗୋପ୍ୟପୁରୀ କୁହାଯାଏ ।

ପୁରୁଷୋତ୍ତମ ଧାମ ହେଉଛି ସର୍ବଧର୍ମ ସମନ୍ୱୟର କ୍ଷେତ୍ର ଏବଂ ଏହି କ୍ଷେତ୍ର ସନାତନ ଧର୍ମର ପ୍ରଧାନ ଓ ପବିତ୍ର ପୀଠସ୍ଥଳୀ ରୂପେ ସର୍ବଜନ ବିଦିତ । ବହୁ ପୁରାତନ କାଳରୁ ଏ କ୍ଷେତ୍ର ବୌଦ୍ଧ, ଜୈନ, ଶିଖ୍, ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ ଆଦି ବିଭିନ୍ନ ଧର୍ମାବଲମ୍ବୀମାନଙ୍କୁ ଆକର୍ଷିତ କରିଆସୁଛି ।

ସ୍କନ୍ଦ ପୁରାଣର ଉତ୍କଳଖଣ୍ଡର ଷଷ୍ଠ ଅଧ୍ୟାୟରେ ଉତ୍କଳର ଜୟଗାନ ତଥା ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ଏ କ୍ଷେତ୍ରର ନୀଳଗିରି ନାନା ବୃକ୍ଷରାଜିରେ ପରିପୂର୍ଣ୍ଣ ଥିଲା । ଏହାର ଅଗ୍ରଭାଗରେ ଏକ କଳ୍ପବୃକ୍ଷ ଥିଲା । ବୃକ୍ଷର ପଶ୍ଚିମରେ ରୋହିଣୀକୁଣ୍ଡ ଏବଂ ପୂର୍ବରେ ନୀଳକାନ୍ତ ମଣି ନିର୍ମିତ ମହାପ୍ରଭୁଙ୍କର ମୂର୍ତ୍ତି ବିଦ୍ୟମାନ ଥିଲା । ନୀଳଗିରିର ପଶ୍ଚିମ ଦିଗରେ 'ଶବର ଦୀପକ' ନାମରେ ଏକ ଆଶ୍ରମ ଥିଲା ଏବଂ ଏହାର ଚତୁଃପାର୍ଶ୍ୱରେ ଶବରମାନେ ବାସ କରୁଥିଲେ । ଏହି ଶବର ପଲ୍ଲୀରୁ ନୀଳଗିରି ଉପରକୁ ଏକ ପାଦଚଲା ରାସ୍ତା ଥିଲା । ମହାପ୍ରଭୁ ନରସିଂହ ନୀଳଗିରିର ଅଗ୍ରଭାଗରେ କଳ୍ପବୃକ୍ଷ ମୂଳରେ ଅବସ୍ଥାନ କରୁଥିଲେ । ମହାପ୍ରଳୟ ସମୟରେ ନୀଳଗିରିର ଅକ୍ଷୟବଟ ଜଳରେ ନିମଗ୍ନ ନହୋଇ ସୁରକ୍ଷିତ ଥିଲା । ଏହି ବୃକ୍ଷ ମୂଳରେ ମାର୍କଣ୍ଡେୟ ଋଷି ନାରାୟଣଙ୍କ କୋଳରେ ଆଶ୍ରୟ ଗ୍ରହଣ କରି ତାଙ୍କର ସାନ୍ନିଧ ଲାଭ କରିଥିଲେ । ତିନିଠାକୁରଙ୍କ ଆବିର୍ଭାବ ପୂର୍ବରୁ ଏଠାରେ ସ୍ୱୟଂ ବିଷ୍ଣୁ ନୀଳମାଧବଙ୍କ ସହିତ ନୃସିଂହ ମଧ୍ୟ ବିଶ୍ୱାବସୁ ଶବର ଦ୍ୱାରା ପୂଜିତ ହେଉଥିଲେ । ସପ୍ତମ ଅଧ୍ୟାୟରୁ ଜଣାଯାଏ ଯେ ନୀଳମାଧବଙ୍କ ମୁଣ୍ଡରେ ମୁକୁଟ, କର୍ଣ୍ଣରେ ମକର କୁଣ୍ଡଳ, ଗଳାରେ କୌସ୍ତୁଭ ମଣି, ବକ୍ଷସ୍ଥଳରେ ମୁକ୍ତାହାର, ବାହୁରେ କଙ୍କଣ ଏବଂ ଚତୁଃବାହୁରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଛନ୍ତି ଏବଂ ତାଙ୍କ ମୁଖମଣ୍ଡଳକୁ ଚାହିଁ ମହାଲକ୍ଷ୍ମୀ ବୀଣାବାଦନ କରୁଛନ୍ତି, ପଶ୍ଚାଦ୍‌ଭାଗରେ ଅନନ୍ତ ଫଣାଟେକି ମହାପ୍ରଭୁଙ୍କୁ ଛାୟାପ୍ରଦାନ କରୁଛନ୍ତି । ଆଗରେ ସୁଦର୍ଶନ ଏବଂ ତାଙ୍କ ପଛରେ ଗରୁଡ଼ ଉପସ୍ଥିତ ଥିବାର ଦୃଶ୍ୟ ବିଦ୍ୟାପତି ଦର୍ଶନ କରିଥିଲେ ।

ବ୍ରହ୍ମପୁରାଣର ୪୨ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ଯେ ଏ କ୍ଷେତ୍ର ଅତ୍ୟନ୍ତ ରମଣୀୟ ଏବଂ ବାଲୁକାମୟ ଥିଲା । ବିଭିନ୍ନ ତରୁ, ଲତା, ଗୁଳ୍ମ ଓ ତମାଳ ଆଦି ବିଭିନ୍ନ ମନୋଜ୍ଞ କୁସୁମରେ ଆଚ୍ଛାଦିତ ହୋଇ ରହିଥିଲା ଏବଂ ଏହା ସମ୍ଭ୍ରାନ୍ତ, ଶିକ୍ଷିତ ତଥା ବିଦ୍ୱାନ୍ ସମାଜର ବାସସ୍ଥଳୀ ଥିଲା । ଆହୁରି ମଧ୍ୟ ବ୍ରହ୍ମପୁରାଣରେ ଉଲ୍ଲେଖ ଅଛି ଯେ ଉତ୍କଳ ନାମରେ ଏକ ପରମ ପବିତ୍ର କ୍ଷେତ୍ର ରହିଛି । ଏ କ୍ଷେତ୍ର ସଂସାର ଉଦ୍ଧାରକାରୀ, ଗୋବ୍ରାହ୍ମଣ ହିତକାରୀ, ପୁଣ୍ୟ ସ୍ୱରୂପ ଚତୁର୍ବର୍ଣ୍ଣ ସୁଖକର ଏବଂ ସିଦ୍ଧି ପ୍ରଦାୟକ । ଏ କ୍ଷେତ୍ର ତୀର୍ଥମାନଙ୍କ ମଧ୍ୟରେ ରାଜା ।

ପୁରୁଷୋତ୍ତମ କ୍ଷେତ୍ର ସ୍ୱୟଂ ପୁରୁଷୋତ୍ତମଙ୍କ ବପୁ ବା ଶରୀର ସ୍ୱରୂପ । ସେ ସର୍ବସଙ୍ଗ ପରିତ୍ୟାଗ କରିବା ସହିତ ସୁରସୁରୀମାନଙ୍କୁ ଅତିକ୍ରମ କରି ଦେହ ଧାରଣ ପୂର୍ବକ ଏ କ୍ଷେତ୍ରରେ ଅବସ୍ଥାନ କରୁଥିବାରୁ ଏଠାରେ ସୃଷ୍ଟି ପ୍ରଳୟର ଆଶଙ୍କାର ସମ୍ଭାବନା କସ୍ମିନ୍‌କାଳେ ନାହିଁ ।

ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସତ୍ୟଯୁଗର ସାର୍ବଭୌମ ରାଜା ରୂପେ ନାରଦ ପୁରାଣ ଓ ସ୍କନ୍ଦ ପୁରାଣରେ ବର୍ଣ୍ଣନା କରାଯାଇଛି । ତାଙ୍କୁ ବ୍ରହ୍ମାଙ୍କର ପଞ୍ଚମ ପୁରୁଷ ବୋଲି ବର୍ଣ୍ଣନା କରାଯାଇଛି । ସେ ଥିଲେ ମାଳବର ରାଜା ଏବଂ ବିଖ୍ୟାତ ଅବନ୍ତୀ ନଗରୀ ଥିଲା ତାଙ୍କର ବାସସ୍ଥଳୀ ।

ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ର ପ୍ରସିଦ୍ଧି ଲାଭ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଚତୁର୍ଥ ଶତାବ୍ଦୀ ବେଳକୁ ପୁରୀ ସମୁଦ୍ର କୂଳରେ ଏକ ମଣ୍ଡପ ବା ଧର୍ମ ଅର୍ଚ୍ଚନା ସ୍ଥଳି ଥିବାର ଐତିହାସିକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଉଲ୍ଲେଖ କରିଛନ୍ତି । କିନ୍ତୁ ନବମ ଶତାବ୍ଦୀ ବେଳକୁ ପୁରୁଷୋତ୍ତମ କ୍ଷେତ୍ର ଏବଂ ଜଗନ୍ନାଥଙ୍କ ମାହାତ୍ମ୍ୟ ସମଗ୍ର ଭାରତବର୍ଷରେ ପ୍ରସିଦ୍ଧି ଲାଭ କରିଥିଲା ।

ତ୍ରେତୟା ଯୁଗରେ ଜଗନ୍ନାଥଙ୍କୁ ଆଧାର କରି ବହୁ ଗ୍ରନ୍ଥ ରଚନା କରାଯାଇଛି । ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀର କବି ତଥା ପଞ୍ଚସଖା ଯୁଗର ସାଧକମାନେ ରାମ, ଲକ୍ଷ୍ମଣ, ସୀତାଙ୍କୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ବୋଲି ବର୍ଣ୍ଣନା କରିଛନ୍ତି । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କ ରଚିତ ବୈଦେହୀଶ ବିଳାସ କାବ୍ୟରେ ରାମ ସୀତାଙ୍କ ବାହୁଡ଼ା ବିଜେକୁ ରଥଯାତ୍ରା ସହିତ ତୁଳନା କରିଛନ୍ତି ଏବଂ ଗୁଣ୍ଡିଚାବାଡ଼ିକୁ ଜନକପୁରୀ ଏବଂ ବଡ଼ଦେଉଳକୁ ଅଯୋଧ୍ୟା ବୋଲି ବର୍ଣ୍ଣନା କରିଛନ୍ତି । ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ପ୍ରଭୁ ଶ୍ରୀରାମ, ଜଗନ୍ନାଥ ରୂପେ ପୂଜା ପାଉଛନ୍ତି ବୋଲି 'ସୁଭଦ୍ରା ପରିଣୟ' କାବ୍ୟରେ ବର୍ଣ୍ଣିତ ହୋଇଛି । ବର୍ତ୍ତମାନ ଯେଉଁଠି ଗୁଣ୍ଡିଚା ମନ୍ଦିର ଅବସ୍ଥିତ ସେହିଠାରେ ପରମ ଧାର୍ମିକ ରାଜର୍ଷି ମିଥିଳାପୁରର ରାଜାଜନକ ଯଜ୍ଞ କରି ସୀତାଙ୍କୁ ପାଇଥିଲେ । ଜନକଙ୍କ ଦକ୍ଷିଣ ସମୁଦ୍ର ଉପକୂଳସ୍ଥ ଯଜ୍ଞ ଭୂମି ଏହି ପୁରୁଷୋତ୍ତମ ଧାମ ।

ଦ୍ୱାପର ଯୁଗରେ ବୃନ୍ଦାବନରେ ରାଧାକୃଷ୍ଣଙ୍କ ରାସଲୀଳାର ତାତ୍ପର୍ଯ୍ୟ ତଥା ଆହ୍ଲାଦିନୀ ଶକ୍ତିର ପରାକାଷ୍ଠାକୁ ଅନୁଧ୍ୟାନ କରିବା ପାଇଁ ମାତା ରୋହିଣୀ ଗୋପଲୀଳା ପରିବେଷଣ କରିଥିଲେ । ରାଜକାର୍ଯ୍ୟ ସମ୍ପାଦନ କରୁଥିବା କୃଷ୍ଣ ଓ ବଳରାମ ଉକ୍ତ ଆହ୍ଲାଦିନୀ





ଶକ୍ତିର ଆକର୍ଷଣରେ ସ୍ଥିର ରହିନପାରି ପ୍ରାସାଦ ଅଭିମୁଖେ ଧାଇଁଲେ । ସେମାନେ ଯେପରି ଏହା ଶୁଣି ନପାରିବେ ମାତା ରୋହିଣୀଙ୍କ ଆଦେଶରେ ଭଗିନୀ ସୁଭଦ୍ରା ସେମାନଙ୍କୁ ବାଟଓଗାଳି ଥିଲେ । ଅନ୍ତପୁରରୁ ଭାସି ଆସୁଥିବା ଆହ୍ଲାଦିନୀ ଶକ୍ତିର ପ୍ରବାହରେ ତିନି ଜଣଯାକ ଜଡ଼ ପାଲଟି ଗଲେ ଏବଂ ସେମାନଙ୍କୁ ଶରୀର ଦାରୁଭୂତ ପରି ପ୍ରତୀୟମାନ ହେଲା । ଏଭଳି ବିଚିତ୍ର ରୂପକୁ ଦେଖି ମହର୍ଷି ନାରଦ ମହାପ୍ରଭୁଙ୍କର ଲାବଣ୍ୟମୟ ମୂର୍ତ୍ତି ଦେଖିବା ପାଇଁ ଅନୁରୋଧ କଲେ । ଭଗବାନ ଶ୍ରୀକୃଷ୍ଣ କହିଲେ, 'ଏ ରୂପ ଦେଖିବା ପାଇଁ ଭକ୍ତ ଇନ୍ଦ୍ରଦ୍ୟୁମ୍ନ ଏବଂ ମାତା ବିମଳା ଅପେକ୍ଷାରତ । ତାହା ହିଁ ପରବର୍ତ୍ତୀ ଯୁଗରେ ମହୋଦଧି ତଟରେ ଏହି ଦାରୁଭୂତ ମୂର୍ତ୍ତିକୁ ସମସ୍ତେ ଦର୍ଶନ କରିବେ ଏବଂ ସେମାନଙ୍କର ମନୋକାମନା ପୂରଣ ହେବ ।'

ଦ୍ୱାପର ଯୁଗ ଶେଷ ସମୟ ଉପସ୍ଥିତ ହେବା ଜାଣି ବଳରାମ ଯୋଗ ବଳରେ ଦେହତ୍ୟାଗ କଲେ । ଶାମ୍ବକୁ ନାରୀ ବେଶ କରି କୃଷ୍ଣଙ୍କ ପୁଅମାନେ ଅଷ୍ଟବକ୍ର ଋଷିଙ୍କ ଅଭିଶାପରେ କାଦମ୍ବରୀ ପାନ କରି ନିଜ ନିଜ ମଧରେ ଗଣ୍ଡଗୋଳ କରି ନିହତ ହେଲେ । ମହୋଦଧି ତଟସ୍ଥ ଘଞ୍ଚ ଶିଆଳୀ ଲତାରେ ମହାପ୍ରଭୁ ଶ୍ରୀକୃଷ୍ଣ ବିଶ୍ରାମ ନେବା ସମୟରେ ଜାରା ଶବର ଦ୍ୱାରା ଶରବିଦ୍ଧ ହେଲେ ଏବଂ କୌଶଳରେ ଅର୍ଜ୍ଜୁନଙ୍କଠାରୁ କଳାହରଣ କରିନେଇ ଇହଧାମରୁ ବିଦାୟ ନେଲେ । ଯଦୁବଂଶ ଧ୍ୱଂସ ହେଲା । ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥରୁ ମହୋଦଧି ତୀରକୁ ଆସି ଶବ ସଂସ୍କାର କଲେ । ତାଙ୍କ ଶରୀରର ସମସ୍ତ ଅଂଶ ପୋଡ଼ିଗଲା କିନ୍ତୁ କଟି ଦେଶ ଅକ୍ଷତ ରହିଲା ଏବଂ ଶୂନ୍ୟବାଣୀ ହେଲା ସେ ଅକ୍ଷତ ଅଂଶକୁ ମହୋଦଧିକୁ ନିକ୍ଷେପ କର । ଶ୍ରୀକୃଷ୍ଣଙ୍କର ସେହି ଅପୋଡ଼ା ପିଣ୍ଡ ଶ୍ରୀକ୍ଷେତ୍ରରେ ବ୍ରହ୍ମରୂପେ ପୂଜା ପାଉଛନ୍ତି ବୋଲି ମହାକବି ସାରଳାଦାସ 'ମହାଭାରତ' କାବ୍ୟର ବନପର୍ବରେ ଉଲ୍ଲେଖ କରିଛନ୍ତି । ଏହାଛଡ଼ା ତନ୍ତ୍ରଶାସ୍ତ୍ର ଅନୁଯାୟୀ ଶ୍ରୀଜଗନ୍ନାଥଙ୍କୁ ଦକ୍ଷିଣ କାଳିକା ରୂପେ ବର୍ଣ୍ଣନା କରାଯାଇଛି । ବୃହଦ୍ କାଳିକା ପୁରାଣରେ ଜଗନ୍ନାଥ ଭୈରବ ବୋଲି ଉଲ୍ଲେଖ ଅଛି ।

ଶ୍ରୀଜଗନ୍ନାଥ ହେଉଛନ୍ତି ପୁରୁଷୋତ୍ତମ ସଂସ୍କୃତିର ପ୍ରାଣକେନ୍ଦ୍ର । ସେ ଉତ୍ତମପୁରୁଷ ତଥା ପୁରୁଷ ଶ୍ରେଷ୍ଠ ଅଭିରାମ ପରମହଂସଙ୍କ ଭାଷାରେ 'ପୁରୁଷ ଉତ୍ତମଟି ଯେଣୁ ପୁରୁଷୋତ୍ତମ ନାମ ତେଣୁ' । ପୁରୁଷୋତ୍ତମ ଚେତନା ମଧରେ ଶାନ୍ତି, ମୈତ୍ରୀ, ଶ୍ରଦ୍ଧା, ପ୍ରେମ, ଧର୍ମ, ଜ୍ଞାନ ଓ ସଂହତି ତଥା 'ବସୁଧୈବ କୁଟୁମ୍ବକମ୍'ର ଆଦର୍ଶ ଅନ୍ତର୍ନିହିତ । ମର୍ତ୍ତ୍ୟବୈକୁଣ୍ଠ ରୂପେ କଳ୍ପିତ ଏହି ପୁରୁଷୋତ୍ତମ ଧାମରେ ବାରମାସରେ ତେର ପର୍ବ ମାଧ୍ୟମରେ ଅପୂର୍ବ ଲୀଳା ସମାହିତ ହୋଇଥାଏ । ବିଭିନ୍ନ ଧର୍ମଗୁରୁ ଯଥା- ଶଙ୍କରାଚାର୍ଯ୍ୟ, ରାମାନୁଜ, ବଲ୍ଲଭାଚାର୍ଯ୍ୟ, ଶ୍ରୀଚୈତନ୍ୟ, କବୀର, ନାନକ, ଅତିବଡ଼ୀ ଜଗନ୍ନାଥ ଦାସ, ନିମ୍ବାର୍କ ଓ ଶଙ୍କର ଦେବଙ୍କ ଆଗମନରେ ଏହିଧାମ ସମୃଦ୍ଧିର ଶୀର୍ଷରେ ପହଞ୍ଚି ପାରିଛି ।

ସେହି ଲୀଳାମୟ, ଇଚ୍ଛାମୟ, କରୁଣାମୟ ସର୍ବବ୍ୟାପୀ, ସର୍ବଶକ୍ତିମାନ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ଦେହ, ମନ, ଆତ୍ମାକୁ ସମର୍ପଣ କରିଦେଲେ ମନୁଷ୍ୟ ଜୀବନ ସାର୍ଥକ ହେବ ଏବଂ ରଥ ଉପରେ ତାଙ୍କ ବାମନରୂପ ଦର୍ଶନ କଲେ ପୁନର୍ଜନ୍ମରୁ ନିବୃତ୍ତି ମିଳିପାରିବ । ଯୁଗଯୁଗ ଧରି ଏହି ପୁରୁଷୋତ୍ତମ ଧାମ ମାନବ ସମାଜକୁ ଆନନ୍ଦ ଉତ୍ସାହ, ଆଦର୍ଶ ଓ ପ୍ରେରଣା ଯୋଗାଇ ଆସୁଛି ଏବଂ ଯୋଗାଉଥିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

କ୍ୱାଟର ନଂ- ଇ/୭୫
'ଇ' କଲୋନୀ, ୟୁନିଟ୍-୮
ଭୁବନେଶ୍ୱର-୧୨

# ସବୁ ବଡ଼ ତୁହି ବାଛି ନେଇଗଲୁ

ଅନନ୍ତ ଗୋପାଳ ପଣ୍ଡା

ସବୁ ବଡ଼ ତୁହି ବାଛି ନେଇଗଲୁ ଛୋଟ ରଖି ମୋ' ପାଇଁ
ଛୋଟକୁ ଆଦରି, ତୋ' ନାମ ସୁମରି, ଯିବି ମୁଁ ମଶାଣି ଭୂଇଁ ।
ସବୁ ଦାଣ୍ଡ ନେଇ କଲୁ ବଡ଼ଦାଣ୍ଡ
ମୋ' ପାଇଁ କି ଜାଗା ରଖି ଯେ ଚାଖଣ୍ଡ
ବଡ଼ଦାଣ୍ଡେ ନନ୍ଦିଘୋଷ ତୋ' ଗଡ଼ିବ
ସେ ଛୋଟ ଜାଗାରେ ଯୁଇ ମୋ' ଜଳିବ ।
ତଥାପି ମୋ' ଦୁଃଖ ନାହିଁରେ କାଳିଆ ଯଦି ଥିବୁ ସାହା ହୋଇ
ତୋ'ର ନାମ ସୁଖେ ଗାଇରେ କାଳିଆ ଯିବି ମୁଁ ମଶାଣି ଭୂଇଁ ।
ସବୁ ଦେଉଳକୁ ନେଇ ତୁହି ନାଥ
କରି ବଡ଼ ଦେଉଳ ଉଡ଼ାଉଛୁ ନେତ



ମୋ' ପାଇଁ ଛୋଟ ଚାଳିଆ ଘର
ସେ ଘରେ ମୋହର ଦୁଃଖୀ ସଂସାର ।
ତଥାପି ସୁଖ ମୁଁ ମଣିବି କାଳିଆ ଯଦି ଟିକେ ଦେବୁ ଚାହିଁ
ତୋ' ଶ୍ରୀମୁଖ ଦେଖି ମୁହିଁରେ କାଳିଆ ଯିବି ମୁଁ ମଶାଣି ଭୂଇଁ ।
ଜଗତରେ ଅଛି ଯେତେକ ପ୍ରସାଦ, ସବୁ ନେଇ କଲୁ ତୋ' ମହାପ୍ରସାଦ
ମୋ' ପାଇଁ ରଖିଛୁ ନାମ ମାତ୍ର ଖୁଦ, ତାହାକୁ ଭୁଞ୍ଜୁଛି ନ କରିଣ ଖେଦ ।
ତଥାପି ଖୁଦକୁ ନିର୍ମାଲ୍ୟ କାଳିଆ କରିଦେ ଦୃଷ୍ଟି ପକାଇ
ଅନ୍ତ ତାକୁ ତୁଣ୍ଡେ ପାଇରେ କାଳିଆ ଯିବି ମୁଁ ମଶାଣି ଭୂଇଁ ।

ସିଣ୍ଡିକେଟ୍ ବ୍ୟାଙ୍କ
ଭୁବନେଶ୍ୱର

# ଇତିହାସ ପୃଷ୍ଠାରେ ଶ୍ରୀମନ୍ଦିରର ନିର୍ମାଣ

ସୁରେଶ କୁମାର ପ୍ରଧାନ



ଅଖିଳ ବିଶ୍ୱବ୍ରହ୍ମାଣ୍ଡର ନାୟକ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ବିଶ୍ୱର ସର୍ବପ୍ରାଚୀନ ଆଦି ଦେବତା । ଅସରନ୍ତି ରହସ୍ୟର ଗନ୍ତାଘର ଏହି ଅବ୍ୟକ୍ତ ବ୍ରହ୍ମଙ୍କ ନାମ, ରୂପ, ଲୀଳା ଓ ମହିମା ରହସ୍ୟମୟ । ଯାହାଙ୍କ ମହିମା ଓ ମୌଳିକତା ସମ୍ବନ୍ଧେ ବେଦ, ପୁରାଣାଦିଶାସ୍ତ୍ର ଅନେକ ବ୍ୟାଖ୍ୟାନ କରିଥିଲେ ହେଁ, ସ୍ଥିର ସିଦ୍ଧାନ୍ତଠାରୁ ବହୁ ଦୂରରେ । ତେଣୁ ଏହି ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ରହସ୍ୟ ଓ ଅଲୌକିକତା ଅଦ୍ୟାବଧି ଅଜଣା ଓ ଅମୀମାଂସିତ । ଏପରିକି ଦେବତାମାନେ ମଧ୍ୟ ରହସ୍ୟମୟ ପୁରୁଷଙ୍କ ଦିବ୍ୟତାକୁ ଭେଦ କରିବାକୁ ସକ୍ଷମ ହୋଇନାହାନ୍ତି । ଏ ସମ୍ବନ୍ଧେ 'କପିଳ ସଂହିତା'ରେ ଉଲ୍ଲେଖ ଅଛି - 'ସର୍ବ ରହସ୍ୟଂ ପୁରୁଷୋତ୍ତମସ୍ୟ, ଦେବାଃ ନ ଜାନନ୍ତି କୁତଃ ମନୁଷ୍ୟାଃ ।' ଯଥାର୍ଥରେ ମହାପ୍ରଭୁଙ୍କ ନାମ, ଧାମ, ତତ୍ତ୍ୱ, ତୀର୍ଥ ଓ ସଂସ୍କୃତି ରହସ୍ୟମୟ ତତ୍ତ୍ୱରେ ପରିବୃତ୍ତ । ଅତଏବ ତାଙ୍କର ବିଜେସ୍ଥଳୀ ବିଶ୍ୱପ୍ରସିଦ୍ଧ ଶ୍ରୀମନ୍ଦିରର କାଳ ଓ କର୍ତ୍ତା ଏବେବି ଜନମାନସରେ ଅଜେୟ ହୋଇ ତତ୍ତ୍ୱଦର୍ଶୀ ଗବେଷକଙ୍କୁ ଜଗନ୍ନାଥ ତତ୍ତ୍ୱରେ ତଲ୍ଲୀନ କରି ସତ୍ୟ ଓ ତଥ୍ୟ ପଥରେ ଗତି କରିବାକୁ ପ୍ରାଣରେ ପ୍ରେରଣା ଯୋଗାଉଛି ।

ଦାରୁଦେବତା ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଆଦ୍ୟସ୍ୱରୂପ ହିଁ ମହାଦାରୁ ଏବଂ ମହାଦାରୁ ଉପାସନା ସଂଗଠିତ ହୋଇଥିଲା ପ୍ରାଗ୍-ବୈଦିକ ଯୁଗ କାଳରେ ପୂର୍ବ ମହୋଦଧି ତଟରେ । ବର୍ତ୍ତମାନର ବଡ଼ଦେଉଳ (ଶ୍ରୀମନ୍ଦିର)ର ଆଦ୍ୟ ଅବସ୍ଥା ହେଉଛି ଖ୍ରୀ:ପୂ: ୫୦୦୦ର ମହୋଦଧି ତଟସ୍ଥ ମହାବେଦୀ । ମହାଦାରୁ (ଦାରୁରୂପୀ ଶ୍ରୀବିଷ୍ଣୁ)ଙ୍କୁ ଚତୁର୍ଦ୍ଧାମୂର୍ତ୍ତିରେ ରୂପାନ୍ତରିତ କରି ମନ୍ଦିରରେ ପୂଜାର୍ଚ୍ଚନା କରାଇଥିବା ଆଦ୍ୟ ସେବକ ହେଲେ ଆର୍ଯ୍ୟବଂଶୀ ରାଜା ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ । ଏପରି ସ୍ଥଳେ ଏବର ଶ୍ରୀମନ୍ଦିର (ବଡ଼ଦେଉଳ) ଆଜକୁ ମାତ୍ର ଏକହଜାର ବର୍ଷତଳେ ନିର୍ମାଣ ହୋଇଛି ବୋଲି ଗବେଷକ ଓ ଐତିହାସିକ ବୃନ୍ଦ ମତ ଦେଇଛନ୍ତି । ଏତଦ୍ ଶ୍ରୀଜଗନ୍ନାଥଙ୍କ ଡାଏରୀ (ମାଦଳାପାଞ୍ଜି)ରୁ ମଧ୍ୟ ଜଣାଯାଏ ।

ବିଶ୍ୱପ୍ରସିଦ୍ଧ ଶ୍ରୀମନ୍ଦିରର ପ୍ରକୃତ ନିର୍ମାଣ ଓ ପ୍ରାଚୀନତାକୁ ନେଇ ଏବେ ଗବେଷକ ଓ ଐତିହାସିକ ମହଲରେ ଗବେଷଣା ଗତିଶୀଳ । ବିଭିନ୍ନ ଐତିହାସିକ ତଥ୍ୟାବଳୀ ଓ କିମ୍ବଦନ୍ତୀଗୁଡ଼ିକ ତର୍ଜମା କରୁଥିବା ପ୍ରାଚୀନ ଶିଳାଲେଖ, କିମ୍ବଦନ୍ତୀ ଓ ମାଦଳାପାଞ୍ଜିର ପ୍ରେରଣାକୁ ପାଥେୟ କରି ଗବେଷକମାନେ ଏବେ ସୁଦ୍ଧା ସଠିକ୍ ସିଦ୍ଧାନ୍ତରେ ଉପନୀତ ହୋଇ ପାରୁନାହାନ୍ତି । ତେବେ ଗବେଷକବୃନ୍ଦ ଗବେଷଣା ଲବ୍ଧ ଜ୍ଞାନକୁ ପ୍ରକାଶ କରି ବିଶ୍ୱପ୍ରସିଦ୍ଧ କୀର୍ତ୍ତିର ମାନ୍ୟତା ପାଇଥିବା ଶ୍ରୀମନ୍ଦିରର ଗଠନ ଓ ନିର୍ମାଣକାରୀଙ୍କ ସମ୍ବନ୍ଧେ ଉଲ୍ଲେଖ କରିବାକୁ ସକ୍ଷମ ହୋଇଛନ୍ତି ।

ପୁରୀରେ ବଡ଼ଦେଉଳ ନିର୍ମାଣକାଳ ସମ୍ବନ୍ଧରେ ପ୍ରାୟ ଦେଢ଼ଶହ ବର୍ଷ ହେଲା ବିଭିନ୍ନ ଐତିହାସିକମାନେ ବିଭିନ୍ନ ମତ ବ୍ୟକ୍ତ କରିଆସିଛନ୍ତି । ଷ୍ଟର୍ଲିଂ ସାହେବ ତାଙ୍କର 'ଓଡ଼ିଶା ଇତିହାସ' ପୁସ୍ତକ, 'ରାଜବଂଶାବଳୀ' ନାମକ ଏକ ସଂସ୍କୃତ ଗ୍ରନ୍ଥ ଓ ମାଦଳାପାଞ୍ଜିର ଲେଖା ଉପରେ ନିର୍ଭର କରି ଲେଖିଛନ୍ତି ଯେ, ବର୍ତ୍ତମାନର ଜଗନ୍ନାଥ ମନ୍ଦିର ଖ୍ରୀ:୧୧୯୬ରେ ଅନଙ୍ଗ ଭୀମ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ସେହି ପରି ଫର୍ଗୁସନ୍‌ଙ୍କ ମତରେ ଶ୍ରୀମନ୍ଦିରର ନିର୍ମାଣ କାଳ ଖ୍ରୀ:୧୦୯୮ । ଐତିହାସିକ ଭିନ୍‌ସେଣ୍ଟ ସ୍ମିଥ୍‌ଙ୍କ ମତରେ ମନ୍ଦିରଟି ୧୧୦୦ରେ ନିର୍ମିତ ହୋଇଥିଲା । ମାଦଳାପାଞ୍ଜି ଓ ଐତିହାସିକ କିମ୍ବଦନ୍ତୀକୁ ଆଧାର କରି ଗବେଷକବୃନ୍ଦ ବିଭିନ୍ନ ରାଜାମହାରାଜାଙ୍କୁ ଶ୍ରୀମନ୍ଦିରର ନିର୍ମାତା ଭାବେ ବ୍ୟକ୍ତ କରିଯାଇଛନ୍ତି । ମାଦଳାପାଞ୍ଜି ଅନୁସାରେ ସୋମବଂଶୀ ଯଯାତି କେଶରୀ ନବମ ଶତାବ୍ଦୀରେ ଶ୍ରୀଜଗନ୍ନାଥଙ୍କ ନୂତନ ମନ୍ଦିର ନିର୍ମାଣ କରିଥିଲେ । ଯବନମାନଙ୍କ ରାଜତ୍ୱ ପରେ 'ସୋନପୁର' ଗୋପଲୀରୁ ଠାକୁରମାନଙ୍କୁ




ଯଯାତି ଅଣାଇ ପୁନର୍ବାର ମନ୍ଦିରରେ ରଖାଇଲେ । ସେଥିପାଇଁ ଯଯାତିକେଶରୀଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କୁହାଯାଏ ।

ମାଦଳାପାଞ୍ଜିରେ ଲେଖାଅଛି - 'ଶୋଭନ ଦେବ ଭୋଗ କଲେ ୯୬ ବର୍ଷ । ଏହି ମହାରାଜାଙ୍କ ଦ୍ୱିତୀୟ ଅଙ୍କେ ଦିଲ୍ଲୀରୁ ରକ୍ତବାହୁ ଆସିବା ବାରଣକୁ ପରମେଶ୍ୱରଙ୍କୁ ସୁନୁପୁର ଗୋପଲୀ ଘେନିଗଲେ । ସେଠାରେ ମଣ୍ଡପ ଗୋଟାଏ କରି ବିଜେ କରାଇଲେ ୪୫ ବର୍ଷ । ଏଥୁ ଉତ୍ତାରେ ମୁଗଲେ ପ୍ରବଳ ହୋଇଲାକୁ ସେବକେ ସେଠାରେ ପରମେଶ୍ୱରଙ୍କୁ ପାତାଳି କରି ଉପରେ ଗଛ ଲଗାଇ ରାଜ୍ୟ ଅନ୍ତର ହୋଇଗଲେ । ପାତିସାଙ୍କ ଅମୁରା ରକ୍ତବାହୁ ଶ୍ରୀପୁରୁଷୋତ୍ତମ ବୋଲି ଆଇଲା । ସମୁଦ୍ର ଥୋକାଏ ଦୂରମାଡ଼ି ଆଇଲା । ଏ ରାଜା ବହୁତ ଯୁଦ୍ଧ ହେଲେ । ରହି ନପାରି ଝାଡ଼ଖଣ୍ଡ ଭିତରେ ରହିଲେ । ଯବନମାନଙ୍କ ପରେ ଯଯାତି ରାଜା ହେଲେ । 'ଏ ମହାରାଜାଙ୍କ ୧୧ ଅଙ୍କେ ସନ୍ନ୍ୟାସୀ ବ୍ରହ୍ମଚାରୀ ବ୍ରାହ୍ମଣମାନଙ୍କୁ ପଚାରିଲେ, ଓଡ଼ିଶା ରାଜାର ପ୍ରଭୁ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁ ସେ କାହିଁଛନ୍ତି ? ସେମାନେ କହିଲେ ମୁଗଲ ଗୋଳ ହୋଇଲାକୁ ସୋମୋଦ୍ର ମାଡ଼ି ଅଇଲାକୁ ଅପାର ଦିନ ହୋଇଲା । ଶ୍ରୀପର୍ମେସରଙ୍କୁ ପାତାଳୀ କରି ସୁନିପୁର ଆଡ଼େ କଇଁଠାରେ ବିଜେ କରାଇଲେ ଗାଁତବ ନାହିଁ । ଏହା ଶୁଣି ମହାରାଜ ସୁନୁପୁର ଗଲେ । ସେଠାରେ ଖଣ୍ଡାଇତକୁ ପଚାରିଲେ । ସେମାନେ କହିଲେ ଗାଁତବ ନୋହୁ । ଆମ ବାପ ଅଜା କହନ୍ତି ଦିଅବର ଏହି । ଏଥିତଳେ ଦିଅଁକୁ ପୋତିଥିଲେ । ଏହା ଶୁଣି ରାଜା କଟୁରିଆ ବ୍ରାହ୍ମଣଙ୍କୁ ଆଣି ସେ ଗଛ କଟାଇ ଖୋଳାଇଲେ । ପରମେଶ୍ୱରଙ୍କୁ ବାହାର କଲେ । ସେଦିନ ସେ ମୂର୍ତ୍ତିମାନ ମାଟି ଖାଇ ଛିନ୍ନଭିନ୍ନ ହୋଇଛନ୍ତି । ଦିଅଁମାନଙ୍କୁ ଲୁଗା ଗୁଡ଼ିଆଇ ମୁଣାରେ ପୂରାଇ ମୁଦାଇଲେ । ଏ ଉତ୍ତାରୁ ଦଇତାପତିଙ୍କୁ ଲୋଡ଼ାଇଲେ । ଦଇତାମାନେ ବିରି ବନ୍ଧରେ ଥିଲେ । ପତିମାନେ ରତନପୁର ସୀମାରେ ଥିଲେ । ଏମାନଙ୍କୁ ଅଣାଇ ବିଧିପତ୍ର ପ୍ରମାଣେ ଦାରୁଛେଦନ କରାଇ ପରମେଶ୍ୱରଙ୍କୁ ସୁମୂର୍ତ୍ତି କରାଇଲେ । ଶ୍ରୀପୁରୁଷୋତ୍ତମେ ଶଙ୍ଖନାଭି ମଣ୍ଡଳେ ହାଓ୩୮ଥ କରି ପଟୋଳ ଗୋଟାଏ ତୋଳି ପ୍ରତିଷ୍ଠା କରି ପରମେସରଙ୍କୁ ବିଜେ କରାଇଲେ ।' ଏଥିରୁ ହୃଦ୍‌ବୋଧ ହୁଏ, ଯଯାତିକେଶରୀ ଶ୍ରୀମନ୍ଦିର ନିର୍ମାତା, ମାତ୍ର ଏହି ମାଦଳାପାଞ୍ଜି ଉପଯୁକ୍ତ ଭାବରେ ସଂକଳିତ ହୋଇନଥିବାରୁ ଏଥିରେ ସନ୍ନିବେଶିତ ତଥ୍ୟ ପର୍ଯ୍ୟାୟକ୍ରମେ ଭିନ୍ନ ଭାବରେ ପ୍ରତୀୟମାନ ହୋଇ ଐତିହାସିକ ଓ ଗବେଷକଙ୍କୁ ଦ୍ୱନ୍ଦ୍ୱରେ ପକାଇଛି । ଏହି ମାଦଳାପାଞ୍ଜି ଅନୁସାରେ (ଗଂଗବଂଶୀୟ ନରସିଂହ ତାମ୍ରଶାସନ)ରେ ଶ୍ରୀମନ୍ଦିରର ନିର୍ମାତା ହେଉଛନ୍ତି ଗଙ୍ଗବଂଶୀ ନରପତି ରାଜା ଚୋଡ଼ଗଙ୍ଗ ଦେବ (ଖ୍ରୀ:୧୧୧୨-୧୧୪୭) । ପୂର୍ବରୁ ଯଯାତିଙ୍କ ଦ୍ୱାରା ନିର୍ମିତ ହୋଇଥିବା ଜଗନ୍ନାଥ ମନ୍ଦିର ଜୀର୍ଣ୍ଣ ହୋଇପଡ଼ିବାରୁ ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିବା ପ୍ରମାଣ ମିଳେ । ଏହି ପ୍ରମାଣକୁ ଦୃଢ଼ କରୁଥିବା ତ୍ରୟୋଦଶ ଗଙ୍ଗ ତାମ୍ରଶାସନରେ ଏକ ଶ୍ଳୋକ -

'ପ୍ରସାଦଂ ପୁରୁଷୋତ୍ତମସ୍ୟ ନୃପତିଃ
କୋ ନାମ କର୍ତ୍ତୁଂ କ୍ଷମ,
ସ୍ତସ୍ୟେତବାବ୍ୟନ୍ନପୈରୁପେକ୍ଷିତମୟମ୍
ଚକ୍ରେଽଥ ଗଙ୍ଗେଶ୍ୱରଃ ।'

ଅତଏବ ପୂର୍ବ ରାଜାମାନଙ୍କ ଦ୍ୱାରା ଉପେକ୍ଷିତ ଅଥବା ଜରାଜୀର୍ଣ୍ଣ ଜଗନ୍ନାଥ ମନ୍ଦିରକୁ ଭାଙ୍ଗି ଏବର ବିଶ୍ୱପ୍ରସିଦ୍ଧ ବଡ଼ଦେଉଳକୁ ଚୋଡ଼ଗଙ୍ଗ ଦେବ ନିର୍ମାଣ କରିଥିଲେ ।

ମାଦଳାପାଞ୍ଜିର ତଥ୍ୟ ଅନୁଯାୟୀ ଅନଙ୍ଗ ଭୀମଦେବ (ତୃତୀୟ) ପୁରୀ ଜଗନ୍ନାଥ ମନ୍ଦିରକୁ ପୂର୍ଣ୍ଣାଙ୍ଗ କରିଥିଲେ । ଯାହାକି ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ପ୍ରତାପଶାଳୀ ଓ କୀର୍ତ୍ତିଶାଳୀ ରାଜା ଅନଙ୍ଗଭୀମ ଦେବ ରାଜ୍ୟ ଆୟର ମୁଖ୍ୟାଂଶକୁ ଦେଉଳ ନିର୍ମାଣ ଓ ତାହାର ରୀତିନୀତି ପାଇଁ ଖର୍ଚ୍ଚ କରୁଥିଲେ । ମାଦଳାପାଞ୍ଜିରେ ମନ୍ଦିର ନିର୍ମାଣ ବିଷୟରେ 'ଅନଙ୍ଗ ଭୀମଦେବ' ପରିଚ୍ଛେଦରେ ଲେଖାଅଛି ... ଏ ଆମ୍ଭର ଅରଜିତ ପଦାର୍ଥ । ଏଥୁଁ ଆମ୍ଭେ ଥୋକାଏ ପରମେଶ୍ୱରଙ୍କ ଆଡ଼ତିରେ ଲଗାଇବାକୁ ଏଥକୁ ଆମ୍ଭେମାନେ ଏମନ୍ତ କଳ୍ପନା କରିଅଛୁ । ଯଯାତି ରାଜା ଯେଉଁ ପୋଟଳ ତୋଳାଇ ପରମେଶ୍ୱରଙ୍କୁ ବିଜେ କରାଇଛନ୍ତି, ସେ ପୋଟଳ ତିନିଗୋଟି ଅତି ବଇସମ ହୋଇଲା । ଏହା ଭାଙ୍ଗି ୧୦୦ ହାତ ଉଚ୍ଚେ ପ୍ରାସାଦ ଗୋଟିଏ ତୋଳାଇବା । ଏଥକୁ ଥୋକାଏ ସୁନାଦେବା । ଏହି ମାଦଳାପାଞ୍ଜି ଅନୁସାରେ ଅନଙ୍ଗଭୀମ ୨୭ ବର୍ଷ ରାଜତ୍ୱ କରିଥିଲେ । କିନ୍ତୁ ରାଜତ୍ୱ କେବେ ଆରମ୍ଭ ହୋଇଥିଲା, ତାହା ନିର୍ଣ୍ଣିତ ହୋଇନାହିଁ । ମାଦଳାପାଞ୍ଜି-ଦ୍ୱିତୀୟ ପାଞ୍ଜି ମତରେ, 'ଏ ରାଜାଙ୍କ ଅ୧୮ଙ୍କ କୁମ୍ଭ ଦି୨ ଦେଉଳ ଶ୍ରୀବସ୍ତ ଖଣ୍ଡଶାଳ ଘଟଣା ଦଶମୀ ଗୁରୁବାରେ ବଡ଼ ଦେଉଳକୁ ମଧୁପୁର ପାଟଣା ତୁଡ଼ଙ୍ଗ ସାହିରୁ ବିଜେ କରାଇଲେ । ଅନଙ୍ଗ ଭୀମଦେବ ଶ୍ରୀମନ୍ଦିର ନିର୍ମାଣ କରିଥିବା ତଥ୍ୟ ସମର୍ଥନ କରୁଥିବା ଏକ ଶ୍ଳୋକ ବଡ଼ଦେଉଳ ଭିତର ସିଂହାସନ ଉପରେ ଖୋଳା ହୋଇଥିବା ଶୁଣାଯାଏ -

ଶାକାବ୍ଦେ ରନ୍ଧ୍ର ଶୁଭ୍ରାଂଶୁ ରୂପ ନକ୍ଷତ୍ର ନାୟକେ
ପ୍ରାସାଦଂ କାରୟାମାସଽନଙ୍ଗଭୀମେନ ଧୀମତା ।

ରନ୍ଧ୍ର-୯, ଶୁଭ୍ରାଂଶୁ (ଚନ୍ଦ୍ର)-୧, ନକ୍ଷତ୍ର ନାୟକ ଚନ୍ଦ୍ର-୧, 'ଅଙ୍କାନାଂ ବାମତୋ ଗତିଃ' ନିୟମ ଅନୁସାରେ ୧୧୧୯ ଶକାବ୍ଦରେ ବା ୧୧୯୭ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମ ଦେବ ଏହି ନିର୍ମାଣ କରିଥିଲେ । ଏହାଛଡ଼ା କେତେକ ଗବେଷକ ଅନଙ୍ଗଭୀମ ଦେବଙ୍କୁ ଶ୍ରୀମନ୍ଦିରର ପ୍ରକୃତ ନିର୍ମାତା ସ୍ୱୀକାର କରିବାକୁ ସମର୍ଥିତ ତଥ୍ୟ ପ୍ରତିପାଦନ ଉଲ୍ଲେଖ କରିଛନ୍ତି । ଚୋଡ଼ଗଙ୍ଗ ଦେବ ଅପାର ଧନବ୍ୟୟ କରି ମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ବଡ଼ଦେଉଳ କାମ ସମ୍ପୂର୍ଣ୍ଣ (ପ୍ରତିଷ୍ଠା) ବେଳକୁ ସେ ଜୀବିତ ନଥିଲେ । ତାଙ୍କ ଅନ୍ତେ ତାଙ୍କ ପ୍ରପୌତ୍ର ମହାରାଜ ଅନଙ୍ଗ ଭୀମଦେବ (ତୃତୀୟ) ଶ୍ରୀମନ୍ଦିର ପ୍ରତିଷ୍ଠାକର୍ମ ଅଥବା ଅସମ୍ପୂର୍ଣ୍ଣ କାମକୁ




ପୂର୍ଣ୍ଣାଙ୍ଗ କରି ମୂର୍ତ୍ତିମାନଙ୍କୁ ରତ୍ନସିଂହାସନରେ ବିଜେ କରାଇଥିଲେ । ସେ ନିଜେ ବସି ମନ୍ଦିର ଓ ଦେବ ପ୍ରତିଷ୍ଠା କରିବା ସକାଶେ ପ୍ରଚୁର ପରିମାଣରେ ଧନବ୍ୟୟ କରି 'ହିରଣ୍ୟଗର୍ଭ' ନାମକ ମହାଦାନ ସମ୍ପନ୍ନ କରି ପ୍ରଥମେ ନିଜ ଅଙ୍ଗ-ଶୁଦ୍ଧି କରିଥିଲେ ଏବଂ ଗୁରୁ-ପୁରୋହିତଙ୍କୁ ପ୍ରଚୁର ସମ୍ପତ୍ତି ଦାନ କରିଥିଲେ । ଯାହାକି ନାଗରି ତାମ୍ରଶାସନରେ ଉଲ୍ଲେଖ ଅଛି ।

ଐତିହାସିକ ତଥ୍ୟାବଳୀ, କିମ୍ବଦନ୍ତୀ, ଅଭିଲେଖ, ମାଦଳାପାଞ୍ଜି ଓ ଜନଶ୍ରୁତିକୁ ଆଧାର କରି ତତ୍ତ୍ୱାନୁସନ୍ଧାନୀ ଗବେଷକମାନେ ଶ୍ରୀମନ୍ଦିରର ପ୍ରକୃତ ନିର୍ମାତା କିଏ, ସେ ସମ୍ବନ୍ଧେ ନିଜ ନିଜର ଗବେଷଣା ଲବ୍ଧ ନିର୍ଯ୍ୟାସକୁ ପ୍ରତିପାଦନ କରିବାକୁ ଚେଷ୍ଟା କରିଅଛନ୍ତି ଏବଂ ଅକ୍ଷୟ କୀର୍ତ୍ତି ଶ୍ରୀମନ୍ଦିରର ନିର୍ମାତା ଭାବେ କୌଣସି ଜଣେ ରାଜାଙ୍କୁ କର୍ତ୍ତା ଭାବେ ଦେଖିବାକୁ ପାଇ ନାହାନ୍ତି । ଅପରନ୍ତୁ ମନ୍ଦିରର ନିର୍ମାଣକର୍ତ୍ତା ଭାବେ ଚାରିଚାରି ଜଣ ନରପତି ଦୃଷ୍ଟିକୁ ଆସିଛନ୍ତି । କିଛି ତତ୍ତ୍ୱଦର୍ଶୀ, ସୋମବଂଶୀ ଯଯାତିଙ୍କୁ ମନ୍ଦିରର ସ୍ରଷ୍ଟା ଭାବେ ଗ୍ରହଣ କରିଥିବାବେଳେ ଅନ୍ୟମାନେ ଚୋଳଗଙ୍ଗ ଦେବଙ୍କୁ ବଡ଼ଦେଉଳର କର୍ତ୍ତା ବୋଲି ଅଭିହିତ କରିଛନ୍ତି । ସେହିପରି ଅନଙ୍ଗ ଭୀମଦେବ-ତୃତୀୟ ଶ୍ରୀମନ୍ଦିରର ପ୍ରକୃତ ନିର୍ମାତା ବୋଲି କିଛି ଗବେଷକ ସ୍ୱଯୁକ୍ତି ଉପସ୍ଥାପନା କରିଛନ୍ତି । ଯେପରି ଆଦ୍ୟ ମନ୍ଦିର ନଷ୍ଟ ହୋଇଯିବାରୁ ନବମ ଶତାବ୍ଦୀରେ ଯଯାତି କେଶରୀ ଏକ ନୂତନ ମନ୍ଦିର ତୋଳାଇଲେ । ଏହି ମନ୍ଦିର ସମୁଦ୍ର ଲୁଣି ପବନରେ କେତେବର୍ଷ ପରେ ନଷ୍ଟ ହୋଇଯିବାରୁ ଚୋଡ଼ଗଙ୍ଗ ଦେବ ଏହାକୁ ନୂତନ ରୂପରେଖ ଦେଇ ନିର୍ମାଣ କଲେ ଏବଂ ଚୋଡ଼ଗଙ୍ଗ ଦେବ କୃତ ଶ୍ରୀମନ୍ଦିର ଜୀର୍ଣ୍ଣଶୀର୍ଣ୍ଣ ହୋଇଯିବାରୁ (ଅସମ୍ପୂର୍ଣ୍ଣ) ତାଙ୍କ ନାତି ଅନଙ୍ଗଭୀମ ଦେବ ନୂତନ ଦେଉଳ ତିଆରି କରିଥିଲେ । ଏଥିରୁ ହୃଦ୍‌ବୋଧ ହୁଏ କୌଣସି ଜଣେ ରାଜା ଏକାକୀ ଏହି ବଡ଼ଦେଉଳକୁ ନିର୍ମାଣ କରିବାକୁ ସକ୍ଷମ ହୋଇନାହାନ୍ତି । ସମସ୍ତେ ବଡ଼ଦେଉଳକୁ ନୂତନ ରୂପ ଦେଇ ସ୍ୱ ସ୍ୱ ଶାସନ କାଳରେ ଏହାର ଶୋଭା ଶିରୀକୁ ବର୍ଦ୍ଧନ କରିଛନ୍ତି । ଅଦ୍ୟାବଧି ଜଗନ୍ନାଥ ମନ୍ଦିରର ପ୍ରାଚୀନତା ଓ ନିର୍ମାଣକୁ ଇତିହାସ କହିବାକୁ ଅସମର୍ଥ । ତେଣୁ ଜଗନ୍ନାଥ ତତ୍ତ୍ୱର ରହସ୍ୟ ଉନ୍ମୋଚନକାରୀଙ୍କ ଗବେଷଣା ନିଷ୍ଫଳ ହୋଇ ରହସ୍ୟମୟ ତତ୍ତ୍ୱରେ ପରିବୃତ୍ତ ହୋଇଯାଇଛି । ତେଣୁ ଯଥାର୍ଥରେ କୁହାଯାଇଛି - 'ସର୍ବ ରହସ୍ୟଂ ପୁରୁଷୋତ୍ତମସ୍ୟ, ଦେବାଃ ନ ଜାନନ୍ତି କୁତଃ ମନୁଷ୍ୟାଃ ।'

**ପାଦଟୀକା**

୧. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ - ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ - ଫ୍ରେଣ୍ଡସ୍ ପବ୍ଲିସର୍ସ, ବିନୋଦ ବିହାରୀ, କଟକ, ପୃ.୨୬୮ ।

୨. ମାଦଳାପାଞ୍ଜି - ମୃତ୍ୟୁଞ୍ଜୟ ନାୟକ ସଂପାଦିତ - ଫ୍ରେଣ୍ଡସ୍ ପବ୍ଲିସର୍ସ, ପୃ.୨୬୮ ।

୩. ଉତ୍କଳର ରାଷ୍ଟ୍ରଦେବତା - କେଦାର ନାଥ ମହାପାତ୍ର, ଉତ୍କଳ ପ୍ରସଙ୍ଗ-୨୦୦୨ ।

୪. ମାଦଳାପାଞ୍ଜି - ମୃତ୍ୟୁଞ୍ଜୟ ନାୟକ, ପୃ.୧୫୭ ।

୫. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ - ପୃ.୨୭୦ ।

ସାମ୍ବାଦିକ ସଭ୍ୟ
ଉତ୍କଳ ସାହିତ୍ୟ ସମାଜ
ଖୁଣ୍ଟୁଣୀ, ଆଠଗଡ଼, କଟକ



# ପ୍ରଭୁ ଶ୍ରୀଜଗନ୍ନାଥ ଏବଂ ମାନବବାଦ

ସନ୍ଧ୍ୟା ମହାନ୍ତି

ଓଡ଼ିଶାର ପ୍ରଭୁ ଶ୍ରୀଜଗନ୍ନାଥ । ସତ୍, ଚିତ୍, ଆନନ୍ଦର ପ୍ରତିମୂର୍ତ୍ତିଙ୍କୁ କେବଳ ଭାରତବର୍ଷ ନୁହେଁ ସମଗ୍ର ପୃଥିବୀବାସୀ ଜାଣନ୍ତି । ପୂର୍ବ ସମୁଦ୍ର କୂଳର ଏହି ବିଶିଷ୍ଟ ଦେବ ଆରାଧନା ପୁରୁଷୋତ୍ତମ ପୀଠଟି ମଧ୍ୟ ସର୍ବତ୍ର ସୁବିଦିତ । ନୀଳାଚଳର ଏହି ବ୍ରହ୍ମଧାମରେ ପ୍ରଭୁ ଜଗନ୍ନାଥ ନିତ୍ୟ ରମଣ କରୁଛନ୍ତି ।

ଶ୍ରୀଜଗନ୍ନାଥଙ୍କର ପୁରୁଷୋତ୍ତମ ନାମଟି ସାରା ଭାରତବର୍ଷରେ କାହିଁ କେଉଁ କାଳୁ ପରିଚିତ । ଏହି 'ପୁରୁଷୋତ୍ତମ' ଶବ୍ଦର ବିଶ୍ଳେଷଣରେ ପ୍ରଥମେ ପୁରୁଷ ଯାହାକି ଭାରତରେ ଅତି ପ୍ରାଚୀନ ତଥା ସାଧାରଣ । ବେଦର ମନ୍ତ୍ର ଭାଗରେ ଏହାର ବ୍ୟବହାର ଅଛି । ଋକ୍‌ବେଦରେ ପୁରୁଷସୂକ୍ତରେ ପୁରୁଷ ଶବ୍ଦର ଅର୍ଥ ସ୍ୱତନ୍ତ୍ର । ଏ ଅର୍ଥ ସ୍ପଷ୍ଟ ଏବଂ ଏହା ଆଧାତ୍ମ୍ । ଯଦିଓ ଏହା କେତେ ପ୍ରାଚୀନ କହିବା କଷ୍ଟ ତେବେ ବେଦ ଓ ଉପନିଷଦରେ ଏହାର ବ୍ୟାଖ୍ୟା କରାଯାଇଛି ।

ଯାହାକି - ଦୁଇଟି ପକ୍ଷୀ ଏକାଭଳି ଓ ପରସ୍ପରର ସଖା ସେହି ଏକା ଗଛରେ ରହିଛନ୍ତି ।

ଯଦିଓ ଏଠାରେ ପୁରୁଷ କଥା ଲେଖା ନାହିଁ କିନ୍ତୁ ଅର୍ଥରେ ବ୍ୟକ୍ତିର ଆତ୍ମା ଓ ସେହି ବ୍ୟକ୍ତି ଆଶ୍ରୟରେ ଥିବା ବିଶ୍ୱାତ୍ମା ବା ପରମାତ୍ମା ଏହି ଦୁଇ କଥାକୁ ଲକ୍ଷ୍ୟ କରାଯାଇଥାଏ । ପରେ ଯେଉଁ ପୁରୁଷୋତ୍ତମ ଭାବ ପ୍ରକାଶ ପାଇଲା ତାହା ହିଁ ଏହି ପରମାତ୍ମା ।

ପୁରୁଷୋତ୍ତମ ଶବ୍ଦ ସହିତ ଭାରତୀୟ ବୈଷ୍ଣବ ଧର୍ମର ଏକ ପ୍ରକାର ନିତ୍ୟ ସଂପର୍କ । ଯୋଗ ଦର୍ଶନର ପ୍ରଧାନ ପୁରୁଷ ଓ ତହିଁରେ ଆସିଥିବା ପୁରୁଷୋତ୍ତମ କଥାଟିକୁ ବୈଷ୍ଣବମାନେ କାଳକ୍ରମେ ନିଜର ଉପାସ୍ୟ ଦେବ ଈଶ୍ୱର ବା ବିଷ୍ଣୁ ବୋଲି ଧରି ନେଲେ । ସେଇ ପୁରୁଷୋତ୍ତମ ନାମରେ ବିଷ୍ଣୁଙ୍କର ନାମ ଦେଇଥିଲେ । ବିଷ୍ଣୁଙ୍କର ସେହି ପୁରୁଷୋତ୍ତମ ନାମଟି ଏ ପର୍ଯ୍ୟନ୍ତ ଭାରତବର୍ଷରେ ପ୍ରତିଷ୍ଠିତ ରହିଛି । ତାହା ହିଁ ବିଷ୍ଣୁଙ୍କର ପ୍ରଧାନ ନାମ ପରିଚୟ । ବିଶେଷତଃ ଭାରତବର୍ଷର ସର୍ବତ୍ର ବୈଷ୍ଣବଧର୍ମର ପ୍ରଥମ କାଳରେ ଆଦି ନାମ ହିଁ ବାସୁଦେବ ଧର୍ମ । ଶ୍ରୀମଦ୍ ଭଗବଦ୍ ଗୀତାରେ କୁହାଯାଇଛି -



'ବାସୁଦେବ ସର୍ବମିତି
ସମହାତ୍ମା ସୁଦୁର୍ଲଭଃ ।'

ବାସୁଦେବ ବୋଲି ମହାପୁରୁଷ ଯେ ଅତି ଦୁର୍ଲ୍ଲଭ ! ଅବଶ୍ୟ ଏହି ବାସୁଦେବ ଭାବଟି ଉକ୍ତ କଳ୍ପିତ ଓ ପ୍ରତିଷ୍ଠିତ ଈଶ୍ୱରଙ୍କର ଅବତାର ଭାବରୁ ଆସିଥିଲା ।

ଏହି ବାସୁଦେବ ହିଁ ହେଉଛନ୍ତି ଯଦୁବଂଶର ଶ୍ରୀକୃଷ୍ଣ । ଶ୍ରୀମଦ୍ ଭାଗବତ ଗୀତା ପ୍ରକାଶିତ ହେଲା ବେଳକୁ କୃଷ୍ଣ, ବିଷ୍ଣୁ, ଈଶ୍ୱର ଓ ପୁରୁଷୋତ୍ତମ ସମସ୍ତେ ମିଶି ଏକ ହୋଇଯାଇଥିଲେ ।

ଗୀତାରେ ମଧ୍ୟ ପୁରୁଷୋତ୍ତମ ଯୋଗ ଅଛି । ସେଠାରେ ବିଶ୍ୱାତ୍ମାଙ୍କ ସଂଗେ ଜୀବାତ୍ମାର ସଂପର୍କରେ ଦୁହେଁ ଏକ । ମାତ୍ର ଗୋଟିଏ କଥା ଲକ୍ଷ୍ୟ କରାଯାଏ - ଏଇ ଜଗନ୍ନାଥ ଧାମର ପୁରୁଷୋତ୍ତମ ସେତେବେଳକୁ ଲୋକଙ୍କର ଉପାସ୍ୟ ଦେବତା ଭାବେ ପ୍ରତିଷ୍ଠିତ ହୋଇସାରିଥିଲେ ।





ସେହି ପୁରୁଷୋତ୍ତମ ଯେ କି ଶ୍ରୀକୃଷ୍ଣ ଏବଂ ସମସ୍ତ ଅବତାରଙ୍କର ଅବତାରୀ !

ଶ୍ରୀମଦ୍ ଭଗବଦ୍ ଗୀତାରୁ ସ୍ପଷ୍ଟ ହୁଏ -

'ଅତୋଽସ୍ମି ଲୋକେ ବେଦେଚ
ପ୍ରଥିତଃ ପୁରୁଷୋତ୍ତମଃ ।'

- ଏଥିନେଇ ବେଦ ବା ଜ୍ଞାନରେ ତଥା ଉପାସକ ଲୋକଙ୍କ ଭିତରେ ପୁରୁଷୋତ୍ତମ ପ୍ରତିଷ୍ଠିତ ରହିଛି । ଏହି ଭାରତବର୍ଷର ପୁରୁଷୋତ୍ତମ ପୁରୀ ଛଡ଼ା ଅନ୍ୟ କେଉଁ ସ୍ଥାନରେ ପୁରୁଷୋତ୍ତମ ନାମରେ ଉପାସ୍ୟ ଦେବତା ନାହାନ୍ତି ।

ଗୀତାର ସର୍ଜନା ବେଳକୁ ପୁରୁଷୋତ୍ତମ ପୁରୀ, ପୁରୁଷୋତ୍ତମ କ୍ଷେତ୍ର ଭାବେ ଭାରତବର୍ଷରେ ଏକ ପ୍ରଧାନ ସଂସ୍କୃତି ପୀଠ ରୂପେ ପ୍ରକାଶ ପାଇସାରିଥିଲା ।

ଭାରତବର୍ଷର ସଂସ୍କୃତି କ୍ଷେତ୍ରରେ ଓଡ଼ିଶାର ପ୍ରଭାବ ବହୁଭାବରେ ରହିଛି । ହିନ୍ଦୁମାନଙ୍କର ପବିତ୍ର ପୀଠସ୍ଥଳୀ ଏହି ପୁରୁଷୋତ୍ତମ କ୍ଷେତ୍ର । ଜଗନ୍ନାଥ ଦେବଙ୍କଠାରୁ ସର୍ବଭାରତର ଧର୍ମ ଧାରଣା । ଈଶ୍ୱର ଭକ୍ତି ତଥା ବିଷ୍ଣୁ ଭକ୍ତି ଏହି ପୁରୁଷୋତ୍ତମରେ ପର୍ଯ୍ୟବସିତ ତଥା ପରିପୁଷ୍ଟ । ଭାରତରେ ପ୍ରଧାନ ସଂସ୍କୃତିର କେନ୍ଦ୍ର ତେଣୁ ପୁରୁଷୋତ୍ତମ ବା ପୁରୀ । ଏହାର ପ୍ରଭାବ ଯେ ସାରା ଭାରତବର୍ଷ ବ୍ୟାପୀ - ତାହା ସର୍ବତ୍ର ସୁବିଦିତ ।

ପୂର୍ବେ ଉତ୍ତର ଓ ପଶ୍ଚିମ ଭାରତର ଯାତ୍ରୀମାନେ ଆସିଲାଶବେଳେ ସାଧୁ ମାଗେ ଦରଶନ ମହାପରସାଦ - ଗୀତ ଗାଇ ଗାଇ ଆସୁଥିଲେ । ପ୍ରଭୁ ଜଗନ୍ନାଥ ହିଁ ଆଚାଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କର ଦେବତା । ଭେଦଭାବ ବିରୁଦ୍ଧରେ ପୁରୁଷୋତ୍ତମ ପୀଠ କାଳ କାଳ ଧରି ଯୁଦ୍ଧ ଘୋଷଣା କରି ଆସିଛି ।

'କାହୁଁ ଭିଆଇଲୁ କ୍ଷେତ୍ର ତୋହର
ଚଉଦ ଭୁବନ ମଧୁ ବାହାର ।
ନାଥ ତୋ' କ୍ଷେତ୍ରେ ବଡ଼ ସାନ ନାହିଁ
ବ୍ରାହ୍ମଣ ଚାଣ୍ଡାଳ ଯେ' ସରି ଦୁଇ ।।'

ଆଚାର୍ଯ୍ୟ ରାମାନୁଜ ଉଦାର କଣ୍ଠରେ କହିଲେ - 'ନ ଜାତି କାରଣଂ ଲୋକେ ଗୁଣାଃ କଲ୍ୟାଣ ହେ ତ ବଡ଼ ।' ଜାତି କେବଳ କଥା ନୁହେଁ କି କଲ୍ୟାଣଦାୟକ ମଧ ନୁହେଁ କିନ୍ତୁ ଗୁଣ ହିଁ କଲ୍ୟାଣ ଦାୟକ ।

ଜଗତର ନାଥ ଜଗନ୍ନାଥ ସେହି ଭାବନାର ପ୍ରତୀକ ଭାବରେ ରତ୍ନସିଂହାସନ ଉପରେ ବସି ପତିତଜନଙ୍କୁ ଉଦ୍ଧାର କରିବା ପାଇଁ ସତତ ତତ୍ପର । ସେହି ଜଗନ୍ନାଥ ମଧ ନିର୍ଗୁଣ ବ୍ରହ୍ମ । ସେ ନିରାକାର । ସେ ହିଁ ପରମ ବ୍ରହ୍ମ । ଏହି ବ୍ରହ୍ମଙ୍କର ହାତ ନାହିଁ ମାତ୍ର ସମସ୍ତ ଦ୍ରବ୍ୟ ଗ୍ରହଣ କରନ୍ତି । ତାଙ୍କର ପାଦ ନାହିଁ କିନ୍ତୁ ବେଗଗାମୀ ଅଟନ୍ତି ଏବଂ କାନ ନଥାଇ ବି ସବୁକଥା ଶୁଣିପାରନ୍ତି । ଅବଶ୍ୟ ସେ ସମସ୍ତ ଜାଣନ୍ତି । ତାଙ୍କୁ ଅଗୋଚର କିଛି ନାହିଁ ଏ ଜଗତରେ ।

ଏହି ପୁରୁଷୋତ୍ତମ କ୍ଷେତ୍ରର ବିଭିନ୍ନ ଆଚାର ବିଚାରରେ ଧର୍ମଗତ, ସଂସ୍କାରଗତ ତଥା ଗୋଷ୍ଠୀଗତ ଅନୁଚିନ୍ତାକୁ ଆଦୌ ପ୍ରାଧାନ୍ୟ ଦିଆଯାଇନାହିଁ । ଏଠାରେ ସମସ୍ତ ଦେବାଦେବୀ ସମାନ ଅଧିକାର ଏବଂ ପ୍ରାଧାନ୍ୟ ଲାଭ କରି ସମସ୍ତେ ଶ୍ରୀଜଗନ୍ନାଥଙ୍କର ଅନୁଷ୍ଠାନରେ ବିଲୀନ ହୋଇଯାଇଛନ୍ତି । ଏଠାରେ ଅନ୍ୟ କେହି ଦେବଦେବୀ ପ୍ରାଧାନ୍ୟ ପାଇନାହାନ୍ତି । ଅଦ୍ଭୁତ ମହିମା ଏହି ବିରାଟ ପୁରୁଷଙ୍କର । ଏହି ଜଗନ୍ନାଥ ଧାମକୁ ଯୁଗେ ଯୁଗେ କେତେ ସାଧୁ, ସନ୍ଥ, ମହାତ୍ମା, ସନ୍ନ୍ୟାସୀ ଆସିଛନ୍ତି ମାତ୍ର କେହି ଏଠାରୁ ହତାଶ ହୋଇ ରିକ୍ତ ହସ୍ତରେ ଫେରିନାହାନ୍ତି । ଅବଶ୍ୟ ସେମାନେ ସବୁ ସେଠାକୁ ଆସି ସେମାନଙ୍କର ମତ ଓ ଦର୍ଶନ ସାବ୍ୟସ୍ତ କରିବାକୁ ଯାଇ ଦେଖିଛନ୍ତି, ଯାହା କିଛି ସେମାନଙ୍କର କହିବାର କଥା ଥିଲା ସେ ସମସ୍ତ ସେମାନଙ୍କ ଆଗରୁ ସେଠାରେ କୁହାଯାଇସାରିଛି ।

ରତ୍ନସିଂହାସନରେ ସାଧାରଣ ଭକ୍ତ ଚାରିମୂର୍ତ୍ତିଙ୍କୁ ପୂଜା ଆରାଧନା କଲେ ହେଁ ଦାର୍ଶନିକ ବିଚାରରେ ସେ ଜଣେ । ସେ ପୁରୁଷୋତ୍ତମ ସେ ହିଁ ଜଗନ୍ନାଥ । ଏଠାରେ ସମସ୍ତ ଜଗନ୍ନାଥଙ୍କର । ସେବା, ପୂଜା ଓ ନାନା ଅନୁଷ୍ଠାନ ଜଗନ୍ନାଥଙ୍କ ନାମରେ ହିଁ ପରଚିତ । ବଳଭଦ୍ର, ସୁଭଦ୍ରା ବା ସୁଦର୍ଶନଙ୍କୁ କେହିବି ଜଗନ୍ନାଥଙ୍କଠାରୁ ବାଦ୍ ଦେଇ ଦେଖିପାରନ୍ତି ନାହିଁ । ଯେହେତୁ -

'ଜ' କାରଶ୍ଚ ଜଗନ୍ନାଥ
'ଗ' କାର ବଳଦେବଙ୍କ
ଭଦ୍ରା 'ନ'କାର ଭାବେନ
'ଥ' କାରଣ ସୁଦର୍ଶନ

ଯଦିଓ ନାନାମତ ଗୋଷ୍ଠୀ ଦର୍ଶନରେ ଆସ୍ଥା ପୋଷଣ କରୁଥିବା ଆଚାର୍ଯ୍ୟମାନେ ପୁରୀ ଜଗନ୍ନାଥ ପୀଠର ସମନ୍ୱୟ ଦର୍ଶନକୁ ପ୍ରଥମେ ଖୁବ୍ ସହଜରେ ଗ୍ରହଣ କରିପାରିନାହାନ୍ତି, କିନ୍ତୁ କାଳକ୍ରମେ ଏମାନଙ୍କର ଉପଲବ୍ଧିକୁ ଆସିଗଲା କି ସମଗ୍ର ଜଗତକୁ ପ୍ରେମର ମନ୍ତ୍ର ସମନ୍ୱୟର ଉଦାରବାଣୀ ପ୍ରଚାର କରି ତା'ର ଆଚାର, ଅନୁଷ୍ଠାନ, ଦର୍ଶନ ଓ ବିଚାରରେ କାର୍ଯ୍ୟକାରୀ କରି ଅପୂର୍ବ ସାଫଲ୍ୟ ଅର୍ଜନ କରିଚାଲୁଛି । ପୁରୁଷୋତ୍ତମ ପୀଠର ଶ୍ରୀଜଗନ୍ନାଥ ଯେ କେଉଁ କାଳରୁ ଏ ଦେଶର ସାମାଜିକ ଜୀବନରେ ମର୍ଯ୍ୟାଦାବନ୍ତ ଏବଂ ପୂଜିତ ।

ଏକଥା ସମସ୍ତେ ନିଶ୍ଚୟ ମୁକ୍ତ କଣ୍ଠରେ ସ୍ୱୀକାର କରିବେ, ପୃଥିବୀରେ ଏହି ପୁରୁଷୋତ୍ତମ ପୀଠ ଅଦ୍ୱିତୀୟ ଏବଂ ଅନନ୍ୟ ଅସାଧାରଣ ।

ବିଶେଷ କରି ନାନାଜାତି ଓ ଗୋଷ୍ଠୀରେ ଶତଧା ବିଭକ୍ତ ଏହି ଭାରତବର୍ଷକୁ ଏହି କ୍ଷେତ୍ରର ଅପୂର୍ବ ଦାନ ହେଉଛି ସାମ୍ୟଭାବ ଓ





ସମନ୍ୱୟ ଚିନ୍ତା । ସେଥିପାଇଁ ତ୍ରିଲୋକରେ ଏହି ତୀର୍ଥକ୍ଷେତ୍ର ଦୁର୍ଲ୍ଲଭ ବୋଲି ବିଶ୍ୱାସ କରାଯାଏ ।

ଏହି ପୁଣ୍ୟ ଧାମରୁ ନୂତନ ଆଲୋକ ବିଚ୍ଛୁରିତ ହେଉଛି । ଶ୍ରୀଜଗନ୍ନାଥ ସମସ୍ତଙ୍କର । ଯେହେତୁ ସେ ଜଗତର ନାଥ । ସେ କୌଣସି ଧର୍ମର ନୁହନ୍ତି । ସେ ହେଉଛନ୍ତି ସମଗ୍ର ମାନବୀୟ ପରମ୍ପରାର । ମାନବ ସମାଜର ସଂଚିତ ଏବଂ ପରୀକ୍ଷିତ ସମସ୍ତ ପ୍ରକାର ଦର୍ଶନ ଏଠାରେ ନ୍ୟାସ ହୋଇଛି । ଯାହାଙ୍କ କଥାରେ ସବୁ ଧର୍ମ କହିଚାଲିଛନ୍ତି - ପାପଠାରୁ ଦୂରରେ ରହ । ସମସ୍ତଙ୍କୁ ଭଲ ପାଅ । ସମସ୍ତଙ୍କୁ ଆପଣାର କରି ଶିଖ ।

ଏଠାରେ ବ୍ରାହ୍ମଣ ଏବଂ ଚଣ୍ଡାଳ ଭିତରେ କୌଣସି ପ୍ରକାର ଭେଦ ରଖାଇ ଦିଆଯାଇନାହିଁ । ସମଗ୍ର ଜଗତ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପ୍ରେମ ଓ ମୈତ୍ରୀର ଐଶ୍ୱର୍ଯ୍ୟ ଗ୍ରହଣ କରୁ ଏବଂ ଯେଉଁମାନେ ସଂସ୍କୃତି କ୍ଷେତ୍ରରେ ନେତୃତ୍ୱ ଦେବା ପାଇଁ ଅଗ୍ରସର ହେଉଛନ୍ତି ସେହିମାନେ ପ୍ରଥମେ ଏହି ପ୍ରକାର ପ୍ରତିଜ୍ଞା କରି ଅକପଟ ହୃଦୟରେ ଶାନ୍ତିର ବାଣୀ ପ୍ରଚାର କରନ୍ତୁ ସମଗ୍ର ମାନବ ସମାଜ ପାଇଁ ।

ଏହି ପୃଥିବୀରେ ମନୁଷ୍ୟର ବାହ୍ୟ ରୂପଟା ହିଁ କେବଳ ତା'ର ପୂର୍ଣ୍ଣତା ନୁହେଁ । ମନୁଷ୍ୟର ଏକ ଚତୁର୍ଥାଂଶ ମାତ୍ର ପ୍ରକଟିତ । ଅପର ତୃତୀୟାଂଶ ଅନନ୍ତତାର ଗର୍ଭ ମଧ୍ୟରେ ନିହିତ ଅଛି । ତେଣୁ ସେ କେବଳ ବ୍ୟକ୍ତିବିଶେଷ ମାତ୍ର ନୁହେଁ । ସେ ବିଶ୍ୱମାନବ ସହ ଏକାତ୍ମ । ବିଶ୍ୱମାନବର ପ୍ରେରଣାରେ ସେ ପ୍ରକୃତିର ସୀମାକୁ ଅତିକ୍ରମ କରି ଚିରନ୍ତନ ସତ୍ୟର ସନ୍ଧାନୀ ହୋଇପାରେ । ଜୀବନରେ ସତ୍ୟ, ଶିବ, ସୁନ୍ଦରର ମହତ୍ୱ ମଧ୍ୟ ଉପଲବ୍ଧି କରିପାରେ । ଜୀବନର ଲକ୍ଷ୍ୟ ମହାନ୍, ଅନନ୍ତ । ମାନବ ପ୍ରାଣର ଚିରନ୍ତନଦ୍ୱନ୍ଦ୍ୱ ମଧ୍ୟରେ ଗୋଟିଏ ପଟେ ଅହଂଭାବ ସମ୍ୱଳିତ ବ୍ୟକ୍ତି ପୁରୁଷଟି ଓ ଅନ୍ୟଆଡ଼େ ଉଦାର ଭାବଧାରା ପୁଷ୍ଟ ବିଶ୍ୱମାନବ ସତ୍ତା, ଯାହାକି ଆଲୋଡ଼ନ ସୃଷ୍ଟି କରିଥାଏ ତା'ର ଅନ୍ତର ଭିତରେ । ଏହି ପ୍ରକାର ଆଲୋଡ଼ନରେ ନିଜର ପ୍ରକୃତ ମହିମା ତଥା ବୈଶିଷ୍ଟ ପ୍ରକଟ କରିବାର ଆକାଂକ୍ଷା ମନୁଷ୍ୟଠାରେ ଅଦମ୍ୟ । ବ୍ୟକ୍ତି ପୁରୁଷଟିର ଅନ୍ତରାଳରେ ଯେ ଏକ ମହାତ୍ମା ଲୁକ୍କାୟିତ ରହିଛି । ତେଣୁ ସେ ବ୍ୟକ୍ତିଗତ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ସ୍ଥାନରେ ବିଶ୍ୱପ୍ରାଣତାକୁ ଅନୁଭବ କରିପାରିଥାଏ ।

ଅହଂଭାବ ପରିତ୍ୟାଗ କରି ସମୂହ ମାନବ ଗୋଷ୍ଠୀ ସହ ଏକାତ୍ମତା ସ୍ଥାପନ କରିବା ପାଇଁ ଆକାଂକ୍ଷିତ ହୋଇପଡ଼େ । ଜୀବନରେ ସୌନ୍ଦର୍ଯ୍ୟ ବୀରତ୍ୱ ତଥା ତ୍ୟାଗର ମହିମା ମଧ୍ୟ ଦେଇ ଆତ୍ମିକ ଉତ୍କର୍ଷ ପ୍ରକଟ କରି ମାନବିକତାର ମହତ୍ୱ ସମ୍ବନ୍ଧରେ ସେ ସଚେତନ ହୋଇଥାଏ । ନିଜର ପ୍ରାଣକୁ ବିକାରମୁକ୍ତ କରି ଚତୁଃପାର୍ଶ୍ୱରୁ ସମସ୍ତ ଅଶୁଚି ଓ ବିକ୍ଷୋଭକୁ ଦୂର କରେ । ବାସ୍ତବ ଜୀନର ସତ୍ୟ ଦର୍ଶନ ନିମନ୍ତେ କେବଳ ନୁହେଁ ଆଧାତ୍ମିକ ସତ୍ୟ ଉପଲବ୍ଧି ପଥରେ ମଧ୍ୟ ଏହା ସହାୟକ ହୁଏ ।

'ତସ୍ମାଦ୍ ବୈବିଦ୍ୟାନ୍ ପୁରୁଷ ମିଦଂ ବ୍ରହ୍ମେତି ମନ୍ୟତେ ।'

ମନୁଷ୍ୟକୁ ବ୍ରହ୍ମଙ୍କର ପ୍ରକାଶ ଭାବେ ଗ୍ରହଣ କରୁଥିବା ବ୍ୟକ୍ତି ହିଁ ନିଶ୍ଚୟ ବିଦ୍ୱାନ ବା ପଣ୍ଡିତ । ମନୁଷ୍ୟଠାରେ ସୋ□ହିଁ ଏହି ତତ୍ତ୍ୱ ପ୍ରକାଶିତ । ମନୁଷ୍ୟ ହିଁ ବ୍ରହ୍ମଙ୍କର ପ୍ରତୀକ । ତେବେ ମନୁଷ୍ୟ ଜୀବନର ପରମ ଲକ୍ଷ୍ୟ ଅନନ୍ତ ଆଦର୍ଶ ଓ ଉପଲବ୍ଧି ପୂର୍ବକ ଜୀବନକୁ କମନୀୟ ଓ କଲ୍ୟାଣମୟ କରିବା । ମାନବିକ ଶକ୍ତି ଓ ସାମର୍ଥ୍ୟର ସଦୁପଯୋଗ ପୂର୍ବକ ଜୀବନରେ ମହତ୍ତ ଆଦର୍ଶର ନିକଟବର୍ତ୍ତୀ ହେବା ଓ ପରମ ପିତା ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟ ସଫଳ କରିବା ମାନବ ପ୍ରାଣର ପରମ କାମନା ଓ ଚରମ ସାର୍ଥକତା । ସତ୍ୟାନୁସନ୍ଧାନ, ମାନବ କଲ୍ୟାଣ, ସ୍ୱଦେଶ ସେବା ଓ ଆଦର୍ଶର ଅନୁସରଣ ଫଳରେ ମାନବ ଚିତ୍ତର ସଂକୀର୍ଣ୍ଣତା ଦୂର ହୋଇଥାଏ । ବ୍ୟକ୍ତିତ୍ୱର ବିକାଶରେ ହିଁ ବ୍ୟକ୍ତି ପୁରୁଷର ସଫଳ ପ୍ରକାଶ ସମ୍ଭବପର । ତେଣୁ ଜୀବନର ମୂଲ୍ୟ ସଂପର୍କରେ ଚେତନା ଓ ସ୍ୱକୀୟ ମହତ୍ୱ ସଂପର୍କରେ ଧାରଣା ପୋଷଣ କରି ସ୍ୱୀୟ ପ୍ରକାଶକୁ ସାର୍ଥକ ଓ ଜଗତ ହିତ କାର୍ଯ୍ୟାନୁଷ୍ଠାନ ହିଁ ମନୁଷ୍ୟର ଲକ୍ଷ୍ୟ ହେବା ବାଞ୍ଛନୀୟ ।

ପ୍ରତ୍ୟେକ ସ୍ୱୀୟ ଉତ୍କର୍ଷ ସମ୍ବନ୍ଧରେ ସଚେତନ ହେଲେ ଉନ୍ନତ ଜୀବନ ସମ୍ଭବ ହେବ । ସଂସାର ଈଶ୍ୱରଙ୍କର ନଗରୀ ବା ସ୍ୱର୍ଗ ରାଜ୍ୟରେ ପରିଣତ ହୋଇପାରିବ ।

ମନୁଷ୍ୟକୁ ଆଲୋକାଭିମୁଖୀ କରାଇ ଉନ୍ନତ ଜୀବନର ସନ୍ଧାନ ଦେବା ଧର୍ମର ଲକ୍ଷ୍ୟ ।

ଯାହାଦ୍ୱାରା ମାନବ ଜୀବନରେ ଦୟା, ଭାତୃ ଭାବ, ସୌହାର୍ଦ୍ଦ୍ୟ, ପ୍ରେମ ଓ ଶାନ୍ତିର ଉତ୍କର୍ଷକୁ ସେ ମୁକ୍ତ କଣ୍ଠରେ ସ୍ୱୀକାର କରିବ ।

ତତ୍ପରେ ମାନବାତ୍ମା ମଧ୍ୟରେ ବିଶ୍ୱାତ୍ମାଙ୍କର ଆବିର୍ଭାବକୁ ସ୍ୱୀକାର କରିହେବ । ତାହାହିଁ ମାନବତାର ଚରମ ପ୍ରେରଣା ଓ ପରମ ସାର୍ଥକତା । ସେହି ବିରାଟ ମାନବଙ୍କର ଅନୁଧ୍ୟାନ କଲେ ମନୁଷ୍ୟ ପ୍ରାଣର ସଂକୀର୍ଣ୍ଣ ଅହଂ ସର୍ବସ୍ୱତା ଦୂର ହେବା ସହିତ ମାନବବାଦ ଧର୍ମର ମହତ୍ୱ ପ୍ରତିଷ୍ଠିତ ହୋଇପାରିବ । ଯାହାକି ଆମର ମହାନ୍ ଜଗନ୍ନାଥ ସଂସ୍କୃତିରେ ସ୍ୱାତନ୍ତ୍ର୍ୟ ... ଏବଂ ଯୁଗେ ଯୁଗେ ମାନବ ବାଦର ମହାଭାବରେ ଏହି ଗୁପ୍ତ ମହାମନ୍ତ୍ର ନିଃଶବ୍ଦରେ ଶିକ୍ଷା ଦେଇଚାଲିଛି ସମଗ୍ର ଜଗତବାସୀଙ୍କୁ କାଳ କାଳକୁ ... ।

ସଂପାଦିକା
ନବରବି



# ଶ୍ରୀକ୍ଷେତ୍ରର ପଞ୍ଚତୀର୍ଥ

ଡକ୍ଟର ନମିତା ଶତପଥି

''ସାକ୍ଷାତ ବୈକୁଣ୍ଠ ରୂପଂ ତଦ୍‌କ୍ଷେତ୍ରଂ ଶ୍ରୀପୁରୁଷୋତ୍ତମ
କ୍ଷେତ୍ରାଣାମ୍ ଅପି କ୍ଷେତ୍ରଂ ଚ ତୀର୍ଥନାମପି ଯଦ୍ ବରମ୍ ।''

ଯୁଗେ ଯୁଗେ ଭାରତବର୍ଷରେ ସର୍ବଧର୍ମ ସମନ୍ୱୟର ପାବନପୀଠ ଶ୍ରୀକ୍ଷେତ୍ର-ତୀର୍ଥରାଜର ମହିମାରେ ମହିମାନ୍ୱିତ ହୋଇଛି । ବିଶ୍ୱପତି ପ୍ରଭୁ ଶ୍ରୀଜଗନ୍ନାଥ ଯେହେତୁ ଶ୍ରୀକ୍ଷେତ୍ରରେ ବିରାଜମାନ ସେଥିପାଇଁ ପ୍ରଭୁଙ୍କର ନିତ୍ୟଲୀଳା କ୍ଷେତ୍ରର ପ୍ରତିରେଣୁ କଣାରେ ସେହି ପାବନତ୍ୱର ପବିତ୍ର ବିଭୂତି ରହିଛି । ତେଣୁ ଯଥାର୍ଥରେ କୁହାଯାଇଛି -

''ସକଳତୀର୍ଥ ତୋ ଚରଣେ
ବଦ୍ରିକା ଯିବି କି କାରଣେ ।''

ଏବଂ - ''ସକଳତୀର୍ଥ ଘେନିକରି ନୀଳକନ୍ଦରେ ବିଜେହରି ।''

ଶ୍ରୀକ୍ଷେତ୍ରର ତୀର୍ଥତ୍ୱ ସଂପର୍କରେ ବହୁ ଧର୍ମଶାସ୍ତ୍ର ଏବଂ ବହୁ ବେଦ ପୁରାଣମାନଙ୍କରେ ପତିପାଦିତ ହୋଇଛି । ଯଥା- ନାରଦୀୟ ପୁରାଣରେ ଲେଖାଅଛି -

''ଦଶଯୋଜନ ବିସ୍ତୀର୍ଣ୍ଣ କ୍ଷେତ୍ରଂ ପରମ ଦୁର୍ଲ୍ଲଭମ
ନକ୍ଷତ୍ରଣାଂ ଯଥା ସୋମଃ ସରସାଂ ସାଗରା ଯଥା ।
ତଥା ସମସ୍ତ ତୀର୍ଥାନାଂ ବରିଷ୍ଟଂ ପୁରୁଷୋତ୍ତମ ।।''

ଉପରୋକ୍ତ ସିଦ୍ଧାନ୍ତରୁ ପ୍ରମାଣିତ ହେଉଛି ଯେ, ଶ୍ରୀକ୍ଷେତ୍ର ହେଉଛି ଦେବଦୁର୍ଲ୍ଲଭ କ୍ଷେତ୍ର ଏବଂ ସମସ୍ତ ତୀର୍ଥର ମୌଳିକତା ତୀର୍ଥରାଜ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ହିଁ ପ୍ରକଟିତ ହୋଇଥିବା ଯୋଗୁଁ ଶ୍ରୀକ୍ଷେତ୍ର ସକଳତୀର୍ଥର ତୀର୍ଥରାଜ ଭାବରେ ଯୁଗେ ଯୁଗେ ସଂସାରରେ ଖ୍ୟାତି ଅର୍ଜନ କରିପାରିଛି ।

ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଶ୍ରୀକ୍ଷେତ୍ରରେ ବହୁକାଳରୁ ଅନେକ ତୀର୍ଥର ସମାହାର ଘଟିଥିଲେ ହେଁ ମୁଖ୍ୟତଃ ପାଞ୍ଚୋଟି ତୀର୍ଥର ପ୍ରାଧାନ୍ୟ ଓ ମାହାତ୍ମ୍ୟ ବିଭିନ୍ନ ପୁରାଣ ଶାସ୍ତ୍ରମାନଙ୍କରେ ଉଲ୍ଲେଖ ରହିଥିବା ଦେଖାଯାଏ । ହଳଧରଙ୍କ 'ସ୍ମୃତି ଦର୍ପଣ'ରେ ଉଲ୍ଲେଖ ଅଛି -

''ମାର୍କଣ୍ଡେୟା-ବଟକୃଷ୍ଣେ ରୋହିଣ୍ୟାଂ ଚ ମହୋଦଧୌ
ଇନ୍ଦ୍ରଦ୍ୟୁମ୍ନ ସରେଃସ୍ନାତ୍ୱା ପୁନର୍ଜନ୍ମଂ ନ ବିଦ୍ୟତେ ।''



ସେହିପରି 'ବ୍ରହ୍ମ ପୁରାଣ' ରେ ଉଲ୍ଲେଖ ଅଛି -

''ମାର୍କଣ୍ଡେୟା[illegible]ଟ କୃଷ୍ଣୋ ରୌହିତେୟା ମହୋଦଧିଃ
ଇନ୍ଦ୍ରଦ୍ୟୁମ୍ନ ସରଶ୍ଚୈବ ପଞ୍ଚତୀର୍ଥ ବିଧିସ୍ମୃତଃ''

(ମାର୍କଣ୍ଡେୟ ଋଷିଙ୍କ ଦ୍ୱାରା ଖନନ ହୋଇଥିବା ଅବଃ ବା ଗର୍ତ୍ତରେ ସ୍ନାନ, କୃଷ୍ଣ ଅର୍ଥାତ୍ ଶ୍ରୀଜଗନ୍ନାଥ, ରୋହିତେୟ ଅର୍ଥାତ୍ ଶ୍ରୀବଳଭଦ୍ର, ମହୋଦଧି ଅର୍ଥାତ୍ ସମୁଦ୍ର ଏବଂ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ)

ବିଭିନ୍ନ ଶାସ୍ତ୍ରରେ ପଞ୍ଚତୀର୍ଥର ନାମ ବିଭିନ୍ନ ପ୍ରକାର ଦିଆଯାଇଛି । ଯଥା- 'ସ୍କନ୍ଦ ପୁରାଣ'ରେ ପଞ୍ଚତୀର୍ଥର ବର୍ଣ୍ଣନା ଯଥା- ମାର୍କଣ୍ଡେୟ ପୁଷ୍କରିଣୀରେ ସ୍ନାନ, ଅକ୍ଷୟ ବଟଙ୍କୁ ଦର୍ଶନ, ଶ୍ରୀମନ୍ଦିର ଭିତରେ ଗରୁଡ଼ ଓ ତିନି ଠାକୁରଙ୍କୁ ଦର୍ଶନ, ମହୋଦଧି ଅର୍ଥାତ୍ ସମୁଦ୍ରରେ ସ୍ନାନ ଏବଂ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀରେ ସ୍ନାନ । ଏହିପରି ବିଭିନ୍ନ ଶାସ୍ତ୍ରକାରଙ୍କ ରଚନାରେ ଶ୍ରୀକ୍ଷେତ୍ରର ପଞ୍ଚତୀର୍ଥ ବିଷୟରେ ଉଲ୍ଲେଖ ରହି ଥିଲେ ହେଁ ତିନୋଟି ତୀର୍ଥ ହିଁ ନିର୍ବିବାଦରେ ଗୃହୀତ ହୋଇଛି ଯଥା- ମାର୍କଣ୍ଡେୟ ପୁଷ୍କରିଣୀ, ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ଓ ମହୋଦଧି ଅର୍ଥାତ୍ ସମୁଦ୍ର । ଉକ୍ତ ତିନୋଟି ତୀର୍ଥକୁ ଛାଡିଦେଲେ ଅନ୍ୟ ଦୁଇଟି ତୀର୍ଥ ସଂପର୍କରେ ବହୁମତ ପାର୍ଥକ୍ୟ ରହିଛି । କେହି କେହି ଅକ୍ଷୟ ବଟ ମୂଳସ୍ଥ ବଟଃଶ୍ୱର ଦେବଙ୍କୁ ଏବଂ ମନ୍ଦିର ଭିତରେ ଗରୁଡ଼ ଓ ତିନି ଠାକୁରଙ୍କୁ ଓ କେହି କେହି ଶ୍ୱେତଗଙ୍ଗା ତଥା ରୋହିଣୀ କୁଣ୍ଡକୁ, କେହି କେହି ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କୁ ପଞ୍ଚତୀର୍ଥର ଅନ୍ତର୍ଭୁକ୍ତ କରିଛନ୍ତି ।





ଶ୍ରୀକ୍ଷେତ୍ରର ପଞ୍ଚତୀର୍ଥ ମଧ୍ୟରୁ ମାର୍କଣ୍ଡେୟ ପୁଷ୍କରଣୀ ହେଉଛି ପ୍ରଥମ ତୀର୍ଥ । ଶାସ୍ତ୍ର ମତରେ ଜଗତ ପ୍ରଳୟ ଜଳରେ ବିଲୀନ ହୋଇଯାଉଥିବା ସମୟରେ ମାର୍କଣ୍ଡେୟ ଋଷି ଓ ମୁନି ପ୍ରଳୟ ଜଳରେ ଭାସି ଭାସି ଶ୍ରୀକ୍ଷେତ୍ରର ବଟବୃକ୍ଷ ନିକଟରେ ପହଞ୍ଚି ଦେଖିଲେ ଯେ ଭଗବାନ ବିଷ୍ଣୁ ଅଙ୍ଗୁଷ୍ଠ ପ୍ରମାଣ ପୁରୁଷ ରୂପେ ବଟ ବୃକ୍ଷର ଉର୍ଦ୍ଧ୍ୱଦେଶସ୍ଥିତ ଏକ ପତ୍ର ଉପରେ ଶୟନ କରିଛନ୍ତି । ସେଠାରେ ମାର୍କଣ୍ଡେୟ ଋଷି ପୁରୁଷ ରୂପୀ ଭଗବାନଙ୍କୁ ଦର୍ଶନ କରିବା ସମୟରେ ଏକ ଅଲୌକିକ ଆକର୍ଷଣ ଦ୍ୱାରା ସେ ତାଙ୍କର ମୁଖ ମଧ୍ୟରେ ପ୍ରବେଶ କରିଗଲେ । ମାର୍କଣ୍ଡେୟ ଋଷି ବହୁକାଳ ଧରି ସେହି ପୁରୁଷଙ୍କର ଗର୍ଭରେ ବିଚରଣ କରି ବହୁ ଅଲୌକିକ ଦର୍ଶନ କରି ମଧ୍ୟ ଆତ୍ମଦର୍ଶନ ଲାଭ କରି ପାଇଲେ ନାହିଁ । ଦୀର୍ଘ କାଳ ପରେ ସେହି ପୁରୁଷ ରୂପୀ ଭଗବାନଙ୍କ ଗର୍ଭରୁ ମାର୍କଣ୍ଡେୟ ଋଷି ବାହାରି ଭଗବାନଙ୍କୁ ଆତ୍ମଜ୍ଞାନ ଲାଭ ନିମନ୍ତେ ପ୍ରାର୍ଥନା କଲେ । ମାର୍କଣ୍ଡେୟ ଋଷିଙ୍କ ପ୍ରାର୍ଥନାରେ ଭଗବାନ ବିଷ୍ଣୁ କହିଲେ ଶ୍ରୀକ୍ଷେତ୍ର ମୋର ଅତିପ୍ରିୟ । ଏଠାରେ ସୃଷ୍ଟି ଓ ପ୍ରଳୟ ନାହିଁ । ଏଠାରେ ବାସ କଲେ ପୁନର୍ଜନ୍ମ ହୁଏ ନାହିଁ । ଭଗବାନ ବିଷ୍ଣୁଙ୍କଠାରୁ ଭକ୍ତବାଣୀ ଶୁଣି ମାର୍କଣ୍ଡେୟ ଋଷି ଶ୍ରୀକ୍ଷେତ୍ରରେ ବାସ କରିବାକୁ ନିଷ୍ପତ୍ତି ନେଲେ । ସ୍କନ୍ଦପୁରାଣରେ ବର୍ଣ୍ଣିତ ହୋଇଛି ଯେ, ସେ ବଟପତ୍ରଶାୟୀ ଭଗବାନ ବିଷ୍ଣୁ କହିଲେ, ମହାପ୍ରଳୟ ପର୍ଯ୍ୟନ୍ତ ମୁଁ ଏହି ପବିତ୍ର କ୍ଷେତ୍ରରେ ଅବସ୍ଥାନ କରିବି । ମହାପ୍ରଳୟ ପରେ ତୁମ୍ଭ ପାଇଁ ଗୋଟିଏ ନିତ୍ୟତୀର୍ଥ ତିଆରି କରିବି । ଏହି ତୀର୍ଥ ତୀରରେ ରହି ଯେ ମୋର ଦ୍ୱିତୀୟ ତନୁ ଶିବଙ୍କର ଆରାଧନା କରିବ, ସେ ହେବ ମୃତ୍ୟୁଞ୍ଜୟ ଶ୍ରୀଭଗବାନ ବିଷ୍ଣୁଙ୍କ ଶ୍ରୀମୁଖରୁ ଏହି କଥା ମାର୍କଣ୍ଡେୟ ମୁନି ଶୁଣି ବଟ ବୃକ୍ଷର ବାୟୁକୋଣରେ ହରିଙ୍କର ଗର୍ତ୍ତଟିଏ ତିଆରି କଲେ ଏବଂ ସେହି ଗର୍ତ୍ତ ପାଖରେ ରହି ଶିବଙ୍କୁ ଆରାଧନା କଲେ । ଯାହା ଫଳରେ ସେ ମୃତ୍ୟୁକୁ ଜୟ କରିଥିଲେ । ସେହି ଦିନଠାରୁ ସେ ଗର୍ତ୍ତଟି ମାର୍କଣ୍ଡେୟ ପୁଷ୍କରିଣୀ ନାମରେ ପରିଚିତ ହୋଇ ସେହି ପୁଷ୍କରିଣୀ କୂଳସ୍ଥ ଶିବ ମାର୍କଣ୍ଡେୟଶ୍ୱର ନାମରେ ପୂଜିତ ହୋଇ ଆସୁଛନ୍ତି । ସ୍କନ୍ଦ ପୁରାଣରେ ଆହୁରି ମଧ୍ୟ ବର୍ଣ୍ଣିତ ହୋଇଛି ଯେ ଏହି ପୁଷ୍କରିଣୀରେ ସ୍ନାନକରି ଶିବ ଦର୍ଶନ କଲେ ଅଶ୍ୱମେଧର ଫଳ ମିଳିଥାଏ । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସମୟରେ ବହୁ ପତିତ ଭକ୍ତ ପୁଷ୍କରିଣୀରେ ସ୍ନାନ କରି ଶିବଙ୍କ ଆରାଧନା କରି ବା ମାର୍କଣ୍ଡେୟଶ୍ୱରଙ୍କୁ ଦର୍ଶନ କରିବା ପରେ ରଥରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଜନ୍ମ ଜନ୍ମର ପାପକୁ ନାଶ କରିଥାଏ ବୋଲି ଅଦ୍ୟାବଧି ଲୋକ ବିଶ୍ୱାସ ରହିଛି ।

ଶ୍ରୀକ୍ଷେତ୍ରର ଦ୍ୱିତୀୟ ତୀର୍ଥ ହେଲେ ଶ୍ୱେତଗଂଗା । ଏଇ ପରମ ପବିତ୍ର ତୀର୍ଥର ଆବରଣରେ ଶ୍ୱେତ ମାଧବ, ମତ୍ସ୍ୟ ମାଧବ, ଗଂଗାମାତା ମଠ, ମୁକ୍ତିଶୀଳ ଓ ବାସୁଦେବ ସାର୍ବଭୌମ ଆଶ୍ରମ ପ୍ରତିଷ୍ଠିତ । ଶ୍ୱେତଗଂଗା ତୀର୍ଥର ଉତ୍ପତ୍ତି ସମ୍ବନ୍ଧରେ ପୌରାଣିକ ବର୍ଣ୍ଣନା ରହିଛି ଯେ, ସତ୍ୟଯୁଗରେ ଶ୍ୱେତ ନାମକ ବଳବାନ ସତ୍ୟସନ୍ଧ ମହାରାଜାଙ୍କ ରାଜତ୍ୱ କାଳରେ କପାଳ ଗୌତମ ନାମକ ତପସ୍ୱୀଙ୍କର ଏକ ମାତ୍ର ଶିଶୁ ପୁତ୍ରଙ୍କ ମୃତ୍ୟୁରେ ଦୁଃଖାଭିଭୂତ କପାଳ ଗୌତମଙ୍କୁ ଦେଖି ରାଜା ଶ୍ୱେତ ମୃତ ପୁତ୍ରର ପୁନରୁଦ୍ଧାର ନିମନ୍ତେ ଯମଲୋକକୁ ଯିବା ପାଇଁ ଉଦ୍ୟତ ହୋଇ ଶ୍ୱେତଶିବଙ୍କ ସନ୍ତୋଷ ପାଇଁ କଠୋର ତପ ଆରମ୍ଭ କରିଥିଲେ । ରାଜା ଶ୍ୱେତଙ୍କର ନିଷ୍ଠା ଓ ଭକ୍ତିରେ ଭଗବାନ ଶଙ୍କର ଆର୍ବିଭାବ ହୋଇଥିଲେ । ରାଜା ଋଷି ପୁତ୍ରଙ୍କ ପୁନର୍ଜୀବନ ପାଇଁ ପ୍ରାର୍ଥନା କରିବାରୁ ପ୍ରଭୁ ଶଙ୍କର ମୃତ ପୁତ୍ରର ଜୀବନ ଫେରାଇ ଦେଇଥିଲେ । ବହୁଦିନ ପରେ ସେହି ରାଜା ଶ୍ୱେତ ଦକ୍ଷିଣ ମହୋଦଧି ତୀରରେ ଶ୍ୱେତ ମାଧବ ବିଗ୍ରହ ପ୍ରତିଷ୍ଠା କରି ପୂଜା ଆରାଧନା କଲେ । ସେହି ଶ୍ୱେତ ମାଧବଙ୍କ ବିଗ୍ରହରେ ରାଜା ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାଙ୍କୁ ଆରୋପିତ କରି ସ୍ତବପାଠ କରୁଥିଲେ । ରାଜାଙ୍କର ଏହି ତତ୍ତ୍ୱମୟ ସ୍ତବପାଠରେ ଭଗବାନ ବିଷ୍ଣୁ ସନ୍ତୁଷ୍ଟ ହୋଇ ରାଜା ଶ୍ୱେତଙ୍କୁ ଚତୁର୍ଦ୍ଧାମୂର୍ତ୍ତିରେ ଦର୍ଶନ ଦେଇ ଥିଲେ । ଭଗବାନଙ୍କ ଦର୍ଶନରେ ରାଜା ଶ୍ୱେତ ନିଜ ଜୀବନକୁ ଧନ୍ୟ କରି ଓ ମୁକ୍ତି ପ୍ରଦାନ କାମନା ସହିତ ପରମ ପବିତ୍ର ମୁକ୍ତିପଦ ବୈଷ୍ଣବ ଭୂମି ଦାନ କରନ୍ତୁ ଯେଉଁଥିରେ ମୋର ଜୀବନ ଧନ୍ୟ ହେଉ ବୋଲି ପ୍ରଭୁଙ୍କ ନିକଟରେ ବର ମାଗିଥିଲେ । ରାଜା ଶ୍ୱେତଙ୍କ ଦୃଢ଼ ଭକ୍ତିରେ ସନ୍ତୋଷ ହୋଇ ଭଗବାନ ବିଷ୍ଣୁ ଶ୍ୱେତଗଂଗା ତୀର୍ଥର ପବିତ୍ରତମ ସ୍ଥାନ ପ୍ରଦାନ କରିଥିଲେ । ତେଣୁ ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି -

''ଶ୍ୱେତ ଗଙ୍ଗେତି ଗାସ୍ୟନ୍ତି ସର୍ବେତେ ଦେବନାବାଃ
କୁଶାଗ୍ରେଣାପି ରାଜେନ୍ଦ୍ର ଶ୍ୱେତ ଗାଙ୍ଗେୟ ସମ୍ଭୃତ''

ଭଗବାନ ବିଷ୍ଣୁ ରାଜା ଶ୍ୱେତଙ୍କୁ କହିଥିଲେ - ହେ ରାଜା, ତୁମେ ସେହି ଦିବ୍ୟ ସ୍ଥଳରେ ବାସକର ଓ ବୈଷ୍ଣବତ୍ୱ ପ୍ରାପ୍ତ ହୁଅ । ଯେଉଁ ମନୁଷ୍ୟ ବା ପ୍ରାଣୀ ଏହି ଶ୍ୱେତଗଙ୍ଗାରେ ସ୍ନାନକରି ଶ୍ୱେତ ମାଧବଙ୍କୁ ଦର୍ଶନ କରିବେ ସେ ବଟ ସାଗର ମଧ୍ୟସ୍ଥ ପୁରୁଷୋତ୍ତମ କ୍ଷେତ୍ର ପ୍ରାପ୍ତ ହୋଇ ଦେବାନ୍ତେ ମୋର ଶାନ୍ତିପ୍ରଦ ବୈକୁଣ୍ଠ ପ୍ରାପ୍ତି ହେବ -

ପୁରୁଷୋତ୍ତମ ପୁନଃ ପ୍ରାସ୍ୟ ବଟ ମୂଳେ[illegible]ସାଗରେ
ତ୍ୟକ୍ତ୍ୱାଦେହ ହରି ସ୍ମୃତ୍ୱା ତତଃ ଶାନ୍ତି ପଦଂ ବ୍ରଜେତ ।

ଶ୍ୱେତଗଙ୍ଗା କୂଳରେ ସେହି ମାଧବ ବିଗ୍ରହ ଆଜି ମଧ୍ୟ ଦର୍ଶନ ଦେଇ ଭକ୍ତମାନଙ୍କୁ କୃତାର୍ଥ କରୁଅଛନ୍ତି ।

ଶ୍ରୀକ୍ଷେତ୍ରର ତୃତୀୟ ତୀର୍ଥ ହେଲେ ରୋହିଣୀ କୁଣ୍ଡ । ଉକ୍ତ ତୀର୍ଥର ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ବ୍ରହ୍ମ ପୁରାଣ, ସ୍କନ୍ଦ ପୁରାଣ ଓ ଇନ୍ଦ୍ରନୀଳମଣି ପୁରାଣରେ ସ୍ୱୀକୃତ । ମନ୍ଦିର ଭିତରେ ଜଳକ୍ରୀଡା ମଣ୍ଡପ ପାଖରେ ଏହା ଅବସ୍ଥିତ । ଲୋକମୁଖରେ ଏହା ଗୁପ୍ତଗଙ୍ଗା ନାମରେ ନାମିତ । ଚତୁର୍ଭୁଜ କାକର ଛୋଟ ପଥର ମୂର୍ତ୍ତିଟିଏ ଏହି କୁଣ୍ଡ ମଧ୍ୟରେ ରହିଛି । କାକର ସମ୍ମୁଖରେ ଏକ ଚକ୍ର ଅଙ୍କିତ ହୋଇଥିବା ଦେଖାଯାଏ । କାକର ସମ୍ମୁଖସ୍ଥ ଦୁଇଟି ହାତରେ ଶଙ୍ଖଚକ୍ର ଚିହ୍ନ ବିଦ୍ୟମାନ, କିନ୍ତୁ ଏହାର ପଛରେ ଦୁଇଟି ହାତ ପରିବର୍ତ୍ତେ ଦୁଇଟି ଗୋଡ ରହିଛି ଏବଂ ସେଥିରେ କୌଣସି ଚିହ୍ନ ନାହିଁ । କେତେକ ଗବେଷକଙ୍କ ମତରେ ଏହି କାକର ମୂର୍ତ୍ତି ଶ୍ରୀଜଗନ୍ନାଥଙ୍କ ପ୍ରତିଷ୍ଠାର ପରବର୍ତ୍ତୀ କାଳରେ ନିର୍ମିତ ଏବଂ ଭୁଷଣ୍ଡ ନାମକ କାକ ଏହି ତୀର୍ଥ ଜଳରେ ନିପତିତ ହୋଇ ପରମ ଶକ୍ତି ଲାଭ କରିଥିଲେ । ଶଙ୍ଖାକୃତି ଶ୍ରୀକ୍ଷେତ୍ରର ନାଭି ଦେଶରେ ଉକ୍ତ ତୀର୍ଥ ବିରାଜିତ ଥିବା ଯୋଗୁଁ ପୌରାଣିକ ମତରେ ପ୍ରଳୟ କାଳ ଉପସ୍ଥିତ ହେଲେ ଏଠାରୁ ଜଳ ପ୍ଲାବିତ ହୋଇଥାଏ ଏବଂ ସୃଷ୍ଟି କାଳରେ ସଂସାରର





ସମସ୍ତ ଜଳକୁ ଧାରଣ କରିଥାଏ ବୋଲି କୁହା ଯାଇଛି । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ହୋଇଛି ଯେ ଏହି ପବିତ୍ର ତୀର୍ଥର ଉତ୍ତର ଦିଗରେ ଶବର ରାଜା ବିଶ୍ୱାବସୁ ପୂଜିତ ନୀଳମାଧବ ବିଗ୍ରହ ପୂଜା ପାଉଥିଲେ । ଏହି ପରମତୀର୍ଥ ସଂପର୍କରେ ସ୍କନ୍ଦ ପୁରାଣରେ ଉଲ୍ଲେଖ ରହିଛି ଯଥା -

''ରୋହିଣାଖ୍ୟଂ ମହାତୀର୍ଥଂ ସର୍ବପାପ ନାଶନମ୍
ଅତ୍ର ସ୍ନାତ୍ୱା ନରୋଜାତି ବୈକୁଣ୍ଠ ଭବନଂ ଦ୍ୱିଜ
ଏତସ୍ୟ ପୂର୍ବଭାଗେ୍ଦସୀ କଳ୍ପବୟୀ ବଟୋ ମହାନ୍
ଛାୟାଂ ଯସ୍ୟ ସମାକ୍ରମ୍ୟ ବ୍ରହ୍ମହତ୍ୟା ବ୍ୟାପୋହତି''

ପୁରାଣ ବିଚାର ଧାରାରେ ଲୋମଶ ମୁନିଙ୍କ ଶାପଗ୍ରସ୍ତ ଭୁଷଣ୍ଡ କାକ ନିକଟସ୍ଥ ବଟ ବୃକ୍ଷରୁ ନିପତିତ ହୋଇ ରୋହିଣୀ କୁଣ୍ଡର ବାରିପୂର୍ଣ୍ଣ ପ୍ରଭାବ ବଶତଃ ନାରାୟଣ ରୂପପ୍ରାପ୍ତ ହୋଇଥିଲା । ତା'ର ସ୍ମୃତି ସ୍ୱରୂପ କାକର ଏକ କ୍ଷୁଦ୍ର ପ୍ରସ୍ତର ମୂର୍ତ୍ତି ଏହି କୁଣ୍ଡ ମଧ୍ୟରେ ବର୍ତ୍ତମାନ ବିଦ୍ୟମାନ ରହିଛି । ମହାକବି ସାରଳା ଦାସ ତାଙ୍କ 'ମହାଭାରତ'ରେ ମଧ୍ୟ ସ୍ୱୟଂ ଭଗବାନଙ୍କ ମୁଖରେ ଏହି ତୀର୍ଥର ମାହାତ୍ମ୍ୟ ସଂପର୍କରେ ବର୍ଣ୍ଣନା କରି କହିଛନ୍ତି ।

''କୃଷ୍ଣ ବୋଇଲେ ଇନ୍ଦ୍ରଦ୍ୟୁମ୍ନକୁ ଘେନିଯା,
କାଲି ପ୍ରଭାତେ ରୋହିଣୀ କୁଣ୍ଡକୁ ଜଗିଥା ।
ରୋହିଣୀ କୁଣ୍ଡେ ଆମ୍ଭେ କାୟା ଯେ ବିସ୍ତାରୁ,
ଯେ ପିଣ୍ଡ ଗୋଟିକ କାଳେ ହୋଇବକ ଦାରୁ । ''

ଓଡ଼ିଆ 'ହରିବଂଶ' ପୁରାଣରେ ମଧ୍ୟ ଲେଖା ଅଛି ଯେ ଏହି ରୋହିଣୀ କୁଣ୍ଡର ଜଳଦ୍ୱାରା ବସୁ ଶବର ପ୍ରଥମେ ନୀଳ ମାଧବଙ୍କୁ ପୂଜା କରୁଥିଲେ । ଏହି ସବୁ କାରଣରୁ ଉକ୍ତ କୁଣ୍ଡ ଏକ ପବିତ୍ର ତୀର୍ଥ ଭାବରେ ଖ୍ୟାତି ଲାଭ କରିଛି ।

ଶ୍ରୀକ୍ଷେତ୍ରର ଚତୁର୍ଥ ତୀର୍ଥ ଭାବରେ ମହୋଦଧି ଅର୍ଥାତ୍ ସମୁଦ୍ର ସଂପର୍କରେ ବିଭିନ୍ନ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି । 'ରାମାୟଣ' ମତରେ ସାଗର ପୁତ୍ରମାନେ ଏହାକୁ ଖନନ କରିଥିବାରୁ ଏହାର ନାମ ସାଗର । ସ୍କନ୍ଦ ପୁରାଣ ମତରେ ମହୋଦଧି ମଧ୍ୟରେ ଭଗବାନ ବିଷ୍ଣୁ ଚତୁର୍ଭୁଜ ରୂପକୁ ଧାରଣ କରି ଲକ୍ଷ୍ମୀଙ୍କ ସହିତ ସର୍ବଦା ଅନନ୍ତ ଶୟନରେ ବିରାଜମାନ କରିଥାନ୍ତି ବୋଲି ମହୋଦଧି ଅର୍ଥାତ୍ ସମୁଦ୍ର ସମସ୍ତ ତୀର୍ଥଙ୍କ ମଧ୍ୟରୁ ଅନ୍ୟତମ । ତେଣୁ ଶ୍ରୀକ୍ଷେତ୍ରର ସମୁଦ୍ରକୁ ତୀର୍ଥରାଜ ମହୋଦଧି କୁହାଯାଏ । ବ୍ରହ୍ମପୁରାଣରେ ତୀର୍ଥରାଜ ମହୋଦଧି ପରମ ପବିତ୍ର ବୋଲି ବର୍ଣ୍ଣିତ ହୋଇଛି । ସେତେବେଳେ ଆର୍ଯ୍ୟ ଜାତିର ଜ୍ଞାନ ବିଭବ ଅସୁର ସଭ୍ୟତା ଦ୍ୱାରା ନଷ୍ଟଭ୍ରଷ୍ଟ ହୋଇଯାଇଥିଲା । ସେହି ସମୟରେ ପ୍ରଭୁ ଭଗବାନ ବିଷ୍ଣୁ ମତ୍ସ୍ୟାବତାର ରୂପ ଧାରଣ କରି ଏହି ମହୋଦଧିରେ ଆର୍ବିଭୂତ ହୋଇ ବେଦ ରୂପକ ଜ୍ଞାନ ଭଣ୍ଡାରକୁ ଉଦ୍ଧାର କରିଥିଲେ । ଉକ୍ତ ବିଷୟ ବ୍ରହ୍ମ ପୁରାଣରେ ଉଲ୍ଲେଖ ରହିଛି -

''ବେଦାନାଂ ହରଣାର୍ଥାୟ ରସାତଳ ତଳେ ସ୍ଥିତଂ,
ଚିନ୍ତୟିତ୍ୱା କ୍ଷତି ଚ ସମ୍ୟକ ତସ୍ମିନ ସ୍ଥାନେ ଦ୍ୱିଜୋତ୍ତମ
ଆଦ୍ୟା ବତରଣଂ ରୂପଂ ମାଧବଂ ମତ୍ସ୍ୟ ରୂପିଣମ୍,
ପ୍ରଣମ୍ୟ ପ୍ରମପେ ଭୂତ୍ୱା ସର୍ବ ଦୁଖାଦି ମୁଚ୍ୟତେ
ପ୍ରୟାତି ପରମଂ ସ୍ଥାନଂ ଯତ୍ର ଦେବୋ ହରିଃ ସ୍ୱୟଂ,
କାଳେ ପନରିହା୍ଖ୍ୟାତୋ ରାଜା ଖ୍ୟାତନମ୍ । ''

ବିଭିନ୍ନ ପୁରାଣ ମାନଙ୍କରେ ବର୍ଣ୍ଣିତ ଅଛି ଯେ ସତ୍ୟ ଯୁଗରେ ଦେବତାମାନେ ସମୁଦ୍ର ମନ୍ଥନ କରିବା ସମୟରେ ମହାଲକ୍ଷ୍ମୀଙ୍କୁ ସମୁଦ୍ର ମଧ୍ୟରୁ ଉଦ୍ଧାର କରିଥିଲେ । ପରେ ମହାଲକ୍ଷ୍ମୀଙ୍କୁ ସ୍ୱୟଂ ଭଗବାନ ବିଷ୍ଣୁ ବିବାହ କରିଥିଲେ । ତେଣୁ ମହାଲକ୍ଷ୍ମୀ ସମୁଦ୍ରରାଜ ବରୁଣଙ୍କ କନ୍ୟା । ଲୋକ ଗାଥାରେ ମଧ୍ୟ ମହୋଦଧିକୁ ମହାଲକ୍ଷ୍ମୀଙ୍କ ବାପଘର କୁହାଯାଇଥାଏ । ସେଥିପାଇଁ ପ୍ରତି ଅମାବାସ୍ୟା ଦିନ ଜଗନ୍ନାଥଙ୍କ ପ୍ରତିନିଧି ଶ୍ରୀନାରାୟଣ ବିଗ୍ରହ ଶ୍ରୀମନ୍ଦିରରୁ ସମୁଦ୍ରକୁ ଯାତ୍ରା କରିଥାନ୍ତି । ସେଠାରେ ସାଗର ଦେବତା ବରୁଣ ଓ ନାରାୟଣଙ୍କୁ ପୂଜା କରାଯାଇଥାଏ । ସ୍କନ୍ଦ ପୁରାଣରେ ନିର୍ଦ୍ଦେଶ ରହିଛି ଯେ ସମୁଦ୍ର ସ୍ନାନ କରି ତାହାର କୂଳ ବାଲିରେ ଲକ୍ଷ୍ମୀନାରାୟଣ ପୂଜା କରିବା ଦ୍ୱାରା ପୁଣ୍ୟ ହୁଏ । ତୀର୍ଥରାଜ ମହୋଦଧି ସଦା ସର୍ବଦା ପବିତ୍ର । ଏଠାରେ ସ୍ନାନ କରିବାର କୌଣସି କାଳ ନିର୍ଦ୍ଧାରଣ ହୋଇନାହିଁ । କାରଣ ଦେବପୂଜା ବା ଯେକୌଣସି ପୁଣ୍ୟ କର୍ମ କରିବା ସମୟରେ ଯେଉଁ ଯେଉଁ ନଦୀମାନଙ୍କୁ ଆହ୍ୱାନ କରାଯାଇଥାଏ, ସେମାନଙ୍କ ମଧ୍ୟରେ ଗଂଗା, ଯମୁନା, ସରସ୍ୱତୀ, ନର୍ମଦା, କାବେରୀ, ସିନ୍ଧୁ ଇତ୍ୟାଦି ପ୍ରଧାନ । ଉକ୍ତ ସମସ୍ତ ପବିତ୍ର ନଦୀମାନ ସାଗର ବା ମହୋଦଧି ବକ୍ଷରେ ମିଶ୍ରିତ ହୋଇଛନ୍ତି ବା ସମୁଦ୍ରଙ୍କ ସାନିଧ୍ୟ ପ୍ରାପ୍ତ ହୋଇଛନ୍ତି, ତେଣୁ ସମୁଦ୍ରକୁ ଯଥାର୍ଥରେ ତୀର୍ଥରାଜ କହିଲେ କୌଣସି ଅତ୍ୟୁକ୍ତି ହେବ ନାହିଁ ।

ଶ୍ରୀକ୍ଷେତ୍ରରେ ବିରାଜିତ ପଞ୍ଚମତୀର୍ଥ ଏବଂ ସୁପ୍ରାଚୀନ ପବିତ୍ର ତୀର୍ଥ ହେଉଛି ଇନ୍ଦ୍ରଦ୍ୟୁମ୍ନ ସରୋବର । ଉକ୍ତ ତୀର୍ଥର ଉତ୍ପତ୍ତି ଓ ମାହାତ୍ମ୍ୟ ସଂପର୍କରେ ବ୍ରହ୍ମ ପୁରାଣ, ସ୍କନ୍ଦ ପୁରାଣ, ଆଦିକବି ସାରଳା ଦାସଙ୍କ ମହାଭାରତ ଇତ୍ୟାଦି ବହୁ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି । ବହୁ ଐତିହାସିକମାନଙ୍କ ମତରେ ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ତୀର୍ଥର ପ୍ରତିଷ୍ଠାତା । ସ୍କନ୍ଦ ପୁରାଣରେ ମଧ୍ୟ ବର୍ଣ୍ଣିତ ହୋଇଛି ଯେ ରାଜା ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞ କରିବା ପରେ ବହୁ ସହସ୍ର ଗୋ-ଦାନ କରିଥିଲେ । ସେହି ଗାଭିମାନଙ୍କର ଖୁରା ଦ୍ୱାରା ଭୂମି ଖୋଳି ହୋଇଗଲା ଓ ତହିଁରେ ଗୋରୁମାନଙ୍କର ମୁତ୍ର ଓ ଜଳପଡ଼ି ଗୋଟିଏ ପୁଷ୍କରିଣୀ ସୃଷ୍ଟି ହୋଇଗଲା, ଯାହାକି ଇନ୍ଦ୍ରଦ୍ୟୁମ୍ନ ସରୋବର ନାମରେ ନାମିତ ହେଲା । ଉକ୍ତ ତୀର୍ଥର ପବିତ୍ରତା ସଂପର୍କରେ ସ୍କନ୍ଦ ପୁରାଣରେ ଉଲ୍ଲେଖ ରହିଛି -

''ଦଶାଶ୍ୱମେଧ ସମ୍ଭୁତ ଗୋଖୁରେଣ ବିଘଡ଼ିତ
ଇନ୍ଦ୍ରଦ୍ୟୁମ ସରେ ସ୍ନାତ୍ୱା ପୁର୍ନଜନ୍ମ ନ ବିଦ୍ୟତେ ।''

ତେଣୁ ପବିତ୍ର ଶ୍ରୀକ୍ଷେତ୍ର ପ୍ରଭୁ ଶ୍ରୀଜଗନ୍ନାଥଙ୍କ କୋଳରେ ଧାରଣ କରି ବହୁ ଅନାଦି କାଳରୁ ଯେ ତୀର୍ଥରାଜର ପ୍ରସିଦ୍ଧି ଲାଭ କରି ପାରିଛି ଏଥିରେ କୌଣସି ସନ୍ଦେହ ନାହିଁ ।

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ବିଜୁ ପଟ୍ଟନାୟକ ବିଜ୍ଞାନ ଓ ଶିକ୍ଷା ମହାବିଦ୍ୟାଳୟ
ଭୁବନେଶ୍ୱର





# ଜଗନ୍ନାଥଙ୍କ ଜଣା ଅଜଣା ପ୍ରସଙ୍ଗ

ବିଚିତ୍ରାନନ୍ଦ ବାରିକ

**ଶ୍ରୀ**ମନ୍ଦିରର ଉଚ୍ଚତା ୬୬ ମିଟର । ଏହି ମନ୍ଦିରର ଚାରିଗୋଟି ଦ୍ୱାର ରହିଛି । ପୂର୍ବରେ ଥିବା ଦ୍ୱାରକୁ ସିଂହଦ୍ୱାର କୁହାଯାଏ । ଏହି ଦ୍ୱାର ସମ୍ମୁଖରେ ଅରୁଣ ସ୍ତମ୍ଭ ରହିଛି । ଅରୁଣ ଓ ଗରୁଡ଼ ଦୁହେଁ ବିନତି ନନ୍ଦନ । ଗରୁଡ଼ ବିଷ୍ଣୁଙ୍କର ବାହାନ । ଅରୁଣ ସୂର୍ଯ୍ୟଙ୍କ ବାହାନ ଗରୁଡ଼ ବିଷ୍ଣୁଙ୍କ ସମ୍ମୁଖରେ ଓ ଅରୁଣ ସୂର୍ଯ୍ୟଙ୍କ ରଥରେ ରହନ୍ତି । କିନ୍ତୁ ଏଠି ଆଶ୍ଚର୍ଯ୍ୟର କଥା ହେଲା ଯେ ଅରୁଣ ଶ୍ରୀନାରାୟଣ ଜଗନ୍ନାଥ ମହାପ୍ରଭୁ ଶ୍ରୀମନ୍ଦିର ସମ୍ମୁଖରେ । ଅରୁଣ ସ୍ତମ୍ଭର ଉଚ୍ଚତା ୧୨ ମିଟର । ମନ୍ଦିର ମଧ୍ୟରେ ଥିବା ମୁକ୍ତି ମଣ୍ଡପକୁ ରାଜା ପ୍ରତାପରୁଦ୍ର ଦେବ ନିର୍ମାଣ କରିଥିଲେ । ରାଜା ପୁରୁଷୋତ୍ତମ ଦେବ ଶ୍ରୀମନ୍ଦିରରେ ଥିବା ନାଟ ମନ୍ଦିର ଓ ଭୋଗ ମଣ୍ଡପକୁ ନିର୍ମାଣ କରିଥିଲେ । ଶ୍ରୀମନ୍ଦିରର ନିର୍ମାଣ କାର୍ଯ୍ୟ ରାଜା ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ସମ୍ପୂର୍ଣ୍ଣ କରାଯାଇଥିବା ବେଳେ ଅବଶିଷ୍ଟ ନିର୍ମାଣ କାର୍ଯ୍ୟ ଦ୍ୱିତୀୟ ଅନଙ୍ଗଭୀମ ଦେବ (ଚୋଡ଼ଗଙ୍ଗ ଦେବଙ୍କ ଚତୁର୍ଥ ପୁତ୍ର) ସମ୍ପୂର୍ଣ୍ଣ କରିଥିଲେ । ତୃତୀୟ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କ ଲାଗି ଷାଠିଏ ପଉଟି ଭୋଗର ପ୍ରଚଳନ କରାଯାଇଥିଲା ।

**ଶ୍ରୀମନ୍ଦିରରେ ବିଭିନ୍ନ ମଣ୍ଡପ -** ଶ୍ରୀମନ୍ଦିର ମଧ୍ୟରେ ୨୨ ଗୋଟି ମଣ୍ଡପ ରହିଛି । ସେଗୁଡ଼ିକର ନାମ ଯଥାକ୍ରମେ - ୧. ଭେଟ ମଣ୍ଡପ, ୨. ଚାହାଣୀ ମଣ୍ଡପ, ୩. ସ୍ନାନ ମଣ୍ଡପ, ୪. ପ୍ରସାଦ ମଣ୍ଡପ, ୫. ବୈକୁଣ୍ଠ ମଣ୍ଡପ, ୬. ବକୁଳ ମଣ୍ଡପ, ୭. ନିର୍ମାଲ୍ୟ ମଣ୍ଡପ, ୮. ଭୋଗ ମଣ୍ଡପ, ୯. ମୁକ୍ତି ମଣ୍ଡପ, ୧୦. ମାଜଣା ମଣ୍ଡପ, ୧୧. ଜଳକ୍ରୀଡ଼ା ମଣ୍ଡପ, ୧୨. ନାଭିକଟା ମଣ୍ଡପ, ୧୩. ଦେବ ସଭା ମଣ୍ଡପ, ୧୪. ଅଚିନ୍ତା ମଣ୍ଡପ, ୧୫. ନାଟପା ମଣ୍ଡପ, ୧୬. ବଲ୍ଲଭ ମଣ୍ଡପ, ୧୭. ରତ୍ନ ମଣ୍ଡପ, ୧୮. ଅନ୍ତର୍ବେଦୀ ମଣ୍ଡପ, ୧୯. ଦୋଳବେଦୀ ମଣ୍ଡପ, ୨୦. ଆଡ଼ପ ମଣ୍ଡପ, ୨୧. ବଳି ମଣ୍ଡପ, ୨୨. ଯଜ୍ଞ ମଣ୍ଡପ ।

ପୃଥିବୀର ସର୍ବ ପୁରାତନ ସାତ୍ତ୍ୱିକ ଭୋଜନାଳୟ ହେଉଛି ଶ୍ରୀମନ୍ଦିରର ପବିତ୍ର ରୋଷଘର । ଏହାର ଦ୍ୱାର ଦେଶରେ ଶ୍ରୀଗଣେଶ ଦେବତା ଅବସ୍ଥାନ କରିଛନ୍ତି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦୈନିକ ନୀତି



ପରିପ୍ରେକ୍ଷୀରେ ଦ୍ୱାରଫିଟା ଓ ମଙ୍ଗଳ ଆଳତି ବା ସାହାଣ ମେଳା ବା ସର୍ବସାଧାରଣ ଦର୍ଶନ ପ୍ରତ୍ୟହ ଭୋର ୫ଟାଠାରୁ ସକାଳ ୮ଟା ପର୍ଯ୍ୟନ୍ତ ଚାଲିଥାଏ । ତ୍ରିତତ୍ତ୍ୱରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ତ୍ରିମୂର୍ତ୍ତି ବୋଲି କୁହାଯାଇଥାଏ । ବଳରାମ ଦାସ ତ୍ରିମୂର୍ତ୍ତି ତତ୍ତ୍ୱ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି ଯେ,ଏହି ତ୍ରିମୂର୍ତ୍ତି ତତ୍ତ୍ୱ ହିଁ ଚକାନୟନ ।

‘ଡୋଳା ଭିତରେ ଧଳା ଯେହୁଁ<br>
ଶ୍ରୀବଳଭଦ୍ର ଅଟେ ସେହୁଁ<br>
ତଥି ଉପରେ କଳା ଯେହୁଁ<br>
ସୁଭଦ୍ରା ଠାକୁରାଣୀ ସେହୁଁ<br>
ତହିଁରେ ପିତୁଳା ଯେ ଜାଣ<br>
ଶ୍ରୀଜଗନ୍ନାଥ ତାକୁ ଚିହ୍ନ ।’

**ଚତୁର୍ଦ୍ଧାମୂର୍ତ୍ତି**

‘ଜ’ କାରଶ୍ଚ ଜଗନ୍ନାଥ<br>
‘ଗ’ କାରଶ୍ଚ ବଳଭଦ୍ରଂ<br>
ଭଦ୍ରା ‘ନ’ କାର ଭାବେନ<br>
‘ଥ’ କାରଶ୍ଚ ସୁଦର୍ଶନଂ ।

ଏହି ଚତୁର୍ଦ୍ଧାମୂର୍ତ୍ତି ହିଁ ଜଗନ୍ନାଥ ବୋଲି କୁହାଯାଇଥାଏ ।

**ଚାରିଧାମ -** ଭାରତର ପୂର୍ବରେ ପୁରୁଷୋତ୍ତମ, ପଶ୍ଚିମରେ ଦ୍ୱାରିକା, ଦକ୍ଷିଣରେ ରାମେଶ୍ୱର ଏବଂ ଉତ୍ତରରେ ବଦ୍ରିକାଧାମ ଅବସ୍ଥିତ ।





**ରଥର ଆଦ୍ୟ ପର୍ଯ୍ୟାୟ -** ସୋମବଂଶୀ ରାଜା ଯଯାତି କେଶରୀଙ୍କ ରାଜତ୍ୱକାଳରେ ଶ୍ରୀଜୀଉମାନଙ୍କ ରଥ ପୁରୀର ବଳଗଣ୍ଡି ପର୍ଯ୍ୟନ୍ତ ଯାଉଥିଲା । ସେତେବେଳେ ପର୍ଯ୍ୟନ୍ତ ରଥଗୁଡ଼ିକର ଉଚ୍ଚତା ୧୮ ହାତ ଥିଲା ।

**ରଥର ମଧ ପର୍ଯ୍ୟାୟ -** ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ ସମୟରେ ପୁରୀର ବଳଗଣ୍ଡି ପର୍ଯ୍ୟନ୍ତ ଯାଉଥିବା ଶ୍ରୀଜୀଉମାନଙ୍କର ରଥଗୁଡ଼ିକର ଉଚ୍ଚତା ୩୨ ହାତ ରଖାଯାଇଥିଲା ।

**ନନ୍ଦିଘୋଷ ରଥ -** ଜଗତର ନାଥ ଶ୍ରୀଜଗନ୍ନାଥ ଏହି ରଥରେ ବିରାଜମାନ କରନ୍ତି । ଏହାର ଉଚ୍ଚତା ୩୩ ହାତ ୫ ଅଙ୍ଗୁଳ ଏବଂ ପରିଧି ୫ ହାତ । ୮୩୨ ଖଣ୍ଡ କାଠରେ ଏହି ରଥଟି ନିର୍ମିତ । ଗରୁଡ଼ ଏହାର ରକ୍ଷକ ଅଟନ୍ତି । ଏହି ରଥର ଚକ ସଂଖ୍ୟା ୧୬ ଅଟେ । ରଥର ସାରଥୀଙ୍କ ନାମ 'ଦାରୁକ' ଏବଂ ରଥରେ ଲାଗିଥିବା ୪ ଗୋଟି ଅଶ୍ୱଙ୍କ ନାମ ହେଉଛି - ଶଙ୍ଖ, ବଳାହକ, ଶ୍ୱେତ ଓ ହରିତାଶ୍ୱ । ଏହି ଅଶ୍ୱମାନଙ୍କର ରଙ୍ଗ ସମ୍ପୂର୍ଣ୍ଣ ଧଳା ଅଟେ । ରଥର ଧ୍ୱଜାରେ ଶ୍ରୀହନୁମାନ ବିରାଜମାନ । ରଥଟି ହଳଦିଆ ଓ ନାଲି (ରକ୍ତ ଓ ପୀଉ) ରଙ୍ଗ ବସ୍ତ୍ରରେ ସଜ୍ଜିତ ହୋଇଥାଏ । ଏହି ରଥର ଚତୁଃପାର୍ଶ୍ୱରେ ବିରାଜିତ ନବଦେବତା ହେଉଛନ୍ତି - ଶ୍ରୀରାମ, ଲକ୍ଷ୍ମଣ, ଶ୍ରୀହନୁମାନ, ନାରାୟଣ, ଶ୍ରୀକୃଷ୍ଣ, ଗୋବର୍ଦ୍ଧନଧାରୀ, ଚିନ୍ତାମଣି, ରାଘବ ଓ ନୃସିଂହ । ଦେବରାଜ ଇନ୍ଦ୍ରଙ୍କ ଦ୍ୱାରା ଏହି ନନ୍ଦିଘୋଷ ରଥଟି ଶ୍ରୀଜୀଉଙ୍କୁ ପ୍ରଦାନ କରାଯାଇଥିଲା ।

**ତାଳଧ୍ୱଜ ରଥ -** ଏହି ରଥଟିକୁ ଦେବତମାନେ ତାଳବନରେ ଶ୍ରୀବଳଭଦ୍ର ଜୀଉଙ୍କୁ ପ୍ରଦାନ କରିଥିବାରୁ ଏହାର ନାମ ତାଳଧ୍ୱଜ ରଖାଯାଇଛି । ଏହାର ଉଚ୍ଚତା ୩୨ ହାତ ୧୦ ଅଙ୍ଗୁଳ । ୭୬୩ ଖଣ୍ଡ କାଠରେ ଏହା ନିର୍ମିତ । ଏହି ରଥର ଚକ ସଂଖ୍ୟା ୧୪ ଅଟେ । ରଥର ରକ୍ଷକଙ୍କ ନାମ ଭାସ୍କର । ନନ୍ଦ ଓ ସୁନନ୍ଦ ଏହାର ଦ୍ୱାରପାଳ । ଏହି ରଥର ସାରଥୀଙ୍କ ନାମ ପ୍ରଦ୍ୟୁମ୍ନ ବା ତାଳଧ୍ୱଜ । ରଥରେ ଲାଗିଥିବା ଚାରିଗୋଟି ଅଶ୍ୱଙ୍କ ନାମ ହେଉଛି - ତୀବ୍ର, ଘୋର, ଦୀର୍ଘ ଓ ସ୍ୱର୍ଣ୍ଣନାଭ । ଏମାନଙ୍କର ରଙ୍ଗ ସମ୍ପୂର୍ଣ୍ଣ କଳା । ରଥର ଆବରଣ ଲାଲ ଓ ଶାଗୁଆ ଅଟେ । ଏହି ରଥରେ ବିରାଜମାନ କରିଥିବା ଅଷ୍ଟ ଦେବତାମାନଙ୍କ ନାମ ହେଉଛି - ପ୍ରତାମ୍ବରୀ, ଗଦାନ୍ତକାରୀ, ହରିହର, ତ୍ରୈମୁକ, ବାସୁଦେବ, ନାଟାମ୍ବର, ଅଘୋର, ତ୍ରିପୁରାରୀ, ଶିବ ।

**ଦେବଦଳନ ରଥ -** ମା' ସୁଭଦ୍ରା ଦେବୀଙ୍କ ରଥର ନାମ ହେଉଛି ଦେବଦଳନ । ଏହାକୁ ଦର୍ପଦଳନ ବା ପଦ୍ମଧ୍ୱଜା ବୋଲି ମଧ କୁହାଯାଇଥାଏ । ଏହାର ଉଚ୍ଚତା ୩୧ ହାତ ଏବଂ ୫୯୩ ଖଣ୍ଡ କାଠରେ ଏହା ନିର୍ମିତ । ଏଥିରେ ୧୨ଟି ଚକ ଲାଗିଥାଏ । ଏହାର ରକ୍ଷକ ଉଗ୍ରଚଣ୍ଡୀ । ଦେବଦଳନ ବା ଦର୍ପଦଳନ ରଥର ସାରଥୀଙ୍କ ନାମ ଅର୍ଜ୍ଜୁନ ବା ଦେବଦତ୍ତ । ଏହି ରଥରେ ବ୍ୟବହୃତ ୪ ଗୋଟି ଅଶ୍ୱଙ୍କ ନାମ ହେଉଛି - ରଚିକା, ମୃଚିକା, ଜିତା ଓ ଅପରାଜିତା । ଏମାନଙ୍କର ରଙ୍ଗ କସରା ଅଟେ । ଏହି ରଥର ଦ୍ୱାରପାଳ ହେଉଛନ୍ତି ଘୋରା ଓ ଅଘୋରା । ରଥ ଅଧୀଶ୍ୱରୀ ମା' ସୁଭଦ୍ରାଙ୍କ ନିର୍ଦ୍ଦେଶରେ ଦେବଦଳନ ଚତୁଃପାର୍ଶ୍ୱରେ ବିଦ୍ୟମାନ ଥିବା ନବ ମହାଶକ୍ତି ହେଉଛନ୍ତି - ବିମଳା ଚାମୁଣ୍ଡା, ଭଦ୍ରକାଳୀ, ହରଚଣ୍ଡିକା, ମଙ୍ଗଳା, ବରାହୀ, କାତ୍ୟାୟିନୀ, ଜୟଦୁର୍ଗା ଓ କାଳୀ ।

**ଛପନ ଭୋଗ -** ୧. ଅଟକାଳି, ୨. ଅମାଲୁ, ୩. ଏଣ୍ଡୁରୀ, ୪. ଆରିଷା, ୫. କଦମ୍ବ, ୬. କାକରା, ୭. କାନ୍ତି, ୮. କୋଳି, ୯. କୋରା, ୧୦. ଖଇରଚୂଳ, ୧୧. ଖଜା, ୧୨. ଖିରୀ, ୧୩. ଖିରୀଷା, ୧୪. ଖୁରୁମା, ୧୫. ଖେଚୁଡ଼ି, ୧୬. ଖଇଠା, ୧୭. ଗଜା, ୧୮. ଗୋଟାଳୀ, ୧୯. ଚକଟା, ୨୦. ଚକୁଳି, ୨୧. ଚିଡଉ, ୨୨. ଛୁଞ୍ଚିପତ୍ର, ୨୩. ଜଗନ୍ନାଥ ବଲ୍ଲଭ, ୨୪. ଜେନାମଣି, ୨୫. ଝିଲି ୨୬. ଡାକୁଆ, ୨୭. ଡାଲି, ୨୮. ଚକାଅବସର, ୨୯. ତ୍ରିପୁରୀ, ୩୦. ଧଉଳା, ୩୧. ନାଡ଼ି, ୩୨. ପଣସୁଆ, ୩୩. ପଣା, ୩୪. ପାଚେଡ଼ି, ୩୫. ପାପୁଡ଼ି, ୩୬. ପାଳୁଅ, ୩୭. ପଖାଳ, ୩୮. ପିଠା, ୩୯. ପୁରୀ, ୪୦. ଫେଣୀ, ୪୧. ପୁଳି, ୪୨. ବଡ଼ା, ୪୩. ବଳିବାମନ, ୪୪. ଭଜା, ୪୫. ମଣ୍ଡା, ୪୬. ମନୋହର, ୪୭. ମହାଦେଇ, ୪୮. ମାଣ୍ଡୁଅ, ୪୯. ମୋହନ ଭୋଗ, ୫୦. ରସାବଳୀ, ୫୧. ଲଡୁ, ୫୨. ରାଧାବଲ୍ଲଭ, ୫୩. ଲହୁଣୀଖିଆ, ୫୪. ଲକ୍ଷ୍ମୀବିଳାସ, ୫୫. ସରସ୍ୱତୀଆ ଓ ୫୬. ହଂସବଲ୍ଲଭ ।

**ଏକବିଂଶ ବେଶର ନାମ -** ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଅନେକ ବେଶ ଅଛି । ତନ୍ମଧ୍ୟରୁ ୨୧ ଗୋଟି ପ୍ରଧାନ ବେଶର ନାମ ହେଉଛି - ୧. ଅବକାଶ ତଡ଼ପ ଉତୁରୀ ବେଶ, ୨. ନିତ୍ୟ ବଡ଼ ଶୃଙ୍ଗାର ବେଶ, ୩. ବିଶିଷ୍ଟ ରଘୁନାଥ ବେଶ, ୪. ଚନ୍ଦନ ଲାଗି ବେଶ, ୫. ଗଣପତି ବେଶ ବା ହାତୀ ବେଶ, ୬. ରଥ ଉପରିସ୍ଥ ବଡ଼ ତଡ଼ାଉ ବେଶ ବା ସୁନାବେଶ, ୭. ବଣଭୋଜୀ ବେଶ, ୮. କାଳୀୟଦଳନ ବେଶ, ୯. ପ୍ରଳମ୍ବାରସୁର ବଧ ବେଶ, ୧୦. କୃଷ୍ଣ ବଳରାମ ବେଶ, ୧୧. ବଳୀ ବାମନ ବେଶ, ୧୨. ରାଧା ଦାମୋଦର ବେଶ, ୧୩. ଠିଆ କିଆ ବେଶ, ୧୪. ବାଙ୍କଚୂଡ଼ା ବେଶ, ୧୫. ଆଡ଼କିଆ ବେଶ, ୧୬. ଡାଳିକିଆ ବେଶ, ୧୭. ରାଜରାଜେଶ୍ୱର ବେଶ, ୧୮. ନାଗାର୍ଜ୍ଜୁନ ବେଶ, ୧୯. ଘୋଡ଼ଲାଗି ବେଶ, ୨୦. ପଦ୍ମବେଶ, ୨୧. ଗଜ ଉଦ୍ଧାରଣ ବେଶ

**ସହାୟକ ଗ୍ରନ୍ଥସୂଚୀ**


୧. ଶ୍ରୀଜଗନ୍ନାଥ ତତ୍ତ୍ୱ - ବାବା ମଧୁସୂଦନ

୨. ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱ ଜିଜ୍ଞାସା - ପଣ୍ଡିତ ଶ୍ରୀ ଚାରଣ ରାମଦାସ

୩. ରଥଯାତ୍ରା ବିଶେଷାଙ୍କ - ଉତ୍କଳ ପ୍ରସଙ୍ଗ, ୧୯୬୭ରୁ ୧୯୭୮

୪. ଶ୍ରୀମନ୍ଦିର ସମାଚାର - ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ସୌଜନ୍ୟରୁ ପ୍ରକାଶିତ



ନିଆଳୀ

କଟକ





# ଶ୍ରୀବିଗ୍ରହ ନିର୍ମାଣରେ ନିମ୍ବକାଷ୍ଠର ଆବଶ୍ୟକତା

ଡାକ୍ତର ଦୀନବନ୍ଧୁ ମହାରଣା

ରଥାରୂଢ଼ୋ ଗଚ୍ଛନ୍ ପଥିମିଳିତ ଭୂଦେବପଟଳୈଃ
ସ୍ତୁତିପ୍ରାଦୁର୍ଭାବଂ ପ୍ରତିପଦ ମୁପାକର୍ଣ୍ଣ୍ୟ ସଦୟଃ
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁସୁତୟା
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁମେ ॥

ଯେ ରଥରେ ଆରୋହଣ କରି ଯିବାବେଳେ ମାର୍ଗରେ ସମବେତ ବ୍ରାହ୍ମଣମାନଙ୍କର ସ୍ତୁତି ପ୍ରତି ପଦରେ ଶ୍ରବଣ କରି ସେମାନଙ୍କ ପ୍ରତି ସଦୟ ହୁଅନ୍ତି ଓ ଯେ ଦୟାସାଗର ଏବଂ ସମଗ୍ର ଜଗତର ବନ୍ଧୁ, ସେହି ପ୍ରଭୁ ଜଗନ୍ନାଥ ଲକ୍ଷ୍ମୀଙ୍କ ସହିତ ମୋର ଦୃଷ୍ଟି ପଥାରୂଢ଼ ହୁଅନ୍ତୁ ।

ଉତ୍କଳୀୟ ସଂସ୍କୃତିର ଆରାଧ୍ୟ ଦେବତା, ବିଶ୍ୱାଦ୍ୟ, ବିଶ୍ୱବନ୍ଦ୍ୟ, ଜଗତର ନାଥ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନବକଳେବର ଉପଲକ୍ଷେ ଶ୍ରୀବିଗ୍ରହ ନିର୍ମାଣ ନିମିତ୍ତ ନିମ୍ବବୃକ୍ଷରୁ ଦାରୁ ସଂଗ୍ରହ କାର୍ଯ୍ୟ ବିଧି ମୁତାବକ ସମ୍ପନ୍ନ କରାଯିବାର ପ୍ରଥା ରହିଛି । ମାଦଳାପାଞ୍ଜିର ଏକ ଅନୁଲିପିରେ ବର୍ଣ୍ଣିତ ତଥ୍ୟାନୁଯାୟୀ ଶ୍ରୀମନ୍ଦିରର ଉତ୍ତର-ପୂର୍ବ ଦିଗରୁ ଦାରୁ ସଂଗ୍ରହ ପାଇଁ ବିଧି ରହିଛି । ଶ୍ରୀମନ୍ଦିରର ଐଶାନ୍ୟ କୋଣରେ ଅବସ୍ଥିତ କାକଟପୁରଠାରେ ବିରାଜିତ ମା'ମଙ୍ଗଳାଙ୍କ ପାଦଦେଶରେ ପୁଣ୍ୟତୋୟା ପ୍ରାଚୀନଦୀ ପ୍ରବାହିତ । ପୁନଃଶ୍ଚ ଅଷ୍ଟଶମ୍ଭୁ, ଅଷ୍ଟଚଣ୍ଡୀ, ଦ୍ୱାଦଶ ମାଧବ, ତ୍ରିବେଣୀ ସଙ୍ଗମ, ଗୋମତୀ ଓ ଚନ୍ଦ୍ରଭାଗା ପ୍ରଭୃତି ତୀର୍ଥକ୍ଷେତ୍ର ବିଦ୍ୟମାନ ଥିବା ପୂତସଲିଳା ପ୍ରାଚୀନଦୀ ଅବବାହିକାରେ ପ୍ରଚୁର ନିମ୍ବବୃକ୍ଷର ଘଞ୍ଚ ଜଙ୍ଗଲ ପରିଦୃଷ୍ଟ ହୁଏ, ଯାହାକୁ ନିମିକାବନ କୁହାଯାଏ । ଏଭଳି ଏକ ପବିତ୍ର ସ୍ଥାନରେ ଅବସ୍ଥିତ ନିମିକାବନରୁ ଶ୍ରୀବିଗ୍ରହ ନିର୍ମାଣ ନିମନ୍ତେ କେବଳ ନିମ୍ବବୃକ୍ଷରୁ ଦାରୁ ସଂଗ୍ରହ ପାଇଁ ପ୍ରାଧାନ୍ୟ ଦେବା ବାସ୍ତବରେ ପ୍ରଣିଧାନଯୋଗ୍ୟ । ଶ୍ରୀଜଗନ୍ନାଥଙ୍କ ନବକଳେବର ସମୟରେ କେବଳ ନିମ୍ବବୃକ୍ଷରୁ ଦାରୁ ସଂଗ୍ରହ କରି ନିମ୍ବକାଷ୍ଠରେ ଶ୍ରୀବିଗ୍ରହ ନିର୍ମାଣ କରିବାର ପରମ୍ପରା ରହିଆସିଛି । ତେବେ ଏହି ପରମ୍ପରା କେବେ ଓ କେଉଁ କାରଣରୁ ଆରମ୍ଭ ହେଲା, ତାହା ସଠିକ୍ ଭାବରେ କହିବା ଯଦିଓ କଷ୍ଟକର ତଥାପି ଏହା ପଛରେ ଯେଉଁ ବୈଜ୍ଞାନିକ ଯୁକ୍ତି ଓ ଆୟୁର୍ବେଦୀୟ ଦ୍ରବ୍ୟଗୁଣ ସିଦ୍ଧାନ୍ତ ନିହିତ ଅଛି, ତାହାକୁ ଅସ୍ୱୀକାର କରାଯାଇପାରେ ନାହିଁ ।



ଆୟୁର୍ବେଦ ଶାସ୍ତ୍ରରେ ବର୍ଣ୍ଣିତ ଅଛି ଯେ, ନିମ୍ବ ଲଘୁ ଗୁଣଯୁକ୍ତ, ବିପାକରେ କଟୁ, ରସରେ ତିକ୍ତ ଓ କଷାୟ ଏବଂ ଶୀତବୀର୍ଯ୍ୟ ଗୁଣଯୁକ୍ତ ଅଟେ । ଜଗନ୍ନାଥ ମହାପ୍ରଭୁଙ୍କର ତ୍ରିଗୁଣରୁ ସତ୍ୱଗୁଣ ଲଘୁ । ଯାହା ଉଦରାମୟ । ରସ - ମହାଭାବ ରସ । ଯାହା ସାମାନ୍ୟ ସାଧନାରେ ପ୍ରାପ୍ତ ହୁଏନା । ଏଣୁ ସବୁଠାରୁ ଦୃଢ଼ ସାଧନ କଲେ ମହାଭାବରସ (ଅସୀମ ଭକ୍ତି) ପ୍ରାପ୍ତ ହୋଇପାରିବ । ବିପାକ କଟୁ, ଏହା ବଡ଼ସିଂହାରର ଡାଡ଼ିଆ ଭୋଗର ପ୍ରମାଣ ଦିଏ । ପୁନଶ୍ଚ କଟୁ ଶବ୍ଦର ଅର୍ଥ ହେଲା, ଯାହାକି କୀଟମାନେ ନଷ୍ଟ କରିପାରନ୍ତି ନାହିଁ । ସେଥିପାଇଁ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଅନ୍ୟ କୌଣସି ଦ୍ରବ୍ୟରେ ନହୋଇ ହେଲେ ନିମ୍ବ ଦାରୁରେ । ନିମ୍ବଦାରୁ ତିକ୍ତ ରସଯୁକ୍ତ ଓ ବିପାକରେ କଟୁ ହୋଇଥିବା ଏହାର ଜୀବାଣୁ ନାଶକ ଶକ୍ତି ଅତି ପ୍ରବଳ । କୌଣସି କ୍ଷତିକାରକ ଜୀବାଣୁ, ଭୂତାଣୁ, କୃମି-କୀଟ ଆଦି ଅଣୁଜୀବ ନିମ୍ବକାଷ୍ଠକୁ ସ୍ପର୍ଶ କରିପାରନ୍ତି ନାହିଁ । ପୁନଶ୍ଚ ନିମ୍ବକାଷ୍ଠର ଅତି ପ୍ରବଳ ଜୀବାଣୁ ନାଶକ ଗୁଣ ଯୋଗୁଁ ଏହାକୁ ଜଳରେ ସିଝାଇ କିମ୍ବା ଚୂର୍ଣ୍ଣକୁ ବିଭିନ୍ନ ପ୍ରକାର ଚର୍ମରୋଗରେ ବାହ୍ୟ ଉପଚାର (ପ୍ରଲେପାର୍ଥେ) ନିମନ୍ତେ ପ୍ରୟୋଗ କରାଯାଏ । ତେଣୁ ଆୟୁର୍ବେଦ ଶାସ୍ତ୍ରରେ ନିମ୍ବକାଷ୍ଠ ସମେତ ଏହାର ସମସ୍ତ ଅଂଶ, ଯଥା- ପତ୍ର, ତ୍ୱକ୍ ଓ ବୀଜକୁ ଜନ୍ତୁଘ୍ନ (ଜୀବାଣୁ ନାଶକ), ପୂତିହର (ଦୁର୍ଗନ୍ଧହର),





କଣ୍ଡୁନାଶକ ଓ କୁଷ୍ଠ ନାଶକ କୁହାଯାଇଛି । ଜଳ ଓ ବାୟୁ ସଂସ୍ପର୍ଶରେ ଆସି ବିଘଟନ ହେଲେ ମଧ୍ୟ ନିମ୍ବକାଷ୍ଠରେ କୌଣସି ପ୍ରକାର ଜୀବାଣୁ ସଂସର୍ଗ ହୋଇପାରେ ନାହିଁ । ନିମ୍ବକାଷ୍ଠର ଏହି ବିଶେଷ ଔଷଧୀୟ ଗୁଣ ଯୋଗୁଁ ଏହାର ସ୍ଥାୟୀତ୍ୱ ଅସୀମ । ଦୀର୍ଘକାଳ ଧରି ନିମ୍ବକାଷ୍ଠ ଅକ୍ଷତ ଅବସ୍ଥାରେ ରହିପାରେ । ଆଧୁନିକ ଚିକିତ୍ସା ବିଜ୍ଞାନ ଅନୁସାରେ ମଧ୍ୟ ନିମ୍ବର ଆଣ୍ଟି ବ୍ୟାକ୍ଟେରିଆଲ୍ ଓ ଆଣ୍ଟି ଫଙ୍ଗାଲ ଗୁଣ ପରୀକ୍ଷାଗାରରେ ବାରମ୍ବାର ପ୍ରମାଣିତ ହୋଇ ଆସିଛି । ସେଥିପାଇଁ ଅନେକ ପ୍ରକାର ସଂକ୍ରମଣଜନିତ ରୋଗ, ଯଥା- ମିଳିମିଳା, ହାଡ଼ପୁଟି, ବସନ୍ତ ଓ କୃମି ପ୍ରଭୃତି ରୋଗରେ ଜୀବାଣୁ ସଂକ୍ରମଣର ପ୍ରସାରକୁ ରୋକିବା ପାଇଁ ନିମ୍ବପତ୍ରର କଳ୍କ ବା ନିମ୍ବଛେଲିର କ୍ୱାଥକୁ ଉଭୟେ ବାହ୍ୟ ଓ ଆନ୍ତରିକ ଚିକିତ୍ସାରେ ପ୍ରୟୋଗ କରାଯାଇଥାଏ । ଏଥିପାଇଁ ନିମ୍ବ ତୈଳ ମଧ୍ୟ ବେଶ୍ ଉପଯୋଗୀ ପ୍ରମାଣିତ ହୋଇଛି । ସୁତରାଂ ନିମ୍ବ ଏକ ଏପରି ବୃକ୍ଷ, ଯାହାର ସମସ୍ତ ଅଂଶ ଜୀବାଣୁନାଶକ ଗୁଣରେ ପରିପୂର୍ଣ୍ଣ । ନିମ୍ବକାଷ୍ଠର ମଧ୍ୟ ଏହି ବିଶେଷତ୍ୱ ଥିବା ଯୋଗୁଁ ସ୍ଥାୟୀତ୍ୱ ଓ ସୁରକ୍ଷା ନିୟମରେ ଏହା ଅନ୍ୟ ବୃକ୍ଷ ତୁଳନାରେ ଯଥେଷ୍ଟ ଆଗରେ ରହିଛି । ସେଥିପାଇଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ନିର୍ମାଣରେ ନିମ୍ବକାଷ୍ଠର ଉପଯୋଗିତାକୁ ସର୍ବଜନମତ ନିର୍ବିଶେଷରେ ଗ୍ରହଣ କରାଯାଇଛି । ଏ ସମ୍ପର୍କରେ ତୁଳସୀ ରାମାୟଣରେ ବର୍ଣ୍ଣନା ରହିଛି ଯେ-

'ଉମାଦାରୁ ଯୋ ସିତକେ ନାହିଁ
ସ ବହି ନ ଚାବତ୍ ରାମ ଗୋସାଇଁ ।'

ପ୍ରୋକ୍ତ ପଦ୍ୟାଂଶରେ ଉମାଦାରୁ ବୋଲି ନିମ୍ବବୃକ୍ଷର କାଷ୍ଠଗଣ୍ଡିକୁ କୁହାଯାଇଛି, ଯାହାର ବୀର୍ଯ୍ୟ ଅର୍ଥାତ୍ ଆଧାର ହେଲା ଶୀତ ବା ଶୀତଳ । ପୁନଶ୍ଚ ଏହା ମୂତ୍ରଗତ, କଫ, ପିତ୍ତ, ତ୍ରିଦୋଷ ବିକାରକୁ ଦୂର କରିଥାଏ । ଏହାର କାଷ୍ଠ ଆମପାଚକ, ଜନ୍ତୁଘ୍ନ (ଜୀବାଣୁ ନାଶକ), ତ୍ୱଚାଗତ ଦାହ ପ୍ରଶାମକ, ରକ୍ତଶୋଧକ, ଦୁର୍ଗନ୍ଧ ହର ଗୁଣଯୁକ୍ତ ହୋଇଥିବାରୁ ଦାରୁମୂର୍ତ୍ତି ନିର୍ମାଣ ନିମନ୍ତେ ସର୍ବୋତ୍କୃଷ୍ଟ କାଷ୍ଠ ରୂପେ ବିବେଚିତ ହୋଇଛି । ଏହିସବୁ ଗୁଣ ତଥା ବୈଶିଷ୍ଟ୍ୟ ଯୋଗୁଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନବକଳେବର ଉପଲକ୍ଷେ ଦାରୁବିଗ୍ରହ ନିର୍ମାଣାର୍ଥେ ନିମ୍ବକାଷ୍ଠକୁ ଉପଯୋଗ କରିବାର ପରମ୍ପରା ରହିଆସିଛି । ଏହାବ୍ୟତୀତ ବିଭିନ୍ନ ଭାରତୀୟ ପୁରାଣ ଶାସ୍ତ୍ରରେ ନିମ୍ବବୃକ୍ଷକୁ ଏକ ପବିତ୍ର, ଦେବସ୍ଥାନଯୋଗ୍ୟ ବୃକ୍ଷ ଭାବରେ ବର୍ଣ୍ଣନା କରାଯାଇଥିବାର ପ୍ରମାଣ ମିଳେ । ନୃସିଂହ ଅବତାରରେ ଭଗବାନ ବିଷ୍ଣୁ ସ୍ତମ୍ଭାନ୍ତରାଳେ ପ୍ରହଲ୍ଲାଦଙ୍କ ପିତା ଅସୁରାଧିପତି ହିରଣ୍ୟକଶିପୁଙ୍କୁ ବଧ କରିବା ପରେ ଚିନ୍ତାକଲେ ଯେ ସର୍ବବୃକ୍ଷ ଅପେକ୍ଷା ନିମ୍ବବୃକ୍ଷରେ ଅଭିଷ୍ଟ ହେବା ସର୍ବୋତ୍ତମ, ଯଥା-

'ନିମ୍ବ ପ୍ରଧାନ ତମ ତେଷାଂ ପ୍ରତିମାନ୍ୟଂ ବିନିର୍ମିତୈଃ ।'

ନିମ୍ବବୃକ୍ଷ ପୁରାତନ ହେଲେ ମଳୟ ପବନ ସଂସ୍ପର୍ଶରେ ଆସି ତାହା ଚନ୍ଦନ ବୃକ୍ଷରେ ପରିଣତ ହୋଇଥାଏ ବୋଲି ଏକ ପାରମ୍ପରିକ ଧାରଣା ରହିଆସିଛି । ଏହାଛଡ଼ା ଶାସ୍ତ୍ରାନୁସାରେ, ବୃକ୍ଷକୁ ପୁରୁଷ, ସ୍ତ୍ରୀ ଓ କ୍ଳୀବ ଭାବରେ ବିଭକ୍ତ କରାଯାଇଛି । ନିମ୍ବଦାରୁ ପୁରୁଷ ବୃକ୍ଷ ହୋଇଥିବାରୁ ଏହା ଶକ୍ତ ଓ ଶ୍ରେଷ୍ଠ ତଥା ବିଷ୍ଣୁ ବିଗ୍ରହ ନିର୍ମାଣ ପାଇଁ ଉପଯୋଗୀ ଅଟେ ।

ସୁତରାଂ ନିମ୍ବକାଷ୍ଠର ଔଷଧୀୟ ଗୁଣଜନିତ ଭିନ୍ନ ବୈଶିଷ୍ଟ୍ୟ ଓ ସ୍ଥାୟୀତ୍ୱ ପ୍ରକାରାନ୍ତରେ ଦେବ ବିଗ୍ରହ ନିର୍ମାଣରେ ଏହାକୁ ସ୍ୱତଃ ଉପଯୋଗୀ କରାଇଛି । ତେଣୁ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଦେବଯୋଗ୍ୟ ମର୍ଯ୍ୟାଦା ଲାଭ କରିଥିବା ନିମ୍ବବୃକ୍ଷ ଏହାର ଆୟୁର୍ବେଦୀୟ ଦ୍ରବ୍ୟଗୁଣ ସିଦ୍ଧାନ୍ତ ଦୃଷ୍ଟିରୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଶ୍ରୀବିଗ୍ରହ ନିର୍ମାଣରେ ପାରମ୍ପରିକ ଭାବରେ ବ୍ୟବହୃତ ହୋଇ ଆସୁଛି । ନିମ୍ବକାଷ୍ଠ ଦାରୁ ସଂଗ୍ରହ ଉଦ୍ଦେଶ୍ୟରେ ନିମିକାବନକୁ ଯାତ୍ରା ହିଁ ଶ୍ରୀଜଗନ୍ନାଥ ସଂସ୍କୃତି ଓ ଐତିହ୍ୟରେ 'ବନଯାତ୍ରା' ନାମରେ ପ୍ରସିଦ୍ଧିଲାଭ କରିଛି ।

ଓଡ଼ିଶା ଆୟୁର୍ବେଦ ସେବାସଦନ
ରୁମ୍ ନଂ-୧୧୧, ମ୍ୟୁନିସିପାଲଟି ମାର୍କେଟ
ଓ.ଏମ୍.ପି. ଛକ, କଟକ-୩






# ଦାରୁଦେବତା ପ୍ରଭୁ ଶ୍ରୀଜଗନ୍ନାଥ

ଦାମୋଦର ପାଢ଼ୀ

ଜଡ଼, ଚେତନ, ଚର-ଅଚର, ବିଶ୍ୱବ୍ରହ୍ମାଣ୍ଡର ସ୍ୱାମୀ ପ୍ରଭୁ ସ୍ୱୟଂ ଦାରୁବ୍ରହ୍ମ ଜଗନ୍ନାଥ । ବିଶ୍ୱରେ ଏପରି ଏକ ଧର୍ମ, ଏକ ସଂସ୍କୃତି, ଏକ ଧାମ, ଏକ ଦର୍ଶନ - ଯାହାକୁ ସମସ୍ତେ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଆପଣାର କରିବାରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରି ଆସିଛନ୍ତି । ସମସ୍ତ ଧର୍ମ ଚେତନାରେ । ଭାବନାରେ, ପ୍ରଚଳିତ ପ୍ରଥାରେ ବିଭିନ୍ନ ଧାତୁ, ଶିଳାରେ ଦେବଦେବୀଙ୍କୁ ରୂପାନ୍ତର କରି ଉପାସନା କରାଯାଉଛି । କିନ୍ତୁ ଏକମାତ୍ର ମହାପ୍ରଭୁ ଜଗତର ନାଥ, ଜଗନ୍ନାଥ ଦାରୁବ୍ରହ୍ମ ସହ ଦାରୁଦେବତା ରୂପେ ବିଶ୍ୱରେ ପୂଜିତ । ଏକ ବିଚିତ୍ର ଲୀଳା, ଏକ ବିଚିତ୍ର ରୂପାନ୍ତର, ଏକ ଅଲୌକିକ ରୂପ - ବେଶ ତିନିଠାକୁର ଓ ସୁଦର୍ଶନ । ଏହି ରୂପକୁ କୌଣସି ରାଜା, ଗଜପତି, ସେବାୟତ, ପଣ୍ଡା, ସୁଆର, ବିଶ୍ୱକର୍ମା ପରିକଳ୍ପନା କରିଛନ୍ତି ନା ଗଢ଼ିଛନ୍ତି । ପ୍ରଭୁ ଦାରୁବ୍ରହ୍ମଙ୍କ ବିଜେ କରାଇବା ନିଜର ରୁଚି, ଭକ୍ତର ଚାହିଦା, କାଳର ପ୍ରଭାବ, ସମୟର ଉପଯୁକ୍ତ ବାତାବରଣକୁ ନେଇ ପ୍ରଭୁ କାଳିଆ ଠାକୁର ଆତଜାତ ଓ ବାରମାସେ ତେର ଯାତ କରିଆସିଛନ୍ତି । ସବୁକିଛି ମୁକ୍ତ, ଖୋଲା, ନିର୍ମଳ, ଭାବମୟ ।

ଭାବଗ୍ରାହି ଭାବରେ ଜଗତରେ ଜଗନ୍ନାଥ ଖ୍ୟାତ । ଅନୁଭବୀ, ଭକ୍ତ ହିଁ କେବଳ ଜାଣିପାରିବ ପ୍ରଭୁ ଜଗନ୍ନାଥଙ୍କର ମହିମା । ବାରମାସରେ ଥରେ ଆଚାଣ୍ଡାଳ ବ୍ରାହ୍ମଣ, ସର୍ବଧର୍ମ, ଜାତି, ବର୍ଣ୍ଣଙ୍କୁ ଦର୍ଶନ ଦେବାକୁ ସେମାନଙ୍କ ସହ ଏକାତ୍ମ ହେବାକୁ । ପ୍ରଭୁ ରଥଯାତ୍ରାରେ ଶ୍ରୀମନ୍ଦିରର ରତ୍ନ ସିଂହାସନରୁ ସ୍ନାନପୂର୍ଣ୍ଣମୀ ପରଠାରୁ ଓହ୍ଲାଇ ଗୁଣ୍ଡିଚାରେ ନନ୍ଦିଘୋଷ, ତାଳଧ୍ୱଜ, ଦେବଦଳନରେ ବିଜେକରି ବଡ଼ଦାଣ୍ଡରେ ଚାଲିଥାଆନ୍ତି । ଗୁଣ୍ଡିଚା ମନ୍ଦିରରେ ରହଣି ସହ ପୁଣି ଫେରନ୍ତି । ସୁନାବେଶ, ଅଧରପଣା, ବଡ଼ ଏକାଦଶୀ ପାଳନ ପ୍ରଭୁ କରିଥା'ନ୍ତି ଓ ନୀଳାଦ୍ରି ବିଜେ ଦିନ ମହାଲକ୍ଷ୍ମୀଙ୍କୁ ଚାହାଣୀ ମଣ୍ଡପରେ ଦର୍ଶନ, ସିଂହଦ୍ୱାର ବନ୍ଦ ଓ ମାନଭଞ୍ଜନ ସହ ରସଗୋଲା ମିଠାଭୋଗରେ ସନ୍ତୋଷ ହୋଇ ପୁଣି ରତ୍ନ ସିଂହାସନକୁ ବିଜେ, ବାସ୍ତବରେ ଏହା ମନୁଷ୍ୟକୃତ ନୁହେଁ । ଗଭୀର ଭାବେ ଜଣେ ଦର୍ଶକ, ଯିଏ ଏଠାରେ ଦର୍ଶନ ନିମନ୍ତେ ଆସି ପ୍ରଭୁଙ୍କ ଲୀଳା - ଖେଳା ଦେଖି ନିଜେ ଭକ୍ତ ହୋଇଯାଏ ସେ ହିଁ ଅନୁଭବ



କରିପାରିବ ଜଗନ୍ନାଥଙ୍କର ଅତୁଟ ମହିମା । ନୀଳାଦ୍ରି ବିଜେ ସମୟରେ ଜ୍ୟେଷ୍ଠଭାଇ ବଳଭଦ୍ର, ଭଗ୍ନୀ ସୁଭଦ୍ରା ରଥରୁ ଓହ୍ଲାଇ ପହଣ୍ଡି ହୋଇ ସିଂହଦ୍ୱାର ବାଇଶି ପାହାଚ ପାର ହୋଇ ଚାଲି ଯିବାକୁ ବସିଥା'ନ୍ତି । କିନ୍ତୁ କାଳିଆ ଠାକୁର ଚକାଡ଼ୋଳା ଚକାନୟନ ନନ୍ଦିଘୋଷରୁ ଓହ୍ଲାଇବାକୁ ଅଝଟ ଓ ସେଠାରୁ ଚୋରା ଚାହାଣୀରେ ମହାଲକ୍ଷ୍ମୀଙ୍କୁ ଦେଖି ଅଛନ୍ତି ଓ ମୁହଁ ବୁଲାଇ ଦୋଳମଣ୍ଡପ ସାହି ପଟେ ବୁଲି ପଡ଼ନ୍ତି । ଯେତେବେଳେ ପହଣ୍ଡିରେ ଭାଇଭଉଣୀ ଚାଲିଯାଆନ୍ତି ପଛରେ ଭକ୍ତଙ୍କ ମେଳରେ ପନ୍ତି ଖାଇବାକୁ ପଙ୍ଗତ କରିଥା'ନ୍ତି କାଳିଆ ସାଆନ୍ତ ଜଗନ୍ନାଥ । ସମରକଳାର ବନାଟି, ଅଗ୍ନିବନାଟି ସହ ବିଭିନ୍ନ ବାଣ, ଆତସବାଜି ଫୁଟୁଥାଏ । ଏଥିରେ ଭୁଲାମନରେ ଭୁଲି ଯାଆନ୍ତି ନୀଳାଦ୍ରି ବିଜୟର କଥା । ମଧରାତ୍ରୀ, ଆଗମନ, କଳା ଧୂସରିଆ ମେଘ, ପତ୍ନୀ ପ୍ରାଣପ୍ରିୟା ମହାଲକ୍ଷ୍ମୀଙ୍କର ଅଭିମାନ, ସିଂହଦ୍ୱାର ବନ୍ଦ ହୋଇଯିବା ଭୟ କଥା ମନକୁ ଆସିବାମାତ୍ରେ ସତରେ କାଳିଆ ଠାକୁର ଅଝଟିଆ ଶିଶୁଙ୍କ ପରି ଚଞ୍ଚଳ ପାଦ ପକାଇ ପହଣ୍ଡି ବିଜେରେ ଏକାଥରକେ ସିଂହଦ୍ୱାର କବାଟ ପାର ହୋଇ ବାଇଶି ପାହାଚକୁ ଛୁଟି ଯାଆନ୍ତି । ଏହା ଅନୁଭବୀ ହିଁ ଦେଖିଲେ ଅନୁଭବ କରିବ, ଯେ, ଏ କି ଧରଣର ଠାକୁର, ଦାରୁବ୍ରହ୍ମ, ଦେବତା ନା ମଣିଷଙ୍କ ଭିତରେ ଜଣେ ଶିଶୁ । ଦଇତାପତିମାନେ କେତେ ଚେଷ୍ଟା କରୁଥିବେ ବଳଭଦ୍ର, ସୁଭଦ୍ରାଙ୍କ ପହଣ୍ଡି ପଛେ ପଛେ କାଳିଆ ସାଆନ୍ତଙ୍କୁ ପହଣ୍ଡିରେ ନେବାକୁ କିନ୍ତୁ ବୃଥା । ଆଦୌ ଘୁଞ୍ଚିବାକୁ ଅଝଟ ଠାକୁର




କାଳିଆ କାହ୍ନୁ ପ୍ରସ୍ତୁତ ନୁହନ୍ତି । କିନ୍ତୁ ଯେତେବେଳେ ମନେ ପଡ଼ିଯାଏ ଯେ, ଭାଇ, ଭଉଣୀ ସିଂହଦ୍ୱାର ପାର ହୋଇ ଶ୍ରୀମନ୍ଦିର ଅଭିମୁଖେ ଚାଲିଗଲେଣି, ବିଳମ୍ବ ହେଲେ ପ୍ରାଣପ୍ରିୟା ମହାଲକ୍ଷ୍ମୀ କବାଟ ବନ୍ଦ କରିଦେଲେ ମେଘନାଦ ପାଚେରୀ ଏପଟେ ରହି ମୂଷଳ ବର୍ଷାରେ ଭିଜିବାକୁ ହେବ, ଅବିଳମ୍ବେ ବିନା ବାଧା, କ୍ଳେଶ ପରିଶ୍ରମରେ ଡଗଡ଼ଗ ହୋଇ ପହଣ୍ଡିରେ ଚାଲିଲେ ସିଧା ଶ୍ରୀମନ୍ଦିର ବାଇଶି ପାହାଚକୁ । ସେ ସମୟରେ ସେବାୟତ ଦଇତାପତିମାନେ ନିର୍ବିକାର ଭାବେ, ଆଚମ୍ବିତ ହୋଇ ଦଉଡ଼ିଥା'ନ୍ତି କାଳିଆକୁ କୁଣ୍ଢାଇ କରି । ଏହା ବାସ୍ତବରେ ଏକ ଶିଶୁର ଅଝଟପଣିଆ ପରି ଭକ୍ତକୁ ମନେହୁଏ ।

ନବକଳେବର ସମୟରେ ଦାରୁଦେବତାଙ୍କର ଦାରୁ ପରିବର୍ତ୍ତନ ଓ ନାଭିବ୍ରହ୍ମରେ ନବଜୀବନ ରୋପଣ କରାଯାଇଥାଏ । କିନ୍ତୁ ନବକଳେବର ମଧ୍ୟରେ ପ୍ରଭୁଙ୍କୁ ସ୍ନାନ ମଣ୍ଡପରେ ୧୦୮ ସୁନାକଳସରେ ସ୍ନାନ କରାଯିବା, ଗୁଣ୍ଡିଚା ଯାତ୍ରାରେ ବର୍ଷାରେ ଭିଜି ଭିଜି ପହଣ୍ଡି ବିଜେ ପ୍ରଭୃତିରେ ମଧ୍ୟ ଦାରୁ ଦେବତାଙ୍କର କୌଣସି କ୍ଷୟକ୍ଷତି ହୋଇନଥାଏ । ଏହା ହିଁ ଅଲୌକିକ ଦାରୁଦେବତାଙ୍କ ମହିମା । ଏହି ଚକାନୟନଙ୍କ ଚକାଆଖି ଯାଆର ଆଖିରେ ମିଶିଯାଏ ଓ ଆପେ ଆପେ ଭକ୍ତି ଅଶ୍ରୁ ସମର୍ପିତ ହୋଇ କର ପଲ୍ଲବରେ ଅପୂର୍ବ ଅନୁଭବ ସୃଷ୍ଟି ହୋଇଥାଏ । ରଥାରୂଢ଼ ତିନିଠାକୁର ସୁଦର୍ଶନ ସହ ସୁନାବେଶରେ ଭକ୍ତମାନଙ୍କର ମାନସର ସମସ୍ତ ଗ୍ଲାନି, ବୈରାଗ ମନୋଭାବକୁ ହରଣ କରି ଏକ ସୁବାସିତ ପରିବେଶ ମଧ୍ୟରେ ସୁସ୍ଥ ବାତାବରଣ ଜୀବନକୁ ଆଣି ଦେଇଥା'ନ୍ତି । ଖୋଲା ଶ୍ରୀମନ୍ଦିର, ଖୋଲା ବଡ଼ଦାଣ୍ଡ, ଖୋଲା ଆନନ୍ଦବଜାର ଆଉ ଖୋଲା ମନ୍ଦିର ବେଢ଼ା, ପତିତପାବନ ବାନାର ନୀଳଚକ୍ର ନୀଳଅମ୍ବୁ ମଧ୍ୟରେ ଭକ୍ତଙ୍କର ଚିତ୍ତକୁ ଅଲୌକିକ ଆହ୍ଲାଦ ମଧ୍ୟରେ ଭକ୍ତି ତରଙ୍ଗ ସୃଷ୍ଟି କରୁଛି । ଗରୁଡ଼ଖମ୍ବର ପଛପଟେ ଠିଆହୋଇ ରତ୍ନ ସିଂହାସନେ ବିଜେ ଜଗତର ନାଥ ପ୍ରଭୁ ଶ୍ରୀକଳାଠାକୁରଙ୍କ ଚକାନୟନରେ ନିଜର ଚାତକ ନୟନ ମିଶାଇ ଦେଲେ ଆଉ ଏହି ପାର୍ଥିବ ଜଗତର କୌଣସି ଚିନ୍ତାଚିନ୍ତନ ମନ, ହୃଦୟକୁ ଆସିନଥାଏ ।

ଏହି ସେହି ପ୍ରଭୁ ଜଗତର ନାଥ ଦାରୁବ୍ରହ୍ମ ଦାରୁଦେବତା । ଦାରୁଦେବତା, ଦାରୁବ୍ରହ୍ମ କହିଲେ ଆପେ ଆପେ ମନକୁ ଚାଲିଆସେ ସେହି ବିଶ୍ୱାବସୁ ଶବର ଯିଏ ଦାରୁମୂର୍ତ୍ତି ନୀଳମାଧବଙ୍କୁ ପୂଜାକରି ଆସୁଥିଲେ । ଜାରା ଶବରର ଶରାଘାତରେ ଶ୍ରୀକୃଷ୍ଣ ଦ୍ୱାପର ଯୁଗାବତାରର ପରିସମାପ୍ତି ପରେ ଶେଷ ଦାରୁ ମହୋଦଧିରେ ଭାସମାନ ହୋଇ ଶ୍ରୀକ୍ଷେତ୍ର ଶଙ୍ଖକ୍ଷେତ୍ରରେ ଲାଗିବା ଓ ନିଜେ ବୃଦ୍ଧ ବିଶ୍ୱକର୍ମା ରୂପେ ଅବତରୀ, ନିଜର ପ୍ରତିମାକୁ ରୂପରେଖ ଦେବା ଓ ଶେଷରେ ହାତ, ଗୋଡ଼, ପାଦ, କାନ ହୀନ ଅବତାରରେ ପ୍ରଭୁ ଚକାଡ଼ୋଳିଆ, ଭାଇଭଉଣୀଙ୍କ ସହ ନୀଳକନ୍ଦରରେ ଶୋଭା ପାଇଲେ ଓ ଲକ୍ଷ ଲକ୍ଷ ଭକ୍ତଙ୍କ ଗହଣରେ ପୂଜିତ ହେଲେ । ସତରେ ଶବର ଜାତିର ଦେବତା, ଶବରଙ୍କର ଆରାଧ୍ୟ ଉପାସନାର ଦେବତା 'ଜଗନ୍ତ'ରୁ ଜଗନ୍ନାଥ ନାମରେ ନାମିତ ହୋଇ ଆଜି ଆର୍ଯ୍ୟ ସମାଜର ଆରାଧ୍ୟ ଦେବ ହୋଇଛନ୍ତି । ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ଆପଣାର କରି ନେଇଛନ୍ତି ଓ ପୃଥିବୀର ବିଭିନ୍ନ ପ୍ରାନ୍ତରରେ ସେହି 'ଜଗନ୍ତ' ଆଦିବାସୀଙ୍କ ନାଥ ଘୋଷଯାତ୍ରା ସହ ପୂଜା ପାଇ ଆସୁଛନ୍ତି ।

ଜଗନ୍ନାଥ ଉପାସନା ବିଭିନ୍ନ ଧର୍ମ ମତବାଦର ସମନ୍ୱୟ ପୀଠ ରୂପେ ବୌଦ୍ଧ, ବୈଷ୍ଣବ, ଶୈବ, ଶାକ୍ତ ପ୍ରଭୃତି ସମସ୍ତେ ଦାରୁବ୍ରହ୍ମଙ୍କୁ ନିଜର ବୋଲି ପ୍ରମାଣ କରି ଚାଲିଛନ୍ତି । କିନ୍ତୁ ଦାରୁବ୍ରହ୍ମ ଆଦିମ ଶବର ବିଶ୍ୱାବସୁ ଜାତିର ପୂଜିତ ଇଷ୍ଟ ଦେବ ଓ ନୀଳାଦ୍ରି କନ୍ଦରରେ ବିଜେ କରିଛନ୍ତି । ପ୍ରାଚୀନ ଶବର ଗୋଷ୍ଠୀର ଇତିବୃତ୍ତ ଓ ମହେଞ୍ଜୋଦାରୋ ପୂର୍ବକାଳୀନ ଦାରୁପୂଜାର ଅବଶେଷ ଅଦ୍ୟାପି ଗଞ୍ଜାମ ମାଳ ଭିତର ସଉରା ଗୋଷ୍ଠୀ ମଧ୍ୟରେ ପ୍ରଚଳିତ ତା'ର ବର୍ଣ୍ଣନା ହୋଇଛି । ଅଷ୍ଟ୍ରିକ - ଶବର - ଗୋଷ୍ଠୀର ବୃକ୍ଷ ଦେବତା କିପରି ବୈଦିକ ଯୁଗରୁ ଦାରୁ ଦେବତା ରୂପେ ପୂଜା ପାଇ ଆସୁଥିଲେ ଓ ବୈଦିକ ଆର୍ଯ୍ୟ, ଅନାର୍ଯ୍ୟମାନଙ୍କର ସମନ୍ୱୟର ପ୍ରତୀକ ରୂପେ ରହିଆସିଛନ୍ତି । ଶବରଙ୍କ ଉପାସନାର ଦାରୁଦେବତା, ଜଗନ୍ତନାଥଙ୍କୁ ଆର୍ଯ୍ୟ, ଜୈନ, ନିଜର କରିବାକୁ ପ୍ରଚେଷ୍ଟା କରିଥିବା ଇତିହାସ, ପୁରାଣ କହୁଛି । ଜୈନମାନେ 'ଜଗନ୍ତ' ସହିତ ସ୍ୱଧର୍ମର 'ନାଥ' ଶବ୍ଦ ଯୋଗକରି ଦାରୁକୁ ଜଗନ୍ତନାଥ ବା ଜଗନ୍ନାଥ ଅଭିହିତ କରିଥିବା ବେଳେ ଆର୍ଯ୍ୟମାନେ ଦାରୁ ସହିତ ପରମ-ଭାବ-ଦ୍ୟୋତକ 'ବ୍ରହ୍ମ' ଶବ୍ଦ ଯୋଗକରି 'ଦାରୁବ୍ରହ୍ମ' ରୂପେ ପୂଜା କରିଆସିଛନ୍ତି ।

ବାହାର ଅଞ୍ଚଳରୁ ଆର୍ଯ୍ୟମାନେ ଭାରତବର୍ଷକୁ ଆସିବାର ବହୁ ପୂର୍ବରୁ ଆଦିବାସୀ ଶବରମାନେ 'ଜଗନ୍ତ' ବୃକ୍ଷପୂଜା ଜଗନ୍ନାଥ ରୂପେ ଉପାସନା କରି ଆସିଥିଲେ । ହସ୍ତପଦ ବିହୀନ ଗଣ୍ଡି 'ମାଦଳ'କୁ ଶବରମାନେ ପୂଜା କରୁଥିଲେ । କ୍ରମଶଃ ଏହା ଶବରୀ ନାରାୟଣ ଓ ନୀଳମାଧବ ଭାବରେ ଉପାସିତ ହେଲେ । ପଞ୍ଚଦଶ ଶତାବ୍ଦୀ ବେଳକୁ ଦାରୁବ୍ରହ୍ମ ଜଗନ୍ନାଥ ଶବରମାନଙ୍କର ଦେବତା ରୂପେ ସମାଜରେ ପରିଚିତ ହେବା କବି ସାରଳା ଦାସଙ୍କ ରଚିତ ମହାଭାରତରେ ବର୍ଣ୍ଣନା ଅଛି ।

ଏହିପରି ପ୍ରାଚୀନ କାଳରୁ ଉପାସିତ ହୋଇ ଆସୁଥିବା ଅଷ୍ଟ୍ରିକ୍ ଶବର 'ଦାରୁ'କୁ ବ୍ରହ୍ମ ଭାବରେ ନିଜର କରି ବୈଦିକ ଆର୍ଯ୍ୟ ଋକ୍‌ବେଦ କାଳରୁ ମନରେ ପୋଷଣ କରି ଆସିଥିବା ଅଭିଳାଷକୁ ଚରିତାର୍ଥ କଲା । ଫଳରେ ଏହି ଦିନଠାରୁ ଦାରୁଦେବତା 'ଦାରୁବ୍ରହ୍ମ' ତଥା ପୁରୁଷୋତ୍ତମ ନାମରେ ବ୍ରାହ୍ମଣ୍ୟ ଧର୍ମର ପ୍ରତୀକ ରୂପେ ଉପାସିତ ହୋଇ ଆସୁଛନ୍ତି ।

ଏହା ଜଗତର ଧର୍ମୀୟ ପରମ୍ପରାର ଏକ ନିରାଟ ସତ୍ୟତା ବହନ କରି ଆସିଛି ଯେ, ଦାରୁଦେବତା 'ଜଗନ୍ନାଥଙ୍କୁ ସମସ୍ତ ଧର୍ମାବଲମ୍ବୀ ନିଜର ବୋଲି ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । ସ୍ୱ ସ୍ୱ ଧର୍ମର ଉପାସ୍ୟ ଦେବତାଙ୍କ ସହିତ ଜଗନ୍ନାଥଙ୍କୁ ଏକତ୍ର ପ୍ରତିଷ୍ଠା କରି ଉପାସନାର ଧାରା ବଦଳାଇବା ସକାଶେ ବହୁ ଯତ୍ନ ହୋଇଛି ।





ଯେଉଁ ଶବରମାନଙ୍କର ଆରାଧ୍ୟ ଦେବ ଦାରୁଦେବତାକୁ ଆଜି ଏ ସମାଜ ଆପଣାର କରିନେଲା କିନ୍ତୁ ସେହି ମୂଳ ଉପାସକ ବିଶ୍ୱାବସୁର ଦାୟାଦମାନଙ୍କୁ ସ୍ମରଣ କରିବାର ସମୟ ଆସିଛି । ବିଶ୍ୱାବସୁ ଶବର ଆଦିମ ବଂଶଧରଙ୍କର ସଂସ୍କୃତି ସେହି ସମୟରେ ସମାଜରେ ଉଚ୍ଚକୋଟୀର ସଂସ୍କୃତି ରୂପେ ଶୀର୍ଷସ୍ଥାନ ଅଧିକାର କରିଥିଲା । ଏହି ଘୋଷଯାତ୍ରା, ପତିତପାବନ ଶ୍ରୀଜଗନ୍ନାଥଙ୍କ ସମସ୍ତ ଲୀଳା ଶବରୀ ସଭ୍ୟତା, ସଂସ୍କୃତିର ରୂପାୟନ ମାତ୍ର । ଭାରତକୁ ନାଗମାନେ ଆସିବାର ବହୁପୂର୍ବରୁ ଭାରତବର୍ଷରେ ଶାବରୀ ସଭ୍ୟତା ପ୍ରଭାବ ବିସ୍ତାର କରିଥିଲା । ତତ୍କାଳୀନ ସମାଜରେ ଅଙ୍ଗୀର, ଭୃଗୁ ଓ ଅର୍ଥବନ ଅଗ୍ରଗଣ୍ୟ ଶାବରୀ ସଂସ୍କୃତି, ସମାଜର ବ୍ୟକ୍ତିବିଶେଷ ଥିଲେ । ସମୟର ଚକ ଗଡ଼ି ଚାଲିଥିବା ସହ ଅନ୍ୟ ଧର୍ମ, ସଂସ୍କୃତି, ସଭ୍ୟତାର ଲୋକ ଏହି ଦେଶରେ ଅନୁପ୍ରବେଶ କରି ଶବର ସଂସ୍କୃତିକୁ ଆପଣେଇ ପ୍ରଭୁତ୍ୱ ବିସ୍ତାର କରିବା ଇତିହାସ ସାକ୍ଷୀ ଦେଉଛି । ଇତିହାସ କହେ, ଶବର ଜାତି ସଦାସର୍ବଦା ଅତ୍ୟାଚାରିତ, ଅବହେଳିତ କିନ୍ତୁ ସେମାନେ ଅତ୍ୟାଚାରୀ ନଥିଲେ ।

ରାମାୟଣ ପୃଷ୍ଠାରେ ଶବର ଜାତିର ମହିମା ବର୍ଣ୍ଣିତ ହୋଇଛି । ଭଗବାନ ଅବତାରୀ ମହାପ୍ରଭୁ ଶ୍ରୀରାମଚନ୍ଦ୍ର ଶବରୀ କୁଟୀରରେ ଆତିଥ୍ୟ ଗ୍ରହଣ କରିଥିଲେ । ଶବରୀ ନିଜେ କୋଳି ମିଠା - ଖଟା ଚାଖି ଅଇଁଠା କୋଳିକୁ ବଢ଼ାଉଥିବାବେଳେ ପ୍ରଭୁ ଶ୍ରୀରାମଚନ୍ଦ୍ର ଅତି ଶ୍ରଦ୍ଧାରେ ଖାଉଥିଲେ । ବନବାସ ସମୟରେ ରାମଚନ୍ଦ୍ର ଶବର ରାଜା ଗୁହକ ଶବରର ଆତିଥ୍ୟ ଗ୍ରହଣ କରିଥିଲେ । ମହାଭାରତରେ ଶବର ସନ୍ତାନ ଏକଲବ୍ୟ ଗୁରୁ ଦକ୍ଷିଣାରେ କିପରି ଜୀବନତମାମ ଅତ୍ୟାଚାରିତ ହୋଇଥିଲା ଆମ୍ଭ ସମସ୍ତଙ୍କୁ ଜଣା । ଶିବ ପୁରାଣରେ ବର୍ଣ୍ଣିତ ଅଛି ଯେ, ଶବର ଦ୍ୱାରା ପ୍ରଥମେ ଶିବରାତ୍ରୀ ଓ ଜାଗର ଅମାବାସ୍ୟା ପାଳିତ ହୋଇଥିଲା । ଶବର ନଳ, ଅଠା, କାଣ୍ଡିଆ ଓ ଜାଲ ଧରି ଘୋର ଜଙ୍ଗଲରେ ଶିକାର କରିବାକୁ ବାହାରିଥିଲା । କିନ୍ତୁ ପଥଭ୍ରାନ୍ତ ହୋଇ ଗୃହାଭିମୁଖୀ ନହୋଇ ବାଘର ଆକ୍ରମଣରୁ ଜୀବନ ବଞ୍ଚାଇବାକୁ ବେଲଗଛ ଉପରେ ଚଢ଼ିଯାଇଥିଲା । ନିଦ୍ରା ନ ଆସିବା ନିମନ୍ତେ ପ୍ରତି ମୁହୂର୍ତ୍ତରେ ବେଲପତ୍ର ଛିଣ୍ଡାଇ ବାଘ ଉପରକୁ ପକାଉଥିଲା । ତା'ଫଳ ସ୍ୱରୂପ ସେଠାରେ ଶିବଲିଙ୍ଗ ଆବିର୍ଭାବ ହୋଇଥିଲା । ସାରାରାତ୍ର ଉଜାଗର ରହି ଶିବଙ୍କୁ ପାଇ ପ୍ରାଣରକ୍ଷା ସହ ଜୀବନର ମୋକ୍ଷ ଲାଭ କରିଥିଲା । ସେହି ଦିନଠାରୁ ସମାଜର ପ୍ରତ୍ୟେକ ବ୍ୟକ୍ତି ଶିବରାତ୍ରି ପାଳନ କରିଆସୁଛନ୍ତି । ଭଗବାନ ଶ୍ରୀକୃଷ୍ଣ ଶବରମାନଙ୍କ ପୋଷାକରେ ନିଜକୁ ସଜାଇଛନ୍ତି ଓ ଶବରମାନେ ନଳ ଧରିବା ପରି ଶ୍ରୀକୃଷ୍ଣ ନଳରୁ ତିଆରି ବଂଶୀ ଧାରଣ କରିଥିଲେ । ପାଣ୍ଡବମାନେ ଦ୍ରୌପଦୀଙ୍କ ସହ କାମ୍ୟକ ଅରଣ୍ୟରେ ଆତ୍ମଗୋପନ କରିବା ସମୟରେ ଶବରପଲ୍ଲୀର ଅନତି ଦୂରରେ ରହୁଥିଲେ ଓ ନିଜକୁ ଶବର ବେଶରେ ସଜ୍ଜିତ କରି ରଖୁଥିଲେ । ଶବରଙ୍କ ପରି ବକଳ ପିନ୍ଧିବା ସହ ବସନ ଭୂଷଣ ଚାଲିଚଳଣୀରେ ନିଚ୍ଛକ ଶବର ପାଲଟି ଯାଇଥିଲେ । ଯାଜ୍ଞସେନୀ ଦ୍ରୌପଦୀ ନିଜକୁ ଶବର ରମଣୀ ପରି ସଜାଇଥା'ନ୍ତି । ସେ ସମୟରେ ଆର୍ଯ୍ୟ କ୍ଷତ୍ରିୟ ବଂଶଜ ବୋଲି ପଞ୍ଚୁପାଣ୍ଡବ ଭୁଲି ଶବର ସଂସ୍କୃତି ସହ ଏକାକାର ହୋଇଯାଇଥିଲେ । ରାଜା ବିଶ୍ୱାବସୁଙ୍କ କନ୍ୟା ଲଳିତା ବିଦ୍ୟାପତିଙ୍କ ପ୍ରେମରେ ପାଗଳ ହୋଇ ନୀଳମାଧବଙ୍କୁ ଦର୍ଶନ କରାଇଥିଲେ ଓ ନୀଳମାଧବଙ୍କୁ ଏଠାରୁ ଅପହରଣ କରି ବିଦ୍ୟାପତି ଚାଲିଯିବା ପରେ ବିଶ୍ୱାବସୁ, ଗର୍ଭବତୀ କନ୍ୟା ଲଳିତାଙ୍କୁ ନେଇ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟକୁ ଯାଇଥିଲେ । ରାଣୀ ଶ୍ରୀଗୁଣ୍ଡିଚାଙ୍କ କଥାରେ ବିଦ୍ୟାପତିଙ୍କ ଦ୍ୱାରା ଅନ୍ତଃସତ୍ତ୍ୱା ଶବର କନ୍ୟା ଲଳିତାଙ୍କୁ ଶ୍ରୀମନ୍ଦିର କଡ଼ରେ ଆଶ୍ରା ଦେଇଥିଲେ ଓ ମୃତ୍ୟୁଯାଏଁ ବିଶ୍ୱାବସୁଙ୍କୁ ନଜର ବନ୍ଦୀରେ ରଖିଥିଲେ । ଲଳିତାଙ୍କ ଗର୍ଭରୁ ଜାତ ସନ୍ତାନଙ୍କ ବଂଶଧର ଆଜି ଶ୍ରୀଜଗନ୍ନାଥଙ୍କ ପାଦପଦ୍ମ ସେବାରେ ନିୟୋଜିତ ହୋଇଛନ୍ତି ଦଇତାପତି ହୋଇ । କିନ୍ତୁ ରାଜା ଇନ୍ଦ୍ରଦ୍ୟୁମ୍ନ ରକ୍ତବାହୁଙ୍କୁ ନିୟୋଜିତ କରିଥିଲେ ବିଶ୍ୱାବସୁର ବଂଶଧର ଶବରମାନଙ୍କୁ ଧ୍ୱଂସ କରିବାକୁ । ଏହି ଜାତିରେ ଜନ୍ମ ଗ୍ରହଣ କରିଥିବା କେଦାରେଶ୍ୱର ମହାପାତ୍ର ଶବର ଭତ୍ରକ ଭାଷାରେ ଲେଖିଯାଇଛନ୍ତି ଅନ୍ତରର ବେଦନା । ଯେଉଁ ଦାରୁବ୍ରହ୍ମ, ଦାରୁଦେବତାଙ୍କୁ ଆମେ ଆଜି ବିଶ୍ୱର ଏ କୋଣରୁ ସେ କୋଣକୁ ନେଇ ପହୁଞ୍ଚାଇଛେ, ଏହାଙ୍କର ସ୍ୱତନ୍ତ୍ର ରୀତିନୀତି, ପରମ୍ପରା, ସଂସ୍କୃତି ରହିଛି ତାହା ମଧ୍ୟ ସର୍ବଧର୍ମ ସମନ୍ୱୟର ପ୍ରତୀକ 'ଜଗନ୍ନାଥ ଧର୍ମ' ରୂପେ ଖ୍ୟାତ ହୋଇଚାଲିଛି । ସେହି ଦାରୁଦେବତାଙ୍କ ଆଦ୍ୟ ଉପାସକ ଶବର ଜାତିକୁ ଅବହେଳିତ ଅବସ୍ଥାରୁ ଉଠାଇବା ଆବଶ୍ୟକ ମନେହୁଏ ।

ଶବର ଭାଷାରେ ଲିଖିତ 'ଭତ୍ରକ'ରେ ଅନ୍ତରର ବେଦନାକୁ ବ୍ୟକ୍ତ କରି କବି କହିଛନ୍ତି, ହେ ନୀଳମାଧବ, ତୁମେ ନୀଳାଚଳିଆ । ସାଙ୍ଗରେ ଭାଇଭଉଣୀ ନେଇ ରହିଲ । ଭଉଣୀ ସୁଭଦ୍ରା ସ୍ୱାମୀଘରକୁ କାହିଁକି ଗଲେ ନାହିଁ ? ବଡ଼ଭାଇ ତୁମର ବଳଭଦ୍ର କାହିଁକି ଆପଣା ସ୍ତ୍ରୀକୁ ପର କରି ଦେଲେ ? ତୁମର କ'ଣ ହେଲା ଯେ, ତୁମେ ତୁମ ସ୍ତ୍ରୀକୁ ଦୂର କଲ ? ଏସବୁ କ'ଣ ଶବରମାନଙ୍କ ଅନ୍ତରାତ୍ମାର ଅଭିଶାପ ଦ୍ୱାରା ହୋଇଛି କି ? ତୁମକୁ ସବର୍ଣ୍ଣ ଆର୍ଯ୍ୟ ଭାଇମାନେ ଛଡ଼ାଇ ନେଲେ କିନ୍ତୁ ସେ ଦାରୁଦେବତା ଜଗନ୍ନାଥ ତୁମେ ଶବର ଚଳଣି ଛାଡ଼ି ପାରିଲ ନାହିଁ । ଯାଯାବର ଜୀବନ ଯୋଗୁଁ ଶବରମାନେ ସ୍ୱାମୀ-ସ୍ତ୍ରୀ ସାଂସାରିକ ଜୀବନରେ ଅଶାନ୍ତି, ବିରହ ଦଶା ଭୋଗୁଛନ୍ତି । ସେ ଦୁର୍ଦ୍ଦଶା ମଧ୍ୟ ତୁମକୁ ଲାଗି ଯାଇଛି କି ? ହେ ଜଗନ୍ନାଥ - ତୁମେ ଯଦି ଦିନେ ନୀଳମାଧବ ହୋଇଯିବ ଆମର ଏ ଶବର ସମାଜ ତୁମକୁ ମଥାରେ ମୁଣ୍ଡାଇ ବୁଲାଇବେ । ବିଶ୍ୱାବସୁ ଶବର ଜାତିର ଆକୁଳ ନିବେଦନରେ ଭରି ରହିଛି ପ୍ରଭୁ ଜଗନ୍ନାଥଙ୍କ ପୂର୍ବାବସ୍ଥାର ଦାରୁପୂଜା । ସଂସ୍କୃତି, ଧର୍ମ, ପରମ୍ପରା ଯାହା ଆଜି ଶ୍ରୀଜଗନ୍ନାଥଙ୍କଠାରେ ଉପଲବ୍ଧ ଓ ସମଗ୍ର ଓଡ଼ିଆ ଜାତି ଏହାକୁ ନେଇ ଗର୍ବିତ ତାହା ସେହି ବିଶ୍ୱାବସୁ ଶବର ଜାତି ସଂସ୍କୃତି, ଜାତି, ଧର୍ମ, ପରମ୍ପରାରୁ ଜାତ । ଏଣୁ ଗୋଟିଏ ସମାଜରେ ଗୋଟିଏ ଜାତିକୁ ସମ୍ମାନ ଦେଲେ ସେହି ଶବର ସଂସ୍କୃତିରେ ଆମ ଜଗନ୍ନାଥ, ଦାରୁଦେବତା ଶୋଭା ପାଇବେ ଓ ଆମ ରାଜ୍ୟ ଓ ଦେଶ ବିଶ୍ୱରେ ହସି ଉଠିବ ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
ପୁରୀ







# ଦାରୁରୂପୀ ଜଗନ୍ନାଥଃ ଭକ୍ତାନାମଭୟପ୍ରଦଃ

ଓମ୍ ପ୍ରକାଶ

**ପୃ**ଥିବୀରେ ହିନ୍ଦୁଧର୍ମ ତଥା ସର୍ବଧର୍ମ ସମନ୍ୱୟର ପ୍ରତୀକ ସ୍ୱୟଂ ଜଗନ୍ନାଥ । ସେ କୌଣସି ଧର୍ମର ମୁଖ୍ୟ ନୁହଁନ୍ତି ବରଂ ସେ ହେଉଛନ୍ତି ଏକ ଚେତନା । ଯାହା ସହିତ ଦୀର୍ଘକାଳରୁ ହିନ୍ଦୁଧର୍ମର ତଥା ଓଡ଼ିଆ ଜାତିର ପ୍ରାଣ ସ୍ପନ୍ଦନ ଅନ୍ତରଙ୍ଗ ଭାବେ ଜଡ଼ିତ । ସେ ବିଶ୍ୱରୁ ଊର୍ଦ୍ଧ୍ୱ ସଂପୂର୍ଣ୍ଣ ଜଗତର ପ୍ରତୀକ । ଭାରତବର୍ଷର ପୂର୍ବରେ ଶ୍ରୀପୁରୁଷୋତ୍ତମ (ଜଗନ୍ନାଥ) କଳିଯୁଗର ଦେବତା ହୋଇଥିବାବେଳେ ଦ୍ୱାରକାନାଥ ଦ୍ୱାପର ଯୁଗର, ଉତ୍ତରରେ ବଦ୍ରିନାଥ ସତ୍ୟଯୁଗର ଓ ଦକ୍ଷିଣରେ ରାମନାଥ ତ୍ରେତୟା ଯୁଗର ପ୍ରମୁଖ ଦେବତା । ତେଣୁ କଳିଯୁଗରେ ଚାରିଧାମ ଭିତରେ ଜଗନ୍ନାଥ ଧାମ ବା ପୁରୁଷୋତ୍ତମ ଧାମର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ଏହି ଧାମର ମହତ୍ତ୍ୱ ଅକଳ୍ପନୀୟ । ଯେଉଁଠାରେ କାକ ପାଇପାରେ ମୁକ୍ତିର ଆସ୍ୱାଦ, ସ୍ୱୟଂ ଶମ୍ଭୁ ହୋଇପାରନ୍ତି ବ୍ରହ୍ମହତ୍ୟା ପାପରୁ ମୁକ୍ତ । ଉତ୍କଳର ଧର୍ମପୀଠ ଶ୍ରୀଜଗନ୍ନାଥ କ୍ଷେତ୍ରକୁ ମହାନ୍ ଜ୍ଞାନୀ, ଗୁଣୀମାନେ ପଞ୍ଚକ୍ଷେତ୍ର ଏବଂ ଜଗନ୍ନାଥଙ୍କୁ ପଞ୍ଚଦେବତାଙ୍କ ସମାହାର ବୋଲି ଅଭିହିତ କରିଥା'ନ୍ତି । ଏହି କ୍ଷେତ୍ର ବୈଷ୍ଣବ ଧର୍ମ ବ୍ୟତୀତ ଗାଣପତ୍ୟ, ଶୈବ, ଶାକ୍ତ ଏବଂ ସୌରଙ୍କ ଉପାସନାର କ୍ଷେତ୍ର ବୋଲି ମଧ୍ୟ ପ୍ରମାଣ ରହିଛି । ତେଣୁ ଯଥାର୍ଥରେ କୁହାଯାଇଛି -

'ଗଣେ ନାରାୟଣେ ରଦ୍ରେ ଅମ୍ବିକ ଭାସ୍କର ତଥା ।
ଭିନ୍ନା ଭିନ୍ନ ନ କର୍ତ୍ତବ୍ୟଂ ଶ୍ରୀଜଗନ୍ନାଥ ନମଃସ୍ତୁତେ ।।'

ଏହାବ୍ୟତୀତ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଚାରିବେଦର ପ୍ରତୀକ ଭାବରେ ଗ୍ରହଣ କରାଯାଇ - ବଳଭଦ୍ରଙ୍କୁ ସାମବେଦର, ସୁଭଦ୍ରାଙ୍କୁ ଋକ୍‌ବେଦର, ଜଗନ୍ନାଥଙ୍କୁ ଯଜୁର୍ବେଦର ଓ ସୁଦର୍ଶନଙ୍କୁ ଅଥର୍ବବେଦର ପ୍ରତୀକ କୁହାଯାଏ । ଶ୍ରୀମଦ୍ ଭଗବଦ୍ ଗୀତାର ପଞ୍ଚଦଶ ଅଧ୍ୟାୟ ପୁରୁଷୋତ୍ତମ ଯୋଗ ନାମରେ କଥିତ । ସେହି ପୁରୁଷୋତ୍ତମ ହିଁ ଶ୍ରୀଜଗନ୍ନାଥ । କପିଳ ସଂହିତା ଅନୁସାରେ -

'ସର୍ବେଷାଂ ସର୍ବ କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ
ସର୍ବେଷାଂ ସର୍ବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମଃ ।'

ସବୁକ୍ଷେତ୍ର ମଧ୍ୟରେ ଶ୍ରେଷ୍ଠ ପୁରୁଷୋତ୍ତମ ବା (ପୁରୀ) ଏବଂ ସମସ୍ତ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ । ପୁଣି ଭାରତବର୍ଷର ଉତ୍କଳାନ୍ତର୍ଗତ ଭୂସ୍ୱର୍ଗ ପୁରୁଷୋତ୍ତମରେ ଶ୍ରୀଜଗନ୍ନାଥ ଦାରୁ ରୂପରେ ଅବସ୍ଥାନ କରୁଥିବାରୁ ଏହା ଦାରୁକ୍ଷେତ୍ର ବୋଲି ପ୍ରମାଣ ରହିଛି । ସେଥିପାଇଁ ତନ୍ତ୍ର ଯାମଳାର ଉକ୍ତି ଅନୁସାରେ -

'ଭାରତେ ଉତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ ।
ଦାରୁରୂପୀ ଜଗନ୍ନାଥଃ ଭକ୍ତାନାମଭୟପ୍ରଦଃ ।।'

ପୃଥିବୀ ମଧ୍ୟରେ ଦେଶ ଭାରତ । ଭାରତ ମଧ୍ୟରେ ରାଜ୍ୟ ଓଡ଼ିଶା । ଓଡ଼ିଶା ମଧ୍ୟରେ ଶ୍ରୀକ୍ଷେତ୍ର ବା ପୁରୀ ଏକ ବିଶ୍ୱ ପ୍ରସିଦ୍ଧ ସ୍ଥାନ । ବାସ୍ତବରେ ଭୂସ୍ୱର୍ଗ ରୂପେ କଥିତ ପୁରୁଷୋତ୍ତମ କ୍ଷେତ୍ରରେ ଭକ୍ତମାନଙ୍କୁ ଅଭୟ ପ୍ରଦାନ ପାଇଁ କେଉଁ ଅନାଦି କାଳରୁ ଦାରୁବ୍ରହ୍ମ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ବିଦ୍ୟମାନ ଅଛନ୍ତି । ତାଙ୍କ କୃପାଲାଭ ପାଇଁ ଲକ୍ଷ ଲକ୍ଷ ଭକ୍ତ କାହିଁ ସୁଦୂର ପ୍ରାଚ୍ୟ ଓ ପାଶ୍ଚାତ୍ୟ ରାଷ୍ଟ୍ରରୁ ଆସି ବର୍ଷସାରା ଶ୍ରୀକ୍ଷେତ୍ରରେ ଏକତ୍ର ହୁଅନ୍ତି । ଭକ୍ତ ନେତ୍ରରେ ଜଗନ୍ନାଥ ଦର୍ଶନ ହିଁ ଶ୍ରୀକ୍ଷେତ୍ରରେ ସର୍ବପୂଜା, ଯଜ୍ଞ ଓ ତପ ଅପେକ୍ଷା ଅଧିକ ପୁଣ୍ୟର ମାର୍ଗ ରୂପେ ବିବେଚିତ ହୁଏ । ଦର୍ଶନାଭିଳାଷୀ ଭକ୍ତମାନଙ୍କ ହୃଦୟରେ ଶ୍ରୀଜଗନ୍ନାଥଙ୍କ ବିରାଟ ନେତ୍ର ଯୁଗଳରେ ଅପଲକ ନେତ୍ର ମିଳନ ପାଇଁ ଯେଉଁ ବ୍ୟାକୁଳତା ସୃଷ୍ଟି ହୁଏ, ତା'ର ପଟାନ୍ତର ନାହିଁ । ଏହି କ୍ଷେତ୍ରର ମହିମା ଯେତେ ବର୍ଣ୍ଣନା କଲେ ମଧ୍ୟ ଅପୂର୍ଣ୍ଣ ରହିଯାଏ । ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଶ୍ରୀକ୍ଷେତ୍ରର ମହିମା 'କାରାକବିତା'ରେ ଅତି ଚମତ୍କାର ଭାବେ କହିଛନ୍ତି -

'ଭାରତ ସରସେ ଉତ୍କଳ କମଳ ।
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।'

ଏହା ବ୍ୟତୀତ ଆମଦେଶ ଏବଂ ଓଡ଼ିଶା ରାଜ୍ୟ କିପରି ଜଗତରେ ଶ୍ରେଷ୍ଠ ଏବଂ ମହାନ୍ ତାହା 'କପିଳ ସଂହିତା'ର ଉକ୍ତିରୁ ଜଣାପଡ଼େ -

'ବର୍ଷାଣାଂ ଭାରତ ଶ୍ରେଷ୍ଠ
ଦେଶାନାଂମୁତ୍କଳ ଶ୍ରୁତଃ





ଉତ୍କଳସ୍ୟ ସମୋଦେଶ
ଦେଶୋନାସ୍ତି ମହୀତଳେ ।'

ଏହି କ୍ଷେତ୍ରର ଆକର୍ଷଣରେ ଯୁଗେ ଯୁଗେ ବହୁ ମନୀଷୀ, ତପସ୍ୱୀ, ସାଧକ, ଧର୍ମ ପ୍ରଚାରକ, ଦାର୍ଶନିକ, ଲେଖକ, ଗବେଷକ ଏହି ପବିତ୍ର ଭୂମିରେ ପାଦ ଥାପି ନିଜକୁ ଧନ୍ୟ ମଣିଛନ୍ତି । ଯେତେବେଳେ ଯିଏ ଆସି ନିଜ ମତ ପ୍ରତିଷ୍ଠା କରିବାକୁ ଚାହିଁଛି, ଦାରୁଦେବତା ତାଙ୍କୁ ସେତେବେଳେ ବାଟ ଛାଡ଼ି ଦେଇଛନ୍ତି । ସେମାନଙ୍କ କଥା ଶୁଣିଛନ୍ତି ଏବଂ ସେଥିରୁ କିଛି ଗ୍ରହଣ କରିନେଇଛନ୍ତି ମଧ୍ୟ । ସେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ହୁଅନ୍ତୁ, ରାମାନୁଜ, ମାଧ୍ୱଚାର୍ଯ୍ୟ, ନିମ୍ବାର୍କଚାର୍ଯ୍ୟ, ନାନକ, କବୀର, ଶ୍ରୀଚୈତନ୍ୟ, ଗଣପତି ଭଟ୍ଟ, ତୁଳସୀ ଦାସ, ସାଲବେଗ, ବନ୍ଧୁ ମହାନ୍ତି ଅବା ଅନ୍ୟ କେହି ହୁଅନ୍ତୁ ନିଜର ପ୍ରତିଷ୍ଠା ପାଇଁ ସମସ୍ତେ ଜଗନ୍ନାଥଙ୍କୁ ବ୍ୟବହାର କରିଛନ୍ତି । ନିଜର ବିଶାଳ ବାହୁ ମେଲେଇ ପ୍ରଭୁ ସେମାନଙ୍କୁ ଗ୍ରହଣ କରିନେଇଛନ୍ତି । ଧନ୍ୟ ସେ ପ୍ରଭୁ ଧନ୍ୟ ସେ ଭକ୍ତ । ସେଇଥିପାଇଁ ତ ଜଗତର ନାଥ ଜଗନ୍ନାଥ ଏହି କ୍ଷେତ୍ରର ଆରାଧ୍ୟ ଦେବତା । ତାଙ୍କରି ନିମନ୍ତେ ଏଠାରେ ଗହଳ ଚଳହ, ନୃତ୍ୟ ଗୀତର ଆସର ଓ ସଦା ଆନନ୍ଦର ଉତ୍ସବ ମୁଖରିତ ।

ଶ୍ରୀମନ୍ଦିରର ଗଠନ ପ୍ରଣାଳୀ, ଶ୍ରୀମନ୍ଦିର ରୀତିନୀତି, ତ୍ରିମୂର୍ତ୍ତି ତତ୍ତ୍ୱ, ମହାପ୍ରସାଦର ମାହାତ୍ମ୍ୟ, ରୋଷଘରର ପାକ୍ ପ୍ରଣାଳୀ ନିଯୋଗର ଇତିହାସ, ଭୋଗର ଏବଂ ମଣୋହିର ପ୍ରକାର ଭେଦ, ମୁକ୍ତି ମଣ୍ଡପର ଐତିହ୍ୟ, ଶ୍ରୀମନ୍ଦିରର ସେବାପୂଜା, ଯାତ୍ରା ଉତ୍ସବ, କୋଇଲି ବୈକୁଣ୍ଠର ବିଶେଷତ୍ୱ ସହିତ ବିଗ୍ରହମାନଙ୍କ ଶରୀର ଗଠନ ସହିତ ଶରୀର ପରିବର୍ତ୍ତନ ଇତ୍ୟାଦିକୁ ସୂକ୍ଷ୍ମ ମନରେ ଆଲୋଚନା ପର୍ଯ୍ୟାଲୋଚନା କଲେ ଏକଥା ସ୍ପଷ୍ଟ ହେବ ଯେ, ଶ୍ରୀଜଗନ୍ନାଥ ହେଉଛନ୍ତି ଜଗତପୁରୁଷ, ସଂଜ୍ଞାତୀତ, ରୂପାତୀତ, ବର୍ଣ୍ଣନାତୀତ, ସୌନ୍ଦର୍ଯ୍ୟାତୀତ, କଳ୍ପନାତୀତ ପରଂବ୍ରହ୍ମ । ଏ ତ ହେଲା ସେହି ପରଂବ୍ରହ୍ମ ପୁରୁଷୋତ୍ତମଙ୍କ ଲୀଳାକ୍ଷେତ୍ରର ମହିମା । ଯେଉଁଥିପାଇଁ କ୍ଷେତ୍ର ନିଜକୁ ମହାନ୍ ମନେକରେ ।

ସମସ୍ତ ଦେବତାମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥ ଯେ ଜଗତ ଶ୍ରେଷ୍ଠ ତାହା ପୁରାଣଠାରୁ ଆରମ୍ଭ କରି ଅସଂଖ୍ୟ ଶ୍ଳୋକ ଓ ତାଙ୍କର ରୀତିନୀତିରେ ପ୍ରମାଣିତ କରିଦେଇଛି । ମଣିମା ଡାକ ଶ୍ରୀଜଗନ୍ନାଥଙ୍କୁ ବ୍ରହ୍ମାଣ୍ଡ ଈଶ୍ୱର ବୋଲି ପ୍ରମାଣିତ କରେ । ଏଠାରେ ଆମ୍ଭେ କହିବା ଯେ, ଯଦି ଜଗତ ବା ବିଶ୍ୱ ଏକ ତେବେ ଏଠାରେ ଲକ୍ଷ୍ମୀ, ଶିବ, ବ୍ରହ୍ମା, ଇନ୍ଦ୍ର, ଗଣେଶ, ଯମ ପରି ଦେବତା ଯେ ଅଦ୍ୱିତୀୟ ତାହା ସତ୍ୟ । ଜଗତଗୁରୁ ଆଦିଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ରଚିତ ଜଗନ୍ନାଥାଷ୍ଟକମ୍ ଶ୍ଳୋକର ପ୍ରଥମ ପଦରେ କୁହାଯାଇଛି ଯେ, ରମା, ଶମ୍ଭୁ, ବ୍ରହ୍ମା, ଇନ୍ଦ୍ର, ଯମ, ଗଣେଶ ଆଦି ଦେବତା ଶ୍ରୀଜଗନ୍ନାଥଙ୍କ ପଦ ସେବା କରନ୍ତି । ଏହି ଦେବାଦେବୀ ଯେ କେବେ ପୃଥିବୀବାସୀ ନୁହନ୍ତି, ତାହା ହେଲେ ଜଗନ୍ନାଥ ଯେ ଏମାନଙ୍କଠାରୁ ଶ୍ରେଷ୍ଠ ଏବଂ ମହାନ୍ ଏଥିରେ ଦ୍ୱିମତ ହେବାର ନାହିଁ । ଏହି ଦାରୁବ୍ରହ୍ମ ପ୍ରତ୍ୟକ୍ଷୀଭୂତ ସାକାର ବିଗ୍ରହ, ଯେ କି ଭକ୍ତିଯୋଗ ଦ୍ୱାରା ଉପାସନୀୟ । ସେ ସତ୍ୟ, ସନାତନ, ପୂର୍ଣ୍ଣ ବ୍ରହ୍ମ ସ୍ୱୟଂବିଷ୍ଣୁ ସେଥିପାଇଁ ମହାଭାରତର ସର୍ବଭୂତ ମୟତା ବୟାନରେ କୁହାଯାଇଛି -

'ବ୍ରହ୍ମସତ୍ୟଂ ତପଃସତ୍ୟଂ ସତ୍ୟଚୈବ ପ୍ରଜାପତିଃ
ସତ୍ୟାଭୂତାନି ଜାତାନି ସତ୍ୟଂ ଭୂତମୟଂ ଜଗତ୍ ।'

ଅର୍ଥାତ୍, ସଚ୍ଚିଦାନନ୍ଦ ସ୍ୱରୂପ ବ୍ରହ୍ମସତ୍ୟ, ତାଙ୍କର ତପଃ ବା ସାଧନାସତ୍ୟ, ତଦୀୟ ନାଭିକମଳରୁ ଉତ୍ପନ୍ନ ପ୍ରଜାପତି ସତ୍ୟ ଏବଂ ତାଙ୍କଠାରୁ ଜାତ ନିଖିଳ ଭୂତ ସୃଷ୍ଟି ମଧ୍ୟ ସତ୍ୟ । ଅତଏବ ଏହି ଭୂତମୟ ଜଗଦ୍ଧାମ ସର୍ବତୋଭାବେ ସତ୍ୟ ଏବଂ ଧାମ ସ୍ୱାମୀ ସତ୍ତମଭୂତ ।

ଶ୍ରୀଜଗନ୍ନାଥ ପରିକଳ୍ପନା ବହୁପ୍ରାଚୀନ । ସର୍ବପ୍ରାଚୀନ କୁହାଯାଉଥିବା 'ବ୍ରହ୍ମପୁରାଣ'ରେ ଜଗନ୍ନାଥଙ୍କର ଆବିର୍ଭାବ ସଂପର୍କରେ ସୂଚନା ମିଳେ ଯେ - 'ପୂର୍ଣ୍ଣାନନ୍ଦମୟଂ ବ୍ରହ୍ମ ଦାରୁବ୍ୟାଜ ଶରୀ ଧ୍ରୁକ୍' । ଏଣୁ ପ୍ରାଚୀନ ଉତ୍କଳରେ ଦାରୁମୂର୍ତ୍ତିରେ ବ୍ରହ୍ମ ଉପାସନାକୁ ଆର୍ଯ୍ୟ ସଂସ୍କୃତିରେ ମଧ୍ୟ ଗ୍ରହଣ କରାଯାଇଛି । ଏହାବ୍ୟତୀତ ଦ୍ୱାପର ଯୁଗରେ ସାରଳା ଦାସଙ୍କ ଦ୍ୱାରା ରଚନା କରାଯାଇଥିବା ମହାଭାରତରୁ ଉଦ୍ଧୃତ ଶ୍ରୀବିଷ୍ଣୁ ସହସ୍ରନାମରେ ମଧ୍ୟ ଶ୍ରୀଜଗନ୍ନାଥଙ୍କର ପରିକଳ୍ପନା କରାଯାଇ ଏପରି କୁହାଯାଇଛି ଯେ- 'ତସ୍ୟ ଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ' । ଶ୍ରୀଜଗନ୍ନାଥ ହେଉଛନ୍ତି ପୂର୍ଣ୍ଣବ୍ରହ୍ମ ଏବଂ ଶୂନ୍ୟ ଦେବତା । ତେଣୁ ଦାରୁଦେବତାଙ୍କର ଆଖି ଗୋଲ, ପେଟ ଗୋଲ, ହାତ ଗୋଲ, ପାଦ ମଧ୍ୟ ଗୋଲ । ଏ ସମସ୍ତ ଶୂନ୍ୟ ବାଦର ପ୍ରତୀକ ନିଜକୁ ଶୂନ୍ୟ ନକଲେ ବା ତାଙ୍କଠାରେ ନିଜକୁ ସମର୍ପଣ ନକଲେ ତାଙ୍କୁ ଚିହ୍ନିବା ବା ଦର୍ଶନ ପାଇବା ଅସମ୍ଭବ । ଅଚ୍ୟୁତାନନ୍ଦଙ୍କ ଭାଷାରେ -

'ଆଖିକୁ ଆଖିରେ ଦେଖରେ ବାବୁ
ଆଖିସେବି ଚକାଆଖି ପାଇବୁ ।'

ଉପନିଷଦରେ ପାଦପାଣି ବିହୀନ ଦାରୁଦେବତାଙ୍କର ରୂପ ପରିକଳ୍ପନା କରାଯାଇ କୁହାଯାଇଛି -

'ଅପାଣି ପାଦୋ ଦବନୋ ଗ୍ରହୀତା
ପଶ୍ୟତା ଚକ୍ଷୁଃ ସଶୃଣୋତ୍ୟ କର୍ଣ୍ଣଃ
ସବେତ୍ତି ବେଦ୍ୟଂ ନଚ ତସ୍ୟାସ୍ତ ବେତ୍ତା
ତମାହୁ ରାଧାଂ ପୁରୁଷଂ ମହାନ୍ତମ୍ ।'

ପାଦ ପାଣିହୀନ ହୋଇମଧ୍ୟ ଭଗବାନ୍ ସର୍ବତ୍ର ବିଦ୍ୟମାନ, ସଦାଗତିଶୀଳ, ସର୍ବଦ୍ରଷ୍ଟା, ସର୍ବଶ୍ରୋତା ଓ ସର୍ବଜ୍ଞ । ଏହି ସର୍ବଶକ୍ତିମାନ ପୁରୁଷ ହିଁ ଶ୍ରୀଜଗନ୍ନାଥ ।

ବହୁ ସ୍ଥାନରେ ଜଗନ୍ନାଥ ମନ୍ଦିର ଅଛି । କିନ୍ତୁ ଶ୍ରୀମନ୍ଦିର ଗୋଟିଏ । ବହୁ ସ୍ଥାନରେ ଶ୍ରୀଜଗନ୍ନାଥ ବିଗ୍ରହ ଅଛନ୍ତି କିନ୍ତୁ ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥ ବିଗ୍ରହ ଅନନ୍ୟ ଏବଂ ଅସାଧାରଣ । କୌଣସି କାରିଗର




ଯେତେ ଚେଷ୍ଟା କଲେ ବି ମୂଳ ବିଗ୍ରହଙ୍କ ପରି ଆଉ ଗୋଟିଏ ଜଗନ୍ନାଥ ମୂର୍ତ୍ତି ଗଢ଼ିପାରିବେ ନାହିଁ । ମହାପ୍ରଭୁ, ମଣିମା, ମହାପ୍ରସାଦ, ମହାବାହୁ, ମହାଦୀପ, ମହୋଦଧି, ବଡ଼ଦାଣ୍ଡ, ସ୍ୱର୍ଗଦ୍ୱାର, କୋଇଲି ବୈକୁଣ୍ଠ, ଆନନ୍ଦ ବଜାର, ଶରଧାବାଲି ପରି ଶବ୍ଦଗୁଡ଼ିକ ଜଗନ୍ନାଥ ଦର୍ଶନର ମହାନତା ପ୍ରତିପାଦନ କରି ଶ୍ରୀଜଗନ୍ନାଥଙ୍କୁ ସାରା ପୃଥିବୀର ଶ୍ରେଷ୍ଠ ଦେବତାରେ ପରିଣତ କରିଛି । ଯାହାକି ପୃଥିବୀର କୌଣସି ମନ୍ଦିର ବା ଅନ୍ୟାନ୍ୟ ଧର୍ମପୀଠରେ ଦେଖାଯାଏ ନାହିଁ । ଶ୍ରୀକ୍ଷେତ୍ରସ୍ଥ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସ୍ୱତନ୍ତ୍ର ବୈଶିଷ୍ଟ୍ୟତା ହେଲା -

ପୃଥିବୀର ସବୁଠାରେ ବିଗ୍ରହମାନେ ସାଧାରଣତଃ ମୃତ୍ତିକା ପଥର ଏବଂ ଧାତୁରେ ନିର୍ମିତ ହୋଇଥିବାବେଳେ ଏହା କିନ୍ତୁ ସେମାନଙ୍କଠାରୁ ବ୍ୟତିକ୍ରମ ହୋଇ କାଷ୍ଠ ବା ଦାରୁରେ ତିଆରି, ଯାହାକୁ ଆମେ ମହାଦାରୁ ବୋଲି କହୁ ।

କୌଣସି ମନ୍ଦିରରେ ବିଗ୍ରହମାନଙ୍କର ଦେହତ୍ୟାଗ ଦେଖିବାକୁ ମିଳେ ନାହିଁ କିନ୍ତୁ ଏହି ଅପୂର୍ବ ବିଗ୍ରହଙ୍କର ଯେଉଁ ବର୍ଷ ଯୋଡ଼ା ଆଷାଢ଼ ପଡ଼ିବ ସେହି ବର୍ଷ ସେ ଘଟ ପରିବର୍ତ୍ତନ କରି ପୁରାତନ ଅବୟବକୁ କୋଇଲି ବୈକୁଣ୍ଠରେ ସଂସ୍କାର ପୂର୍ବକ ତ୍ୟାଗକରି ନୂତନ ଘଟରେ ଆବିର୍ଭାବ ହୁଅନ୍ତି । ଯାହାକୁ ନବ କଳେବର କୁହାଯାଏ (ମହାପ୍ରଭୁଙ୍କଠାରେ ଏହି ନୀତି ଯଥା ଦେହେ ତଥା ଦେବେ ଭାବେ ଗୃହୀତ) ।

ପ୍ରତି ମନ୍ଦିରରେ ଠାକୁରମାନେ ତାଙ୍କର ଘରଣୀଙ୍କୁ ସାଥୀରେ ଧରି ପୂଜା ପାଉଥାଆନ୍ତି ଯଥା- ରାଧାକୃଷ୍ଣ, ଶିବପାର୍ବତୀ, ରାମସୀତା, ଲକ୍ଷ୍ମୀନାରାୟଣ ଏବଂ କୌଣସି ଉତ୍ସବରେ ଯାତ୍ରା କଲାବେଳେ ମଧ୍ୟ ସ୍ତ୍ରୀ ହିଁ ସାଥିରେ ଯାଇଥାଆନ୍ତି । କିନ୍ତୁ ଏହି ବିଗ୍ରହଙ୍କଠାରେ ତାହା ପରିଲକ୍ଷିତ ନହୋଇ, ତାଙ୍କର ଘରଣୀଙ୍କୁ ଅଲଗା କରି ଦୁଇଭାଇଙ୍କ ସାଥୀରେ ଆଦରର ଗେହ୍ଲା ଭଉଣୀଙ୍କୁ ଧରି ଶ୍ରୀମନ୍ଦିରର ରତ୍ନ ସିଂହାସନରେ ଭକ୍ତମାନଙ୍କୁ ଦର୍ଶନ ଦେଉଛନ୍ତି । ରଥଯାତ୍ରାରେ ମଧ୍ୟ ପ୍ରଭୁ ଜଗନ୍ନାଥ ତାଙ୍କର ଘରଣୀଙ୍କୁ ପ୍ରତାରଣା କରି ସାଥୀରେ ନିଜର ଭଉଣୀଙ୍କୁ ଧରି ମାଉସୀ ଘରକୁ ଯାତ୍ରା କରିଥାଆନ୍ତି ।

ଭଗବାନଙ୍କ ନିକଟକୁ ଭକ୍ତ ଯାଇଥାଏ, କେବେ ଭଗବାନ ନିଜର ମନ୍ଦିର ଛାଡ଼ି ଭକ୍ତ ପାଖକୁ ଆସନ୍ତି ନାହିଁ, କିନ୍ତୁ ଭକ୍ତବତ୍ସଳ ଭଗବାନ ଶ୍ରୀଜଗନ୍ନାଥ ଆଷାଢ଼ ମାସର ଦ୍ୱିତୀୟା ତିଥିରେ ରଥାରୂଢ଼ ହୋଇ ନିଜର ରତ୍ନ ସିଂହାସନ, ଷାଠିଏ ପଉଟିର ମୋହ ଛାଡ଼ି ଭକ୍ତମାନଙ୍କ ନିକଟକୁ ଦର୍ଶନ ଦେବା ପାଇଁ ଆସନ୍ତି । ଏହି ବୈଶିଷ୍ଟ୍ୟତା ହିନ୍ଦୁଧର୍ମର କୌଣସି ପୀଠରେ ଦେଖାଯାଏ ନାହିଁ ।

ସ୍ୱୟଂ ଜଗନ୍ନାଥ ହେଉଛନ୍ତି ଅଲୌକିକ ଏବଂ ଅସମ୍ପୂର୍ଣ୍ଣ ଦେବତା ହାତ, ଗୋଡ଼, କାନ ନାହିଁ କିନ୍ତୁ ପୂର୍ଣ୍ଣତ୍ୱ ପ୍ରାପ୍ତିର ଶ୍ରେଷ୍ଠ ଧାମ ଭାବରେ ଶ୍ରୀଜଗନ୍ନାଥ ବ୍ରହ୍ମାଣ୍ଡ ପରିଚିତ ।

ଜଗନ୍ନାଥ ନିରାକାର, ସେ ଓଁକାର ପୁରୁଷ । ସେ ଶୂନ୍ୟ ପୁରୁଷ । ସେ ଅଜନ୍ମା ଓ ସ୍ୱୟଂସୃଷ୍ଟି ହୋଇଥିବାରୁ ତାଙ୍କର ଆଦି ନାହିଁ କି ଅନ୍ତ ନାହିଁ । ପୁଣି ସେ ସର୍ବତ୍ର ଏବଂ ସର୍ବକ୍ଷମ । ତଥାପି ଏ ଜାତି ସେ ଅସମ୍ପୂର୍ଣ୍ଣ ବିଗ୍ରହରେ ଦେଖେ କୋଟି କନ୍ଦର୍ପର ମଦନମୋହନ ରୂପ । ହାତରେ ତାହାର ବଂଶୀ ନାହିଁ ତଥାପି ସେ ଗୋପୀଜନ ମନୋହାରୀ । କରରେ ଆଙ୍ଗୁଳି ନାହିଁ ସେ ମାଣିକ ଗୋପାଳୁଣୀଠାରୁ ଦହି ଖାଇ ତାକୁ ଆଙ୍ଗୁଳିର ମୁଦ୍ରିକା ଦେଇଛନ୍ତି । ଦାସିଆ ବାଉରୀର ନଡ଼ିଆକୁ ସେ ଶୂନ୍ୟହସ୍ତରେ ଗ୍ରହଣ କରି ମହାବାହୁ ବଳିଆର ଭୁଜ, ସୁଦର୍ଶନ ଚକ୍ରକୁ ଧାରଣ କରି ସେ ଚକ୍ରଧାରୀ । ତାହାର ଭକ୍ତ ତିଳସ୍ୱକୁ ବଞ୍ଚାଇବାକୁ ଯାଇ ଗଜପତିଙ୍କ ପାଖରେ ମସ୍ତକରେ ଘଞ୍ଚ କେଶ ଆପାଦ ମସ୍ତକ ଧାରଣ କରିଛନ୍ତି । ଶଙ୍କରାଚାର୍ଯ୍ୟଙ୍କ ଉକ୍ତିର ପରିଭାଷାରେ ଏହି ଧାମ ହେଉଛି ଭକ୍ତି ତଥା ମୁକ୍ତିର ଶ୍ରେଷ୍ଠ ଏବଂ ଶେଷ ପୀଠ । ଯେଉଁଠି ଭଗବାନ ନୁହେଁ ଭକ୍ତ ଏବଂ ଭକ୍ତିମହାନ୍ ।

ରଥଯାତ୍ରାରେ ସ୍ୱୟଂ ଗଜପତି ମହାରାଜା ପ୍ରଭୁଙ୍କ ଛେରାପହଁରା କରିବା ଉତ୍କଳୀୟ ଧାର୍ମିକ ବିନମ୍ରତାର ଚରମ ଦୃଷ୍ଟାନ୍ତ । ପୃଥିବୀର କୌଣସି ଧର୍ମପୀଠରେ ଏଭଳି ପରମ୍ପରା ନଥିବା ଦୃଷ୍ଟିରୁ ଏହା ଭାରତୀୟ ସଂସ୍କୃତିକୁ ଏକ ଅନବଦ୍ୟ ଅବଦାନ । ଏଠାରେ ରାଜା, ପ୍ରଜା ଏବଂ ଭଗବାନଙ୍କ ସମନ୍ୱୟ ତଥା ଏକତାର ପ୍ରତୀକ ସ୍ୱୟଂ ଜଗନ୍ନାଥ ।

ସବୁ ଧର୍ମପୀଠର ଦେବାଦେବୀମାନଙ୍କୁ ବର୍ଷସାରା ଦର୍ଶନ କରିହୁଏ । କିନ୍ତୁ ଶ୍ରୀକ୍ଷେତ୍ରରେ ପ୍ରଭୁ ଜଗନ୍ନାଥ ସ୍ନାନ ପୂର୍ଣ୍ଣିମା ଦିନଠାରୁ ଅଣସର ଯାଆନ୍ତି । ଆମର ବିଶ୍ୱାସ ଅଛି, ସେହି ସମୟରେ ଠାକୁର ଜ୍ୱରରେ ପଡ଼ନ୍ତି । ତେଣୁ ତାଙ୍କୁ ୧୫ ଦିନ ବିଶ୍ରାମ ଦିଆଯାଏ । ଏହି ସମୟରେ ଦଇତାପତିମାନଙ୍କ ବ୍ୟତୀତ ଅନ୍ୟ କୌଣସି ଭକ୍ତ ବା ସେବକ ଦର୍ଶନ ପାଇପାରନ୍ତି ନାହିଁ ।

ଜଗନ୍ନାଥ ଜଗତମୟ, ବ୍ରହ୍ମାଣ୍ଡ ସ୍ୱରୂପ ସେ ବିଶ୍ୱବ୍ୟାପୀ । ସେ ଶୂନ୍ୟ ସଦୃଶ, ଶୂନ୍ୟରୁ ଶୂନ୍ୟ, ଶୂନ୍ୟରୁ ମହାଶୂନ୍ୟ, ମହାଶୂନ୍ୟରୁ ବ୍ରହ୍ମ, ବ୍ରହ୍ମରୁ ପରଂବ୍ରହ୍ମ, ପରଂବ୍ରହ୍ମରୁ ଲୀନ ବା ମୁକ୍ତି ସ୍ୱୟଂ ଜଗନ୍ନାଥ ସ୍ୱରୂପ ଅଟେ । ବ୍ରହ୍ମର ଏପରି ସର୍ବଭାବ, ସର୍ବ ଚୈତନ୍ୟ ସର୍ବଚିନ୍ତନ ସର୍ବୋତ୍ତମ ସମନ୍ୱୟ କେଉଁଠାରେ ନାହିଁ । ଯାହାଫଳରେ ଶ୍ରୀଜଗନ୍ନାଥ କୌଣସି ଧର୍ମର ମୁଖ୍ୟ ନହୋଇ ପାଲଟି ଯାଇଛନ୍ତି ଏକ ଚେତନା ଓ ବିକାଶର ସ୍ୱରୂପ ।

ଇ-୨୦୮
ୟୁନିଟ୍-୮, ଭୁବନେଶ୍ୱର-୧୨








# ଓଡ଼ିଆ ଲୋକଗୀତରେ ଶ୍ରୀଜଗନ୍ନାଥ

ପବିତ୍ର ମୋହନ ବାରିକ

ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ଚିର ନମସ୍ୟ ତଥା ଆରାଧ୍ୟ ଦେବତା । ଅତୀତ ଓଡ଼ିଶାର ରାଜନୈତିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଇତିହାସର ସେ ଥିଲେ ମୁଖ୍ୟ ନାୟକ । ପ୍ରତିଟି ଓଡ଼ିଆ ହୃଦୟର ପ୍ରିୟ ଦେବତା । ସାହିତ୍ୟ, କିମ୍ବଦନ୍ତୀ, ଲୋକକଥା ଓ ଲୋକଗୀତ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ମୁଖରିତ । ଓଡ଼ିଆ ଲୋକଗୀତରେ ଶ୍ରୀଜଗନ୍ନାଥଙ୍କର ମହିମା, ମାହାତ୍ମ୍ୟ ଓ ଅଲୌକିକତା ପ୍ରକଟିତ । ଗ୍ରାମାଞ୍ଚଳର ନିଷ୍କପଟ ଲୋକଟିର ମୁଖମଣ୍ଡଳରୁ ଭାସିଆସେ ଶ୍ରୀଜଗନ୍ନାଥଙ୍କର ମହାନତା ଓଡ଼ିଆ ଲୋକ ଗୀତ ମାଧ୍ୟମରେ । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଅନେକ ଲୋକ ଗୀତ ରଚିତ । ଏହି ଲୋକଗୀତମାନଙ୍କର ସ୍ୱତନ୍ତ୍ରତା ଅତି ଉଚ୍ଚକୋଟୀର, ଭାବ ପ୍ରବଣତା ଅତୀବ ମନୋଜ୍ଞ ଓ ଏହାର ପ୍ରଭାବ ହୃଦୟସ୍ପର୍ଶୀ । ଶ୍ରୀଜଗନ୍ନାଥଙ୍କର ଶ୍ରେଷ୍ଠତ୍ୱ କିପରି ଜନମାନସରେ ଆଲୋଡ଼ନ ସୃଷ୍ଟି କଲେ ତାହାର ନିର୍ଭରଯୋଗ୍ୟ ପ୍ରମାଣ ଓଡ଼ିଆ ଲୋକଗୀତ । ପ୍ରତିଟି ଓଡ଼ିଆର ଅନ୍ତରର ପ୍ରିୟ ଦେବତା ଶ୍ରୀଜଗନ୍ନାଥଙ୍କ ପ୍ରତି ରହିଛି ଗଭୀର ଶ୍ରଦ୍ଧା, ଅନାବିଳ ପ୍ରେମ, ଅସୀମ ଭକ୍ତି, ଆନ୍ତରିକ ଆତ୍ମୀୟତା ଯାହା ଓଡ଼ିଆ ଲୋକ ଗୀତରେ ଦେଖିବାକୁ ମିଳେ । ଓଡ଼ିଶାର ସାଂସ୍କୃତିକ ଜୀବନ ଓ ସାମାଜିକ ଚଳଣିରେ ଶ୍ରୀଜଗନ୍ନାଥ ହେଉଛନ୍ତି କେନ୍ଦ୍ର ବିନ୍ଦୁ ଏହା ଦେଖିବାକୁ ମିଳେ । ଓଡ଼ିଆ ସଂଗୀତରେ । ଆଷାଢ଼ ମାସରେ ସର୍ବଜନ ବିଦିତ, ବିଶ୍ୱ ପ୍ରସିଦ୍ଧ ରଥଯାତ୍ରାର ବର୍ଣ୍ଣନା ଲୋକଗୀତରେ ଅତି ଚମତ୍କାର । କୃଷି କ୍ଷେତ୍ରରେ ଓଡ଼ିଆ କୃଷକ ମୁଖରୁ ଭାସିଆସେ ଶ୍ରୀଜଗନ୍ନାଥଙ୍କର ଲୀଳା ଲୋକଗୀତ ମାଧ୍ୟମରେ -

ଆଷାଢ଼ ମାସରେ ଆଷାଢ଼ିଆ କୋଳି<br>
ରଥେ ବିଜେ କଲେ ବଳି ବାମନ ମଞ୍ଚରେ ହୁଳହୁଳି ।

ପରମ ଆରାଧ୍ୟ, ପତିତପାବନ ଶ୍ରୀଜଗନ୍ନାଥଙ୍କୁ ରଥ ଉପରେ ଦେଖିବାକୁ ଓଡ଼ିଆମାନେ କେତେକ ବ୍ୟାକୁଳତା ପ୍ରକାଶ କରନ୍ତି ଯାହାକୁ ଓଡ଼ିଆ ଲୋକ ସଂଗୀତରେ ଅତି ଅପୂର୍ବ ଶୈଳୀରେ ରଚିତ -

'ନଡ଼ିଆ ଭାଙ୍ଗିଲି ପଡ଼ିଆରେ<br>
ହୃଦ ଛନ ଛନ ବାହାରେ ମନ<br>
କେମିତି ଦେଖିବି କାଳିଆରେ ।'

ଆକାଶରେ ମେଘର ଘଡ଼ଘଡ଼ି ଶବ୍ଦରୁ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରାର ସ୍ମୃତି ମନ ମଧ୍ୟରେ ଉଜ୍ଜୀବିତ ହୋଇ ଉଠେ । ଅତି ହୃଦୟସ୍ପର୍ଶୀ ଭାବଧାରା ବହନ କରି ଓଡ଼ିଆ ଲୋକଗୀତରେ ଏହା ରଚିତ -

'ମେଘ କଲା ଘଡ଼ଘଡ଼ି<br>
ଜଗନ୍ନାଥ ଗଲେ ଗୁଣ୍ଡିଚା ବାଡ଼ି<br>
ଷୋଳ ଚକା ଗଲା ଗଡ଼ି ।'

ସାମ୍ୟ, ମୈତ୍ରୀ ଓ ବିଶ୍ୱ ଭ୍ରାତୃତ୍ୱର ପୀଠ ଶ୍ରୀଜଗନ୍ନାଥଙ୍କର ଶ୍ରୀକ୍ଷେତ୍ର, ଜାତି, ଧର୍ମ ଓ ସମସ୍ତ ସଂକୀର୍ଣ୍ଣତା ଊର୍ଦ୍ଧ୍ୱରେ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ।

ଯାତ୍ରା ମିଳନର ଏକ ଅପୂର୍ବ ସୁଯୋଗ । ଭାବ ବିନିମୟ, ସୁଖଦୁଃଖର ଅକୁହା କଥା କହି ନିଜ ଦୁଃଖ ଲାଘବ କରିବାର ଏକ ପ୍ରଶସ୍ତ କ୍ଷେତ୍ର । ରଥଯାତ୍ରା ଦେଖିବାକୁ ମନରେ କେତେ ଉତ୍କଣ୍ଠା, ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି ହୁଏ । ତାହାର ପ୍ରମାଣ ଲୋକଗୀତରେ ଦେଖିବାକୁ ମିଳେ ।

'ଦୀପ ଗୋଟି ମୁହିଁ ଜାଳି ରଖିଲି<br>
ରଖିଲି ପିତଳ ରୁଖା<br>
ପୁରୀ ଯାତରାକୁ ସତେ କି ଯିବି<br>
ପୂର୍ବ ସାଙ୍ଗ ହେବ ଦେଖା ।'

ଝିଅମାନେ ବିଭା ହୋଇ ଶାଶୁ ଘରକୁ ଯିବା ସମୟରେ, ସେମାନଙ୍କର ମନର ଦୁଃଖ, ଅଜଣାସ୍ଥାନ ଓ ଅଜ୍ଞାତ ବ୍ୟକ୍ତି ସହିତ ବିବାହ ବନ୍ଧନକୁ ଯମ ଦଉଡ଼ି ସହିତ ତୁଳନା କରିଥାନ୍ତି । ଆପଣାର ଗ୍ରାମ, ପରିଚିତ ସାଙ୍ଗ, ସାଥୀ, ପ୍ରିୟ ପିତାମାତାଙ୍କୁ ବିଦାୟ ବେଳାରେ ରଥ ଗୀତ ମାଧ୍ୟମରେ ବିବାହ ସମୟରେ କାନ୍ଦଣା ପରିବେଶକୁ ଅତି କାରୁଣ୍ୟମୟ କରି ଗଢ଼ି ତୋଳେ । ଲୋକପ୍ରିୟ ରଥଯାତ୍ରାକୁ ବିଭିନ୍ନ ଦୃଷ୍ଟାନ୍ତ ଓ ଉପମା ରୂପେ ଲୋକଗୀତରେ ବ୍ୟବହାର କରାଯାଇଛି ।





'ରଥରେ ଲାଗିଲା ରଥ ଦଉଡ଼ି
ମୋ'ଠାରେ ଲାଗିଲା
ଯମ ଦଉଡ଼ି ହେ ବାପା
ରଥ ଦଉଡ଼ି ତ ବାହୁଡ଼ା ଯାକେ
ଯମ ଦଉଡ଼ି ତ ମରିବା ଯାକେ
ହେ ବାପା ।'

ମାଉସୀ ମା'ଙ୍କ ଘରେ ନଅଦିନ ରହିବା ପରେ ସେଠାରୁ ତ୍ରିମୂର୍ତ୍ତି ରଥରେ ବସି ବଡ଼ ଦେଉଳକୁ ଫେରି ଆସିଥା'ନ୍ତି । ଏହା ବାହୁଡ଼ା ଯାତ୍ରା ନାମରେ ପରିଚିତ । ଲୋକ ସଂଗୀତରେ ମଧ ଏହି ବାହୁଡ଼ା ଯାତ୍ରାର ସୂଚନା ମିଳିଥାଏ । ଏହି ଯାତ୍ରାକୁ ନେଇ ଅନେକ ଲୋକ ଗୀତ ରଚିତ । ଏହାର ଅସାଧାରଣ ଶୈଳୀ ପାଠକର ହୃଦୟରେ ଗଭୀର ରେଖାପାତ କରିଥାଏ ।

'ଡାଳେ ଡାଳେ ଗଲା ହନୁ
ଡାଳ ଭଙ୍ଗା ଗୀତ ନଗଲା ମନୁ
ବାହୁଡ଼ା ଯାତରା ଦିନୁ ।'

ପୂର୍ବେ ବଡ଼ଦାଣ୍ଡର ଉଭୟ ପାର୍ଶ୍ୱରେ କିଆ ବୁଦାମାନ ଥିଲା । ଅନେକ ସମୟରେ ଦୁର୍ଘଟଣାବଶତଃ ରଥ କିଆ ବୁଦା ଓ ବ୍ୟଙ୍ଗୋକ୍ତି ମାଧମରେ ଦୋଳି ଗୀତରେ ବର୍ଣ୍ଣିତ ଅଛି -

'ରଥ ମାଡ଼ିଗଲା କିଆକୁ
ଜଗନ୍ନାଥଙ୍କର ଖଣ୍ଡିଆ ହାତ
ଏହା ମୁଁ କହିବି କାହାକୁ ।'

ମର୍ତ୍ତ୍ୟ ବୈକୁଣ୍ଠ, ନିତ୍ୟ ବୃନ୍ଦାବନ ଶ୍ରୀକ୍ଷେତ୍ର ସଦାସର୍ବଦା ଉତ୍ସବ ମୁଖରିତ । ବାରମାସରେ ତେର ପର୍ବ ପାଳିତ ହୁଏ ଶ୍ରୀଜଗନ୍ନାଥଙ୍କ ପୀଠରେ । ଦୈନନ୍ଦିନ ଉତ୍ସବ ଓ ଜନସମାଗମ ପାଇଁ ବଡ଼ ଦେଉଳ ଚଳଚଞ୍ଚଳ ହୋଇଉଠେ । ଯଥାର୍ଥରେ ଏହାର ବର୍ଣ୍ଣନା ଲୋକଗୀତରେ ପରିଲକ୍ଷିତ ହୁଏ ।

'ବଡ଼ ଦେଉଳରେ ଲାଗିଛି ନାଟ
ନିତି ପୁନିଅ ନିତି ହାଟ ।'

ଓଡ଼ିଶା ମୋଗଲମାନଙ୍କର ଅଧିକାରଭୁକ୍ତ ହେବା ପରେ ଓ ସେମାନଙ୍କର ହିନ୍ଦୁ ବିଦ୍ୱେଷ ମନୋଭାବ ପାଇଁ ଶ୍ରୀଜଗନ୍ନାଥ ସମେତ ବହୁ ହିନ୍ଦୁ ଦେବାଦେବୀଙ୍କ ପ୍ରତି ବିପଦ ସୃଷ୍ଟି ହେଲା । ଶ୍ରୀଜଗନ୍ନାଥଙ୍କର ପବିତ୍ରତା ଓ ଓଡ଼ିଆ ଜାତିର ସ୍ୱାଭିମାନ ରକ୍ଷା କରିବା ପାଇଁ ଖୋର୍ଦ୍ଧା ଗଜପତି ବିଭିନ୍ନ ସ୍ଥାନରେ ଶ୍ରୀଜଗନ୍ନାଥଙ୍କୁ ଲୁଚାଇ ରଖିଥିଲେ । ଏହାର ସ୍ପଷ୍ଟ ସୂଚନା ମଧ ଲୋକଗୀତରୁ ମିଳିଥାଏ ।

'ଓଡ଼ିଶାର ଜଗନ୍ନାଥ ଓଡ଼ିଶାରୁ ଗଲେ
ବଡ଼ ଦେଉଳରୁ ବେଢ଼ି ଯେ
ମୋଗଲ ରହିଲେ
ମୋଗଲ ଦେଉଳ ମାରା କଲେ
ଟେକି କଚାଡ଼ିଲେ ହୋ କମଳା,
ବିମଳା ଉପରେ ।'

ଆଦିବାସୀ ରମଣୀମାନେ ହାତରେ ରାଧାକୃଷ୍ଣ, ନବଗୁଞ୍ଜର ଫୁଲଡ଼ାଳ ପ୍ରଭୃତି ଛୁଞ୍ଚି ଓ କଳାରଙ୍ଗ ସାହାଯ୍ୟରେ ସଜାଇ କରିଥାନ୍ତି । କନ୍ଧ ସମ୍ପ୍ରଦାୟର ସ୍ତ୍ରୀଲୋକମାନେ ଏକ କଳାରେ ସିଦ୍ଧହସ୍ତା । ପୂର୍ବେ କିଛି ବ୍ୟକ୍ତିବିଶେଷ ନିଜ ଶରୀରରେ ଜଗନ୍ନାଥଙ୍କ ପ୍ରତିଛବି ଚିତା କୁଟାଉ ଥିଲେ । ଚିତାକୁଟା ଗୀତରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟର ମଧ ପରିଚୟ ମିଳେ ।

ଶ୍ରୀଜଗନ୍ନାଥ ରୀତି, ନୀତି ଅତି ବିଚିତ୍ର । ତାଙ୍କର ଅପାର କରୁଣା ଓ ଦୟାରୁ କିଏ ସୁଖ, ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ ଓ ବିଳାସବ୍ୟସନରେ ସମୟ ଉପଭୋଗ କରୁଥାଏ ତ କିଏ ଦୁଃଖ ଯନ୍ତ୍ରଣାରେ ସମୟ ଅତିବାହିତ କରୁଥାଏ । ତେଣୁ ଲୋକଗୀତରେ ଏହାର ବର୍ଣ୍ଣନା ଅସାଧାରଣ ତଥା ଅନନ୍ୟ ।

'ଜଗନ୍ନାଥଙ୍କ ରୀତି
କାହାକୁ ଦିଅନ୍ତି ପଲଙ୍କ ସୁପାତି
କାହାକୁ ଦିଅନ୍ତି ଶାସ୍ତି ।'

ଓଡ଼ିଆ ଲୋକଗୀତରେ ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରତିଛବି ପ୍ରତିଫଳିତ । ଶ୍ରୀଜଗନ୍ନାଥ ଗଣଦେବତା ଏହାର ପ୍ରମାଣ ଲୋକ ଗୀତରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ଦୋଳି, କାନ୍ଦଣା ଓ ଚିତାକୁଟା ପ୍ରଭୃତି ଲୋକଗୀତ ଶ୍ରୀଜଗନ୍ନାଥଙ୍କୁ ନେଇ ସମୃଦ୍ଧ । ଓଡ଼ିଆ ଲୋକ ନୃତ୍ୟ ଓ ଗୀତ ଯଥା- ପାଲା, ଦାସକାଠିଆ, ଦଣ୍ଡନାଚ, ଘୋଡ଼ାନାଚ, ଶବର-ଶବରୁଣୀ, ଗୋପାଳଙ୍କ ଓଗାଳ ପ୍ରଭୃତିରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ, ଅତି ମନୋରମ ଶୈଳୀରେ ଉପସ୍ଥାପିତ ହୋଇଥାଏ । ରଜ ଓଡ଼ିଆ ଜାତିର ଏକ ପାରମ୍ପରିକ ସାମାଜିକ ପର୍ବ । ଦୋଳି ଖେଳ ଏହି ପର୍ବର ଏକ ଶ୍ରେଷ୍ଠ ଆକର୍ଷଣ । କୁମାରୀ ଓ ନବ ବିବାହିତା ରମଣୀମାନେ ଦୋଳି ଗୀତ ମାଧମରେ ନିଜ ଭାବକୁ ଅତି ସୁନ୍ଦର ଭାବରେ ପ୍ରକାଶ କରିଥା'ନ୍ତି ଏବଂ ଏହା ମାଧମରେ ଶ୍ରୀଜଗନ୍ନାଥ ସଂସ୍କୃତିର ବୈଚିତ୍ର୍ୟମୟ ରୂପ ମଧ ସ୍ଥାନ ପାଇଥାଏ -

'କାଟିଲି କୁଟିଲି ବିଡ଼ଙ୍ଗ ଶାଗଲୋ
ମନ୍ତୁରେଇ ନେଇ ଜାଳ
ଗତ ଗୁଣ୍ଡିଚାକୁ ବରଷେ ହେଲାଲୋ
ଯାଇ ନାହିଁ ବାପ ଘର ।'

ଓଡ଼ିଆ ବାରବାସୀ ଗୀତରେ ଯଶୋଦା ବିଳାପ ମାଧମରେ ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରାର ସୁନ୍ଦର ବର୍ଣ୍ଣନା ଦେଖିବାକୁ ମିଳେ -

'ଆଷାଢ଼ ମାସରେ ଗୁଣ୍ଡିଚା ଯାତ
ରଥେ ବିଜେ କଲେ ଶ୍ରୀଜଗନ୍ନାଥ
ମୋ କାହ୍ନୁରେ ... ।'

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା-୫୪





# ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ

ଶିବସୁନ୍ଦର ପଟ୍ଟନାୟକ

ସକଳ ଜଗତର ନାଥ ପ୍ରଭୁ 'ଶ୍ରୀଜଗନ୍ନାଥ'ଙ୍କ ଏଭଳି ନାମକରଣର ବୈଶିଷ୍ଟ୍ୟ ହେଉଛି - ଜଗତ୍+ନାଥ = ଜଗନ୍ନାଥ । ଏହି ଜଗତ୍ ପ୍ରକାରନ୍ତେ ଯୋଗମାୟା, ଶ୍ରୀଲକ୍ଷ୍ମୀ, ଶ୍ରୀସୀତା ବା ଶ୍ରୀରାଧା ଅଟନ୍ତି । ତେଣୁ ଶ୍ରୀଜଗନ୍ନାଥ ଯଥାର୍ଥରେ ଲକ୍ଷ୍ମୀପତି, ସୀତାନାଥ, ରାଧାନାଥ ଅଟନ୍ତି । ସକଳ ଜଗତ, ଗ୍ରହ, ଉପଗ୍ରହ, ତାରା, ଜ୍ୟୋତିଷ୍କ, ସୂର୍ଯ୍ୟ କେବଳ ତାଙ୍କର ସୃଷ୍ଟି ନୁହେଁ ସକଳ ଜୀବଜଗତ ଓ ଜଡ଼ଜଗତ ଶ୍ରୀଜଗନ୍ନାଥଙ୍କ ଦିବ୍ୟ ଐଶ୍ୱର୍ଯ୍ୟର ବହିଃପ୍ରକାଶ ହୋଇଅଛି ।

ଶ୍ରୀଜଗନ୍ନାଥ ସ୍ୱୟଂ ଭଗବାନ ଅଟନ୍ତି । ସେ ନୀଳାଚଳ ଧାମର ପୀଠାଧୀଶ ହେଲେ ହେଁ ସେ ମଧ ଗୋଲକ ଧାମର ଅଧିଶ୍ୱର ବା ଗୋଲକପତି । ନୀଳାଚଳ ଧାମ ଓ ଗୋଲକ ଧାମ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । କେହି କେହି ଶ୍ରୀଜଗନ୍ନାଥଙ୍କୁ ସ୍ୱୟଂ ପରମବ୍ରହ୍ମ ନ କହି ଅର୍ଚ୍ଚା ବିଗ୍ରହ କହନ୍ତି । ମାତ୍ର ପରମବ୍ରହ୍ମ ଓ ତାଙ୍କ ଅର୍ଚ୍ଚା ବିଗ୍ରହ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ ।

'ବାଚ୍ୟ ଓ ବାଚକ ଦୁଇ ସ୍ୱରୂପ ତୁମାର ।'

(ଭକ୍ତି ବିନୋଦ)

ଏହି ଭକ୍ତି ବିନୋଦ ସନ୍ନ୍ୟାସୀ ନେବା ପୂର୍ବରୁ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳକ ତଥା ଡେପୁଟି ମାଜିଷ୍ଟ୍ରେଟ୍ ରୂପେ ନଅଙ୍କ ଦୁର୍ଭିକ୍ଷ (୧୮୬୬) ବେଳେ ଥାଇ ବୁଭୁକ୍ଷୁ ଜନତାଙ୍କୁ ଶ୍ରୀମନ୍ଦିର ତଥା ତତ୍‌ସଂଲଗ୍ନ ୯୩୬ ମଠ ତରଫରୁ ଖାଦ୍ୟର ବନ୍ଦୋବସ୍ତ କରିଥିଲେ ।

ବାଚ୍ୟ ବା ପରମବ୍ରହ୍ମ ଯାହା ବାଚକ ବା ଶ୍ରୀବିଗ୍ରହ ବା ଅର୍ଚ୍ଚା ବିଗ୍ରହ ବା ଭଗବାନଙ୍କ ନାମ ତାହା । ପରମବ୍ରହ୍ମ ମଧ ଏହି ଅର୍ଚ୍ଚା ବିଗ୍ରହରେ ବିଦ୍ୟମାନ । ତେଣୁ ଶ୍ରୀଜଗନ୍ନାଥ ଯେ ସ୍ୱୟଂ ପରମ ବ୍ରହ୍ମ, ଗୋଲକପତି ଭଗବାନ ଏଥିରେ ଦ୍ୱିଧା କରିବାକୁ କିଛି ନାହିଁ ।

ପଞ୍ଚସଖା (ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଶିଶୁ ଅନନ୍ତ) ଯୁଗରେ ଓ ପରବର୍ତ୍ତୀ ବୈଷ୍ଣବ କବିମାନଙ୍କ ଲେଖନୀ ମୁନରେ ଶ୍ରୀଜଗନ୍ନାଥ ନିଜେ ଭଗବାନ, ନୀଳାଚଳ ଧାମ ମଧ ଗୋଲକ ଧାମ ଏବଂ ନୀଳାଚଳ ଧାମରୁ ଅବତାର ଜାତ ହୁଅନ୍ତି ଏବଂ ମର୍ତ୍ତ୍ୟରେ



ଅବତାର ଲୀଳା ପରି ଏହି ନୀଳାଚଳ ଧାମ ବା ଶ୍ରୀମନ୍ଦିରକୁ ଫେରିଆସନ୍ତି ।

କେବଳ ଓଡ଼ିଆ ବୈଷ୍ଣବ କବି ନୁହନ୍ତି ହିନ୍ଦୁଧର୍ମର ମୂଳ ଧର୍ମଗ୍ରନ୍ଥ ବେଦ, ଉପନିଷଦ, ଶ୍ରୀମଦ୍ ଭାଗବତ ଇତ୍ୟାଦି ପୁରାଣମାନଙ୍କରେ ଶ୍ରୀଜଗନ୍ନାଥ ଯେ ଭଗବାନ ଏହା ସ୍ୱୀକାର କରାଯାଇଅଛି ।

ଶ୍ରୀଜଗନ୍ନାଥଙ୍କ ମନ୍ଦିର ଦ୍ୱାଦଶ ଶତାବ୍ଦୀରେ ଚୋଳଗଙ୍ଗ ଦେବ ପୂର୍ଣ୍ଣାଙ୍ଗ କରିଥିଲେ ଏବଂ ଛତିଶି ପାଟକ ସେବା ଖଞ୍ଜା କରିଥିଲେ ଅନଙ୍ଗ ଭୀମଦେବ ଆରମ୍ଭ କରିଥିଲେ, ଯାହାକୁ ଶ୍ରୀବିଗ୍ରହଙ୍କ ପ୍ରତିଷ୍ଠା ଦିବସ ଜ୍ୟେଷ୍ଠ ପୂର୍ଣ୍ଣିମା ଯାହା ପ୍ରଭୁଙ୍କର ସ୍ନାନ ଯାତ୍ରା ରୂପେ ଖ୍ୟାତ । କିମ୍ବଦନ୍ତୀରୁ ଆହୁରି ମଧ ଜଣାଯାଏ ଯେ, ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଜୀଙ୍କୁ ଆଣିବା ପାଇଁ ତପସ୍ୟା କରୁଥିବାବେଳେ ଶ୍ରୀମନ୍ଦିର ପୋତି ହୋଇଯାଇଥିଲା । ରାଜା ଗାଲମାଧବ ଏହା ଉଦ୍ଧାର କରିଥିଲେ । ଇନ୍ଦ୍ରଦ୍ୟୁମ୍ନ ଗାଲମାଧବଙ୍କୁ ବକ୍ସି ଉପାଧି ଦେଇ ନିଜର ସେନାପତି ରୂପେ ନିଯୁକ୍ତ କରିଥିଲେ ଓ ରୋଡ଼ଙ୍ଗ ମାହଲ ଜାଗିରୀ ଖଞ୍ଜିଥିଲେ । ସେହି ଗାଲମାଧବ ବକ୍ସି ଜଗବନ୍ଧୁଙ୍କର ପୂର୍ବପୁରୁଷ ଥିଲେ ।

ଶ୍ରୀଜଗନ୍ନାଥଙ୍କର ହାତଗୋଡ଼ ନାହିଁ ବୋଲି ଆମ୍ଭେମାନେ ସ୍ଥୂଳ ଚକ୍ଷୁରେ ଦେଖୁଅଛେ । ବେଦମନ୍ତ୍ରରେ ଭଗବାନଙ୍କୁ 'ଅପାଣିପାଦ' କୁହାଯାଇଅଛି । ପୁନଶ୍ଚ ବେଦରେ ତାଙ୍କର 'ସହସ୍ରପାଦ' ବର୍ଣ୍ଣନା କରାଯାଇଅଛି ।

ଓଁ ସହସ୍ର ଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ର ପାଦ ।
ସ ଭୂମିଂ ବିଶ୍ୱତୋ ବୃତାତ୍ୱତିଷ୍ଠ ଦ୍ୱଶାଙ୍ଗୁଳମ୍ ।
(ଋଗ୍‌ବେଦ-ମଣ୍ଡଳ- ୧୦।୧୦।୧)

(ହେ ପ୍ରଭୁ ! ଆପଣ ସହସ୍ର ମସ୍ତକ ବିଶିଷ୍ଟ ପୁରୁଷ, ସହସ୍ର ଆଖି, ସହସ୍ର ପାଦ ବିଶିଷ୍ଟ ଅଟନ୍ତି । ଏହି ସମସ୍ତ ବିଶ୍ୱବ୍ରହ୍ମାଣ୍ଡର ପରିସୀମା ଆପଣଙ୍କର ଦଶ ଆଙ୍ଗୁଳ ବିଶିଷ୍ଟ ଅଟେ ।)

ଏହି ବେଦମନ୍ତ୍ରର 'ସଭୂମିଂ ବିଶ୍ୱତୋ ବୃତାତ୍ୱତିଷ୍ଠ' ଶବ୍ଦଗୁଡ଼ିକ ବଦଳରେ ଶ୍ରୀବିଷ୍ଣୁ ପୁରାଣରେ ଧ୍ରୁବ ଭଗବାନଙ୍କୁ ସ୍ତୁତି କରିଥିବା ମନ୍ତ୍ରରେ 'ସର୍ବବ୍ୟାପୀ ଭୁବଃ ସ୍ୱର୍ଣାଦତ୍ୟତିଷ୍ଠ' ଶବ୍ଦଗୁଡ଼ିକ ବ୍ୟବହାର କରିଅଛନ୍ତି ଯାହାକି ସେହି ଶ୍ରୀବିଷ୍ଣୁ ପୁରାଣରେ ଅଂଶ ୧।୧୨।୫୬ ଶ୍ଳୋକରେ ବର୍ଣ୍ଣନା ଅଛି ।

ଶ୍ରୀମଦ୍ ଭାଗବତରେ 'ଅଜାମିଳ' ଉପାଖ୍ୟାନ ସମସ୍ତେ ଜାଣନ୍ତି । ମୃତ୍ୟୁ ସମୟରେ ଯମଦୂତଙ୍କୁ ଡରି ନିଜ ପୁଅ ନାରାୟଣକୁ ବିକଳରେ ଡାକି ମୋକ୍ଷ ହୋଇଯାଇଥିଲା । ସେହି ଉପାଖ୍ୟାନରେ ପରେ ବର୍ଣ୍ଣନା ହୋଇଅଛି ଯେ ଯମ ନିଜ ଦୂତମାନଙ୍କୁ ନିର୍ଦ୍ଦେଶ ଦେଇଅଛନ୍ତି ଯେ ମଲାବେଳେ ଭଗବାନଙ୍କ ନାମ ନେବା ଲୋକଙ୍କୁ ଛାଡ଼ି ଦେବ । ଭଗବାନ ପୁତନା ପରି ଖଳ ପ୍ରକୃତିର ରାକ୍ଷାସୀକୁ ଧାତ୍ରୀ ଗତି ଦେଇଥିଲେ । ଶ୍ରୀଜଗନ୍ନାଥଙ୍କୁ କେହି ଦୋଷ ଦେଇପାରିବ ନାହିଁ । ପ୍ରାଣୀର ଅନ୍ତରର ଆବେଗରେ ଭଗବଦ୍ ପ୍ରାପ୍ତି ମିଳିବ ।

ସ୍ଥୂଳଚକ୍ଷୁରେ ଶ୍ରୀଜଗନ୍ନାଥଙ୍କ ବିରାଟତା ଆମକୁ ଜଣା ନ ପଡୁଥିଲେ ହେଁ ସୂକ୍ଷ୍ମ ଚକ୍ଷୁ ପ୍ରାପ୍ତ ଅର୍ଜୁନ ତାଙ୍କର ବିଶ୍ୱରୂପ ଦେଖିଥିଲେ ।

ଋଗ୍‌ବେଦରେ ଶ୍ରୀଜଗନ୍ନାଥଙ୍କୁ ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ଏବଂ ସମସ୍ତ ଦେବତାଙ୍କ ଈଶ୍ୱର ବୋଲି ମଣ୍ଡଳ ୧୦।୧୦।୨ ମନ୍ତ୍ରରେ ବର୍ଣ୍ଣନା ଅଛି । ସେହିପରି ଶ୍ରୀମଦ୍ ଭଗବତ ଗୀତାରେ ଶ୍ରୀକୃଷ୍ଣ ନିଜେ 'ଅହମାଦିଶ୍ଚ ମଧ୍ୟଂ ଚ ଭୂତାନାମନ୍ତ ଏବ ଚ' (ଗୀତା- ୧୦/୨୦) ବୋଲି କହି ଅଛନ୍ତି ଏବଂ 'ସର୍ଗଣା ମାଦିରନ୍ତଶ୍ଚ ମଧ୍ୟଂ ଚୈବାହମର୍ଜୁନ' (ଗୀତା ୧୦/୩୨) କହିଅଛନ୍ତି । ଶ୍ରୀମଦ୍ ଭାଗବତମ୍‌ରେ ସ୍କନ୍ଧ ୧।୧।୧ ଶ୍ଳୋକରେ ଶ୍ରୀଜଗନ୍ନାଥ ସୃଷ୍ଟିର ଆଦିରୁ ଅଛନ୍ତି ଓ ସେ 'ତ୍ରିସର୍ଗ' ସ୍ରଷ୍ଟା (ଚିତ୍ ସର୍ଗ, ଜୀବସର୍ଗ ଓ ଜଡ଼ ସର୍ଗ ବା ସୃଷ୍ଟି) ବୋଲି କୁହାଯାଇଅଛି ଏବଂ ସେ ମଧ୍ୟ 'ଅଭିଜ୍ଞ', 'ସ୍ୱରାଟ' (ବିରାଟ) ଏବଂ 'ସତ୍ୟଂ ପରଂ ଧୀମହି' କୁହାଯାଇଛି ।

ଶ୍ରୀଜଗନ୍ନାଥଙ୍କ ଦୁଇଟି ଶକ୍ତି ଅଛି ଯଥା- ଅନ୍ତରଙ୍ଗା ଓ ବହିର୍ଙ୍ଗା ଶକ୍ତି । ଅନ୍ତରଙ୍ଗା ଶକ୍ତିରୁ ଜୀବଜଗତ ଓ ବହିର୍ଙ୍ଗା ଶକ୍ତି ବା ମାୟିକ ଶକ୍ତିରୁ ଜଡ଼ଜଗତ ସୃଷ୍ଟି ହୋଇଅଛି ।

ଶ୍ରୀଜଗନ୍ନାଥଙ୍କର ତିନୋଟି ବୈଭବ ହେଲା - ସତ୍, ଚିତ୍ ଓ ଆନନ୍ଦ । ସତ୍ କ୍ରିୟାଶୀଳ ହେଲେ ସଂଧିନୀ ବା ବିଚ୍ଛେଦ ରହିତ କରାଏ, ଚିତ୍ କ୍ରିୟାଶୀଳ ହେଲେ ସମ୍ବିତ୍ ବା ବିଦ୍ୟାଶକ୍ତି ପ୍ରଦାନ କରାଏ ଏବଂ ଆନନ୍ଦ କ୍ରିୟାଶୀଳ ହେଲେ ଆହ୍ଲାଦିନୀ ବା ଆନନ୍ଦ ପ୍ରଦାନ କରାଏ । ତେଣୁ ଶ୍ରୀଜଗନ୍ନାଥ 'ସଚ୍ଚିଦାନନ୍ଦ' ଅଟନ୍ତି । ଜୀବ ଆନନ୍ଦ ପାଇବା ପାଇଁ ବା ସଚ୍ଚିଦାନନ୍ଦ ଲାଗି ଆକର୍ଷିତ ହୁଏ ।

ଶ୍ରୀଜଗନ୍ନାଥ ଲକ୍ଷ୍ମୀଯୁକ୍ତ ଅଟନ୍ତି । ଆଦିଶଙ୍କର ତାଙ୍କୁ 'ଶ୍ରୀୟାଶ୍ଲିଷ୍ଟ ବିଷ୍ଣୁ' କହିଅଛନ୍ତି । ଶ୍ରୀବିଷ୍ଣୁ ପୁରାଣରେ ସାଗର ମନ୍ଥନ ବେଳେ ଲକ୍ଷ୍ମୀ ସାଗରରୁ ବାହାରି ଭଗବାନଙ୍କ ଛାତିରେ ମିଶିଗଲେ ବର୍ଣ୍ଣନା ଅଛି । ଶ୍ରୀଜଗନ୍ନାଥ 'ଶ୍ରୀ'ଯୁକ୍ତ ଅଟନ୍ତି । ରତ୍ନସିଂହାସନ ଉପରେ ବିଜୟ ହୋଇଥିବା ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା, ଶ୍ରୀସୁଦର୍ଶନଙ୍କ ବ୍ୟତୀତ ନିମ୍ନଭାଗରେ ଶ୍ରୀଦେବୀ, ଭୂଦେବୀ ଓ ମାଧବ ବିଦ୍ୟମାନ । ଶ୍ରୀବିଷ୍ଣୁପୁରାଣର ଅଂଶ ୧।୮।୧୭ ଶ୍ଳୋକରେ ମହର୍ଷି ପରାଶର କହିଅଛନ୍ତି -

'ନିତୈବେଷା ଜଗନ୍ମାତା ବିଷ୍ଣୋଃ ଶ୍ରୀରନପାୟିନୀ ।
ଯଥା ସର୍ବଗତୋ ବିଷ୍ଣୁସ୍ତଥୈବେୟଂ ଦ୍ୱିଜୋତ୍ତମ ।।'
(ଶ୍ରୀବିଷ୍ଣୁ ପୁରାଣ-ଅଂଶ ୧।୮।୧୭)

(ହେ ଦ୍ୱିଜୋତମ-ଶ୍ରୀମୈତ୍ରେୟଜୀ ! ଭଗବାନଙ୍କର କେବେ ହେଲେ ସଙ୍ଗ ଛାଡୁ ନଥିବା ଜଗଜ୍ଜନନୀ ଲକ୍ଷ୍ମୀଜୀ ନିତ୍ୟ ଏବଂ ଯେଉଁ ପ୍ରକାରେ ଶ୍ରୀବିଷ୍ଣୁଙ୍କର ସର୍ବବ୍ୟାପକତା ସେହିପରି ମଧ ଲକ୍ଷ୍ମୀ ଅଟନ୍ତି ।)

ତେଣୁ ଶ୍ରୀଲକ୍ଷ୍ମୀ ଶ୍ରୀଜଗନ୍ନାଥଙ୍କୁ କେବେ ଛାଡ଼ି ନାହାନ୍ତି । ବଳରାମ ଦାସ ଶ୍ରୀୟା ଚଣ୍ଡାଳୁଣୀ ଘରକୁ ଶ୍ରୀଲକ୍ଷ୍ମୀ ଗଲେ ବୋଲି ଶ୍ରୀଜଗନ୍ନାଥ ଛାଡ଼ି ଦେବା ଓ ପ୍ରଭୁଙ୍କୁ ଖାଦ୍ୟ ମିଳିଲା ନାହିଁ ବର୍ଣ୍ଣନା ଗ୍ରହଣ ଯୋଗ୍ୟ ନୁହେଁ । ଶ୍ରୀମଦ୍ ଭାଗବତ ଗୀତା ବର୍ଣ୍ଣନା ଅନୁସାରେ ବା ଶ୍ରୀମଦ୍ ଭାଗବତମ୍ ବର୍ଣ୍ଣନା ଅନୁସାରେ ଭଗବାନ ଚତୁର୍ବର୍ଣ୍ଣ ସୃଷ୍ଟି କରିଅଛନ୍ତି । ଶୁଦ୍ର ତାଙ୍କ ପାଦରୁ ଉତ୍ପତ୍ତି ହୋଇଅଛନ୍ତି । ସେମାନେ ଭଗବାନଙ୍କର ଅଂଶ ବିଶେଷ ଅଟନ୍ତି । ଯଦି ଶ୍ରୀୟା ଚଣ୍ଡାଳୁଣୀ କଥା ସତ ହେବ ଦାସିଆ ବାଉରୀଠାରୁ ନଡ଼ିଆ ନେଲେ କିପରି ? 'ଦାଢ଼୍ୟତା ଭକ୍ତି'ରେ ମୋଚୀ ଶାଳଗ୍ରାମ ଉପରେ ଜୋତାରେ କଣ୍ଟା ପିଟିବା ଅଛି । ନବଦିନ ଶ୍ରୀଗୁଣ୍ଡିଚା ଯାତ୍ରାର ଶ୍ରୀଜଗନ୍ନାଥ ପତିତମାନଙ୍କ ଉଦ୍ଧାର କରିବା ସଂଗେସଂଗେ ଭକ୍ତପ୍ରବର ଯବନ ସାଲବେଗଙ୍କୁ ତାଙ୍କର କବରପୀଠରେ ଦର୍ଶନ ଦେବାକୁ ଯାଆନ୍ତି । ଭଗବାନଙ୍କର ଷଡ଼ ଐଶ୍ୱର୍ଯ୍ୟ ବା ଭଗ ବା ଇଙ୍ଗନା ମଧ୍ୟରୁ ସମ୍ପତ୍ତିର ପ୍ରାଚୁର୍ଯ୍ୟ ଏକ ଭାଗ । ତାଙ୍କୁ ଖାଇବାକୁ ମିଳିଲାନି କହିବା ହାସ୍ୟାସ୍ପଦ କଥା । ରାମ ଅବତାରରେ ମାଙ୍କଡ଼ ଓ ଭାଲୁଙ୍କ ସାହାଯ୍ୟ ନେବା ଓ ଶବରୀର ଅଇଁଠା ଫଳ ଖାଇଛନ୍ତି । ଶ୍ରୀକୃଷ୍ଣ ମଧ ଅଇଁଠା ଖାଇଛନ୍ତି । କୌଣସି ଜୀବ ଭଗବାନ ଶ୍ରୀଜଗନ୍ନାଥଙ୍କ ପାଖରେ ନ୍ୟୂନ ବା ଘୃଣ୍ୟ ନୁହନ୍ତି ।

ଆଡ଼ଭୋକେଟ
ଜେଲ୍ ରୋଡ଼, ଖୋର୍ଦ୍ଧା





# ଛପନ ଭୋଗରେ 'ମଗଜ ଲଡୁ'

ନିବେଦିତା ଭଞ୍ଜ

ଦେବ ଦେବ ଜଗନ୍ନାଥ
ପ୍ରପନ୍ନାର୍ତ୍ତି ବିନାଶନଂ
ତ୍ରାହିମାଂ ପୁଣ୍ଡରୀକାକ୍ଷଂ
ପତିତଂ ଭବସାଗରେ ।

ଭଗବାନଙ୍କ ନିକଟରେ ଭକ୍ତର ଆନ୍ତରିକ କାର୍ପଣ୍ୟତା, ହେ ପୁଣ୍ଡରୀକାକ୍ଷ ! ଜଗନ୍ନାଥ ! ମୁଁ ଜଣେ ପତିତ, ଭବ ରୂପକ ସମୁଦ୍ରରେ ପଡ଼ି ଉବୁଟୁବୁ ହେଉଛି, ଆପଣ ପାବନକର୍ତ୍ତା, ଚାହିଁଲେ ମୋତେ ଉଦ୍ଧାର କରି କୂଳରେ ଲଗାଇ ପାରିବେ ।

ଏହିପରି ହୃଦୟ ବିଗଳିତ ଆର୍ତ୍ତି, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦୟାରୁ କେବେ ହେଲେ ବଞ୍ଚିତ ହୁଏ ନାହିଁ । ପ୍ରଭୁ ତା'ର ସମସ୍ତ ଅବଗୁଣକୁ କ୍ଷମା କରି ସ୍ୱୟଂ ସହାୟ ହୋଇଥା'ନ୍ତି ।

ଜଗନ୍ନାଥ ପରି ଜଣେ ସାମନ୍ତ
ନାହିଁ ନାହିଁ ତ...
ଯା' ପରେ ପୁରୀଛ ଦୁଃଖି ଜନ ଦୟା
ନଖଠାରୁ ଶିଖ ସରିତ ... ।

ଏପରି ଭକ୍ତ ବତ୍ସଳ ପ୍ରଭୁ ଆଉ କୋଉଠି ମିଳିବେ... ? ତାଙ୍କର ଆଚାର, ବିଚାର, ଆହାର, ବିହାର, ଭୋଜନ, ଶୟନ ସବୁକିଛି ମାନବୀୟ ଲୀଳା ସହିତ ସାମଞ୍ଜସ୍ୟ । ପରଂବ୍ରହ୍ମ ଈଶ୍ୱରଙ୍କ ବର୍ଣ୍ଣନା ଆମ ସୀମିତ ଜ୍ଞାନ ବା ଶକ୍ତିର ସଂପୂର୍ଣ୍ଣ ପରିସୀମା ବାହାରେ । ପରଂବ୍ରହ୍ମ ଈଶ୍ୱରଙ୍କ ସଂଜ୍ଞା ନିରୂପଣର ଅର୍ଥ ତାଙ୍କୁ ସୀମାବଦ୍ଧ କରିବା, ତାଙ୍କ ବିଷୟରେ ଦୃଢ଼ ଭାବେ କିଛି କହିବା ଅର୍ଥ ତାଙ୍କୁ ଅସ୍ୱୀକାର କରିବା, ତାଙ୍କ ବିଷୟରେ ଏତିକି ମାତ୍ର କୁହାଯାଇପାରେ ଯେ ସେ ଅଛନ୍ତି । ଯାହାଙ୍କୁ ନେଇ ମାନବ ସମାଜ ଗର୍ବ କରେ । ଭାଇ, ବନ୍ଧୁ, କୁଟୁମ୍ବଙ୍କୁ ଅତି ଆପଣାର ଭାବି, ସୁଖରେ ନିଦ୍ରାଯାଏ । ନିର୍ଭୟରେ ସମୟ ଅତିବାହିତ କରେ । ଏଭଳି ସାମନ୍ତ ଥାଉ ଥାଉ ସେ କାହିଁକି କୋଉଠି ହାର ମାନିବ... ? ବଞ୍ଚିବତ ଶ୍ରୀଜୀଉଙ୍କ ନା'ରେ ମରିବତ ଶ୍ରୀଜୀଉଙ୍କ ନା'ରେ, ରାତି ପାହିଲେ ହାତ ଟେକି ଦେଇ, ଜୀବିକା ନିର୍ବାହକୁ ଅଗ୍ରସର ହେଉ ହେଉ ଗଡ଼ି ଚାଲିଥାଏ ସମୟ ।



ସେବା ହେଉଛି ସର୍ବଶ୍ରେଷ୍ଠ । ଷାଠିଏ ପଉଟି ମଣୋହି ସଜାଡ଼ି, ଛପନ ଭୋଗର ସ୍ୱାଦିଷ୍ଟ ଭିନ୍ନ ଭିନ୍ନ ରଚିରେ ପ୍ରଭୁଙ୍କୁ ଆପ୍ୟାୟିତ କରିବା ଏବଂ ତିନି ଧୂପ ଚାରି ଅବକାଶକୁ ସୂଚାରୁ ରୂପେ ତୁଲେଇ ପ୍ରଭୁଙ୍କ ମନ ଜାଣି, ତାମ୍ବୁଳ ଲାଗିରୁ ପହୁଡ଼ ପର୍ଯ୍ୟନ୍ତ, ପୁଣି ପ୍ରଭାତ ଅବକାଶ ଯାଏ । ଧନ୍ୟ ଭକ୍ତ ଧନ୍ୟ ।

ସେହିପରି କର୍ମକାରକ କୁଶଳ ଯୁକ୍ତିର ଅଧିକାରୀ ଜଣେ ପୂଜକ, ସେହି ପୂଜକ ଅନ୍ୟ କେହି ନୁହଁନ୍ତି ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥଙ୍କ ଅଙ୍ଗଲାଗି ସେବକ, ମଧୁମଙ୍ଗଳ ପୂଜାପଣ୍ଡା ।

ଇଂରେଜମାନଙ୍କ ଶାସନ କାଳ, ୧୮୦୪ ମସିହା କେତେକ ଗୋରା ସାହେବ ଶ୍ରୀଜଗନ୍ନାଥଙ୍କ ସେବା ପୂଜାର ସମସ୍ତ ବିବରଣୀ ସଂଗ୍ରହ କରିବା ପାଇଁ ପୁରୀରେ ପହଞ୍ଚି ତଦାରଖ କରୁଥାନ୍ତି । ସିଂହଦ୍ୱାର ସାମ୍ନାରେ ସେମାନଙ୍କ ଡେରା ପଡ଼ିଥାଏ ।

ଦିନେ ମଧୁମଙ୍ଗଳ କିଛି ରୋଜଗାର ଆଶାରେ ଘିଅ, ଚିନି, ଅଟାର ସ୍ୱାଦିଷ୍ଟ ଲଡୁ ନେଇ ସାହେବମାନଙ୍କ ତମ୍ବୁରେ ପହଞ୍ଚି ପ୍ରସାଦ ଓ ତୁଳସୀ ବଣ୍ଟନ କରନ୍ତେ, ମୁଖ୍ୟ ଅଫିସର ଜଣକ ପଚାରିଲେ ଏହାର ନାମ କ'ଣ ? ପୂଜା ପଣ୍ଡାଙ୍କ ପାଟିରୁ ବାହାରି ପଡ଼ିଲା 'ମଗଜ ଲଡୁ' । ଅଫିସର୍ ପଚାରିଲେ, ଯା'କୁ ଖାଇଲେ କ'ଣ ହେବ ? ପୂଜାପଣ୍ଡା କହିଲେ ମଗଜର ମାନ ବୃଦ୍ଧି ହେବ । ଅର୍ଥାତ୍ 'ମଗଜ' ବଢ଼ିବ । ଅଫିସର୍ ପୁଣି ପଚାରିଲେ ତୁମ ଜଗନ୍ନାଥ କ'ଣ ଏହାକୁ ଖାଆନ୍ତି ... ? ପୂଜାପଣ୍ଡା କହିଲେ ନିଶ୍ଚୟ । ତା'ହେଲେ କାଲି ତୁମେ ଲଡୁ ତୟାର





କରି ରଖିଥିବ ଆମେ ମୋହର ମାରି ଭୋଗ ପାଇଁ ପଠାଇବୁ । ଜଗନ୍ନାଥ ଯଦି ଖାଇବେ ଇନାମ ପାଇବ । ନ ଖାଇଲେ ମୃତ୍ୟୁଦଣ୍ଡ ଦିଆଯିବ ।

ପୂଜକ ଆକାଶରୁ ଖସି ପଡ଼ିଲା ପରି ତଟସ୍ଥ ହୋଇ ମୁଣ୍ଡ ଟୁଙ୍ଗାରି ଫେରି ଆସିଲେ । ବହୁତ ଏଣୁ ତେଣୁ ଚିନ୍ତା କଲେ । ମନରେ ତାଙ୍କର ବହୁପ୍ରଶ୍ନ ଉଙ୍କି ମାରୁଥାଏ । ଏହା କିପରି ସମ୍ଭବ ହେବ ... ? ଏକଥା ସମସ୍ତ ସେବକ ମହଲରେ କ୍ଷିପ୍ର ଗତିରେ ପ୍ରଘଟ ହୋଇଗଲା । କ'ଣ କରାଯିବ ... ? ହେ ଜଗନ୍ନାଥ ତୁମେ ହିଁ ଭରସା । ସେଦିନ ଅଖିଆ ଅପିଆ ସେବକମାନେ ଶ୍ରୀଜଗନ୍ନାଥଙ୍କ ସିଂହାସନ ତଳେ ଲମ୍ବ, ଲମ୍ବ ହୋଇ ପଡ଼ିଥାନ୍ତି ।

ଏତିକିବେଳେ ହଠାତ୍ ପ୍ରତ୍ୟକ୍ଷ ଦେଖିଲା ଭଳି ଦେଖିଲେ, ଜଗନ୍ନାଥ ନିଜେ ତାଙ୍କ ପାଖରେ ଉପସ୍ଥିତ ହୋଇ ବ୍ରଜ ଗମ୍ଭୀର ବାଣୀରେ କହୁଛନ୍ତି, 'ଆରେ ... ତୁମେ କ'ଣ ଜାଣି ନାହଁ ମୁଁ ଇଚ୍ଛାମୟ, ଭକ୍ତର ଇଚ୍ଛାକୁ ମୁଁ ନିଜ ଇଚ୍ଛା ଭଳି ଗ୍ରହଣ କରିଥାଏ । ମୁଁ ଜାଣେ ତୁମ୍ଭେମାନେ ଇଂରାଜୀ ଅଫିସର୍‌ର କଥାରେ ବଡ଼ବ୍ୟସ୍ତ ବିବ୍ରତ ହୋଇପଡ଼ିଛ । କାଲି ଲଡୁ ପଠାଅ, ଆଉ ମୁଁ ଖାଉଛି କି ନାହିଁ ଦେଖ, ତେବେ ତୁମ୍ଭମାନଙ୍କ ମନର ସମସ୍ତ ଗ୍ଲାନି ଅପସରି ଯିବ ।' ସେ ଯେତେବେଳେ ଯାହା ଚାହିଁବେ, ତାହା କିଏ ଅନ୍ୟଥା କରିବ ... ?

ଥାଳି ଥାଳି ମଗଜ ଲଡୁ ପ୍ରଭାତରୁ ଗଢ଼ା ହୋଇ ରଖାଗଲା । ସାହେବମାନଙ୍କ ଆଗରେ ଗୋଟା ଗୋଟା ଓଜନ କରାଯାଇ ମୋହର ବସିଲା । ତା'ପରେ ଭୋଗ ହେବାକୁ ଗଲା । ପୂଜାପଣ୍ଡା ଚଳୁଧରି କହିଲେ ହେ ଜଗନ୍ନାଥ ! ଗୋରା ସାହେବ ଆଦେଶ କରିଛି ଲଡୁ ଭାଙ୍ଗିବନି କି ଖଣ୍ଡିଆ ହେବନି, କିନ୍ତୁ ଓଜନରେ ଖାଇବା ନଖାଇବା ପରୀକ୍ଷା କରାଯିବ । ସେଥିପାଇଁ ବିଚାରକରି, 'ଖାଇଲା ପରି ନଖାଇ, ନଖାଇଲା ପରି ଖାଇବା ହୁଅନ୍ତୁ ।'

ସମସ୍ତଙ୍କର ଦୃଷ୍ଟି ସେହି ଗୋଟିଏ ଦିଗକୁ । କାହାର ଆଖିର ପଲକ ପଡୁ ନାହିଁ । ସମସ୍ତେ ଏକ ଅପୂର୍ବ ଦୃଶ୍ୟ ଦେଖିବାକୁ ଉପସ୍ଥିତ । ସମସ୍ତେ କାନ ଡେରି ଅପେକ୍ଷା କରିଥାନ୍ତି । ଭୋଗ ଉଠିବା ଯେତିକି ପାଖେଇ ଆସୁଥାଏ, ସେତିକି ସମସ୍ତେ ଉଦ୍‌ବିଗ୍ନ ହୋଇ ପଡୁଥାନ୍ତି । ସତେ ଯେପରି ଏଭଳି ଘଟଣା କେବେ କେହି ଅନୁଭବ କରିନାହାନ୍ତି ।

ଏହା ଏକ ସାଧାରଣ ଘଟଣା ନୁହେଁ । କୋଟି ବିଶ୍ୱର ମହାପ୍ରଭୁ ସ୍ୱୟଂ ଭକ୍ତବତ୍ସଳ ଜଗନ୍ନାଥଙ୍କ କଥା । ଭୋଗ ଥାଳି ବାହାରିଲା । ଲଡୁ ପୁନଶ୍ଚ ଓଜନ କରାଗଲା, ଆଶ୍ଚର୍ଯ୍ୟ ପାଲଟି ଯାଇଥିଲେ ଗୋରାସାହେବ । ଚତୁର୍ଦ୍ଦିଗ ନିର୍ବାକ୍ ଓ ନିସ୍ତବ୍ଧ । ଗଜପତି ମହାରାଜା, ସେବକ, ପଣ୍ଡିତ, ଭକ୍ତ ସମସ୍ତେ ଚକିତ ହେବା ସହିତ ବିଚଳିତ ହୋଇପଡ଼ିଥିଲେ । ସମସ୍ତଙ୍କ ଆଖିରୁ ଧାର ଧାର ହୋଇ ଭକ୍ତିର ଲୁହ ବହି ଯାଉଥାଏ । ଯେ' କି ଅଦ୍ଭୁତ କଥା - ଲଡୁ ଠିକ୍ ଅଛି, ମୋହର ଠିକ୍ ଅଛି, ଅଥଚ ଓଜନରେ ଅଧା । ସମସ୍ତ ଲଡୁର ଓଜନ ପୂର୍ବଠାରୁ ଅଧା ହ୍ରାସ ପାଇଛି । ଅଥଚ ଲଡୁ ଓ ମୋହର ବ୍ୟତିକ୍ରମ ହୋଇନାହିଁ ? 'ସମ୍ଭବ ଅସମ୍ଭବ, ଅସମ୍ଭବ, ସମ୍ଭବ ହୋଇଣ କଥା ରହିଗଲା ।'

ଜୟ ଜଗନ୍ନାଥ, ଜୟ ଜଗନ୍ନାଥ ! ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଉଥିବାବେଳେ ଇଂରେଜ ଅଫିସର୍, ପଟ୍ଟାଲେଖି ଖଞ୍ଜା କରି ଦେଇଥିଲେ ସବୁ ଦିନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ମଗଜ ଲଡୁରେ ଆପ୍ୟାୟିତ କରାଯିବାକୁ ।

ଏହାର ତାତ୍ପର୍ଯ୍ୟ ହେଲା, ମନୁଷ୍ୟକୁ ନୂଆ ନୂଆ କର୍ମ କରିବାର ସ୍ୱତନ୍ତ୍ରତା ଦିଆଯାଇଛି, ଯଦି ସେ ଚାହେଁ ତ ଅନାଶକ୍ତ ଭାବେ, କର୍ମ କରି ନିଜର ଲକ୍ଷ୍ୟ ପୂରଣ କରିପାରିବ । ଫଳର ନିର୍ଦ୍ଧାରଣ ତ ଭଗବାନଙ୍କ ହାତରେ ।

କର୍ମଣ୍ୟେବାଧିକାରସ୍ତୁ ମା' ଫଳେଷୁ କଦାଚନ,<br>
ମା' କର୍ମଫଳ ହେତୁର୍ଭୂମାତେ ସଂଗୌସ୍ତ୍ୱତ କର୍ମାଣ୍ୟ ।

ଗୀତା : ୨-୪୭

ସମସ୍ତ ଭାର ଭଗବାନଙ୍କ ପାଦପଦ୍ମରେ ଓଜାଡ଼ି ଦେଇ କର୍ମ କଲେ, ସେଭାର ସ୍ୱୟଂ ପ୍ରଭୁ ବହନ କରି ସେବକକୁ ରକ୍ଷା କରିଥାଆନ୍ତି ।

ଏଥିରୁ ସ୍ପଷ୍ଟ ଜଣାଯାଏ, ଜ୍ଞାତା, ଜ୍ଞାନ ଆଉ ଜ୍ଞେୟ ଏହି ତିନି କର୍ମ ପ୍ରେରକ ଅଟେ । ବାକି କର୍ତ୍ତାକରଣ ଓ କ୍ରିୟା ଏହି ତିନିକର୍ମ ସଂଗ୍ରହ କାରକ ଅଟେ । ପ୍ରତ୍ୟେକ କର୍ମକୁ ଯଦି କର୍ତ୍ତା ଭାବରେ ସମ୍ବନ୍ଧ କରାଗଲାତ ସେଥିରେ କିଛି ନା କିଛି ତିନି ପ୍ରକାର ଫଳ ଦେଖାଦେବ । ଯଥା- ଶୁଭ କର୍ମର ଫଳଶୁଭ । ଅଶୁଭ କର୍ମର ଫଳ ଅଶୁଭ ଏବଂ ଶୁଭା, ଶୁଭ ମିଶ୍ରିତ ଫଳ, ଭଲ, ମନ୍ଦର ମିଶ୍ରଣ । ମନୁଷ୍ୟ ଯଦି କର୍ମ ବା ଯୁକ୍ତିକୁ ଆଧାର କରି କର୍ମ ଉପରେ କର୍ତ୍ତୃତ୍ୱ ରହିତ ହୋଇ କୁଶଳତା ପ୍ରାପ୍ତ କରିପାରିବ, ତା'ହେଲେ ଭଲମନ୍ଦ ଅଥବା ମିଶ୍ରଣ ଫଳରୁ ନିଜକୁ ବେଶ୍ ମୁକ୍ତ କରିପାରିବ । ପ୍ରକୃତ କର୍ମର ଅଧିକାର ନେଇ ସେ ତ୍ୟାଗୀ ବା ମହାନ୍ ହୋଇପାରିବ ।

୮୬, ସତ୍ୟନଗର
ଭୁବନେଶ୍ୱର








# ମହାକାଳୀ ଓ ଶ୍ରୀଜଗନ୍ନାଥ

ପ୍ରଫୁଲ୍ଲ ଚନ୍ଦ୍ର ସାହୁ

**ସ**ନାତନ ହିନ୍ଦୁ ସଂସ୍କୃତିରେ ଦୁଇଟି ଧାରାର ପରିଚୟ ମିଳେ - ବୈଦିକ ଓ ତାନ୍ତ୍ରିକ । ବେଦରେ ଯେ ପରମାତ୍ମା ବ୍ରହ୍ମ, ତନ୍ତ୍ରରେ ସେ ମହାମାୟା ଆଦ୍ୟାଶକ୍ତି । ପ୍ରଥମଟି ପୁରୁଷ ଆରୋପିତ ହୋଇଥିଲା ବେଳେ ଦ୍ୱିତୀୟଟି ମାତୃ-ପ୍ରଧାନ । ବେଦ, ବେଦାନ୍ତରେ ଦୃଶ୍ୟମାନ ଓ ଅଦୃଶ୍ୟ ସୃଷ୍ଟିର ମୂଳ ଉତ୍ସ ଓ ସମସ୍ତ ବସ୍ତୁର ଶେଷ ଭଗ୍ନାଂଶ ହିଁ ନିରନ୍ତ୍ରଭାବରେ ସର୍ବତ୍ର ପରିବ୍ୟାପ୍ତ ବ୍ରହ୍ମ ବୋଲି ନାନା ଭାବରେ ସ୍ୱୀକୃତ ହୋଇଛି । ଯଥା-

ଯତୋବା ଇମାନି ଭୂତାନିଯାୟନ୍ତେ,<br>
ଯେନ ଯାତାନି ଜୀବନ୍ତି ।<br>
ଯତ୍ ପ୍ରୟନ୍ତ୍ୟ ଭିସଂବିଷନ୍ତି ।<br>
ତଦ୍ୱି ଜିଜ୍ଞାସସ୍ୱ । ତଦ୍ ବ୍ରହ୍ମେତି ।।<br>
(ଭୃଗୁବଲ୍ଲୀ ପ୍ରଥମବାକ୍ - ତୈତରୀୟ ଉପନିଷଦ)

ଅର୍ଥାତ୍, ଯାହାଙ୍କଠାରୁ ଏହି ପରିଦୃଶ୍ୟମାନ ସଚରାଚର ଜଗତ ଉତ୍ପନ୍ନ ହୋଇ, ଯାହାଙ୍କ ଦ୍ୱାରା ପ୍ରାଣ ଧାରଣ କରୁଅଛି ଏବଂ ଶେଷରେ ଯାହାଙ୍କଠାରେ ସମସ୍ତେ ନିବିଷ୍ଟ ହୁଅନ୍ତି, ତାଙ୍କୁ ଜାଣିବାକୁ ଇଚ୍ଛା କର - ସେହି ବ୍ରହ୍ମ ।

ତେବେ ଏହି ବ୍ରହ୍ମ 'ଏକୋଽହଂ, ବହୁସ୍ୟାମ'ର ସଂକଳ୍ପ ନେଇ ବା ଇଚ୍ଛାଶକ୍ତି ନେଇ ଯେତେବେଳେ ପ୍ରଳୟାନ୍ତରେ କ୍ଷୁଦ୍ରାଦପିକ୍ଷୁଦ୍ର ବିନ୍ଦୁରୁ ନିଜକୁ ସମସ୍ତ ସୃଷ୍ଟିରେ ସର୍ଜିତ ଓ ବିସ୍ତୃତ କରନ୍ତି, ସେତେବେଳେ ସକଳ ପ୍ରାଣୀଜଗତ ତାଙ୍କରି ଅନ୍ତର୍ନିହିତ ପାଳନ ଶକ୍ତି ଦ୍ୱାରା ଜୀବନଧାରଣ କରନ୍ତି । ଉପନିଷଦମାନଙ୍କରେ ଯଥାର୍ଥରେ କୁହାଯାଇଛି -

କାହାର ନିର୍ଦ୍ଦେଶରେ ମନ ଓ ଅନ୍ୟ ଇନ୍ଦ୍ରିୟମାନେ କାମ କରୁଛନ୍ତି ? ଆମର ଚକ୍ଷୁ, କର୍ଣ୍ଣ, ମନ ଆଦିଙ୍କ ପଛରେ ଏଭଳି ଏକ ଶକ୍ତି ରହିଛି, ଯାହାର ନିର୍ଦ୍ଦେଶରେ ଏ ପ୍ରାଣ ଚାଲିଛି ଏବଂ ଇନ୍ଦ୍ରିୟ ସକଳ ସକ୍ରିୟ । ଏହାକୁ ଆଖି ଦେଖିପାରିବନି କି ଭାଷା ବର୍ଣ୍ଣନା କରିପାରିବନି । ଏହା କେବଳ ଅନୁଭବରେ ଉପଲବ୍ଧ ।

ତେବେ ବେଦ ବେଦାନ୍ତରେ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' ବା 'ଏକୋ ବ୍ରହ୍ମ ଦ୍ୱିତିୟୋ ନାସ୍ତି' ବୋଲି ପ୍ରାମାଣିକତା ଥିଲାବେଳେ, ତନ୍ତ୍ରମତରେ ଆଦ୍ୟାଶକ୍ତି ମହାମାୟା ହିଁ ଏକ ଓ ଅଦ୍ୱିତୀୟା ବୋଲି ସ୍ୱୀକୃତ ହୋଇଛନ୍ତି । ତନ୍ତ୍ରର ସର୍ବଶ୍ରେଷ୍ଠ ଆଲେଖ୍ୟ - ଶ୍ରୀଦୁର୍ଗା ସପ୍ତଶତୀରେ ସ୍ୱୟଂ ଆଦ୍ୟାଶକ୍ତି ଦେବତାମାନଙ୍କୁ ନିଜର ପରିଚୟ ପ୍ରଦାନ କରି କହିଛନ୍ତି - ମୁଁ ବ୍ରହ୍ମ ସ୍ୱରୂପ ଅଟେ । ମୋ'ଠାରୁ ପ୍ରକୃତି-ପୁରୁଷାତ୍ମକ, ସଦ୍‌ରୂପ ଓ ଅସଦ୍‌ରୂପ ଜଗତ୍ ଉତ୍ପନ୍ନ ହୋଇଛି । ମୁଁ ଆନନ୍ଦ ଓ ନିରାନନ୍ଦ, ମୁଁ ବିଜ୍ଞାନ ଓ ଅବିଜ୍ଞାନ । ମୁଁ ଜ୍ଞାତବ୍ୟ ବ୍ରହ୍ମ ଓ ଅବ୍ରହ୍ମ ମଧ୍ୟ । ପଞ୍ଚୀକୃତ ଓ ଅପଞ୍ଚୀକୃତ ମହାଭୂତ ମୁଁ ଅଟେ । ଏହି ସାରା ଦୃଶ୍ୟମାନ ଜଗତ ମୁଁ । ବେଦ ଓ ଅବେଦ ମୁଁ ଅଟେ । ବିଦ୍ୟା ଓ ଅବିଦ୍ୟା ମଧ୍ୟ ମୁଁ । ଅଜା ଓ ଅନଜା (ପ୍ରକୃତି ଓ ତା'ଠାରୁ ଭିନ୍ନ) ବି ମୁଁ । ମୁଁ ଊର୍ଦ୍ଧ୍ୱ, ଅଧ ଓ ସବୁକୋଣରେ ବିଦ୍ୟମାନ ।

ଅନ୍ୟତ୍ର ମଧ୍ୟ ଶୁମ୍ଭ-ନିଶୁମ୍ଭ ବଧବେଳେ, ଯେତେବେଳେ ମହାଦେବୀଙ୍କୁ ଶୁମ୍ଭ ବିଦ୍ରୂପ କରି କହିଛି ଯେ, 'ତୁମେ ମିଥ୍ୟାଶକ୍ତିର ଅଭିମାନ କରୁଛ ଅଥଚ ଅନ୍ୟ ସହଚରୀମାନଙ୍କ ସାହାଯ୍ୟ ନେଇ ଯୁଦ୍ଧ କରୁଛ ।' ସେତେବେଳେ ଦେବୀ କହିଛନ୍ତି -

ଏକୈବାହଂ ଜଗତ୍ ଯତ୍ର ଦ୍ୱିତୀୟା କା ମମାପରା ।<br>
ପଶୈ୍ୟତା ଦୁଷ୍ଟ ମୟୈବ ବିଶନ୍ତ୍ୟୋ ମଦ୍ ବିଭୂତୟଃ ।<br>
ଶ୍ରୀଦୁର୍ଗାସପ୍ତଶତୀ (୧୦/୫)

ଅର୍ଥାତ୍, ଆରେ, ଦୁଷ୍ଟ, ମୁଁ ଏକାକୀ ରହିଛି । ଏ ସଂସାରରେ ମୋ ବ୍ୟତୀତ ଅନ୍ୟ କିଏ ଅଛି ? ଦେଖ, ଏମାନେ ସବୁ (ସହଚରୀମାନେ) ମୋର ବିଭୂତି ଏବଂ ଏବେ ମୋ ଶରୀରରେ ବିଲୀନ ହୋଇଯାଉଛନ୍ତି । ସେତେବେଳେ ସବୁ ସହଚରୀ ଦେବୀମାନେ ଅମ୍ବିକାଙ୍କ ଶରୀରରେ ଲୀନ ହୋଇଗଲେ ଓ କେବଳ ମହାମାୟା ଅମ୍ବିକା ରହିଲେ ।

ଏଥିରୁ ଜଣା ପଡୁଛି ଯେ, ବେଦର ବ୍ରହ୍ମ ଓ ତାଙ୍କ ଅନ୍ତର୍ନିହିତ - ମାୟା ଶକ୍ତି ଏବଂ ତନ୍ତ୍ରର ଆଦ୍ୟାଶକ୍ତି ଓ ତାଙ୍କ ଆଧାର ଶିବ ଏକ ଓ ଅଭିନ୍ନ । ଉଭୟେ - ପରସ୍ପରର ପରିପୂରକ । ଅନନ୍ତ ମହାଶୂନ୍ୟର ବ୍ରହ୍ମ ଓ ଶକ୍ତିଙ୍କ ଅଧାଅଧି ନେଇ ଏଇଠି ଅର୍ଦ୍ଧନାରୀଶ୍ୱର କଳ୍ପିତ ହୋଇଛନ୍ତି । ଅର୍ଥାତ୍ ବ୍ରହ୍ମ ଉଭୟ ଲିଙ୍ଗୀ । ବିଦ୍ୟୁତ୍ ଶକ୍ତି ପରି ଏହି ମହାଜାଗତିକ ଶକ୍ତି ବା ବ୍ରହ୍ମ ଶକ୍ତି ଉଭୟ ଶୁଭ ଓ ଅଶୁଭ କର୍ମ, ଆବଶ୍ୟକତାନୁଯାୟୀ କରିପାରେ, ଯାହାକୁ ବେଦ କହେ - 'ଶୁଭାଶୁଭାତ୍ମିକା ଯାତୁ ଦୈବ ସୃଷ୍ଟି ପ୍ରଶସ୍ୟତେ ।'





ବେଦୋକ୍ତ ବ୍ରହ୍ମ ଓ ତନ୍ତ୍ରୋକ୍ତ ଶିବ ନିରାକାର, ନିର୍ଗୁଣ ଓ ନିଷ୍କ୍ରିୟ । ସୃଷ୍ଟି ସଂକଳ୍ପମାତ୍ରେ, ମହାଶୂନ୍ୟର ଅନ୍ତର୍ନିହିତ ଇଚ୍ଛାଶକ୍ତି ସକ୍ରିୟ ହୋଇ ବ୍ରହ୍ମ ବା ଶିବଙ୍କୁ ଆଧାର କରି ସୃଷ୍ଟି ସର୍ଜନା କରନ୍ତି । ସୃଷ୍ଟି ପ୍ରାରମ୍ଭରୁ ଏହି ଇଚ୍ଛାଶକ୍ତି ଆବିର୍ଭୂତ ହୋଇଥିବାରୁ ତାଙ୍କୁ ଆଦ୍ୟାଶକ୍ତି କୁହାଯାଏ, ଯାହାଙ୍କ ସାହଚର୍ଯ୍ୟରେ ବ୍ରହ୍ମ ବା ଶିବ ସୃଷ୍ଟି କଳନା କରିଥିବାରୁ ଶିବଙ୍କୁ ମହାକାଳ ଓ ନିରନ୍ତର ସୃଷ୍ଟି ସର୍ଜନାରେ ବିପରିତ ରତିରେ ବ୍ୟସ୍ତ ଆଦ୍ୟାଶକ୍ତିଙ୍କୁ ମହାକାଳୀ ରୂପେ ଅଭିହିତ କରାଯାଏ ।

ଯେମିତି ଜଣେ ବ୍ୟକ୍ତିଙ୍କ ହାତଟି ପକ୍ଷାଘାତ ଗ୍ରସ୍ତ ହେଲେ ହାତଟି ନିର୍ଜୀବ, ଶକ୍ତିହୀନ ହୋଇ ନିଷ୍କ୍ରିୟ ହୋଇଯାଏ ସେମିତି ଶିବ ଶକ୍ତିହୀନ ହେଲେ ଶବ ବା ନିଷ୍ପ୍ରାଣ ହୋଇ ଯାଆନ୍ତି ଏବଂ ଶକ୍ତି ସଂଯୁକ୍ତ ହେଲେ ସୃଷ୍ଟି, ସ୍ଥିତି ଓ ସଂହାର-ସମର୍ଥ ହୁଅନ୍ତି । ଅଦ୍ୱୈତବାଦୀ ଶଙ୍କରାଚାର୍ଯ୍ୟ ମଧ୍ୟ ଏହାକୁ ସ୍ୱୀକାର କରି ଆନନ୍ଦ ଲହରୀର ପ୍ରଥମ ଶ୍ଳୋକରେ ଉଲ୍ଲେଖ କରିଛନ୍ତି ।

ଶିବ ଯଦି ଶକ୍ତିଯୁକ୍ତ ହୁଅନ୍ତି, ତେବେ ସୃଷ୍ଟି ରଚନା କରିବାକୁ ସମର୍ଥ ହୁଅନ୍ତି, ନହେଲେ ସେ ସ୍ୱଳ୍ପ ସ୍ପନ୍ଦନ ମଧ୍ୟ କରିବାକୁ ଅକ୍ଷମ ହୁଅନ୍ତି । ମୋ'ପରି ଅଯୋଗ୍ୟ ବ୍ୟକ୍ତି କିପରି ତୁମର ସ୍ତୁତି ବା ପ୍ରଣାମ କରିବି ? ତୁମେ ତ ହରିହର ବିରଞ୍ଚି ଆଦିଙ୍କ ଦ୍ୱାରା ସଂପୂଜିତ ।

**ଆବିର୍ଭାବ ! ପ୍ରଥମ ରହସ୍ୟ**

ତନ୍ତ୍ରମତର ସର୍ବଶ୍ରେଷ୍ଠ ରୂପାୟନ ସପ୍ତଶତ ଚଣ୍ଡୀରେ ଏହି ଆଦ୍ୟାଶକ୍ତି ବା ମୂଳ ପ୍ରକୃତିଙ୍କୁ ତ୍ରିଗୁଣମୟୀ ଆଦ୍ୟା ମହାଲକ୍ଷ୍ମୀ ବୋଲି କୁହାଯାଇଛି, ଯିଏ ଦୃଶ୍ୟ ଅଦୃଶ୍ୟ ରୂପରେ ମହାଶୂନ୍ୟକୁ ବ୍ୟାପୀ କରିଥିଲେ । ତାଙ୍କର ଚତୁର୍ଭୁଜରେ ମାତଲୁଙ୍ଗ (ବେଦନାଫଳ) ଗଦା, ଖେଟ (ଢାଲ) ଓ ପାଟପାତ୍ର ସୁଶୋଭିତ ଥିଲା ଓ ତାଙ୍କ ମସ୍ତକରେ ନାଗସର୍ପ ବିଦ୍ୟମାନ ଥିଲା, ତାଙ୍କର କାନ୍ତି ତପ୍ତସୁବର୍ଣ୍ଣ ସଦୃଶ ଥିଲା ଏହି ପରମେଶ୍ୱରୀ ଆଦ୍ୟା ପ୍ରକୃତି ମହାଲକ୍ଷ୍ମୀ ମହାଶୂନ୍ୟରେ ନିଜକୁ ଏକାଏକା ଦେଖି, ନିଜର ତ୍ରିଗୁଣ ମଧ୍ୟରୁ ପ୍ରଥମେ କେବଳ ତମଗୁଣ ସନ୍ନିବିଷ୍ଟ ଅନ୍ୟ ଏକ ରୂପ ଧାରଣ କଲେ, ଯାହାଙ୍କର ରୂପ କଜ୍ଜଳ କୃଷ୍ଣବର୍ଣ୍ଣ ଥିଲା ଓ ଚାରିହାତରେ ଗଦା, ଖଡ୍ଗ, ପାତ୍ର ଓ ଛିନ୍ନମସ୍ତକ ସୁଶୋଭିତ ଥିଲା । ସେ ତାଙ୍କର ବକ୍ଷସ୍ଥଳରେ କବନ୍ଧ ତଥା ମସ୍ତକରେ ମୁଣ୍ଡମାଳା ଧାରଣ କରିଥିଲେ । ସେତେବେଳେ ଆଦ୍ୟା ମହାଲକ୍ଷ୍ମୀ ଏହି ତାମସୀ ଦେବୀଙ୍କୁ ନାମ ଓ କର୍ମ ପ୍ରଦାନ କରି କହିଲେ -

ଦଦାମି ତବ ନାମାନି ଯାନି କର୍ମାଣି ତାନିତେ ।
ମହାମାୟା, ମହାକାଳୀ, ମହାମାରୀ, କ୍ଷୁଧା, ତୃଷା
ନିଦ୍ରା, ତୃଷ୍ଣା ଚୈକବୀରା କାଳରାତ୍ରୀର୍ଦୁରତ୍ୟୟା ।
ପ୍ରାଧାବିକ ରହସ୍ୟମ୍ (ଦୁର୍ଗା ସପ୍ତଶତୀ- ୧୧/୧୨)

ଏହାପରେ ଆଦ୍ୟା ମହାଲକ୍ଷ୍ମୀ ଶୁଦ୍ଧ ସତ୍ତ୍ୱଗୁଣ ବିଶିଷ୍ଟ ଅନ୍ୟ ଏକ ଚତୁର୍ଭୁଜା ଗୌରାଙ୍ଗୀ ରୂପ ଧାରଣ କରି ତାଙ୍କୁ ମହାସରସ୍ୱତୀ ବୋଲି ସମ୍ବୋଧନ କଲେ ଓ ନିଜର ରଜ-ଗୁଣରୁ ମହାଲକ୍ଷ୍ମୀଙ୍କୁ ସୃଷ୍ଟି କଲେ । ଆଦ୍ୟା ମହାଲକ୍ଷ୍ମୀଙ୍କଠାରୁ ମହାକାଳୀ, ମହାସରସ୍ୱତୀ ଓ ମହାଲକ୍ଷ୍ମୀ ସୃଷ୍ଟି ହେଲାପରେ, ଆଦ୍ୟା ମହାଲକ୍ଷ୍ମୀ ସେ ତିନି ଦେବୀଙ୍କୁ ନିଜ ନିଜ ଗୁଣଯୋଗ୍ୟ ସ୍ତ୍ରୀ-ପୁରୁଷର ଯୁଗଳ ଉତ୍ପନ୍ନ କରିବାକୁ ଆଦେଶ ଦେଲେ । ତଦନୁଯାୟୀ ମହାଲକ୍ଷ୍ମୀ ପ୍ରଥମେ ସ୍ତ୍ରୀ-ପୁରୁଷର ଏକ ଯୁଗଳ ଜାତ କରି, ସାତ୍ତ୍ୱିକ ପୁରୁଷ ଜଣଙ୍କୁ ବ୍ରହ୍ମା, ବିଧି, ବିରଞ୍ଚି ଓ ଧାତା ନାମରେ ଓ ରଜଗୁଣା ସ୍ତ୍ରୀଟିକୁ ପଦ୍ମା, କମଳା, ଲକ୍ଷ୍ମୀ ଆଦି ନାମରେ ସମ୍ବୋଧନ କଲେ । ସେହି ପରି ମହାକାଳୀ ଏକ ଯୁଗଳ ଉତ୍ପନ୍ନ କରି ତମଗୁଣା ପୁରୁଷଟିକୁ ରୁଦ୍ର, ଶଙ୍କର, ସ୍ଥାଣୁ, ଜଟାଧାରୀ, ତ୍ରିଲୋଚନ, ଶିବ ଆଦିନାମରେ ଓ ସତ୍ତ୍ୱଗୁଣା ସ୍ତ୍ରୀଜଣଙ୍କୁ ତ୍ରୟୀ, ବିଦ୍ୟା, କାମଧେନୁ, ଭାଷା, ଅକ୍ଷରା ଓ ସ୍ୱରା ନାମରେ ସମ୍ବୋଧନ କଲେ ଏବଂ ମହା ସରସ୍ୱତୀଙ୍କଠାରୁ ଉତ୍ପନ୍ନ ଯୁଗଳ ମଧ୍ୟରୁ ଶ୍ୟାମ ରଙ୍ଗର ରଜଗୁଣା ପୁରୁଷଙ୍କ ନାମ ବିଷ୍ଣୁ, କୃଷ୍ଣ, ହୃଷୀକେଶ, ବାସୁଦେବ ଓ ଜନାର୍ଦ୍ଦନ ହେଲାବେଳେ, ତମଗୁଣା ସ୍ତ୍ରୀଟି ଉମା, ଗୌରୀ, ସତୀ, ଚଣ୍ଡୀ, ସୁନ୍ଦରୀ, ସୁଭଗା ଓ ଶିବା ଆଦି ନାମରେ ପ୍ରସିଦ୍ଧ ହେଲେ । ଯାହା କେବଳ ଜ୍ଞାନୀମାନେ ହୃଦୟଙ୍ଗମ କରିପାରିବେ । ସିଧାସଳଖ କହିଲେ ଶକ୍ତି, ସ୍ତ୍ରୀ ଓ ପୁରୁଷ ଉଭୟ ହୋଇପାରନ୍ତି । ତତ୍ପରେ ଆଦ୍ୟା ମହାଲକ୍ଷ୍ମୀ ବ୍ରହ୍ମାଙ୍କ ପତ୍ନୀ ରୂପେ ସରସ୍ୱତୀଙ୍କୁ, ବିଷ୍ଣୁ ପତ୍ନୀ ରୂପେ ଲକ୍ଷ୍ମୀଙ୍କୁ ଓ ଶିବଙ୍କ ପତ୍ନୀ ରୂପେ ଗୌରୀଙ୍କୁ ସଂଯୁକ୍ତ କରି ସୃଷ୍ଟି ସର୍ଜନା, ପାଳନ ଓ ସଂହାର ଦାୟିତ୍ୱ ଅର୍ପଣ କଲେ । ଏଇଠି ଦେଖିବା କଥା ଯେ, ଆଦ୍ୟା ମହାଲକ୍ଷ୍ମୀ ତ୍ରିଗୁଣମୟୀ ଥିଲାବେଳେ, ତାଙ୍କଠୁ ସମ୍ଭୂତ ତମଗୁଣା ମହାକାଳୀଙ୍କଠାରୁ ତମଗୁଣା ଶିବ ଓ ସତ୍ତ୍ୱଗୁଣା ସରସ୍ୱତୀ ଓ ରଜଗୁଣା ମହାଲକ୍ଷ୍ମୀଙ୍କଠାରୁ ତମଗୁଣା ଲକ୍ଷ୍ମୀ ଏବଂ ସତ୍ତ୍ୱଗୁଣା ମହାସରସ୍ୱତୀଙ୍କଠାରୁ ରଜଗୁଣା ବିଷ୍ଣୁ ଓ ତମଗୁଣା ଗୌରୀ ଜାତ ହୋଇଛନ୍ତି ବା ଉଦ୍‌ଭବ ହୋଇଛନ୍ତି ।

ଶ୍ରୀ ଦୁର୍ଗା ସପ୍ତଶତୀରେ କୁହାଯାଇଛି - ହେ ମହାରାଜ ସୁରଥ, ମହାଲକ୍ଷ୍ମୀ ହିଁ ସର୍ବ ସତ୍ତ୍ୱମୟୀ ଈଶ୍ୱରୀ ଅଟନ୍ତି । ସେ ନିରାକାର ଓ ସାକାର, ଉଭୟ ରୂପେ ବହୁବିଧ ନାମ ଧାରଣ କରି ସୃଷ୍ଟିରେ ଲୀଳାଖେଳା କରନ୍ତି । ସଗୁଣ ବାଚକ ସତ୍ୟ, ଜ୍ଞାନ, ଚିତ୍, ମହାମାୟା, ମହାକାଳୀ ଆଦି ନାମାନ୍ତର ଦ୍ୱାରା ଏହି ଆଦିଶକ୍ତିଙ୍କୁ ନିରୂପଣ କରାଯାଏ । କେବଳ ଗୋଟିଏ ନାମ ଦ୍ୱାରା (ମହାଲକ୍ଷ୍ମୀ ବା ମହାକାଳୀ ବା ଯେକୌଣସି ନାମ ଦ୍ୱାରା) ଅଥବା ଅନ୍ୟ ପ୍ରତ୍ୟକ୍ଷାଦି ପ୍ରମାଣ ଦ୍ୱାରା ତାଙ୍କର ବର୍ଣ୍ଣନା କରାଯାଇପାରେ ନାହିଁ ।

ଦ୍ୱିତୀୟ ରହସ୍ୟ

ଗୋଟିଏ କଳ୍ପପରେ ସୃଷ୍ଟି ସଂହାର ହେଲେ, ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ମହାପ୍ରଳୟର ଏକାର୍ଣ୍ଣବରେ ବୁଡ଼ିଯାଏ ଓ ଭଗବାନ ବିଷ୍ଣୁ ଶେଷନାଗ ଶଯ୍ୟାରେ ଯୋଗ ନିଦ୍ରାରେ ବିଶ୍ରାମ କରନ୍ତି । ସେ ସମୟରେ ବିଷ୍ଣୁଙ୍କ କର୍ଣ୍ଣମଳରୁ ମଧୁ, କୈଟଭ ନାମକ ଦୁଇଟି ଭୟଙ୍କର ଅସୁର ଉତ୍ପନ୍ନ ହେଲେ ଏବଂ ସେମାନେ ବିଷ୍ଣୁଙ୍କ ନାଭିରୁ ଜାତ ପଦ୍ମଯୋନି ବ୍ରହ୍ମାଙ୍କୁ ଖାଇବା ପାଇଁ ଦୌଡ଼ିଲେ । ସେତେବେଳେ ଚତୁର୍ମୁଖ ବ୍ରହ୍ମା ବିଷ୍ଣୁଙ୍କୁ

ନିଦ୍ରାରେ ଘାରିଥିବା ଯୋଗନିଦ୍ରା ମହାକାଳୀଙ୍କୁ ଅତି ଆତୁର ହୋଇ ସ୍ତୁତି ଓ ଧ୍ୟାନ କଲେ ।

ସେତେବେଳେ ଭଗବାନ ବିଷ୍ଣୁଙ୍କ ନେତ୍ର, ମୁଖ, ନାସିକା, ବାହୁ, ହୃଦୟ ଓ ବକ୍ଷସ୍ଥଳରୁ ମହାକାଳୀ ବାହାରି ଯିବାରୁ, ବିଷ୍ଣୁ ନିଦ୍ରାରୁ ଉଠି ମଧୁ କୈଟଭଙ୍କ ସହିତ ପାଞ୍ଚ ହଜାର ବର୍ଷ ବାହୁ ଯୁଦ୍ଧ କରି ମଧ ମାରି ପାରିଲେନି । ମହାକାଳୀ ଯୋଗମାୟା ଅସୁରଦ୍ୱୟଙ୍କୁ ମୋହଗ୍ରସ୍ତ କରିବାରୁ, ସେମାନେ ବିଷ୍ଣୁଙ୍କ ଯୁଦ୍ଧରେ ଖୁସି ହୋଇ ବରଯାଚିଲେ ଓ ବିଷ୍ଣୁ ତାଙ୍କୁ ନିଜ ଜଙ୍ଘ ଉପରେ ରଖି ଚକ୍ରରେ କାଟି, ତାଙ୍କ ମେଦକୁ ଏକାର୍ଣ୍ଣବରେ ପକେଇ ମେଦିନୀ ସୃଷ୍ଟି କଲେ ।

ତୃତୀୟ ରହସ୍ୟ

ପୂର୍ବକାଳରେ ମହିଷାସୁର ଦେବତାମାନଙ୍କୁ ପରାସ୍ତ କରି ସ୍ୱର୍ଗ ଦଖଲ କଲା । ପରାଭୂତ ଦେବତାମାନେ ଭଗବାନ ବିଷ୍ଣୁ ଓ ଶଙ୍କରଙ୍କ ପାଖକୁ ଯାଇ ଦୁଃଖ ଜଣେଇବାରୁ ବିଷ୍ଣୁ, ଶିବ, ବ୍ରହ୍ମା ଓ ଇନ୍ଦ୍ର ଆଦି ଦେବତାମାନଙ୍କ କ୍ରୋଧରୁ ଏକ ମହାନ୍ ତେଜପୁଞ୍ଜ ନିର୍ଗତ ହେଲା, ଯାହା ଏକତ୍ରିତ ହୋଇ ସହସ୍ରଭୁଜ ବିଶିଷ୍ଟା ମହାଦେବୀ ଆବିର୍ଭୂତା ହେଲେ । ତାଙ୍କୁ ମହାଲକ୍ଷ୍ମୀ, ଦୁର୍ଗା, ଅମ୍ବିକା, ଭବାନୀ ଓ ଭଦ୍ରକାଳୀ ଆଦି ନାମରେ ସ୍ତୁତି କଲେ ଓ ନିଜ ନିଜର ଅସ୍ତ୍ର ସମର୍ପଣ କଲେ । ଦେବୀ ମହିଷାସୁରକୁ ବଧ କଲାପରେ ଦେବତାଙ୍କ ସ୍ତୁତିଗାନରେ ସନ୍ତୁଷ୍ଟ ହୋଇ ସ୍ୱତଃ ବରଦାନ କଲେ ଯେ, ଯେତେବେଳେ ଦେବତାମାନେ ତାଙ୍କୁ ସ୍ମରଣ କରିବେ ସେତେବେଳେ ଦେବୀ ତାଙ୍କୁ ଦର୍ଶନ ଦେଇ ବିପଦରୁ ଉଦ୍ଧାର କରିବେ ।

ଦେବତା ଓ ଅସୁରମାନଙ୍କ (ସତ୍ ଓ ଅସତ୍) ମଧ୍ୟରେ ତ ସବୁବେଳେ ଯୁଦ୍ଧ ଲାଗି ରହିଛି । ତେଣୁ ପରବର୍ତ୍ତୀ ସମୟରେ ଯେତେବେଳେ ଶୁମ୍ଭ ଓ ନିଶୁମ୍ଭ ନାମକ ମହାପରାକ୍ରମୀ ଅସୁର ଭ୍ରାତାଦ୍ୱୟ ପୁନର୍ବାର ସ୍ୱର୍ଗ ଅଧିକାର କରି ଦେବତାମାନଙ୍କ ଅଧିକାର ଓ ଯଜ୍ଞଭାଗ ଛଡ଼େଇ ନେଲେ, ସେତେବେଳେ ସବୁ ଦେବତାମାନେ ମହାମାୟା ଅମ୍ବିକାଙ୍କ ବରଦାନ ସ୍ମରଣ କରି ହିମାଳୟକୁ ଯାଇ ଭଗବତୀ ବିଷ୍ଣୁମାୟାଙ୍କୁ ସ୍ତୁତି ପ୍ରାର୍ଥନା କଲେ -

'ଯା' ଦେବୀ ସର୍ବଭୂତେଷୁ ବିଷ୍ଣୁମାୟେତି ଶବ୍ଦିତା,
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋନମଃ ... ।'

ସେତେବେଳେ ପାର୍ବତୀ ଗଙ୍ଗାନଦୀରେ ସ୍ନାନ କରିବାକୁ ଆସି ସେଠାରେ ପ୍ରାର୍ଥନାରତ ଦେବତାମାନଙ୍କୁ କାହାକୁ ଓ କାହିଁକି ସ୍ତୁତି କରୁଛନ୍ତି ବୋଲି ପ୍ରଶ୍ନ କଲେ । ସେତେବେଳେ ପାର୍ବତୀଙ୍କ ଶରୀର କୋଷରୁ ଅମ୍ବିକା ଆବିର୍ଭୂତ ହେବାରୁ ତାଙ୍କୁ କୌଶିକୀ କୁହାଗଲା ଓ କୌଶିକୀ ପ୍ରକଟ ହେବା ପରେ ପାର୍ବତୀଙ୍କ ଶରୀର କୃଷ୍ଣ ରଙ୍ଗ ହୋଇଗଲା । ତେଣୁ ସେ ହିମାଳୟରେ ବାସ କରୁଥିବା କାଳିକା ନାମରେ ଖ୍ୟାତ ହେଲେ, ଯାହାଙ୍କୁ ଦେବତାମାନେ ନିଜ ଦୁଃଖ ଜଣେଇ ସ୍ତୁତି କଲେ ।

ଚତୁର୍ଥ ରହସ୍ୟ

ଅମ୍ବିକାଙ୍କ ସୌନ୍ଦର୍ଯ୍ୟ ଦେଖି ଶୁମ୍ଭ ନିଶୁମ୍ଭଙ୍କ ଭୃତ୍ୟ ଚଣ୍ଡ, ମୁଣ୍ଡ, ଦୈତ୍ୟରାଜ ଶୁମ୍ଭଙ୍କୁ ସମ୍ବାଦ ଦେଲେ ଓ ସେହି ଦିବ୍ୟ ସ୍ତ୍ରୀଙ୍କୁ ପତ୍ନୀ ରୂପେ ଗ୍ରହଣ କରିବାକୁ ପ୍ରବର୍ତ୍ତାଇଲେ । ଶୁମ୍ଭ ଦ୍ୱାରା ପ୍ରେରିତ ସେନାପତି ଧୂମ୍ରଲୋଚନ ଦେବୀଙ୍କ ହାତରେ ବଧ ହେବାରୁ ଚଣ୍ଡ-ମୁଣ୍ଡ ବହୁତ ସୈନ୍ୟସାମନ୍ତ ଧରି ଦେବୀଙ୍କୁ ଚତୁର୍ଦ୍ଦିଗରେ ଘେରିଗଲେ, ଯାହାଦେଖି ଅମ୍ବିକା ଅତ୍ୟନ୍ତ କ୍ରୋଧାନ୍ୱିତ ହେଲେ । ଫଳରେ ତାଙ୍କ ମୁଖମଣ୍ଡଳ କୃଷ୍ଣବର୍ଣ୍ଣ ହୋଇଗଲା ଓ ଭୃକୁଟି-କୁଞ୍ଚିତ ହୋଇଗଲା, ଯାହାମଧ୍ୟରୁ ବିକରାଳମୁଖୀ କାଳୀ ପ୍ରକଟ ହେଲେ ।

ସେ କାଳୀ ଖଡ୍‌ଗ, ପାଶ ଓ ଖଟ୍ୱାଙ୍ଗ ଧାରଣ କରିଥିଲେ ଓ ବ୍ୟାଘ୍ର ଚର୍ମ ପରିଧାନ କରିଥିଲେ । ବେକରେ ନରମୁଣ୍ଡର ମାଳା ଧାରଣ କରିଥିଲେ । ଶରୀରରୁ ମାଂସ ଶୁଖି ଯାଇ କେବଳ ଅସ୍ଥିମୟ କଙ୍କାଳ ଥିଲା । ତାଙ୍କର ମୁଖ ବହୁତ ବିଶାଳ ଥିଲା ଓ ଜିହ୍ୱା ଲହଲହ ହେଉଥିବାରୁ ସେ ଅତ୍ୟନ୍ତ ଭୟଙ୍କର ଦେଖାଯାଉଥିଲେ । ଦୈତ୍ୟମାନଙ୍କ ଉପରକୁ ଲମ୍ଫ ପ୍ରଦାନ କରି କାଳିକା ସେମାନଙ୍କୁ ଚୋବାଇ ଭକ୍ଷଣ କଲେ ଓ ଚଣ୍ଡ-ମୁଣ୍ଡ ଉଭୟ ଅସୁରଙ୍କୁ ଖଡ୍‌ଗରେ ହତ୍ୟା କଲେ । ସେମାନଙ୍କ ଛିନ୍ନ ମସ୍ତକମାନଙ୍କୁ ଧରି ଅମ୍ବିକା ବା ଚଣ୍ଡିକାଙ୍କୁ ପ୍ରଦାନ କଲେ ।

ଚଣ୍ଡ-ମୁଣ୍ଡଙ୍କ ବଧ ପରେ ଅନ୍ୟ ଏକ ମହାଦୈତ୍ୟ, ରକ୍ତବୀଜ ଚଣ୍ଡିକାଙ୍କ ସହିତ ପ୍ରବଳ ଯୁଦ୍ଧ କଲା । ତା'ର ଶରୀର କ୍ଷତର ରକ୍ତ ବିନ୍ଦୁମାନ ମାଟିରେ ପଡ଼ିବା ମାତ୍ରକେ, ରକ୍ତବୀଜ ପରି ଶହ ଶହ ଦୁର୍ଦ୍ଧାନ୍ତ ଅସୁର ଉତ୍ପନ୍ନ ହେଉଥିଲେ ଏବଂ ଚଣ୍ଡିକା ଓ କାଳୀଙ୍କ ସହିତ ଘମାଘୋଟ ଯୁଦ୍ଧ କରୁଥିଲେ । ମହାଦେବୀ ଚଣ୍ଡିକେ, କାଳୀଙ୍କୁ ତାଙ୍କର ମୁଖ ଆହୁରି ବିସ୍ତୀର୍ଣ୍ଣ କରି ରକ୍ତବୀଜର ରକ୍ତପାନ କରିବାକୁ ଆଦେଶ ଦେଲେ । କାଳୀ ରକ୍ତବୀଜର ସମସ୍ତ ରକ୍ତ ପାନ କରି ତା' ରକ୍ତରୁ ଉଦ୍ଭୁତ ସମସ୍ତ ଅସୁରଙ୍କ ଶବ ଉପରେ ଅଟ୍ଟହାସ୍ୟ ପୂର୍ବକ ନୃତ୍ୟ କରିବାକୁ ଲାଗିଲେ । ସେଥିପାଇଁ ଶ୍ରୀକାଳୀ ଧ୍ୟାନରେ କୁହାଯାଇଛି -

ଶବାରଢ଼ା ମ୍ହାଭୀମାଂ ଘୋର ଦଂଷ୍ଟ୍ରାଂ ହସନ୍ମୁଖୀମ୍ ।
ଚତୁର୍ଭୁଜାଂ ଖଡ୍‌ଗ ମୁଣ୍ଡ ବରାଭୟକରାଂ ଶିବାମ୍ ॥
ମୁଣ୍ଡମାଳା ଧରାନ୍ ଦେବୀଂ ଲଳଜିହ୍ୱାଂ ଦିଗମ୍ବରାମ୍ ।
ଏବଂ ସଚିନ୍ତୟେତ୍ କାଳୀଂ ଶ୍ମଶାନାଳୟ ବାସିନୀମ୍ ।

ଶାକ୍ତପ୍ରମୋଦ (୧/୧-୨)

ଉପରୋକ୍ତ ଆବିର୍ଭାବ ରହସ୍ୟମାନଙ୍କରୁ ଜଣାଗଲା ଯେ, ଯାହା ବିଭିନ୍ନ ଶକ୍ତିରେ ଆବଶ୍ୟକତା ଅନୁଯାୟୀ ପରିବର୍ତ୍ତିତ ହୋଇପାରନ୍ତି ଓ ନିର୍ଦ୍ଦିଷ୍ଟ କାର୍ଯ୍ୟ ସମାପ୍ତି ପରେ ସବୁ ଶକ୍ତି ସେଇ ଏକ ଶକ୍ତିରେ ବିଲୀନ ହୋଇ ଯାଆନ୍ତି ।

ତେଣୁ ଯେତେବେଳେ ସମସ୍ତ ଶକ୍ତି ମହାଶୂନ୍ୟର ଅନନ୍ତ ଶକ୍ତିରେ ବିଲୀନ ହୋଇଯାଆନ୍ତି, ସେତେବେଳେ ସ୍ୱାଭାବିକ ଭାବରେ କୃଷ୍ଣବର୍ଣ୍ଣ





ଦେଖାଯାନ୍ତି, ଯାହାକୁ ପ୍ରମାଣ ମଧ କୃଷ୍ଣ ଗର୍ଭରେ ଦୃଶ୍ୟମାନ ଜଗତର ମୃତ ନକ୍ଷତ୍ରମାନେ ନିଶ୍ଚିହ୍ନ ହେବା ସହ ତୁଳନାତ୍ମକ ପ୍ରମାଣ କରେ । ସେ ଦୃଷ୍ଟିରୁ ପରମେଶ୍ୱର ବିଷ୍ଣୁ ଓ ତାଙ୍କ ଦୁଇ ମୁଖ୍ୟ ଅବତାର- ରାମ ଓ କୃଷ୍ଣ କଳା ବା କାବ୍ୟିକ ଶ୍ୟାମଳ ଓ ମହାକାଳୀ କୃଷ୍ଣବର୍ଣ୍ଣା । ତେବେ ଚଣ୍ଡ-ମୁଣ୍ଡ ଓ ରକ୍ତବୀଜ ବଧ ପରେ ଏହି କୃଷ୍ଣବର୍ଣ୍ଣା, କରାଳ ବଦନା ମହାକାଳୀଙ୍କ ଅଂଶାବିର୍ଭୂତା ଓ ପରେ ତାଙ୍କଠାରେ ବିଲୀନା ଦେବୀ ହିଁ ଜନମାନସରେ ଅତି ଭୟଙ୍କରା ଓ ଭୀତିପ୍ରଦା କାଳୀ । ମହାନିର୍ବାଣ ତନ୍ତ୍ରରେ କୁହାଯାଇଛି -

ଶ୍ୱେତ ପୀତାଦିକୋ ବର୍ଣ୍ଣୋ ଯଥା କୃଷ୍ଣେ ବିଲୀୟତେ ।
ପ୍ରବିଶନ୍ତି ତଥା କାଲ୍ୟାଂ ସର୍ବଭୂତାନି ଶୈଳଜେ ।
ମ.ନି.ତନ୍ତ୍ର (୧୩/୫)

ଅର୍ଥାତ୍, ଶ୍ୱେତ, ପୀତ, ଲାଲ ଆଦି ସମସ୍ତ ରଙ୍ଗ ଯେମିତି କୃଷ୍ଣ ରଙ୍ଗରେ ସମାହିତ ହୋଇଯାଏ, ସେମିତି ସମସ୍ତ ପ୍ରାଣୀ ଜଗତ (ବିଭିନ୍ନ ରଙ୍ଗର ହେଲେ ମଧ) ମା' କାଳୀଙ୍କ ମଧରେ ବିଲୀନ ହୋଇ ଯାଆନ୍ତି । ତେଣୁ ମା' କାଳୀ କୃଷ୍ଣବର୍ଣ୍ଣା ଓ ତାଙ୍କର ନିବାସ ଶ୍ମଶାନ, ଆସନ ଶବାସନ, ସେ ଲୋକଜିହ୍ୱା, ଛିନ୍ନମସ୍ତକ ଧାରିଣୀ, ମୁଣ୍ଡମାଳିନୀ ଆଦି ରୂପ କମାନ ସବୁ ଧର୍ମ ପରି ସାଙ୍କେତିକ । ପାପୀ ଦୁର୍ନୀତିଗ୍ରସ୍ତ, ବ୍ୟଭିଚାରୀ, ପରପିଡ଼କ, ଦୁର୍ବୃତ୍ତମାନଙ୍କୁ ମାରିବା ପାଇଁ କାଳୀଙ୍କର ରଙ୍ଗରୂପ ଓ ବେଶ ପ୍ରତିକାତ୍ମକ ଚେତାବନୀ ।

ଶ୍ୟାମାକାଳୀ

ଏହି କାଳୀ ସାଧାରଣତଃ ଶ୍ୟାମାକାଳୀ ଓ ଦକ୍ଷିଣକାଳୀ ଭାବେ ତାନ୍ତ୍ରିକ ପୂଜକମାନଙ୍କ ଦ୍ୱାରା ଉପାସିତା । ଶ୍ୟାମା ଓ କାଳୀ ଏକାର୍ଥବୋଧକ । ଶ୍ୟାମାର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା - (ଶୀଙ୍ ଶୟନେ) ଶେତେ ଅମାୟାମ୍ ଇତି ଶ୍ୟାମା, ଯେ କି ତମସାବୃତ ଅବସ୍ଥାରେ ରହନ୍ତି ବା ଅନ୍ଧକାର ମଧରେ ଶାୟିତା, ଯାହା ସୃଷ୍ଟିର ପ୍ରାକ୍ ଅବସ୍ଥାକୁ ବୁଝାଏ । ଅନ୍ୟ ଅର୍ଥରେ 'ଶ୍ୟତି' ଖଣ୍ଡୟତି ବା ନାଶୟତି ଅର୍ଥରେ ବ୍ୟବହୃତ ହୁଏ । ଯିଏ ଅମା ଅନ୍ଧକାର ବା ଅଜ୍ଞାନ ଅନ୍ଧକାରକୁ ଦୂର କରନ୍ତି ଏବଂ ଜ୍ଞାନାଲୋକର ପ୍ରକାଶନୀ ସେ ଶ୍ୟାମା । କାର୍ତ୍ତିକ ମାସ କୃଷ୍ଣପକ୍ଷ ଅମାବାସ୍ୟା ରାତ୍ରି ଅର୍ଦ୍ଧଭାଗରେ ଶ୍ୟାମାକାଳୀଙ୍କ ପୂଜାବିଧି ପ୍ରଚଳିତ । ଏହି କାଳଶକ୍ତି କାଳୀ ଶିବଙ୍କ ଉପରେ ଦଣ୍ଡାୟମାନ । ଯାହାର ଅର୍ଥ ଶିବ ସ୍ଥାଣୁ, ଅକର୍ତ୍ତା ଓ ଶିବଶକ୍ତି କାଳୀ ହିଁ ସର୍ବମୟୀ କର୍ତ୍ତୀ । ଭଗବାନ ଶିବ କେବଳ ଶକ୍ତିଙ୍କୁ ଧକ୍କାମାରି ଜାଗ୍ରତ କରନ୍ତି ଏବଂ ଶକ୍ତି ସୃଷ୍ଟି ସର୍ଜନା, ପାଳନ ଓ ସଂହାରରେ ଲାଗି ଯାଆନ୍ତି ।

ଦକ୍ଷିଣକାଳୀ

ସେହିପରି ଦକ୍ଷିଣ ଦିଗରେ ଶନି ମହାଗ୍ରହଙ୍କ ଅବସ୍ଥିତି । କାଳୀଙ୍କ ନାମ ଶ୍ରବଣ ମାତ୍ରକେ ସୂର୍ଯ୍ୟସୁତ ଶନି ଭୀତତ୍ରସ୍ତ ହୋଇ ସ୍ଥାନଛାଡ଼ି ପଳାୟନ କରନ୍ତି । ସେଥିପାଇଁ ଜ୍ୟୋତିଷ ଶାସ୍ତ୍ରରେ ଶନି ପିଡ଼ାରୁ ଉଦ୍ଧାର ପାଇଁ କାଳୀପୂଜାର ବ୍ୟବସ୍ଥା ଅଛି । ଦକ୍ଷିଣ ଦିଗରେ ଅଧିଷ୍ଠିତ ଶନିଙ୍କ ଭୟରୁ କାଳୀ ରକ୍ଷାକରି ବରାଭୟ ପ୍ରଦାନ କରୁଥିବାରୁ ଏହାଙ୍କ ନାମ ଦକ୍ଷିଣକାଳୀ ହୋଇଛି । ଶନି ପିଡ଼ାଗ୍ରସ୍ତ ମନୁଷ୍ୟମାନେ ଦକ୍ଷିଣକାଳୀ ଉପାସନା କରି ମା' କାଳୀଙ୍କ ଅଭୟ ଲାଭ କରିଥା'ନ୍ତି । ଦକ୍ଷିଣକାଳୀଙ୍କ ଧାନ ହେଲା -

କ୍ରୀଁ ବୀଜେ ଶଶିଶେଖରେ ଘନ-ରୁଚି ଶ୍ୟାମେ ତ୍ରିନେତ୍ରେ ଶିବେ,
ଖଡ୍ଗ-ଛିନ୍ନ ଶିରୋ, ବରାଭୟ କରେ ! ଭୋମୁଣ୍ଡମାଳ-ପ୍ରିୟେ ।
ପ୍ରତ୍ୟାଲିଢ଼-ପଦେ ଶବୋପରି ମହାକାଳେନ ସାର୍ଦ୍ଧଂରତେ,
ଆତ୍ମୟସ୍ୱ ଦିଗମ୍ବରୀ ସ୍ମିତମୁଖୀ ଶ୍ରୀ ଦକ୍ଷିଣ କାଳିକେ ॥
କାଳୀତନ୍ତ୍ର ଧାନମ୍

କୃଷ୍ଣକାଳୀ

ଆକର୍ଷୟତି ଇତି କୃଷ୍ଣ । ଯେପରି କୃଷ୍ଣବର୍ଣ୍ଣ ପୁରୁଷ ଦେବତା ହିସାବରେ ମନକୁ ଆକର୍ଷଣ କରୁଥିବାରୁ ତାଙ୍କୁ କୃଷ୍ଣ କୁହାଗଲା, ସେମିତି ଆକର୍ଷଣ କରୁଥିବା କୃଷ୍ଣବର୍ଣ୍ଣା ସ୍ତ୍ରୀଦେବୀଙ୍କୁ କୃଷ୍ଣା କହିବା ଯଥାର୍ଥ । ଏଣୁ କାଳୀଙ୍କ ଅନ୍ୟନାମ କୃଷ୍ଣା । ଶ୍ରୀଧର ସ୍ୱାମୀ କୃଷ୍ଣ ଶବ୍ଦର ବ୍ୟୁତ୍ପତ୍ତି ଏହିପରି କରିଛନ୍ତି - କୃଷି ଶବ୍ଦ 'ଭୂ' ବା ସଂସାରକୁ ବୁଝାଏ । 'ଣ' ନିଷ୍ପତ୍ତିବାଚକ ଅଟେ । 'କୃଷି' ଓ 'ଣ' ମିଶି କୃଷ୍ଣ ଶବ୍ଦ ଗଢ଼ା, ଯାହାର ଅର୍ଥ ପରଂବ୍ରହ୍ମ । ବ୍ରହ୍ମ ଉଭୟ ଲିଙ୍ଗି ହୋଇଥିବାରୁ କୃଷ୍ଣ ଓ କୃଷ୍ଣା ଏକ ଓ ଅଭିନ୍ନ । ରାମ ବିଳାସ ତନ୍ତ୍ରରେ ବର୍ଣ୍ଣିତ ଅଛି -

କାଳୀ ତୁ କୃଷ୍ଣ ରୂପାସ୍ୟାତ୍
ରାମ ରୂପା ତୁ ତାରିଣୀ ।
ଯା' କାଳୀ କୃଷ୍ଣଏବ ସଃ ॥

କୃଷ୍ଣ ଓ କାଳୀଙ୍କ ଅଭିନ୍ନତାର ଉଦାହରଣ ପୁରାଣରୁ ମିଳିଥାଏ । ଏକଦା କୃଷ୍ଣ ରାଧାଙ୍କ ନିକଟରେ ଏକାନ୍ତରେ ଥିଲାବେଳେ, ତାଙ୍କ ନଣନ୍ଦ କୁଟିଳା, ଜଟିଳା, ରାଧାଙ୍କ ସ୍ୱାମୀଙ୍କୁ ସେମାନଙ୍କ ଗୋପନ ପ୍ରେମର ସନ୍ଦେଶ ଦିଅନ୍ତି । ସତ୍ୟତା ପରୀକ୍ଷା ପାଇଁ ଚନ୍ଦ୍ରସେଣା ଆସିବାରୁ କୃଷ୍ଣ ମା' କାଳୀରୂପ ଧାରଣ କଲେ, ଯାହାଙ୍କ ଭୟଙ୍କର ରୂପଦେଖି ଚନ୍ଦ୍ରସେଣା ପଳାୟନ କଲେ । ଏ ଉକ୍ତିରୁ କୃଷ୍ଣ ଓ କାଳୀ ଯେ ଏକ ଓ ଅଭିନ୍ନ ତା'ର ପ୍ରମାଣ ମିଳେ ।

ମହାକାଳୀ ଓ ଶ୍ରୀଜଗନ୍ନାଥ

ପରିଶେଷରେ ଆମର ଆରାଧ ଦେବତା ଶ୍ରୀଜଗନ୍ନାଥ ପରଂବ୍ରହ୍ମଙ୍କ ପ୍ରତୀକ । ତାଙ୍କୁ ଯିଏ ଯେଉଁ ଭାବରେ ଗ୍ରହଣ କରିଛି, ତାକୁ ସିଏ ସେହି ଭାବରେ ଉପଲବ୍ଧ ହୋଇଛନ୍ତି । ବୈଷ୍ଣବ, ଶୈବ, ଶାକ୍ତ, ସୌର, ଗାଣପତ୍ୟ ମତାବଲମ୍ବୀମାନେ ଏବଂ ବୌଦ୍ଧ ଓ ଜୈନ ଧର୍ମାବଲମ୍ବୀମାନେ ତାଙ୍କୁ ନିଜ ନିଜର ଦେବତା ବୋଲି ପ୍ରତିପାଦନ କରିଛନ୍ତି । ନାନାମୁନି, ନାନମତର ବହୁରଙ୍ଗୀ ପୁଷ୍ପରେ ସେ ସୁଶୋଭିତ ।





ସର୍ବରୂପମୟୋ ଦ୍ୱେଷ ସର୍ବମନ୍ତ୍ରମୟଃ ପ୍ରଭୁଃ ।
ଆରାଧତେ ଯଥାଯେନ ତଥାତସ୍ୟ ଫଳପ୍ରଦଃ ॥
ସ୍କନ୍ଦ ପୁରାଣ (୧୯-୪୮)

ଅର୍ଥାତ୍, ପ୍ରଭୁ ଜଗନ୍ନାଥ ସବୁରୂପ ଓ ସମସ୍ତ ମନ୍ତ୍ରର ସମାହାର । ଯିଏ ଯେଉଁ ପ୍ରକାର ଆରାଧନା କରେ, ତାଙ୍କୁ ସେହି ପ୍ରକାରେ ସେ ଫଳ ପ୍ରଦାନ କରନ୍ତି ।

ତେବେ ଶ୍ରୀମନ୍ଦିର ରତ୍ନସିଂହାସନରେ ଶ୍ରୀଯନ୍ତ୍ର କଟାଯାଇ, ତା' ଉପରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆସ୍ଥାନ । ତାଙ୍କ ପୂଜା ମନ୍ତ୍ରରେ ହ୍ରୀଁ, କ୍ଲୀଁ ଆଦି ତାନ୍ତ୍ରିକ ବୀଜ ମନ୍ତ୍ରର ପ୍ରୟୋଗ ଏବଂ ପ୍ରତିକାତ୍ମକ ପଞ୍ଚ 'ମ'କାର ପୂଜାବିଧି ଜଗନ୍ନାଥଙ୍କୁ ଶାକ୍ତ ଦେବତା ବୋଲି ପ୍ରମାଣିତ କରେ । ଯେହେତୁ ବ୍ରହ୍ମ ଓ ଆଦ୍ୟାଶକ୍ତି ଏକ ଓ ଅଭିନ୍ନ ଓ ଉଭୟ ଲିଙ୍ଗୀ (ଶ୍ରୀଜଗନ୍ନାଥ ଓଁକାର ରୂପୀ ପ୍ରଣବ ପ୍ରତିପାଦିତ ବ୍ରହ୍ମ ଓ ହ୍ରୀଁକାର ରୂପିଣୀ ଆଦ୍ୟାଶକ୍ତି ମଧ୍ୟ) ଏବଂ ସୃଷ୍ଟିର ଆରମ୍ଭରୁ ତ୍ରିଗୁଣମୟୀ ଆଦ୍ୟାଶକ୍ତି ନିଜକୁ ସତ୍ତ୍ୱ, ରଜ ଓ ତମଗୁଣ କ୍ରମରେ ମହାସରସ୍ୱତୀ, ମହାଲକ୍ଷ୍ମୀ ଓ ମହାକାଳୀରେ ବିଭକ୍ତ କରିଛନ୍ତି । ଶକ୍ତି ପୂଜକମାନେ ସେହି ଆଦ୍ୟାଶକ୍ତିଙ୍କ ବିଭୂତି ମହାସରସ୍ୱତୀ ବା ତାରା, ମହାଲକ୍ଷ୍ମୀ ବା ଭୁବନେଶ୍ୱରୀ ଓ ମହାକାଳୀ ବା ଦକ୍ଷିଣକାଳୀ ରୂପେ ଯଥାକ୍ରମେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ଗ୍ରହଣ କରିଛନ୍ତି । ଜଗନ୍ନାଥଙ୍କ କଳାଶ୍ରୀମୁଖର ତ୍ରିକୋଣୀ ନାକରେ ବସୁଣୀ ପିନ୍ଧାଇ ଦକ୍ଷିଣକାଳୀ ରୂପେ କଳିଯୁଗରେ ଶୀଘ୍ର ଫଳପ୍ରଦାର ମାନ୍ୟତା ଦେଇଛନ୍ତି ।

ତାରା ଯନ୍ତ୍ରେ ମହାଶେଷ, ସୁଭଦ୍ରା ଭୁବନେଶ୍ୱରୀମ୍ ।
ଶ୍ୟାମାଚକ୍ରେ ଜଗନ୍ନାଥଃ ଦକ୍ଷିଣକାଳିକା ସ୍ୱୟମ୍ ।
ନୀଳତନ୍ତ୍ର

ପାଦଟୀକା ।

୧. ଶ୍ରୀଦୁର୍ଗା ସପ୍ତଶତୀ
୨. ଶାକ୍ତ ପ୍ରମୋଦ
୩. ମହାନିର୍ବାଣ ତନ୍ତ୍ର
୪. କାଳୀ ତନ୍ତ୍ର
୫. ସ୍କନ୍ଦ ପୁରାଣ
୬. ତୈତେରୀୟ ଉପନିଷଦ
୭. କେନୋପନିଷଦ
୮. ଅଥର୍ବ ବେଦ
୯. ଦୁର୍ଗୋତ୍ସବ ଚନ୍ଦ୍ରିକା
୧୦. ନୀଳତନ୍ତ୍ର

ବୁଢ଼ିମା' ଲେନ୍
ଦଉତୋଟା, ପୁରୀ-୧

# ତୁମକୁ ପୂଜା କଲାବେଳେ . . .

ଡଃ ବୀଣାପାଣି ସିଂହ

ଜଗନ୍ନାଥ,
ତୁମକୁ ପୂଜା କଲାବେଳେ
ଲୋଡ଼ା ହୁଏ
ତୁଳସୀପତ୍ର, ଫୁଲ, ଫଳ
ଆଉ ପାଣି
ମୁଁ ତ ମରୁଭୂମିରେ
ଘର କରିଛି ପ୍ରଭୁ
ସେଠି ଏ ଦୁର୍ଲଭ
ତୁଳସୀ ପତ୍ର ବା
କାହୁଁ ପାଇବି ?
ଫୁଲଟିଏ ପାଇଁ
ଏ ଟାଙ୍ଗରା ଭୂଇଁରେ
ଦଉଡ଼ା ଧାପଡ଼ା କରି କରି
ହାଲିଆ ହୋଇଗଲା ବେଳେ
ମୁଁ ସଂଧାନ ପାଇଲି
ଫୁଲଟିର



ଫୁଲଟି ମୋ' ହୃଦୟ ଭିତରେ
ଫୁଟିଥିଲା
ତମରି ପାଇଁ....
କେବଳ ତମରି ପାଇଁ...
ମୁଁ ବିଭୋର ହୋଇଗଲି
ତା' ସୁଗଂଧରେ... ।
ଶେଷରେ
ଅନୁଭବ କଲି
ଦି' ବୁନ୍ଦା ଲୁହକୁ -
ଯିଏ କି ମୋ' ଆଖିରୁ
ଗଡ଼ି ଆସିଥିଲା ଅଜାଣତରେ
ତମ କଥା
ଭାବୁ ଭାବୁ... ।

ବିଭାଗୀୟ ମୁଖ୍ୟ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଚୌଦ୍ୱାର କଲେଜ, ଚୌଦ୍ୱାର




# ଶ୍ରୀଜଗନ୍ନାଥ ଚେତନାରେ ଶଙ୍କାପଞ୍ଚକମ୍

ସୂର୍ଯ୍ୟନାରାୟଣ ରଥଶର୍ମା



**ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ସମ୍ମୁଖରେ ଥିବା ସ୍ତମ୍ଭଟି କ'ଣ ଓ କାହିଁକି ଅଛି ?**

ଶ୍ରୀଶ୍ରୀଜଗନ୍ନାଥ ମନ୍ଦିର ସମ୍ମୁଖରେ ଥିବା ସ୍ତମ୍ଭଟିର ନାମ 'ଅରୁଣସ୍ତମ୍ଭ'। ଏହାର ଉଚ୍ଚତା ୩୪ ଫୁଟ। ଏକକ ମୁଗୁନି ପଥରରେ ନିର୍ମିତ ଓ ଏହା ୧୬ କୋଣ ବିଶିଷ୍ଟ। ସ୍ତମ୍ଭ ଉପରେ ସୂର୍ଯ୍ୟଙ୍କର ବାହନ ଅରୁଣ ବିରାଜମାନ କରିଛନ୍ତି। ଏହା କାହିଁକି ଓ କିପରି ଜଗନ୍ନାଥ ମନ୍ଦିର ସମ୍ମୁଖରେ ରହିଲା ?

ସ୍ତମ୍ଭ ଚାରି ପ୍ରକାର। ଯଥା - ତେଜ ସ୍ତମ୍ଭ, ପ୍ରପନ୍ନ ସ୍ତମ୍ଭ, ଧର୍ମ ସ୍ତମ୍ଭ, ଶକ୍ତି ସ୍ତମ୍ଭ। ସୂର୍ଯ୍ୟଙ୍କ ଆଗରେ ରହୁଥିବା ସ୍ତମ୍ଭକୁ ତେଜ ସ୍ତମ୍ଭ ବା ଅରୁଣ ସ୍ତମ୍ଭ କୁହାଯାଏ। ଠିକ୍ ସେହିପରି ପ୍ରପନ୍ନ ସ୍ତମ୍ଭ ବା ଗରୁଡ଼ ସ୍ତମ୍ଭ ବିଷ୍ଣୁଙ୍କ ସମ୍ମୁଖରେ, ଧର୍ମ ସ୍ତମ୍ଭ ବା ବୃଷଭ ସ୍ତମ୍ଭ ଶିବଙ୍କ ସମ୍ମୁଖରେ, ଶକ୍ତି ସ୍ତମ୍ଭ ବା ସିଂହ ସ୍ତମ୍ଭ ଦେବୀ ମନ୍ଦିର ସମ୍ମୁଖରେ ରହିଥାଏ। ଏଠାରେ ସ୍ୱାଭାବିକ ଭାବରେ ଶଙ୍କା ଆସିଥାଏ ଯେ, ତେଜ ସ୍ତମ୍ଭ ବା ଅରୁଣ ସ୍ତମ୍ଭ ସୂର୍ଯ୍ୟଙ୍କ ସମ୍ମୁଖରେ ରହିବାର ବିଧି। ପରନ୍ତୁ ଏହା ଶ୍ରୀ ଜଗନ୍ନାଥ ମନ୍ଦିର ସମ୍ମୁଖ ଭାଗରେ କିପରି ରହିଲା। ଏହି ବିରାଟକାୟ ଅରୁଣ ସ୍ତମ୍ଭ ପୂର୍ବରୁ କୋଣାର୍କ ସୂର୍ଯ୍ୟ ମନ୍ଦିର ସମ୍ମୁଖରେ ରହିଥିଲା। ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ କୋଣାର୍କ ସୂର୍ଯ୍ୟମନ୍ଦିର ପତନ ପରେ ମହାରାଷ୍ଟ୍ରର ଶାସକମାନେ ଉପାସିତ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଚଳନ୍ତି ପ୍ରତିମାକୁ ଆଣି ଶ୍ରୀମନ୍ଦିରର ଭିତର ବେଢ଼ାରେ ସ୍ଥାପନ କଲେ। ଠିକ୍ ଏହି ସମୟରେ ମଧ ଉକ୍ତ ଅରୁଣ ସ୍ତମ୍ଭଟିକୁ ଅଣାଯାଇ ଶ୍ରୀମନ୍ଦିର ସମ୍ମୁଖ ଭାଗରେ ସ୍ଥାପନ କରାଗଲା।

କୋଣାର୍କର ପତନ ପରେ ଚଳନ୍ତି ପ୍ରତିମା ଓ ଉକ୍ତ ସ୍ତମ୍ଭ କେଉଁଠାରେ ରଖାଯିବ ଏହି ବିଷୟରେ ତତ୍କାଳୀନ ରାଜଦରବାରରେ ଗୋଟିଏ ଶାସ୍ତ୍ରାର୍ଥ ହୋଇଥିଲା - ଜଗନ୍ନାଥ ମନ୍ଦିର ସମ୍ମୁଖରେ କିପରି ଓ କେଉଁ ନ୍ୟାୟରେ ଏହି ସ୍ତମ୍ଭଟି ରଖାଯିବ ? ଉକ୍ତ ସଭାର ସିଦ୍ଧାନ୍ତ ଅନୁଯାୟୀ, ସୂର୍ଯ୍ୟ ହିଁ ସାକ୍ଷାତ ବ୍ରହ୍ମ ଅଟନ୍ତି। ବିଭିନ୍ନ ଗ୍ରନ୍ଥରେ ସୂର୍ଯ୍ୟଙ୍କୁ ତ୍ରିକାଳ ବା ତ୍ରିମୂର୍ତ୍ତି ବୋଲି ବର୍ଣ୍ଣନା କରାଯାଇଛି। କାଳ ଅର୍ଥ ସମୟ। ମାଣିକ୍ୟ ଉପନିଷଦରେ ସୂର୍ଯ୍ୟ ବା ବ୍ରହ୍ମ ତ୍ରିମୂର୍ତ୍ତି ବିଶିଷ୍ଟ 'ତୈର୍ଯ୍ୟମ୍ଭକ ସ୍ୱରୂପ' ବୋଲି ବର୍ଣ୍ଣନା କରାଯାଇଅଛି। ଏହି ତ୍ରିମୂର୍ତ୍ତି ହିଁ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଅଟନ୍ତି। ଏହି ତ୍ରିଗୁଣାତ୍ମିକା ବା ତ୍ରିକାଳ ଉପାସନା ସମଗ୍ର ଭାରତବର୍ଷରେ ଶ୍ରୀମନ୍ଦିର ମଧ୍ୟରେ ଶ୍ରୀଜୀଉଙ୍କଠାରେ ଅନୁଷ୍ଠିତ ହୁଏ। ଏତଦ୍ ବ୍ୟତୀତ ଶ୍ରୀ ଜଗନ୍ନାଥଙ୍କୁ ସାକ୍ଷାତ୍ ସୂର୍ଯ୍ୟଙ୍କର ପ୍ରତୀକ ବୋଲି ପୂଜା କରିବାରେ ବର୍ଣ୍ଣନା କରାଯାଇଅଛି।

'ଉଦୟେ ଅରୁଣ ଶ୍ୱୈବ ମଧାହ୍ନେ ଶୁକ୍ଳ ମେବଚ
ସାହାହ୍ନେ କୃଷ୍ଣ ବର୍ଣ୍ଣଶ୍ଚ ତ୍ରିସୂର୍ଯ୍ୟ ପୁରୁଷୋତ୍ତମ
ଅଗ୍ରେ ପୂଜୟତେ ସୂର୍ଯ୍ୟ ଚାନ୍ତେ ଲକ୍ଷ୍ମୀଶ ବିଗ୍ରହଂ।'

ତେଣୁ ପ୍ରତ୍ୟେକ ଦିନ ଶ୍ରୀମନ୍ଦିରରେ ସୂର୍ଯ୍ୟପୂଜା ହିଁ ପ୍ରଥମେ ଅନୁଷ୍ଠିତ ହୋଇଥାଏ। ଏତଦ୍‌ବ୍ୟତୀତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ତ୍ରିକାଳ ପୂଜା ଦୈନନ୍ଦିନ ହୋଇଥାଏ। ଏହି ତ୍ରିକାଳ ପୂଜା ହେଲା - (୧) ସକାଳ ଧୂପ, (୨) ମଧ୍ୟାହ୍ନ ଧୂପ, (୩) ସଂଧ୍ୟା ଧୂପ।

ସୂର୍ଯ୍ୟ ପରାଗ ଚନ୍ଦ୍ର ଗ୍ରହଣ ସମୟରେ ସମଗ୍ର ଭାରତବର୍ଷରେ ଦେବ ପୂଜା ନିଷେଧ ଥିବା ସମୟରେ ଗ୍ରହଣ ପୂଜା ଶ୍ରୀଜୀଉମାନଙ୍କର ଅନୁଷ୍ଠିତ ହୁଏ। ଉତ୍ତରାୟଣ, ଦକ୍ଷିଣାୟନ, ନକ୍ଷେତ୍ର ବନ୍ଦାପନା, ଏହି ସବୁ ଉପାସନା ଦୃଷ୍ଟିରୁ ଜଗନ୍ନାଥ ହିଁ ସାକ୍ଷାତ୍ ସୂର୍ଯ୍ୟ / ତ୍ରିଗାଣାତ୍ମିକା ଓ ସେ ସାକ୍ଷାତ କାଳ ଅଟନ୍ତି। ଏହି ସବୁ ଦୃଷ୍ଟିରୁ ଶ୍ରୀଜଗନ୍ନାଥ ସମ୍ମୁଖରେ ଅରୁଣ ସ୍ତମ୍ଭ ବା ତେଜ ସ୍ତମ୍ଭ ରଖାଯାଇଅଛି।

**ଶ୍ରୀମନ୍ଦିର ଚୂଡ଼ା ଦେଶରେ ରହିଥିବା ଚକ୍ରକୁ ନୀଳଚକ୍ର କାହିଁକି କୁହାଯାଏ ଓ ଏହା କାହିଁକି ଅଛି ?**

ଉତ୍କଳୀୟ ସଭ୍ୟତାର ମେରୁସ୍ତମ୍ଭ ରୂପେ ଶ୍ରୀବସଖଣ୍ଡଶାଳ ଦଣ୍ଡାୟମାନ। ପଞ୍ଚରଥ ଚୂଡ଼ାଦେଶରେ ଶ୍ରୀନୀଳଚକ୍ର ପ୍ରତିଷ୍ଠିତ ହୋଇ ଯୁଗ ଯୁଗ ଧରି ଏହି ଭୁବନ ବିଦିତ ପାବନପୀଠ ନୀଳାଚଳର ମହତ୍ୱ

ପ୍ରଚାର କରୁଅଛି । ଏହି ନୀଳଚକ୍ର ଅଷ୍ଟଧାତୁ ନିର୍ମିତ ହେଲା । (୧) ସୁନା, (୨) ରୁପା, (୩) କଂସା, (୪) ପିତଳ, (୫) ସୀସା, (୬) ଲୁହା, (୭) ଦସ୍ତା, (୮) ପାରଦ । ଏହାର ପରିଧି ୩୬ ଫୁଟ, ଉଚ୍ଚତା ୧୫ ଫୁଟ । ଅର ୮ ଗୋଟି । ଏହି ୮ ଗୋଟି ଅରର ନାମ - (୧) ଧର୍ମ, (୨) ଅଧର୍ମ, (୩) ଜ୍ଞାନ, (୪) ଅଜ୍ଞାନ, (୫) ଅନିରୁଦ୍ଧ, (୬) ଐଶ୍ୱର୍ଯ୍ୟ, (୭) ଅନୈଶ୍ୱର୍ଯ୍ୟ ଓ (୮) ବୈରାଗ୍ୟ । ଏହା ସର୍ବସିଦ୍ଧ ପ୍ରଦାୟକ ଅଟେ ।

ଶ୍ରୀ ନଳଚକ୍ରକୁ ସାଧାରଣତଃ ଭଗବାନ ବିଷ୍ଣୁଙ୍କର ମୁଖ୍ୟ ଆୟୁଧ ରୂପରେ ଗ୍ରହଣ କରାଯାଇଥାଏ । ପରନ୍ତୁ, ଶ୍ରୀମନ୍ଦିରରେ ସ୍ଥାପିତ ନୀଳଚକ୍ର ଆୟୁଧ ଚକ୍ର ନୁହେଁ । ଚକ୍ରଶବ୍ଦ ମୁଖ୍ୟତଃ ତିନିଗୋଟି ବିଷୟକୁ ବୁଝାଉଅଛି । (୧) ଚକ୍ରରାଜ ସୁଦର୍ଶନ (୨) ଚକ୍ରାୟୁଦ୍ଧ (୩) ଯନ୍ତ୍ରାକୃତି ସାଙ୍କେତିକ ଚକ୍ର । ପରନ୍ତୁ, ଏହି ସମୂହ ଚକ୍ରଠାରୁ ଶ୍ରୀମନ୍ଦିର ଚୂଡ଼ା ଦେଶରେ ସ୍ଥାପିତ ହୋଇଥିବା ଚକ୍ର ସହିତ ନୀଳ ଶବ୍ଦ ଯୋଗ କରାଯାଇ ଏକ ସ୍ୱତନ୍ତ୍ରତା ସୃଷ୍ଟି କରିଛି । ନୀଳଚକ୍ର କୁହାଯାଉଥିବା ମହାଚକ୍ର ଜଗନ୍ନାଥଙ୍କର ଅତୀବ ପ୍ରିୟ । ତାହାଙ୍କର ଦର୍ଶନ ଓ ଚକ୍ରମଣୋହି ପ୍ରସାଦ - ମହାପ୍ରସାଦର ମାନ୍ୟତା ପ୍ରାପ୍ତ ହୋଇଥାଏ । ବିଶେଷତଃ ତାହାର ନାମରେ 'ନୀଳ' ଲାଗିଥିବା କାରଣରୁ ଏହା ଆଦିମ ଉତ୍କଳୀୟ ସଂସ୍କୃତିର ଶ୍ରେଷ୍ଠ ପ୍ରତୀକ । ଏହି ନୀଳାମ୍ବୁ ବଳୟ ପରିବେଷ୍ଟିତ ନୀଳକନ୍ଦର ବିଶିଷ୍ଟ ଭୂମି, ନୀଳମଣି ବିଗ୍ରହ ବା ନୀଳମାଧବଙ୍କର ପବିତ୍ର ଆଦ୍ୟସ୍ଥଳ ଅଟେ । ଯୁଗେ ଯୁଗେ ମାନବ ସମାଜ ବୈଷ୍ଣବତ୍ୱ ଲାଭ ନିମନ୍ତେ ନୀଳ ନାମକ ବ୍ରତ ଆଚରଣ କରି ବୈଷ୍ଣବ ପଦ ପ୍ରାପ୍ତ ହେଉଥିଲେ । ମତ୍ସ୍ୟ ପୁରାଣରେ ଏହି ବିଷୟରେ ଉଲ୍ଲେଖ କରାଯାଇଅଛି -

"ବୈଷ୍ଣବ ସପଦଂ ଯାତି ନୀଳଚକ୍ର ମିଦଂ ସ୍ମୃତମ୍ ।"

ତାନ୍ତ୍ରିକମାନେ ବିମଳାଙ୍କୁ ନୀଳ ସରସ୍ୱତୀ ରୂପରେ ସିଦ୍ଧ କରାଇଛନ୍ତି ।

ବୌଦ୍ଧ ମତରେ 'ନୀଳମତପୁରାଣେ' ନାମକ ପ୍ରସିଦ୍ଧ ସୌଗତ ଗ୍ରନ୍ଥରେ ପୁରୀର ଜଗନ୍ନାଥଙ୍କୁ 'ବୁଦ୍ଧୋନାମା ଜଗଦ୍‌ଗୁରୁ' ରୂପରେ କଳ୍ପନା କରାଯାଇଅଛି । ମତାନ୍ତରରେ ଚକ୍ରସମ୍ବର ନାମକ ବୁଦ୍ଧବୋଲି ତ୍ରିକାଣ୍ଡ କୋଷରେ ଦେଖିବାକୁ ମିଳେ । ଏହି ସ୍ଥାନରେ ନୀଳମତକୁ ଶ୍ରେଷ୍ଠତ୍ୱ ଦେଇଥିଲେ । ମୋଟ ଉପରେ ନୀଳନାମକ ଏକ ଆଧ୍ୟାତ୍ମିକ ଗୋଷ୍ଠୀର ସମନ୍ୱୟ ଭାବରେ ପୁରୁଷୋତ୍ତମ କ୍ଷେତ୍ର ପ୍ରସିଦ୍ଧ ଥିଲା ଓ ଅଛି । ଯଥା - ମହୋଦଧି, ନୀଳାମ୍ବୁ, ଶିଖର - ନୀଳାଚଳ, ଶକ୍ତି - ନୀଳଶକ୍ତି, ସୂକ୍ତ - ନୀଳସୁକ୍ତ, ଅଭିମତ - ନୀଳମତ, ସଙ୍କେତ - ନୀଳଚକ୍ର, ଆରାଧ ଦେବତା ନୀଳମାଧବ ନାମରେ ସୁବିଦିତ । ଦେବଗନ୍ଧର୍ବ ସେବିତ ସେହି ନୀଳମାଧବ ଜଗନ୍ନାଥଙ୍କୁ କେନ୍ଦ୍ରକରି ଉତ୍କଳୀୟ ମୈତ୍ରୀ ଭାବଧାରାର ସମନ୍ୱୟ ଭାବରେ ନୀଳାଚଳର ସଙ୍କେତ ହେଲା ନୀଳଚକ୍ର । ଯାହାକି ଜଗନ୍ନାଥଙ୍କର ପ୍ରତ୍ୟେକ ଯାତ୍ରା, ଉତ୍ସବରେ 'ଲେଙ୍କା' ସେବାୟତ ନୀଳଚକ୍ରକୁ ଆଗରେ ନେଇ ବିଜେ ଯାତ୍ରା ଆରମ୍ଭ କରନ୍ତି । ତେଣୁ ଜଗନ୍ନାଥଙ୍କର ମନ୍ଦିର ଉପରେ ଥିବା ଚକ୍ରକୁ ନୀଳଚକ୍ର କୁହାଯାଏ ।

ଏହା କାହିଁକି ଅଛି ?

ସୁଦର୍ଶନ ବା ଚକ୍ରକଳ୍ପ ନାମକ ପୂଜନ ପଦ୍ଧତିରେ କୁହାଯାଇଅଛି ଯେ, ବିଷ୍ଣୁପ୍ରସାଦର ମଣ୍ଡନ ବା ଚୂଡ଼ା ଉପରେ ପ୍ରସ୍ତର ବା ଧାତୁମୟ ଚକ୍ର ସ୍ଥାପନ କରିବ । ତାହାର ନାଭି, ଅଷ୍ଟବୃତ୍ତର ପ୍ରତୀକ ଆଠଗୋଟି ଗ୍ରନ୍ଥିଯୁକ୍ତ ଅର ତଥା ଅର ସଂଲଗ୍ନ ପୃଥିବୀର ବ୍ୟାପ୍ତ ଭାବରେ ମଣ୍ଡଳାକୃତି ପରିଧି କରି ପ୍ରତ୍ୟେକ ଅର ସଂଲଗ୍ନ ଜ୍ୟୋତିସ୍ୱରୂପ ଶିଖାମାନ ରଖିବ । ଚକ୍ରର ଊର୍ଦ୍ଧ୍ୱଦେଶରେ କମଳପତ୍ର ପରି କର୍ଣ୍ଣିକା, ସତ୍ୟର ସଙ୍କେତ ରୂପରେ କଳ୍ପନା କରି ଜ୍ଞାନମୟ ଚକ୍ରକୁ ଭଗବାନ ପୁରୁଷୋତ୍ତମ ବିଷ୍ଣୁଙ୍କ ଚକ୍ର ବୋଲି ଗ୍ରହଣ କରାଯିବ । ପ୍ରାଚୀନ ନୀଳଚକ୍ର ଜ୍ଞାନଶକ୍ତି ବିଜୟର ପ୍ରତୀକ, ତ୍ରିତାପ ବିନାଶକ, ଦିବ୍ୟ ଚକ୍ର ସମସ୍ତ ସିଦ୍ଧିକୁ ପ୍ରଦାନ କରିଥାନ୍ତି । ଭଗବାନ ତେଜମୟ ନୃସିଂହ ଭଦ୍ରଙ୍କୁ ନାଭିରେ ସ୍ଥାପନ କରି ଧର୍ମ, ଅଧର୍ମ, ଜ୍ଞାନ, ଅଜ୍ଞାନ ଅନିରୁଦ୍ଧ, ଐଶ୍ୱର୍ଯ୍ୟ, ଅନୈଶ୍ୱର୍ଯ୍ୟ, ବୈରାଗ୍ୟକୁ ନିୟନ୍ତ୍ରିତ କରିବାର ସଙ୍କେତ ହିଁ ସର୍ବସିଦ୍ଧିପ୍ରଦ ନୀଳଚକ୍ର ଅଟେ । ଏହାହି ସର୍ବୋତ୍ତମଚକ୍ର ଅଟେ । ହିମାଦ୍ରୀବ୍ରତ ଖଣ୍ଡରେ ଏହି ଅଷ୍ଟାରଚକ୍ର ଶ୍ରେଷ୍ଠବୋଲି ମାନ୍ୟତା ପାଇଅଛନ୍ତି -

" ଅଷ୍ଟାର ମୁତ୍ତମଂଚକ୍ରଂ ଷଡ଼ର ମଧ୍ୟମଂ ଭବେତ୍
ଜଘନ୍ୟଂ ଚତୁରାର ସ୍ୟା ଦିତି ଚକ୍ର ଭବେତ୍ କ୍ରିୟା । "

କେବଳ ସେତିକି ନୁହେଁ ମହାନ ସମନ୍ୱୟ ଭାବ ହେତୁ ଏହି ନୀଳଚକ୍ର ପୁରୁଷୋତ୍ତମ ପୀଠର ମୁଦ୍ରା ବା ରାଜକୀୟ ମୋହର ରୂପରେ ବ୍ୟବହୃତ ହୋଇଥାଏ । ଯାହାକି ବର୍ତ୍ତମାନ ପର୍ଯ୍ୟନ୍ତ ମଧ ଶ୍ରୀମନ୍ଦିରର ମୋହର ରୂପରେ ନୀଳଚକ୍ରକୁ ବ୍ୟବହାର କରାଯାଉଅଛି ।

ଶ୍ରୀମନ୍ଦିର ଗୁମୁଟରେ ପତିତପାବନ ମୂର୍ତ୍ତି ରହିବାର କାରଣ କଣ ?

ପତିତ ଶବ୍ଦ ଭାରତୀୟ ସଂସ୍କୃତିର ହୀନାର୍ଥ ବୋଧକ ଶବ୍ଦ । ଭାରତବର୍ଷରେ ପତିତପାବନ ନାମକ ପ୍ରଭୁ କେବଳ ପୁରୁଷୋତ୍ତମ କ୍ଷେତ୍ରରେ ବିରାଜମାନ ହୋଇ ଉପାସିତ ହୋଇଥାନ୍ତି । ପତିତ କିଏ ? ଅହଂକାରଯୁକ୍ତ, ପଶୁତୁଲ୍ୟ ମାନବ ହିଁ ପତିତ । କିନ୍ତୁ ପ୍ରତ୍ୟେକ ଭକ୍ତ ପତିତାନାଂ ପତିତୋହଂ ମନେକରି ମନ୍ଦିର ମଧ୍ୟକୁ ଯିବା ନିୟମ ଅଟେ । ଭକ୍ତ ନିଜକୁ ପତିତ ବୋଲି ମନେ କରି ପତିତପାବନଙ୍କ ଠାରେ ଅହଂତ୍ୱକୁ ବିସର୍ଜନ କରି ମନ୍ଦିର ମଧ୍ୟକୁ ପ୍ରବେଶ କରିବା ହିଁ କର୍ତ୍ତବ୍ୟ । ସାମାନ୍ୟ ଅହଂକାର ଜୀବନକୁ ବିଛିନ୍ନ କରିପକାଏ । ମଣ୍ଡୁକ ଉପନିଷଦ ଅହଂତ୍ୱକୁ ହୃଦୟ ଗ୍ରନ୍ଥିରୂପରେ ଛେଦ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି -ହୃଦୟ ଗ୍ରନ୍ଥିସିଦ୍ୟନ୍ତେ । ଏହାର ନାମ ପଶୁପାଶ । ପଶୁତ୍ୱ ହିଁ ପତିତତ୍ୱ । ତେଣୁ ତାହାର ତ୍ୟାଗ ହିଁ ପତିତତ୍ୱ ତ୍ୟାଗ । ଶଙ୍କର ତାହାକୁ ବହୁବଚନରେ ତ୍ୟଜ୍ୟ ବୋଲି କହିଛନ୍ତି ।

ତୃତୀୟ ଚିନ୍ତାଧାରା

ଐତିହାସିକ ଚିନ୍ତାଧାରାର ଅନୁଚିନ୍ତା ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଗଜପତି ରାମଚନ୍ଦ୍ର ଦେବ ପ୍ରଥମ ମୋଗଲ





ପ୍ରଭାବରେ ଇସଲାମ ଧର୍ମ ଗ୍ରହଣ କରି ମନ୍ଦିର ମଧ୍ୟକୁ ଯିବାର କ୍ଷମତାରୁ ବଞ୍ଚିତ ହେବାରୁ ତାଙ୍କ ନିମନ୍ତେ ପତିତପାବନ ବିଗ୍ରହ ଶ୍ରୀମନ୍ଦିର ଗୁମୁଟ ମଧ୍ୟରେ ପ୍ରତିଷ୍ଠିତ ହେଲେ । ଯାହାକି ଆଧ୍ୟାତ୍ମିକ ଜଗତରେ ମାନ୍ୟତାପ୍ରାପ୍ତ ନୁହେଁ । ତାଙ୍କର ପୂର୍ବବର୍ତ୍ତୀ ବଳରାମ ଦାସ 'ବେଢ଼ାବୁଲା'ରେ ଓ ପୁରୁଷୋତ୍ତମ ଦେବ ଶ୍ରୀମନ୍ଦିର ପରିକ୍ରମା ବିଧାନରେ ପତିତପାବନଙ୍କ ସ୍ଥିତି ଓ ସ୍ତୁତି ବର୍ଣ୍ଣନା କରିଅଛନ୍ତି । ଯଦି ରାମଚନ୍ଦ୍ର ଦେବ ପ୍ରଥମଙ୍କ ନିମନ୍ତେ ପତିତପାବନ ପ୍ରତିଷ୍ଠିତ ହେଲେ ତେବେ ତା ପୂର୍ବରୁ ବେଢ଼ାବୁଲା ଏବଂ ପରିକ୍ରମା ବିଧାନରେ ପତିତପାବନଙ୍କ ସ୍ଥିତି କିପରି ବର୍ଣ୍ଣିତ ହୋଇଛି ? ତେଣୁ ଏହା ରାମଚନ୍ଦ୍ର ଦେବଙ୍କ ବହୁ ପୂର୍ବରୁ ପ୍ରତିଷ୍ଠିତ । ପରନ୍ତୁ, ରାମଚନ୍ଦ୍ର ଦେବ ବିଧର୍ମ ବୃତ୍ତିଗ୍ରସ୍ତ ହୋଇ ପତିତପାବନଙ୍କ ଦର୍ଶନ କରୁଥିଲେ । ତେଣୁ ମନୁଷ୍ୟ ପତିତପାବନଙ୍କଠାରେ ଅହଂତ୍ୱକୁ ବିସର୍ଜନ କରି 'ପତିତାନାଂ ପତିତୋହଂ' ନିଜକୁ ମନେକରି ମନ୍ଦିରକୁ ଯିବା ହିଁ ମୂଳ ଧର୍ମ ଅଟେ ।

### ଶ୍ରୀକ୍ଷେତ୍ର ପବିତ୍ର ଶିଳାଗୁଡ଼ିକ କ'ଣ ?

ପୁରୀ ବା ଶ୍ରୀକ୍ଷେତ୍ରରେ ଚାରିଗୋଟି ପବିତ୍ର ଶିଳା ଦେଖିବାକୁ ମିଳେ । ଶିଳାପୂଜା ଭାରତୀୟ ସଂସ୍କୃତିର ଏକ ପ୍ରାଚୀନ ପରଂପରା ଅଟେ । ଯଥା - ଶାଳଗ୍ରାମ ଶିଳା, ଶିଳାସ୍ତମ୍ଭ ପୂଜା ସମଗ୍ର ଭାରତବର୍ଷରେ ଆଚରିତ ହୋଇଥାଏ । ଠିକ୍ ସେହିପରି ଶ୍ରୀକ୍ଷେତ୍ରରେ ଚାରିଗୋଟି ଶିଳା ଦେଖିବାକୁ ମିଳେ । (୧) ଯମଶିଳା, (୨) ପିତୃଶିଳା, (୩) ମୁକ୍ତିଶିଳା, (୪) କୈବଲ୍ୟ ଶିଳା ।

(୧) ଜମଶିଳା :- ଏହି ଶିଳା ବର୍ତ୍ତମାନ ଶ୍ରୀଜଗନ୍ନାଥ ମନ୍ଦିରର ବାଇଶି ପାବଚ୍ଛର ଦ୍ୱିତୀୟ ସୋପାନରେ ପ୍ରତିଷ୍ଠିତ ଅଟେ । ଭକ୍ତମାନେ ଏହି ଶିଳାକୁ ସ୍ପର୍ଶ କରି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଗଲେ ସେମାନଙ୍କର ସକଳ ପ୍ରକାରର ଅକାଳ ମୃତ୍ୟୁ ଓ ପାପ ବିନାଶ ହୋଇଥାଏ ।

(୨) ପିତୃଶିଳା :- ଏହି ଶିଳା ସ୍ୱର୍ଗଦ୍ୱାର ରାସ୍ତାରେ ଉଗ୍ରେଶ୍ୱର ମଣ୍ଡପ ବାଉଳିମଠ ସମ୍ମୁଖରେ ଦେଖିବାକୁ ମିଳେ । ଏହାର କାରଣ ଏହି ଶିଳାକୁ ଯିଏ ଦର୍ଶନ କରିବ, ଦର୍ଶନକାରୀଙ୍କ ପିତ୍ୟମାନେ ପିତୃଲୋକରୁ ମୁକ୍ତି ପାଇଥାନ୍ତି ।

(୩) ମୁକ୍ତିଶିଳା :- ଏହି ଶିଳା ଶ୍ୱେତଗଙ୍ଗା ପାଖ ଶ୍ୱେତମାଧବଙ୍କ ପଶ୍ଚିମକୁ ଓ ବରାହୀଦେବୀଙ୍କର ପୂର୍ବକୁ ରହିଅଛି । ଏହି ଶିଳା ଏତେ ପବିତ୍ର ଯେ କୌଣସି ଜୀବ ଶାରୀରିକ କଷ୍ଟ ପାଇ ପ୍ରାଣାନ୍ତକ ହୋଇ ପଡ଼ିଥିବା ସମୟରେ ଶରୀରରୁ ଜୀବ ଛାଡୁନଥିଲେ ସେହି ଜୀବର ଶରୀରରେ ଏହି ଶିଳାର ରେଣୁ ଲେପନ କଲେ ବା ଉକ୍ତ ଶିଳା ଉପରେ ସ୍ପର୍ଶ କରାଇଦେଲେ ତତ୍‌କ୍ଷଣାତ୍ ତା'ର ଜୀବ ମୁକ୍ତି ପାଇଥାଏ ।

(୪) କୈବଲ୍ୟ ଶିଳା :- ନୀଳ ପୁରାଣ କହନ୍ତି ଶଙ୍ଖନାଭି ମଣ୍ଡଳର କେନ୍ଦ୍ର ସ୍ଥଳରେ ଦେବ ବ୍ରାହ୍ମଣମାନଙ୍କ ଦ୍ୱାରା ପୂଜିତ କୈବଲ୍ୟ ଶିଳା ଅର୍ଥାତ୍ 'ଅର୍ନ୍ତବେଦୀ' ଅବସ୍ଥିତ । ଏହି ଶିଳାକୁ ଯିଏ ସ୍ପର୍ଶ କରନ୍ତି, ସିଏ ସାୟୁର୍ଯ୍ୟମୁକ୍ତି ଲାଭ କରି କୈବଲତ୍ୱ ପ୍ରାପ୍ତ ହୋଇଥାଆନ୍ତି ।

> "ଯମଶିଳା ପିତୃଶିଳାଶ୍ଚ ମୁକ୍ତି ଶିଳା ତର୍ଥେବଚ
> କୈବଲ୍ୟଶିଳା ଏତେସା ଶିଳା ଚର୍ତୁବିଧାସ୍ମାର୍ତ୍ତ ।"

### ବାଇଶି ପାବଚ୍ଛର ଗୋଟିଏ ପାବଚ୍ଛରେ ଛୋଟିଆ ମାଙ୍କଡ଼ା ପଥରଟି କାହିଁକି ଅଛି ?

ବାଇଶି ପାବଚ୍ଛର ମଧ୍ୟଭାଗରେ ଗୋଟିଏ ଛୋଟିଆ ମାଙ୍କଡ଼ା ପଥରଟିଏ ଦେଖିବାକୁ ମିଳେ । ଏହାର କାରଣ ହେଲା - ଭାନୁଦେବଙ୍କ ନାମରେ ଜଣେ ରାଜା ଥିଲେ । ସେ ଅପୁତ୍ରିକ ଥିଲେ । ରାଜଗୁରୁଙ୍କର ନିର୍ଦ୍ଦେଶରେ ସେ ଜମ୍ୱେଶ୍ୱର ମହାପ୍ରଭୁଙ୍କ ପାଖରେ ପୁତ୍ର ପ୍ରାପ୍ତି ନିମନ୍ତେ ତପ ଆଚରଣ କଲେ । ପ୍ରଭୁ ଜମ୍ୱେଶ୍ୱରଙ୍କର କୃପାରୁ ଭାନୁଦେବଙ୍କର ଏକ ସୁନ୍ଦର ପୁତ୍ର ଜାତ ହେଲା । ଜାତ କର୍ମ ଦିନ ବୈଦଜ୍ଞ ବ୍ରାହ୍ମଣ କହିଲେ - 'ହେ ରାଜା ! ଆପଣଙ୍କର ଏହି ବାଳକର ଆୟୁ ୨୨ ବର୍ଷ । ଏହି କଥା ଶ୍ରବଣ କରି ରାଜା ଭାନୁଦେବ ରାଜଗୁରୁଙ୍କ ନିର୍ଦ୍ଦେଶରେ ପୁନର୍ବାର ନିଜର ପୁତ୍ରର ଆୟୁବୃଦ୍ଧି ନିମନ୍ତେ ତପ ଆଚରଣ କଲେ । ଜମ୍ୱେଶ୍ୱରଙ୍କର ନିର୍ଦ୍ଦେଶରେ ରାଜା ଜଗନ୍ନାଥ ମହାପ୍ରଭୁଙ୍କର ଶ୍ରୀମନ୍ଦିରର ବାଇଶି ପାବଚ୍ଛ ନିର୍ମାଣ କଲେ । ଭାନୁଦେବ ଉକ୍ତ ବାଇଶି ପାବଚ୍ଛ ନିର୍ମାଣ କରିବା ସମୟରେ ଗୋଟିଏ ସୋପାନରେ ହଠାତ୍ ଝର ପଡ଼ିଲା ଏବଂ ଏହି ଝର କୌଣସି ଉପାୟରେ ବନ୍ଦ ନ ହେବାରୁ ବାଇଶି ପାବଚ୍ଛ ନିର୍ମାଣରେ ବାଧା ସୃଷ୍ଟି ହେଲା । ପୁନର୍ବାର ରାଜା ଜମ୍ୱେଶ୍ୱରଙ୍କ ପାଖକୁ ଗଲେ । ସେଠାରେ ସ୍ୱପ୍ନାଦେଶ ହେଲା ଯେ ତୁମେ ଚକ୍ରତୀର୍ଥ ଘାଟରେ ବରୁଣ ଦେବତାଙ୍କ ତପସ୍ୟା କର । ଭାନୁଦେବ ଚକ୍ରତୀର୍ଥ ଘାଟରେ ତପସ୍ୟା ଆରମ୍ଭ କଲେ ଏବଂ ଜଳାଧିରାଜ ବରୁଣ ଦେବ ସନ୍ତୁଷ୍ଟ ହୋଇ ଭାନୁଦେବଙ୍କୁ ତୁମେ କାଲି ସକାଳେ ସମୁଦ୍ରରେ ସ୍ନାନ କରୁଥିବା ସମୟରେ ଯାହାକିଛି ଭାସୁଥିବା ଦେଖିବ ତାହା ଆଣି ଝର ମଧ୍ୟରେ ରଖିଲେ ଝର ବନ୍ଦ ହେବା ସହିତ ତୁମକୁ ଶାନ୍ତି ମିଳିବ ଏବଂ ତୁମ ପୁତ୍ରର ଆୟୁ ବୃଦ୍ଧି ଘଟିବ । ତା' ପରଦିନ ସ୍ନାନ କଲାବେଳେ ଗୋଟିଏ ମାଙ୍କଡ଼ା ପଥର ପାଇଲେ ଏବଂ ସେହି ମାଙ୍କଡ଼ା ପଥରଟିକୁ ଆଣି ବାଇଶି ପାବଚ୍ଛରେ ସୃଷ୍ଟି ହୋଇଥିବା ଝର ମଧ୍ୟରେ ରଖିବାରୁ ଝର ବନ୍ଦ ହେଲା ଏବଂ ବାଇଶି ପାବଚ୍ଛ ନିର୍ମାଣ କାର୍ଯ୍ୟ ପରିପୂର୍ଣ୍ଣ ହେଲା । ରାଜା ନିଜ ପୁତ୍ରକୁ ଆଣି ବାଇଶି ପାବଚ୍ଛରେ ଗଡ଼ାଇଲେ । ଯାହାକି ଅଦ୍ୟାବଧି ନିଜ ପିଲାଙ୍କ ଆୟୁ ବୃଦ୍ଧି ନିମନ୍ତେ ଏହି ପ୍ରଥା ଆଜି ପର୍ଯ୍ୟନ୍ତ ଚଳି ଆସୁଛି ଓ 'ବାଇଶି ପାବଚ୍ଛରେ ମାଙ୍କଡ଼ା ପଥର' ଏକ କିମ୍ବଦନ୍ତୀ ଆକାରରେ ଜନମୁଖରେ ଆଲୋଚିତ । ଉକ୍ତ ପ୍ରସଙ୍ଗ ପଣ୍ଡିତ ଜଗଦେବ ମିଶ୍ରଙ୍କ ରଚିତ କ୍ଷେତ୍ର ମାହାତ୍ମ୍ୟରୁ ସଂଗୃହୀତ ।

ବି.ଦ୍ର :- ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶିକ୍ଷଣ ଶିବିରରେ ଯୋଗ ଦେଇଥିବା ପ୍ରଶିକ୍ଷାର୍ଥୀମାନଙ୍କୁ ଉକ୍ତ ପ୍ରସଙ୍ଗ ଉପରେ ପ୍ରଶିକ୍ଷଣ ଦିଆଯାଇଥିଲା ।

ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶିକ୍ଷଣ
ଉପଦେଷ୍ଟା ମଣ୍ଡଳୀର ସଭ୍ୟ, ପୁରୀ

# ପ୍ରାକ୍ କଥନ ...




ସର୍ବଧର୍ମ ସମନ୍ୱୟର ପୀଠସ୍ଥଳୀ ରୂପେ ବିଦିତ ଶ୍ରୀକ୍ଷେତ୍ରର ଆରାଧ୍ୟ ଦେବତା ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ହେଉଛନ୍ତି, ବିଶ୍ୱମୈତ୍ରୀର ଏକ ଅପୂର୍ବ ନିଦର୍ଶନ । ମୁନି, ଋଷି, ତତ୍ତ୍ୱଦର୍ଶୀ, ବିଜ୍ଞ ଓ ଗୁଣୀମାନଙ୍କ ବିଚାରରେ ସେ ବୈଦିକ, ଜୈନ, ବୌଦ୍ଧ, ଶବର, ଶାକ୍ତ, ବୈଷ୍ଣବ ଏବଂ ଆହୁରି ଅନେକ ଧର୍ମଧାରାକୁ ନିଜ ଭିତରେ ବିଲୀନ କରି ସନାତନ ଧର୍ମର ପ୍ରତୀକ ଭାବେ ବିଶ୍ୱଜନମାନସକୁ ସ୍ତମ୍ଭୀଭୂତ କରିଛନ୍ତି । ସମସ୍ତ ମତବାଦ, ଧର୍ମଧାରା, ସିଦ୍ଧାନ୍ତ, ଦର୍ଶନ ତଥା ଚିନ୍ତା ଓ ଚେତନାର ପ୍ରବକ୍ତାମାନେ ଜଗନ୍ନାଥ ଧର୍ମର ସ୍ପର୍ଶରେ ଆପଣାକୁ ଭୁଲିଯାଇ ତାଙ୍କ ନିକଟରେ ନିଜକୁ ସମର୍ପି ଦେଇଛନ୍ତି । ତେଣୁ ଲୀଳାମୟ ଅବତାରୀ ପୁରୁଷ ଭାବେ ଅନାଦି ଅନନ୍ତ କାଳରୁ ରହସ୍ୟମୟ ହୋଇ ରହି ଆସିଛନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥ । ତାଙ୍କର ରହସ୍ୟମୟତାକୁ ଲକ୍ଷ୍ୟ କରି 'କପିଳ ସଂହିତା'ରେ ଉଲ୍ଲେଖ ଅଛି -

ସର୍ବଂ ରହସ୍ୟ ପୁରୁଷୋତ୍ତମସ୍ୟ
ଦେବାଃ ନ ଜାନାତି କୁତଃ ମନୁଷ୍ୟା ।

ସନାତନ ଧର୍ମର ପୀଠସ୍ଥଳୀ ଭାବେ ଶ୍ରୀକ୍ଷେତ୍ର ପୁରୀ ଚିରକାଳ ଭକ୍ତମାନଙ୍କୁ ଆକର୍ଷିତ କରି ଆସିଛି । ଶଙ୍କରାଚାର୍ଯ୍ୟ, ରାମାନୁଜ, ସାଲବେଗ, କବୀର ଓ ଚୈତନ୍ୟଙ୍କଠାରୁ ଆରମ୍ଭ କରି ଉତ୍କଳୀୟ ଭକ୍ତକବି ଜୟଦେବଙ୍କ ପର୍ଯ୍ୟନ୍ତ ସମସ୍ତେ ଜଗନ୍ନାଥ ଚେତନାରେ ଉଦ୍‌ବୁଦ୍ଧ ହୋଇ ଶ୍ରୀକ୍ଷେତ୍ର ପୁରୀକୁ ଆସିଛନ୍ତି । ପୁଣି ଜଗନ୍ନାଥଙ୍କୁ ଆଧାର କରି କବି ଓ ଲେଖକମାନେ ଲେଖି ଯାଇଛନ୍ତି ଅଜସ୍ର ଭଜନ, ଜଣାଣ, ଛାନ୍ଦ ଓ ଚଉତିଶା । ଐତିହାସିକ, ଗବେଷକ, ବୁଦ୍ଧିଜୀବୀ ଏବଂ ବିଦ୍ୱାନମାନଙ୍କ ଦ୍ୱାରା ପ୍ରଭୁ ଜଗନ୍ନାଥଙ୍କର ଆଦ୍ୟ ଉପାସନା, ଶ୍ରୀମନ୍ଦିରର ପ୍ରାଚୀନତା ଏବଂ ମହାପ୍ରଭୁଙ୍କର ବିଗ୍ରହ ପ୍ରତିଷ୍ଠାକୁ ନେଇ ଗବେଷଣା ଓ ବିଶ୍ଳେଷଣ ଅଦ୍ୟାବଧି ଚାଲୁ ରହିଛି । ତେବେ ସାମ୍ୟ, ମୈତ୍ରୀ ଓ ମାନବବାଦର ପ୍ରତୀକ ଭାବେ ମହାପ୍ରଭୁ ଶ୍ରୀଜଗନ୍ନାଥ ଯୁଗ ଯୁଗ ଧରି ମଣିଷ ଜାତିକୁ ଶାନ୍ତି, ସଂହତି, ପ୍ରେମ ଏବଂ ସହନଶୀଳତାର ସନ୍ଦେଶ ଦେଇ ଆସୁଛନ୍ତି ।

ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ସମଗ୍ର ବିଶ୍ୱର ଧାର୍ମିକ ଭାବଧାରାରେ ଏକ ଅଦ୍ୱିତୀୟ ଘଟଣା । ପତିତଜନଙ୍କୁ ଉଦ୍ଧାରିବା ପାଇଁ ମହାପ୍ରଭୁ ଜ୍ୟେଷ୍ଠଭ୍ରାତା ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କ ସହ ରତ୍ନ ସିଂହାସନ ଛାଡ଼ି ଓହ୍ଲାଇ ଆସନ୍ତି ବଡ଼ଦାଣ୍ଡକୁ । ଏହି ଐତିହାସିକ ଯାତ୍ରା ଦେଖିବା ପାଇଁ କେବଳ ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷର ବିଭିନ୍ନ କୋଣ ଅନୁକୋଣରୁ ରୁଣ୍ଡ ହୁଅନ୍ତି ବିଭିନ୍ନ ସଂପ୍ରଦାୟରୁ ଲକ୍ଷ ଲକ୍ଷ ଭକ୍ତ । ରଥଯାତ୍ରାର ବୈଶିଷ୍ଟ୍ୟ ଭକ୍ତମାନଙ୍କୁ ଏତେ ଭାବବିହ୍ୱଳ କରିଛି ଯେ, ଆଜି ବିଶ୍ୱର ବିଭିନ୍ନ ପ୍ରାନ୍ତରରେ ରଥଯାତ୍ରା ଅନୁଷ୍ଠିତ ହୋଇ 'ବସୁଧୈବ କୁଟୁମ୍ବକମ୍'ର ମହାନ୍ ବାର୍ତ୍ତା ପ୍ରଚାର କରୁଛି ।

ଚଳିତବର୍ଷ ଏହି ରଥଯାତ୍ରାକୁ ଶାନ୍ତିଶୃଙ୍ଖଳାର ସହ ସମାପନ କରିବା ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଜିଲ୍ଲା ପ୍ରଶାସନଠାରୁ ଆରମ୍ଭ କରି ସେବାୟତମାନଙ୍କୁ ନିବେଦନ କରିଛନ୍ତି । ବିଶେଷ କରି ଓଡ଼ିଶା ବାହାରୁ ଆସୁଥିବା ଭକ୍ତ ଏବଂ ପର୍ଯ୍ୟଟକମାନଙ୍କୁ ସମସ୍ତ ପ୍ରକାର ସୁବିଧା ସୁଯୋଗ ଯୋଗାଇଦେବା ଉପରେ ମୁଖ୍ୟମନ୍ତ୍ରୀ ସର୍ବାଧିକ ଗୁରୁତ୍ୱାରୋପ କରିଛନ୍ତି ।

'ଉତ୍କଳ ପ୍ରସଙ୍ଗ'ର ରଥଯାତ୍ରା ବିଶେଷାଙ୍କ ଆମର ପ୍ରିୟ ପାଠକମାନଙ୍କ ନିକଟରେ ସବୁବେଳେ ଏକ ବିଶେଷ ଆକର୍ଷଣ । ଚଳିତବର୍ଷ ମଧ୍ୟ ଏହି ବିଶେଷାଙ୍କଟିକୁ ସର୍ବାଙ୍ଗ ସୁନ୍ଦର କରି ପ୍ରକାଶ କରିବା ପାଇଁ ଆନ୍ତରିକ ଉଦ୍ୟମ କରାଯାଇଛି । ବହୁ ଉପାଦେୟ ପ୍ରବନ୍ଧ ଆମର ହସ୍ତଗତ ହୋଇଥିଲେ ମଧ୍ୟ ସ୍ଥାନାଭାବରୁ ପ୍ରକାଶ କରିବା ସମ୍ଭବ ହୋଇନାହିଁ । ସେଥିପାଇଁ ଆମେ ଦୁଃଖ ପ୍ରକାଶ କରିବା ସହିତ ଯେଉଁମାନଙ୍କ ଲେଖନୀରେ କଳେବରଟି ସମୃଦ୍ଧ ହୋଇଛି, ସେମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛୁ । ଆଶା, ଏହି ସ୍ୱତନ୍ତ୍ର ବିଶେଷାଙ୍କ ସୁଧୀ ପାଠକମାନଙ୍କ ନିକଟରେ ଆଦୃତି ଲାଭ କରିବ ।

ଜୟ ଜଗନ୍ନାଥ !

ଦିଗମ୍ବର ମହାନ୍ତି

(ଦିଗମ୍ବର ମହାନ୍ତି)

କମିଶନର ତଥା ଶାସନ ସଚିବ

# ଉତ୍କଳ ପ୍ରସଙ୍ଗ

The Utkal Prasanga

୬୩ ଭାଗ ୧୧ଶ-୧୨ଶ ସଂଖ୍ୟା ଜ୍ୟେଷ୍ଠ-ଶ୍ରାବଣ ଜୁନ-ଜୁଲାଇ - ୨୦୦୭

**ଦିଗମ୍ବର ମହାନ୍ତି**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ବିବେକାନନ୍ଦ ବିଶ୍ୱାଳ**
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ସହ-ସଂପାଦିକା
**ସୁଚେତା ପ୍ରିୟଦର୍ଶିନୀ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ**
**ମନୋରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ
ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

**ବାର୍ଷିକ ଦେୟ : ଟ.୫୦.୦୦**
**ପ୍ରତିଖଣ୍ଡ : ଟ.୫.୦୦**


---




ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୩୯୧୩୫୬, ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

# ସୂଚୀ